# ଗୋରାଙ୍କ ଦୃଷ୍ଟିରେ
# ଗାନ୍ଧୀ ଓ ନିରୀଶ୍ୱରବାଦ

ମୂଳ ରଚନା :

ଗୋପରାଜୁ ରାମଚନ୍ଦ୍ର ରାଓ

( ଗୋରା )

ଅନୁବାଦ :

ଧନେଶ୍ୱର ସାହୁ

ପ୍ରାଧ୍ୟାପକ, ଦର୍ଶନ ବିଭାଗ,

ରାଜେନ୍ଦ୍ର ମହାବିଦ୍ୟାଳୟ, ବଲାଙ୍ଗିର

ବିଦ୍ୟା ପ୍ରକାଶନ

ବାଲୁବଜାର, କଟକ-୨

# ଗୋରାଙ୍କ ଦୃଷ୍ଟିରେ
# ଗାନ୍ଧୀ ଓ ନିରୀଶ୍ୱରବାଦ

ମୂଳ ରଚନା : ଗୋରା

ଅନୁବାଦ : ଧନେଶ୍ୱର ସାହୁ

ପ୍ରକାଶକ : ବିଦ୍ୟା ପ୍ରକାଶନ
ବାଲୁବଜାର, କଟକ-୨

ପ୍ରଚ୍ଛଦଶିଳ୍ପୀ : ଅସିତ୍ ମୁଖାର୍ଜି

ମୁଦ୍ରଣ : ଦୁର୍ଗାମାଧବ ପ୍ରେସ୍
ଡଗରପଡ଼ା, କଟକ-୨

**GORANKA DRUSTIRE GANDHI O NIRISWARBAD**

Author : **Gora**

Translated by : **Dhaneswar Sahoo**

Publisher : **Bidya Prakashan**
Balubazar, Cuttack-2

Cover Design : **Asit Mukherjee**

New Edition : **1996**

Printed at : **Durgamadhav Press**
Dagarapara, Cuttack-2

Price : **Rs. 70**

# ସୂଚିପତ୍ର

## ତୃତୀୟ ଖଣ୍ଡ

# ଗାନ୍ଧୀଙ୍କ ବୈପ୍ଳବିକ ବ୍ୟକ୍ତିତ୍ୱ





# ଅନୁବାଦ ସମ୍ପର୍କରେ ପଦେ

ଗୋରାଙ୍କର ପୂରା ନାମ ହେଉଛି ଗୋପରାଜୁ ରାମଚନ୍ଦ୍ର ରାଓ । ସେ କିନ୍ତୁ ତାଙ୍କର ବନ୍ଧୁ ଓ ଅନ୍ୟମାନଙ୍କ ପାଖରେ ତାଙ୍କର ଡାକନାମରେ ପରିଚିତ ଯାହା ତାଙ୍କର ନାମ ଓ ସାଙ୍ଗିଆର ପ୍ରଥମ ଅକ୍ଷରରେ ହୋଇଛି । ଗୋରା ଆନ୍ଧ୍ରପ୍ରଦେଶର ବ୍ୟକ୍ତି । ଜଣେ ସ୍ୱାଧୀନତା ସଂଗ୍ରାମୀ, ସମାଜସଂସ୍କାରକ, ଗାନ୍ଧୀବାଦୀ ଓ ମାନବବାଦୀ ଭାବେ ସେ ଆନ୍ଧ୍ରରେ ସୁପରିଚିତ । ଓଡ଼ିଶାର ଗାନ୍ଧୀବାଦୀ ଓ ସର୍ବୋଦୟବାଦୀମାନଙ୍କ ପାଖରେ ସେ ସୁପରିଚିତ ହେଲେ ବି ଓଡ଼ିଶାର ସାଧାରଣ ପାଠକଙ୍କ ପାଖରେ ସେ ବିଶେଷ ପରିଚିତ ନୁହନ୍ତି । ଏହି ଅନୁବାଦଟି ଓଡ଼ିଶାର ପାଠକମାନଙ୍କୁ ତାଙ୍କ ବିଷୟରେ କିଛି ଧାରଣା ଦେବ ବୋଲି ମୋର ବିଶ୍ୱାସ ।

ଗୋରା ୧୯୦୨ ମସିହାରେ ଏକ ରକ୍ଷଣଶୀଳ ବ୍ରାହ୍ମଣ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ପ୍ରାକୃତିକ ବିଜ୍ଞାନରେ ସ୍ନାତକୋତ୍ତର ଡିଗ୍ରୀ ହାସଲ ପରେ ସେ ଅଧ୍ୟାପକ ଭାବରେ ବିଭିନ୍ନ ମହାବିଦ୍ୟାଳୟରେ ଦୀର୍ଘ ପନ୍ଦର ବର୍ଷ କାର୍ଯ୍ୟ କରି ଜଣେ ପ୍ରବୀଣ ଅଧ୍ୟାପକଭାବେ ଛାତ୍ରଛାତ୍ରୀ ମହଲରେ ଆଦୃତ ହୋଇଥିଲେ । ଏହି ସମୟ ଭିତରେ ସେ ଦର୍ଶନ, ତୁଳନାତ୍ମକ ଧର୍ମ ଓ ବିଜ୍ଞାନ ସଂକ୍ରାନ୍ତରେ ବହୁ ପୁସ୍ତକ ଅଧ୍ୟୟନ କରିଥିଲେ । ତାଙ୍କର ନିରୀଶ୍ୱରବାଦୀ ଦୃଷ୍ଟିଭଙ୍ଗୀ ଯୋଗୁଁ ତାଙ୍କ ବିରୋଧରେ କର୍ତ୍ତୃପକ୍ଷ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରି ତାଙ୍କୁ ଦୁଇଥର ଚାକିରିରୁ ବହିଷ୍କାର କରିଥିଲେ ମଧ୍ୟ ନିଜ ବିଚାର ଓ ଆତ୍ମପ୍ରତ୍ୟୟକୁ ନେଇ ସେ ସର୍ବଦା ଦୃଢ଼ ରହିଥିଲେ ।

ଏହାପରେ ୧୯୪୦ରେ ନିଜ ଚାକିରିରୁ ଇସ୍ତଫା ଦେଇ ସେ ଦେଶର ସ୍ୱାଧୀନତା ଆନ୍ଦୋଳନରେ ଅଂଶ ଗ୍ରହଣକରି ବହୁବାର କାରାବରଣ କରିଥିଲେ । ସ୍ୱାଧୀନତା ସଂଗ୍ରାମରେ ଭାଗନେବା ବ୍ୟତୀତ ଗାନ୍ଧୀଙ୍କ ରଚନାତ୍ମକ କାର୍ଯ୍ୟକ୍ରମକୁ ଆଧାରକରି ଆନ୍ଧ୍ରର ବିଭିନ୍ନ ଗ୍ରାମମାନଙ୍କରେ ପୁନର୍ଗଠନ କାର୍ଯ୍ୟରେ ନିଜକୁ ବ୍ରତୀ କରାଇଥିଲେ । ସମାଜ ସେବାକୁ ବ୍ରତ ଭାବରେ ଗ୍ରହଣ କରି ସମାଜରୁ ସକଳ କୁସଂସ୍କାର ଲୋପ କରିବା ପାଇଁ ସେ ଉତ୍ସର୍ଗୀକୃତ ଭାବରେ ଜୀବନର ଶେଷପର୍ଯ୍ୟନ୍ତ କାର୍ଯ୍ୟ କରିଛନ୍ତି ।

ଗାନ୍ଧୀଙ୍କ ସହ ତାଙ୍କର ସମ୍ବନ୍ଧ ପତ୍ରଯୋଗେ ପୂର୍ବରୁ ସ୍ଥାପିତ ହୋଇଥିଲେ ବି ୧୯୪୪ରେ ସେ ଗାନ୍ଧୀଙ୍କର ବ୍ୟକ୍ତିଗତ ସମ୍ପର୍କରେ ଆସିବାର ସୁଯୋଗ ପାଇଲେ । ଗାନ୍ଧୀ ଥିଲେ ଈଶ୍ୱର ବିଶ୍ୱାସୀ; କିନ୍ତୁ ଗୋରା ଥିଲେ ନିରୀଶ୍ୱରବାଦୀ । କିନ୍ତୁ ଗାନ୍ଧୀ

ଗୋରାଙ୍କର ସରଳତା, ନୈତିକ ପରାକାଷ୍ଠା, ମାନବବାଦୀ ଦୃଷ୍ଟିଭଙ୍ଗୀ ଦେଖି ତାଙ୍କୁ ନିଜ ପରିବାରର ସଦସ୍ୟଭାବେ ଗ୍ରହଣ କରିଥିଲେ । ଅପରପକ୍ଷରେ ଗୋରା ଗାନ୍ଧୀଙ୍କୁ ନିଜର ପିତୃତୁଲ୍ୟ ମନେକରି ତାଙ୍କୁ ନିଜର ଆଦର୍ଶ ଭାବରେ ନେଇ ନିରୀଶ୍ୱରବାଦ ପ୍ରତି ତାଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ତାତ୍ତ୍ୱିକ ଓ ବୈଚାରିକ ସ୍ତରରେ ଉଭୟଙ୍କ ଭିତରେ ମତପାର୍ଥକ୍ୟ ଥିଲେ ବି ଉଭୟ ଥିଲେ ମାନବଦରଦୀ, ସତ୍ୟାନ୍ୱେଷୀ ଓ କ୍ରାନ୍ତିକାରୀ । ଭାରତର ସ୍ୱାଧୀନତା ପରେ ୧୯୪୮ ଏପ୍ରିଲରେ ଗାନ୍ଧୀ ଓ ଗୋରାଙ୍କ ମଧ୍ୟରେ 'ଆସ୍ତିକତା ବନାମ ନିରୀଶ୍ୱରବାଦୀ ଜୀବନଦୃଷ୍ଟି' ଉପରେ ଦଶଦିନ ଧରି ପ୍ରତ୍ୟହ ଆଲୋଚନା ହେବାକୁ ଗାନ୍ଧୀ ସ୍ଥିର କରିଥିଲେ । କିନ୍ତୁ ଦୁଃଖର କଥା ତା' ପୂର୍ବରୁ ଗାନ୍ଧୀ ଆତତାୟୀର ଗୁଳିରେ ପ୍ରାଣ ହରାଇଲେ । ଗୋରା ଗାନ୍ଧୀଙ୍କୁ ଜଣେ ମହାନ୍ ବିପ୍ଳବୀ ଓ ନିଜର ଗୁରୁ ଭାବରେ ଗ୍ରହଣ କରୁଥିଲେ ବି ସେ ନିଜର ଜୀବନ-ଦୃଷ୍ଟି ପ୍ରତି ଗାନ୍ଧୀଙ୍କୁ ଆକୃଷ୍ଟ କରିବା ପାଇଁ ପ୍ରୟାସ କରିଥିଲେ । ନିଜର ଗୁରୁ ଓ ଆଦର୍ଶ ଭାବରେ ନେଇଥିବା ଗାନ୍ଧୀଙ୍କୁ ପରିବର୍ତ୍ତନ କରିବା ପାଇଁ ଗୋରା ଯେଉଁ ପ୍ରୟାସ କରିଥିଲେ ତାହା ଏକ ଅଭିନବ ଘଟଣା । ଏହି ଅନୁବାଦ ପୁସ୍ତକରେ ସ୍ଥାନ ପାଇଥିବା କେ. ଜି. ମଶ୍ରୁୱାଲାଙ୍କର ନିବନ୍ଧର ଅଭିମତ ଏ କ୍ଷେତ୍ରରେ ପ୍ରଣିଧାନ ଯୋଗ୍ୟ ।

କେବଳ ତାତ୍ତ୍ୱିକ ବିଚାରଦୃଷ୍ଟିରୁ ଗୋରା ନିରୀଶ୍ୱରବାଦୀ ନଥିଲେ । ସେ ଥିଲେ ବାସ୍ତବବାଦୀ ଓ ସମାଜରେ ଗୁଣାତ୍ମକ ପରିବର୍ତ୍ତନ ଚାହୁଁଥିବା ଜଣେ କ୍ରାନ୍ତିକାରୀ ବ୍ୟକ୍ତି । ନିରୀଶ୍ୱରବାଦକୁ ଏକ ସକାରାତ୍ମକ ଜୀବନଦର୍ଶନ ଭାବରେ ନେଇ ତାହାର ଆଭିମୁଖ୍ୟରେ ସମାଜରେ ମୌଳିକ ପରିବର୍ତ୍ତନ ଆଣିବାକୁ ସେ ପ୍ରୟାସ କରିଥିଲେ । ନିରୀଶ୍ୱରବାଦର ଏକ ନୂତନ ବ୍ୟାଖ୍ୟା ସେ ପ୍ରଦାନ କରିଛନ୍ତି । ମଣିଷର ସ୍ୱାଧୀନ ଇଚ୍ଛା ଓ ଆତ୍ମବିଶ୍ୱାସକୁ ସେ ନିରୀଶ୍ୱରବାଦର ଅର୍ଥ ଭାବରେ ନେଇଛନ୍ତି । ଯେଉଁ ବିଶ୍ୱାସ ଓ ଜୀବନମାର୍ଗ ମଣିଷକୁ ଏକ ବାହ୍ୟଶକ୍ତି—ତାହା ଈଶ୍ୱର ବା କୌଣସି ଅନୈଶ୍ୱର ପ୍ରକୃତି ବା ବ୍ୟବସ୍ଥା ହେଉ—ପାଖରେ ଅଧୀନ କରାଏ ତାହା ଗୋରାଙ୍କ ଦୃଷ୍ଟିରେ ଆସ୍ତିକତା ଅଥଚ ଯାହା ବ୍ୟକ୍ତିକୁ କାହା ପାଖରେ ଅଧୀନ ନକରାଇ ସ୍ୱାଧୀନ ମନୋଭାବ, ଆତ୍ମବିଶ୍ୱାସ ଓ ମର୍ଯ୍ୟାଦାବୋଧ ପୋଷଣ କରିବାରେ ସାହାଯ୍ୟ କରେ ତାହା ହେଉଛି ନିରୀଶ୍ୱରବାଦ । ସୁତରାଂ ଗୋରା ନିରୀଶ୍ୱରବାଦର ଏକ ସ୍ୱକଳ୍ପିତ ସଂଜ୍ଞା ଦେବା ସହିତ ଏହାର ପ୍ରଚଳିତ ପାରିଭାଷିକ ଅର୍ଥରେ ପରିବର୍ତ୍ତନ ଆଣିଥିବା ମନେହୁଏ । ଏହି ବିଚାରକୁ ଆଧାର କରି ସେ ନିରୀଶ୍ୱରବାଦର ପ୍ରଚାର ଓ ଏହି ଦିଗରେ ସାମାଜିକ ପରିବର୍ତ୍ତନ ପାଇଁ ବାସ୍ତବ କାର୍ଯ୍ୟସୂଚୀ ଗ୍ରହଣ କରିଥିଲେ ।

୧୯୪୦ ମସିହାରେ ଗୋରା ସମାଜ ସେବାରେ ନିଜକୁ ବ୍ରତୀ କରାଇବା ପରିପ୍ରେକ୍ଷୀରେ ଆନ୍ଧ୍ରର ବିଜୟୱାଡ଼ାଠାରେ ନାସ୍ତିକ କେନ୍ଦ୍ର (Atheist

Centre) ପ୍ରତିଷ୍ଠା କରିଥିଲେ । ଏହି କେନ୍ଦ୍ର ମାଧ୍ୟମରେ ସେ ନାନା ସମାଜ-ସଂସ୍କାର ଓ ରଚନାତ୍ମକ କାର୍ଯ୍ୟକ୍ରମରେ ନିଜକୁ ବ୍ରତୀ କରାଇଥିଲେ । ବିଶେଷକରି ଅସ୍ପୃଶ୍ୟତା ପରି ଏକ ସାମାଜିକ କଳଙ୍କକୁ ଦୂର କରିବା ପାଇଁ ସେ ନିଷ୍ଠାପର ଭାବରେ କାର୍ଯ୍ୟ କରିଥିଲେ । ସମାଜରୁ ଜାତିପ୍ରଥା, ସାଂପ୍ରଦାୟିକତା ଓ ଯେକୌଣସି ପ୍ରକାରର ବିଭେଦକାରୀ ଭାବନାକୁ ଦୂରକରି ମାନବିକତାର ସ୍ରୋତରେ ସାମିଲ ହେବାକୁ ଏକ ମାନସିକତା ସୃଷ୍ଟି କରିବା ଦିଗରେ ବହୁ ପଦକ୍ଷେପ ନେଇଥିଲେ । ମାନବବାଦ ଥିଲି ତାଙ୍କ ପାଇଁ ଶ୍ରେଷ୍ଠ ମୂଲ୍ୟବୋଧ ଓ ମାନବ ସମାଜରେ ସୌହାର୍ଦ୍ଦ୍ୟ ପ୍ରତିଷ୍ଠା ଥିଲି ଜୀବନର ସର୍ବଶ୍ରେଷ୍ଠ ଆଦର୍ଶ । ନିଜର ଆଦର୍ଶକୁ ନିଜ ପରିବାରରେ ପ୍ରୟୋଗ କରିବାକୁ ଯାଇ ସେ ନିଜର ପୁଅଝିଅଙ୍କୁ ତଥାକଥିତ ହରିଜନ ପରିବାରରେ ବିବାହ କରାଇଥିଲେ । ଏଥିପାଇଁ ତାଙ୍କୁ ନାନା ସାମାଜିକ ପ୍ରତିବନ୍ଧକ ଓ ନିଜର ବ୍ରାହ୍ମଣ ଧର୍ମୀଙ୍କ ସ୍ୱଜନଙ୍କଠାରୁ ବାସନ୍ଦର ସମ୍ମୁଖୀନ ହେବାକୁ ପଡ଼ିଥିଲା । ହେଲେ ନିଜର ଆତ୍ମବିଶ୍ୱାସ ଓ ମାନବବାଦୀ ଦୃଷ୍ଟିଭଙ୍ଗୀ ନେଇ ସେ ସାମାଜିକ ବାସ୍ତବତାକୁ ସମ୍ମୁଖୀନ ହୋଇଥିଲେ ।

ଗୋରା ପୃଥିବୀର ବହୁ ଦେଶକୁ ଯାଇଛନ୍ତି ଓ ଏକ ନୂତନ ଜୀବନଦର୍ଶନ ସୃଷ୍ଟି ଦିଗରେ ପ୍ରୟାସ କରିଛନ୍ତି । ନିରୀଶ୍ୱରବାଦ, ହେତୁବାଦ, ମାନବତାବାଦ, ଧର୍ମନିରପେକ୍ଷତାବାଦ ଓ ମୁକ୍ତ ଚିନ୍ତାର ବିକାଶ ଦିଗରେ କାର୍ଯ୍ୟ କରୁଥିବା ବହୁ ଆନ୍ତର୍ଜାତିକ ସଂଗଠନରେ ସେ ଭାଷଣ ଦେଇଛନ୍ତି । ପୃଥିବୀର ବହୁ ବିଶ୍ୱବିଦ୍ୟାଳୟ ଓ ପ୍ରଗତିଶୀଳ ଅନୁଷ୍ଠାନରେ ଭାଷଣ ଦେଇ ଏକ ନୂତନ ବିଚାରବିମର୍ଶର ସୂତ୍ରପାତ କରିଛନ୍ତି । ବିଭିନ୍ନ ଦେଶର ବହୁ ସମ୍ବାଦପତ୍ର ଓ ଗଣମାଧ୍ୟମ ଗୋରାଙ୍କର ମାନବବାଦୀ ଦୃଷ୍ଟିଭଙ୍ଗୀକୁ ଭୂୟସୀ ପ୍ରଶଂସା କରିଛନ୍ତି ଓ ତାଙ୍କର ନିରୀଶ୍ୱରବାଦକୁ ମଧ୍ୟ ସମାଲୋଚନା କରିଛନ୍ତି । ୧୯୪୦ ମସିହାରେ ତାଙ୍କଦ୍ୱାରା ପ୍ରତିଷ୍ଠିତ ନାସ୍ତିକ କେନ୍ଦ୍ର ଅଧୁନା ଆନ୍ତର୍ଜାତିକ ସ୍ତରରେ ଏକ ପ୍ରମୁଖ ଅନୁଷ୍ଠାନ ଭାବରେ ସ୍ୱୀକୃତ ହୋଇଛି । ସମତା, ସାମାଜିକ ନ୍ୟାୟ, ବ୍ୟକ୍ତି ମର୍ଯ୍ୟାଦାବୋଧ ଓ ମାନବିକ ଅଧିକାର ବିକାଶ ଦିଗରେ ଏହି ଅନୁଷ୍ଠାନ ବିଶ୍ୱର ବହୁ ବୁଦ୍ଧିଜୀବୀ ଓ ମାନବବାଦୀଙ୍କର ଦୃଷ୍ଟିଆକର୍ଷଣ କରିଛି ।

ଗୋରା ୨୬ ଜୁଲାଇ ୧୯୭୫ରେ ଏକ ସାଧାରଣ ସଭାରେ ଭାଷଣ ଦେବାବେଳେ ହୃଦଯନ୍ତ୍ର କ୍ରିୟା ବନ୍ଦ ହୋଇଯିବାରୁ ମୃତ୍ୟୁବରଣ କରିଥିଲେ । ତାଙ୍କର ପତ୍ନୀ ସରସ୍ୱତୀ ଦେବୀ ଅତ୍ୟନ୍ତ ପରିଣତ ବୟସରେ ଗୋରାଙ୍କର କାର୍ଯ୍ୟରେ ଏବେବି ବ୍ରତୀ ରହିଛନ୍ତି । ଗୋରାଙ୍କର ପୁଅ, ବୋହୂ, ଝିଅ ଓ ଜ୍ୱାଇଁଙ୍କ ମଧ୍ୟରୁ ଅଧିକାଂଶ ସମାଜସେବା ସ୍ତରରେ ଥାଇ ନିରୀଶ୍ୱରବାଦୀ ଚିନ୍ତାରେ ସମାଜସେବାରେ ନିଜକୁ ନିୟୋଜିତ ରଖିଛନ୍ତି । ଗୋରାଙ୍କ ପରେ ତାଙ୍କ ପ୍ରତିଷ୍ଠିତ ଅନୁଷ୍ଠାନ

ଅଧିକ ସଙ୍କ୍ଷିପ୍ତ ଭାବରେ ତାଙ୍କର ଜୀବନାଦର୍ଶକୁ ପ୍ରଚାର କରିବାରେ ସମର୍ଥ ହୋଇଛି । ଜୀବନର ଗୁଣାତ୍ମକ ଅଭିବୃଦ୍ଧି ପାଇଁ ମଣିଷର ମାନସିକତାରେ ଏକ ପରିବର୍ତ୍ତନ ଆଣିବାକୁ ପ୍ରୟାସ କରୁଥିବା ନାସ୍ତିକ କେନ୍ଦ୍ରର କାର୍ଯ୍ୟକୁ ସ୍ୱୀକୃତ ଦେଇ ଆନ୍ତର୍ଜାତିକ ମାନବବାଦୀ ଓ ନୈତିକ ସଂଘ (International Humanist and Ethical Union) ୧୯୮୬ରେ ସମ୍ମାନଜନକ ଆନ୍ତର୍ଜାତିକ ପୁରସ୍କାର (World Humanist Award) ନାସ୍ତିକ କେନ୍ଦ୍ରକୁ ପ୍ରଦାନ କରିଛି ।

ମୁଁ ୧୯୮୦ରେ ଗୋରାଙ୍କ ଅନୁଷ୍ଠାନ ସମ୍ପର୍କରେ ଆସିବାର ସୌଭାଗ୍ୟ ପାଇଥିଲି । ଗୋରାଙ୍କ ସମ୍ବନ୍ଧରେ ଓଡ଼ିଶାର ବହୁ ଗାନ୍ଧୀବାଦୀଙ୍କ ପାଖରୁ ଶୁଣିବାର ଅବକାଶ ମଧ୍ୟ ପାଇଛି । ତାଙ୍କର କେତେକ ଲେଖାକୁ ଓଡ଼ିଆରେ ଅନୁବାଦ କରି କେତେକ ପତ୍ରିକାରେ ପ୍ରକାଶ କରାଇବାରେ ଓଡ଼ିଶାର ସୁଧୀ ପାଠକମାନଙ୍କ ପାଖରୁ ମୁଁ କେତେକ ପତ୍ର ପାଇଛି, ଗୋରା ଓ ନାସ୍ତିକ କେନ୍ଦ୍ର ବିଷୟରେ ଅଧିକ କିଛି ଲେଖିବାକୁ ପ୍ରେରଣା ମଧ୍ୟ ଲାଭକରିଛି । ଏହି ଅବସରରେ ସୁଧୀ ପାଠକମାନଙ୍କୁ ମୁଁ ମୋର କୃତଜ୍ଞତା ଜ୍ଞାପନ କରୁଛି ।

ଏହି ସଙ୍କଳନରେ ଗୋରାଙ୍କର ତିନୋଟି ପୁସ୍ତକ (୧) Positive Atheism, (୨) An Atheist with Gandhi ଓ (୩) Revolutionary Personality of Gandhiର ଅନୁବାଦ ସ୍ଥାନ ପାଇଛି । ଗୋରାଙ୍କ ଦ୍ୱିତୀୟ ପୁସ୍ତକରେ କେ. ଜି. ମଶ୍ରୁୱାଲା ଯେଉଁ ମୁଖବନ୍ଧ ଲେଖିଛନ୍ତି ତାହା ଉପକ୍ରମଣିକା ଶୀର୍ଷକରେ ଏହି ଅନୁବାଦରେ ଦ୍ୱିତୀୟ ଖଣ୍ଡରେ ଦିଆଯାଇଛି । ଏହି ପୁସ୍ତକଟି ଓଡ଼ିଶାର ପାଠକମାନଙ୍କୁ ଗୋରାଙ୍କର ନିରୀଶ୍ୱରବାଦ ପ୍ରତୀତି, ଗାନ୍ଧୀଙ୍କ ସହ ତାଙ୍କର ସମ୍ବନ୍ଧ ଓ ତାଙ୍କ ଦୃଷ୍ଟିରେ ଗାନ୍ଧୀଙ୍କ ବ୍ୟକ୍ତିତ୍ୱ ସମ୍ପର୍କରେ ଅବଗତ ହେବାକୁ ସାହାଯ୍ୟ କରିବ ବୋଲି ଆଶାକରୁଛି ।

ଏହି ଅନୁବାଦକୁ ଗୋଟିଏ ପୁସ୍ତକ ଆକାରରେ ପ୍ରକାଶ କରିବା ପାଇଁ ମୋର ବନ୍ଧୁ ଅଧ୍ୟାପକ ଶ୍ରୀ ଶଚୀନ୍ଦ୍ର ରାଉଳ ମୋତେ ସର୍ବଦା ପ୍ରେରଣା ଦେଇଥିବାରୁ ମୁଁ ତାଙ୍କୁ ଏହି ଅବସରରେ ମୋର କୃତଜ୍ଞତା ଜଣାଉଛି । ମୋର ହାତଲେଖାକୁ ଶୁଦ୍ଧ ନକଲ କରିବାରେ ମୋତେ ବହୁତ ସାହାଯ୍ୟ କରିଥିବାରୁ ମୋର ପତ୍ନୀ ପ୍ରତିମାଙ୍କୁ ମୁଁ ଧନ୍ୟବାଦ ଦେଉଛି । ମୋର ଯେଉଁ ହେତୁବାଦୀ ବନ୍ଧୁଗଣ ଓଡ଼ିଆରେ କିଛି ହେତୁବାଦୀ ସାହିତ୍ୟ ସୃଷ୍ଟି କରିବା ପାଇଁ ବା ଅନୁବାଦ ପ୍ରକାଶ କରିବା ପାଇଁ ମୋତେ ଉତ୍ସାହ ଦେଇଛନ୍ତି ସେମାନଙ୍କୁ ମଧ୍ୟ ମୁଁ ମୋର କୃତଜ୍ଞତା ଜଣାଉଛି ।

ଭୁବନ, ଢେଙ୍କାନାଳ — ଧନେଶ୍ୱର ସାହୁ

ପ୍ରଥମ ପରିଚ୍ଛେଦ :

# ଆସ୍ତିକତାବାଦ ଓ ନିରୀଶ୍ବରବାଦ

ଆସ୍ତିକତାବାଦ ଓ ନିରୀଶ୍ବରବାଦ ହେଉଛି ଜଗତ ପ୍ରତି ମଣିଷର ଦୁଇଟି ପୃଥକ୍ ଦୃଷ୍ଟିଭଙ୍ଗୀ । ଆଦିମ ମଣିଷର ଜଗତ ପବନ ଓ ବର୍ଷା, ସୂର୍ଯ୍ୟ ଓ ଚନ୍ଦ୍ର, ସ୍ବପ୍ନ, ଜରା ଓ ମୃତ୍ୟୁ ଭିତରେ ଆବଦ୍ଧ ରହିଥିଲା । ପାରିବାରିକ, ଦଳଗତ ଓ ଗୋଷ୍ଠୀଗତ ସାମାଜିକ ଜୀବନଯାପନର ଆବଶ୍ୟକତା ଭିତରୁ ସାମାଜିକ ପରମ୍ପରା ଓ ନୈତିକତାର ଉଦ୍ଭବ ହେଲା । ସାମାଜିକ ବିକାଶ ପ୍ରକ୍ରିୟାରେ ରାଜନୈତିକ, ଅର୍ଥନୈତିକ ଓ ବୈଷୟିକ ବ୍ୟବସ୍ଥା ସମୂହ ଆଧୁନିକ ଜୀବନପ୍ରବାହ କ୍ଷେତ୍ରରେ ପ୍ରାଧାନ୍ୟ ଲାଭ କରିବା ଦେଖାଯାଏ ।

ପରିବେଶ ପ୍ରତି ପ୍ରତିକ୍ରିୟା ପ୍ରକାଶ କରିବା ମଣିଷର ଏକ ସହଜାତ ସ୍ବଭାବ ଅଟେ । ଭୟ, ପ୍ରେମ ଓ ଘୃଣାର ଅନୁଭୂତି ସହିତ ଖେଳ, କାମ, ଜ୍ଞାନ, ଯୋଜନା, ସ୍ବାଚ୍ଛନ୍ଦ୍ୟ ଓ ଆଶାର ଆବଶ୍ୟକତାରୁ ମଣିଷ ପରିବେଶକୁ ନିଜର ସାମର୍ଥ୍ୟ, କଳ୍ପନା ଓ ବୁଦ୍ଧି ବଳରେ ବୁଝିବାକୁ ପ୍ରଯତ୍ନ କରିଆସିଛି । ଅପରପକ୍ଷରେ ପରିବେଶ ମଣିଷର ଭାବନା ଓ ଅବବୋଧକୁ ଶୃଙ୍ଖଳିତ କରିବା ସହିତ ତା'ର ଆବଶ୍ୟକତାକୁ ପୂରଣ କରିବାରେ ସାହାଯ୍ୟ କରିଛି । ବସ୍ତୁତଃ ମଣିଷ ତା'ର ଜଗତ ସହିତ ସର୍ବଦା ସମ୍ବନ୍ଧିତ ହୋଇ ରହିଛି ।

ଜଗତ ପ୍ରତି ମଣିଷର ପ୍ରତିକ୍ରିୟା ଦୁଇପ୍ରକାର ହୋଇପାରେ—ପ୍ରଥମତଃ ସେ ତା'ର ଜାଗତିକ ପରିବେଶ ପାଖରେ ନିଜକୁ ସମର୍ପଣ କରିଦେବା ସହିତ ଏହାର ଶକ୍ତି ସମୂହ ପାଖରେ ନିଜକୁ କ୍ରୀଡ଼ନକ ମନେ କରିପାରେ । ଦ୍ବିତୀୟତଃ ସେ ପରିବେଶ ପାଖରେ ନିଜର ଅସ୍ତିତ୍ବକୁ ଜାହିର କରିବା ସହିତ ଏହାକୁ ନିୟନ୍ତ୍ରଣ ଭିତରେ ରଖି ନିଜର ଆବଶ୍ୟକତା ପାଇଁ ବିନିଯୋଗ କରିପାରେ । ପ୍ରଥମଟି ପରାଧୀନ ଅଥଚ ଦ୍ବିତୀୟଟି ସ୍ବାଧୀନ ଦୃଷ୍ଟିଭଙ୍ଗୀର ପରିଚାୟକ ଅଟେ ।

ଆଦିମ ମଣିଷର ପରିବେଶ ସକାନ୍ତରେ ଜ୍ଞାନ ସୀମିତ ଥିବାରୁ ଓ ଜୀବନର ନିରାପତ୍ତା ନଥିବାରୁ ସେ ସାହସୀ ହେବା ବା ଏହା ପାଖରେ ନିଜର ଅସ୍ତିତ୍ବକୁ ଜାହିର କରିବା ପରିବର୍ତ୍ତେ ଶଙ୍କିତ ଓ ଅଧସ୍ତନ ହୋଇ ରହିଥିଲା । ସେ ଅତି

ସରଳ ଓ ନିଜର ମାନଦଣ୍ଡର ସାଦୃଶ୍ୟରେ ପରିବେଶକୁ ଅବରୋଧ କରୁଥିଲା । ଈଶ୍ୱରଙ୍କୁ ଏକ ପୁରୁଷ ବୋଲି ଭାବିବା, ସମାଜରେ ପୁରୁଷ ପ୍ରାଧାନ୍ୟତାର ସୂଚନା ଦେଇଥାଏ ।

ଈଶ୍ୱରଙ୍କ ଅସ୍ତିତ୍ୱ ଉପରେ ବିଶ୍ୱାସ ଆଦିମ ମଣିଷ ପାଇଁ ଉପଯୋଗୀ ଥିଲା । ଏହା ମଣିଷର କୌତୁହଳତାକୁ ପୂରଣ କରିବାରେ ସାହାଯ୍ୟ କରୁଥିଲା । ସବୁକିଛି ସେହି ଈଶ୍ୱରଙ୍କ ଦ୍ୱାରା ସୃଷ୍ଟ ଓ ତାଙ୍କଦ୍ୱାରା ବ୍ୟବସ୍ଥିତ ବୋଲି ସେ ଭାବୁଥିଲା । ଈଶ୍ୱରଙ୍କ ପାଖରେ ସମର୍ପଣ ଭାବନା ତା'ର ଅଧସ୍ତନ ମନୋଭାବକୁ ପୂରଣ କରିବାରେ ସହାୟକ ହେଉଥିଲା । ଯେହେତୁ ଈଶ୍ୱରଙ୍କୁ ମଣିଷ ରୂପରେ କଳ୍ପନା କରାଯାଉଥିଲା; ଈଶ୍ୱରଙ୍କୁ ମହାନ୍, ପ୍ରେମମୟ, କରୁଣାମୟ ଓ ଅନେକ ମାନବୀୟ ଗୁଣ ସମୂହ ମଧ୍ୟ ଆରୋପ କରାଯାଉଥିଲା । ସେହି ମହାନ୍ ଈଶ୍ୱରଙ୍କ ଉପରେ ବିଶ୍ୱାସ—ତାହା ଯେତେ କାଳ୍ପନିକ ହେଲେ ବି ସେହି ପରିବେଶର ସାମାଜିକ ଗୋଷ୍ଠୀ ସମୂହ ଭିତରେ ନୈତିକ ଆଦର୍ଶ ସ୍ଥାପନ କରିବାରେ ସହାୟକ ହୋଇଥିଲା । ପ୍ରେମମୟ ଓ କରୁଣାମୟ ଏକ ଈଶ୍ୱରଙ୍କ ଉପରେ ବିଶ୍ୱାସ ସକଳ ପ୍ରତିବନ୍ଧକକୁ ସମ୍ମୁଖୀନ ହେବାରେ ମଣିଷ ଭିତରେ ଆଶା ସଞ୍ଚାର କରିପାରୁଥିଲା । ଏହା ସହିତ ସଙ୍ଗୀତ, ନୃତ୍ୟ ଓ ଉପଚାର ମାଧ୍ୟମରେ ଈଶ୍ୱରଙ୍କର ଆରାଧନା କରିବା ମଣିଷର ସୌନ୍ଦର୍ଯ୍ୟବୋଧକୁ ମଧ୍ୟ ସନ୍ତୁଷ୍ଟ କରିପାରୁଥିଲା । ଆଦିମ ମଣିଷର ବହୁବିଧ ଆବଶ୍ୟକତାକୁ ପୂରଣ କରିବାରେ ଈଶ୍ୱର-ପ୍ରତୀତି ଯଥେଷ୍ଟ ସହାୟକ ହୋଇଥିଲା । ଏହିପରି ଈଶ୍ୱରଙ୍କ ଉପରେ ମଣିଷର ଗଭୀର ବିଶ୍ୱାସ ସୃଷ୍ଟି ହେବାରେ ଲାଗିଲା ।

ଈଶ୍ୱରଙ୍କ ପରି ଶରୀରରୁ ପୃଥକ୍ ହୋଇପାରୁଥିବା ଏକ ଆତ୍ମାର ମଧ୍ୟ କଳ୍ପନା କରାଗଲା । ନିଦ୍ରାବସ୍ଥାରେ ସ୍ୱପ୍ନସକଳ ଏକ କାଳ୍ପନିକ ଭୂମିରେ ଆତ୍ମାର ବିଚରଣର ଭାବନାକୁ ଭିତ୍ତି ଯୋଗାଇଲା ଓ ମୃତ୍ୟୁରେ ଆତ୍ମା ଶରୀରରୁ ଚିରଦିନ ପାଇଁ ପୃଥକ୍ ହୋଇଯାଏ ବୋଲି ମଣିଷ ଭାବିବାକୁ ଲାଗିଲା । ଅଶରୀର ଆତ୍ମା ସମୂହର ସ୍ଥିତି ପାଇଁ ସ୍ୱର୍ଗ, ନର୍କ ପରି ଏକ ଭିନ୍ନ ଜଗତ ଓ ପୁନର୍ଜନ୍ମର କଳ୍ପନା କରାଗଲା । ଏକ ଅବିନଶ୍ୱର ଆତ୍ମାରେ ବିଶ୍ୱାସ ଓ ପୂର୍ବପୁରୁଷଙ୍କର ପୂଜାରାଧନା ମଣିଷର ମୃତ୍ୟୁଭୟକୁ ଦୂର କରିବାରେ ସାହାଯ୍ୟ କଲା ।

ଈଶ୍ୱର ଓ ଆତ୍ମାରେ ବିଶ୍ୱାସ ଏବଂ ଏହି ବିଶ୍ୱାସରୁ ସୃଷ୍ଟ ନୈତିକ ଶୃଙ୍ଖଳା ସମୂହ ଧର୍ମ ଭାବନାକୁ ସୃଷ୍ଟି କରିବାରେ ସାହାଯ୍ୟ କଲା । ଈଶ୍ୱରଙ୍କ ପାଖରେ ଆତ୍ମସମର୍ପଣ ଧର୍ମର ମୂଳଭିତ୍ତି ହେଲା । ଈଶ୍ୱରବିଶ୍ୱାସ ପାଖରେ ମଣିଷ ନିଜକୁ ସମର୍ପଣ କଲା ଓ ଏହି ସମର୍ପଣଜନିତ ଦୃଷ୍ଟିଭଙ୍ଗୀ ହିଁ ହେଉଛି ଆସ୍ତିକତାବାଦ ।

ପ୍ରାଥମିକ ସ୍ତରରେ ଏହି ସମର୍ପଣଜନିତ ଦୃଷ୍ଟିଭଙ୍ଗୀ ଧର୍ମ ଭାବରେ ବ୍ୟକ୍ତ ହୋଇଥିଲା । ସମର୍ପଣ ମନୋଭାବ ବ୍ୟକ୍ତିକୁ ଦାୟିତ୍ୱବୋଧରୁ ମୁକ୍ତ କରିବା ସହିତ ଏକ ପିଞ୍ଜରାବଦ୍ଧ ପକ୍ଷୀ ଭଳି ତାକୁ ନିରାପତ୍ତା ଓ ନିରୁଦ୍‌ବିଗ୍ନତା ପ୍ରଦାନ କରିଥାଏ । ଧର୍ମୀୟ-ବିଶ୍ୱାସର ଶୃଙ୍ଖଳା ଭିତରେ ଆସ୍ତିକତାବାଦୀମାନେ ନିଜର ଚିନ୍ତାଧାରାକୁ ବୁଦ୍ଧିସମ୍ମତ କରିବାକୁ ପ୍ରୟାସ କରିଛନ୍ତି । ସାଦୃଶ୍ୟମୂଳକ ବିଚାର ପ୍ରଣାଳୀର ପ୍ରୟୋଗଦ୍ୱାରା କାର୍ଯ୍ୟକାରଣସମ୍ମତ ତର୍କବାଦ ଓ ଜ୍ଞାନାନ୍ୱେଷଣଜନିତ ଜିଜ୍ଞାସା ସୃଷ୍ଟି ହୋଇଛି । ପରିଣାମତଃ ଈଶ୍ୱର-ପ୍ରତୀତି ଆଦିମ ଜଡ଼ ପୂଜାଠାରୁ ଏକ ତାତ୍ତ୍ୱିକ ସ୍ତରରେ ପରିବର୍ତ୍ତିତ ହୋଇଛି । ବସ୍ତୁତଃ କୋଳାହଳପୂର୍ଣ୍ଣ ଉପଚାର, ବଳି, ପିଣ୍ଡ ଓ ଉପାସନା-ଜନିତ ଆଦିମ ଧର୍ମୀୟବିଶ୍ୱାସ ସମୂହ ଆସ୍ତେ ଆସ୍ତେ ନୀରବ ଧ୍ୟାନରେ ପରିବର୍ତ୍ତିତ ହୋଇଛି ।

ଈଶ୍ୱର, ଆତ୍ମା, ପୂର୍ବଜନ୍ମ ବା ପରଜନ୍ମଜନିତ ଧର୍ମୀୟ ବିଶ୍ୱାସଗୁଡ଼ିକ ଅମୂର୍ତ୍ତ ହୋଇଥିବାରୁ ଧର୍ମୀୟ ଅବବୋଧଗୁଡ଼ିକ ସୂକ୍ଷ୍ମ ବୌଦ୍ଧିକ ବିଚାରବୋଧକୁ ଗ୍ରହଣ କରି ମୁଖ୍ୟତଃ ଭାବବାଦୀ ହୋଇ ରହିଲା । ଏହି ସଙ୍ଗାନ୍ତୀୟ ଜ୍ଞାନ ଇନ୍ଦ୍ରିୟଲବ୍‌ଧ ହୋଇ-ନଥିବାରୁ ସେଗୁଡ଼ିକ ମୁଖ୍ୟତଃ କଳ୍ପନାପ୍ରସୂତ ବୋଲି ଗ୍ରହଣ କରାଗଲା । ସୁତରାଂ ବୌଦ୍ଧିକ ଚିନ୍ତନ ପ୍ରକ୍ରିୟା ଭିତରେ ଆସ୍ତିକତାବାଦୀ ଭାବବାଦଜନିତ ଅଧ୍ୟାତ୍ମବାଦରୁ ମୂର୍ତ୍ତ ବସ୍ତୁବାଦ ବିକାଶ ଲାଭ କଲା ।

ଈଶ୍ୱର, ଆତ୍ମା, ପରଜଗତ, ପୁନର୍ଜନ୍ମ ଆଦି ବିଶ୍ୱାସ ସମୂହ ଇନ୍ଦ୍ରିୟଲବ୍‌ଧ ହୋଇନଥିବାରୁ ବସ୍ତୁବାଦ ସେସବୁକୁ ପ୍ରତ୍ୟାଖ୍ୟାନ କଲା । ଫଳରେ ବସ୍ତୁବାଦକୁ ଅଧର୍ମୀୟ ବୋଲି କୁହାଗଲା । ଆମର ରାଜନୈତିକ ଓ ଅର୍ଥନୈତିକ ବ୍ୟବସ୍ଥା ସକଳ ବାସ୍ତବ ଘଟଣାବଳୀ ହୋଇଥିବାରୁ ବସ୍ତୁବାଦ ସେସବୁକୁ ବିଶ୍ଳେଷଣ କଲା । ଜଗତର ବସ୍ତୁଗତ ଅବବୋଧ ଭିତରୁ ପ୍ରାକୃତିକ ନିୟମ ସକଳ ଯଥା ବିବର୍ତ୍ତନ ପ୍ରକ୍ରିୟା, ଦ୍ୱନ୍ଦ୍ୱାତ୍ମକ ବିକାଶ, ଭୌଗୋଳିକ ପରିସ୍ଥିତି, ପ୍ରଜନନ ତଥ୍ୟାବଳୀ ଓ ଐତିହାସିକ ଅପରିହାର୍ଯ୍ୟତା ଇତ୍ୟାଦି ତତ୍ତ୍ୱ ସମୂହର ଉଦ୍ଭବ ହେଲା । ଈଶ୍ୱରୀୟ ବ୍ୟବସ୍ଥା ସମୂହ ଇନ୍ଦ୍ରିୟଲବ୍‌ଧ ନହେବା ସ୍ଥଳେ ପ୍ରାକୃତିକ ନିୟମ ସକଳ ପରୀକ୍ଷଣ ପଦ୍ଧତିଦ୍ୱାରା ପ୍ରମାଣଯୋଗ୍ୟ ହେଉଥିବାରୁ ତାହା ଗ୍ରହଣଯୋଗ୍ୟ ହେଲା ।

ଭାବବାଦ ଅପେକ୍ଷା ବସ୍ତୁବାଦ ଅଧିକ ବାସ୍ତବବାଦୀ ହୋଇଥିଲେ ମଧ୍ୟ ବସ୍ତୁବାଦ ପ୍ରାକୃତିକ ନିୟମ ଓ ଐତିହାସିକ ଶକ୍ତି ପାଖରେ ବ୍ୟକ୍ତିର ଆତ୍ମସମର୍ପଣ କରିଥିବାରୁ ଏହା ଭାବବାଦ ପରି ଏକପ୍ରକାର ଆସ୍ତିକତାବାଦ ଅଟେ । ବସ୍ତୁବାଦ ଜଗତ ପ୍ରତି ପୋଷଣ କରୁଥିବା ଦୃଷ୍ଟିଭଙ୍ଗୀ ଯଥା—"ମଣିଷର ଚେତନା ମଣିଷର ସ୍ଥିତିକୁ ନିୟନ୍ତ୍ରଣ କରେନାହିଁ, ବରଂ ଅପରପକ୍ଷରେ ମଣିଷର ସାମାଜିକ ସ୍ଥିତି ତା'ର ଚେତନାକୁ ନିୟନ୍ତ୍ରଣ କରେ" ଓ ଧର୍ମୀୟ ପ୍ରାର୍ଥନାରେ ଗ୍ରହଣ କରାଯାଇଥିବା

ଦୃଷ୍ଟିକୋଣ ଯଥା—"ହେ ଈଶ୍ୱର, ତୁମର ଇଚ୍ଛା ପୂର୍ଣ୍ଣ ହେଉ" ପରମ୍ପରାଠାରୁ ପୃଥକ୍ ନୁହନ୍ତି । କାରଣ ଉଭୟ ନିଷ୍ପର୍ଶ ବ୍ୟକ୍ତିକୁ ଅଧସ୍ତନ କରିବା ସହିତ ପରିବେଶ ବା ଈଶ୍ୱର ପାଖରେ ସମର୍ପଣ କରିବାକୁ ଗ୍ରହଣ କରିଥାନ୍ତି । ଯଦିବା ଭାବବାଦ ଈଶ୍ୱରଙ୍କୁ ଗ୍ରହଣ କରିଥାଏ ଅଥଚ ବସ୍ତୁବାଦ ଈଶ୍ୱରଙ୍କୁ ଅସ୍ୱୀକାର କରିଥାଏ ତଥାପି ଉଭୟଙ୍କ ମଧ୍ୟରେ ମୌଳିକ ସାମଞ୍ଜସ୍ୟ ବିଦ୍ୟମାନ ଥିବା ଦେଖାଯାଏ । ମୋଟ ଉପରେ କହିବାକୁ ଗଲେ ବସ୍ତୁବାଦ ହେଉଛି ଏକ ଈଶ୍ୱରବିହୀନ ଆସ୍ତିକତାବାଦ । ସୁତରାଂ ଆସ୍ତିକତାବାଦ ପ୍ରଶ୍ନଟି କେବଳ ଈଶ୍ୱରଙ୍କ ସ୍ଥିତି ସହିତ ସଂପୃକ୍ତ ନୁହେଁ ବରଂ କୌଣସି ଏକ ଉଚ୍ଚତର ସ୍ଥିତି ପାଖରେ ମଣିଷକୁ ଅଧସ୍ତନ କରି ରଖିଥିବା ଦୃଷ୍ଟିଭଙ୍ଗୀ ସହିତ ସମାନ । ଜଗତକୁ ବସ୍ତୁବାଦୀ ଓ ଭାବବାଦୀ ପୃଥକ୍ ମାନଦଣ୍ଡରୁ ବିଚାର କରୁଥିଲେ ବି ଉଭୟ ଜଗତ ପାଖରେ ବ୍ୟକ୍ତିକୁ ଅଧସ୍ତନ ଓ ସମର୍ପଣ କରି ରଖିଥିବାରୁ ଉଭୟଙ୍କୁ ଆସ୍ତିକତାବାଦର ପର୍ଯ୍ୟାୟଭୁକ୍ତ କରାଯାଇପାରିବ ।

କିନ୍ତୁ ସମର୍ପଣ ଓ ବାସ୍ତବ ଜୀବନ ଅସଂଲଗ୍ନ ମନେ ହୁଅନ୍ତି । ସମର୍ପଣ ପାଖରେ କୌଣସି ପ୍ରେରଣା ଶକ୍ତି ନଥାଏ ଓ ପରିଣାମତଃ ଏହା ନିଷ୍କ୍ରିୟତାକୁ ବୁଝାଇଥାଏ । ଅଥଚ ବଞ୍ଚିବା ପାଇଁ ବ୍ୟକ୍ତିର ସକ୍ରିୟ ଉଦ୍ୟମ ଆବଶ୍ୟକ ହୋଇଥାଏ । ଆଦିମ ଯୁଗରେ କୂଅ ଖୋଳିବା, ଫଳ ତୋଳିବା, ପଶୁ ଶିକାର କରିବା ଓ ଜଳ ଅନୁସନ୍ଧାନ କରିବାଠାରୁ ଆଧୁନିକ ଯୁଗର ଉନ୍ନତ ପ୍ରଣାଳୀରେ ଶସ୍ୟ ଉତ୍ପାଦନ କରିବା ଓ ସଙ୍କର ପ୍ରକ୍ରିୟାରେ ପଶୁ ପ୍ରଜନନ କରିବା ଭଳି ପ୍ରତ୍ୟେକଟି କାର୍ଯ୍ୟକ୍ଷେତ୍ରରେ ମଣିଷକୁ ଅବିରତ ଉଦ୍ୟମ କରିବାକୁ ହୋଇଛି । ମଣିଷ ନିଜର ପ୍ରଚେଷ୍ଟା ଦ୍ୱାରା ହିଁ ନିଜର ଆବଶ୍ୟକତା ପୂରଣ କରିବା ପାଇଁ ପ୍ରାକୃତିକ ଉପାଦାନକୁ ବିନିଯୋଗ କରିଛି । ଗୃହନିର୍ମାଣ, ସହର ଗଠନ ଓ ଜୀବନକୁ ସୁଖ-ସ୍ୱାଚ୍ଛନ୍ଦ୍ୟମୟ କରିବା ନେଇ ପ୍ରତ୍ୟେକଟି ସଫଳତା ପଶ୍ଚାତରେ ମଣିଷର ଅବାରିତ ଉଦ୍ୟମ ରହିଆସିଛି । ପରିବେଶ ପାଖରେ ନିଜକୁ ସମର୍ପଣ କରିବା ପରିବର୍ତ୍ତେ ତାକୁ ନିୟନ୍ତ୍ରଣ କରି ଜୀବନ ପାଇଁ ତା'ର ବିନିଯୋଗ କରିବା କ୍ଷେତ୍ରରେ ବ୍ୟକ୍ତିର ପ୍ରଚେଷ୍ଟା ବାସ୍ତବ ଜୀବନରେ ଆବଶ୍ୟକ ହୋଇଛି । ବସ୍ତୁତଃ ପରିବେଶ ଉପରେ କର୍ତ୍ତୃତ୍ୱବୋଧ ହେଉଛି ଅଣ-ଆସ୍ତିକତାବାଦ ବା ନାସ୍ତିକ୍ୟବାଦ । ଆସ୍ତିକତାବାଦ ଜଗତ ପାଖରେ ବ୍ୟକ୍ତିର ସମର୍ପଣକୁ ବୁଝାଉଥିବାବେଳେ ନାସ୍ତିକ୍ୟବାଦ ଜଗତ ଉପରେ ବ୍ୟକ୍ତିର ନିୟନ୍ତ୍ରଣକୁ ବୁଝାଇଥାଏ ।

କର୍ତ୍ତୃତ୍ୱବୋଧ ମଣିଷର ସ୍ୱାଧୀନ ମନୋଭାବର ପରିପ୍ରକାଶ ହୋଇଥିବା ବେଳେ ସମର୍ପଣ ଭାବ ଏକ ଦାସତ୍ୱ ମନୋଭାବର ପରିଚୟ ଦେଇଥାଏ । ମଣିଷ ଭିତରେ ଭଲପାଇବା ଓ ଘୃଣାକରିବା ପରି ପରସ୍ପର-ବିରୋଧୀ ଅନୁଭୂତି ରହିବା ଭଳି ସ୍ୱାଧୀନ ଓ ଦାସତ୍ୱ ମନୋଭାବ ବ୍ୟକ୍ତି ସ୍ୱଭାବ ସହ ଅନ୍ତର୍ନିହିତ ହୋଇ

ରହିଥାଏ । ଆସ୍ତିକତାବାଦୀ-ସମର୍ପଣ ଦାସତ୍ୱ ମନୋଭାବର ପରିପ୍ରକାଶକ ହୋଇଥିବା ବେଳେ ନିରୀଶ୍ୱରବାଦୀ-କର୍ତ୍ତୃତ୍ୱବୋଧ ସ୍ୱାଧୀନ ଦୃଷ୍ଟିଭଙ୍ଗୀର ପ୍ରକାଶ କରିଥାଏ । ଜୀବନଧାରଣ ପାଇଁ ସ୍ୱାଧୀନ ବା ଦୃଢ଼ ମନୋଭାବ ଆବଶ୍ୟକ ହେଉଥିବାରୁ ବାସ୍ତବ ଜୀବନ ନିରୀଶ୍ୱରବାଦକୁ ଗ୍ରହଣ କରେ । ଆସ୍ତିକତାବାଦ କେବଳ ଏକ ସିଦ୍ଧାନ୍ତ ଅଟେ ଓ ତତ୍ଜନିତ ଦୃଷ୍ଟିକୋଣ ଦାସତ୍ୱ ମନୋଭାବ ଦ୍ୱାରା ନିୟନ୍ତ୍ରିତ ହୋଇଥାଏ । ଆସ୍ତିକତାବାଦୀମାନେ ସ୍ୱାଧୀନ ନୁହନ୍ତି ବୋଲି ବିଚାର କରିଥାଆନ୍ତି ଓ ସେମାନଙ୍କର ଜୀବନ ଭଗବାନଙ୍କ ଦ୍ୱାରା ଶୃଙ୍ଖଳିତ ବା ପରିସ୍ଥିତି ଦ୍ୱାରା ନିୟନ୍ତ୍ରିତ ବୋଲି ଗ୍ରହଣ କରିଥାଆନ୍ତି । କିନ୍ତୁ ବାସ୍ତବପକ୍ଷେ ଜୀବନରେ ସେମାନେ ଅନେକ କ୍ଷେତ୍ରରେ ନିଜେ ନିଷ୍ପତ୍ତି ନେଇଥାନ୍ତି ଓ କାର୍ଯ୍ୟ କରିଥାନ୍ତି । ଅର୍ଥାତ୍ ଏକ ସ୍ୱାଧୀନ ଦୃଷ୍ଟିଭଙ୍ଗୀ ଦ୍ୱାରା ପରିଚାଳିତ ହୋଇଥାନ୍ତି । ଧର୍ମବିଶ୍ୱାସୀମାନେ ପ୍ରାର୍ଥନା କରିଥାନ୍ତି, 'ହେ ପ୍ରଭୁ, ତୁମର ଇଚ୍ଛା ପୂର୍ଣ୍ଣହେଉ' ଅଥଚ ନିଜସ୍ୱ ପନ୍ଥାରେ ସେମାନେ ଯାଇଥାନ୍ତି । ସେହିପରି ବସ୍ତୁବାଦୀମାନେ ଭାବିଥାନ୍ତି ଯେ ସାମାଜିକ ସ୍ଥିତି ମଣିଷର ଚେତନାକୁ ନିୟନ୍ତ୍ରଣ କରିଥାଏ, ଅଥଚ ବାସ୍ତବପକ୍ଷେ ସେମାନେ ଏକଛତ୍ରବାଦୀ ଶାସନ ଦ୍ୱାରା ସାମାଜିକ ପରିସ୍ଥିତିକୁ ନିୟନ୍ତ୍ରଣ କରିଥାନ୍ତି । ଏହି ପରିପ୍ରେକ୍ଷୀରେ ସମସ୍ତ ଆସ୍ତିକତା-ବାଦୀମାନେ ବାସ୍ତବ ପକ୍ଷେ ନିରୀଶ୍ୱରବାଦୀ ଜୀବନ ଦୃଷ୍ଟିକୁ ଗ୍ରହଣ କରିଥାଆନ୍ତି ।

ନୀତି ଓ କର୍ମପନ୍ଥା ଭିତରେ ରହିଥିବା ଅମେଳ ଯୋଗୁଁ ଆସ୍ତିକତାବାଦୀ-ମାନେ ଅସାଧୁ ହେବା ସ୍ୱାଭାବିକ ହୋଇପଡ଼ିଲା । ସେମାନେ ସେମାନଙ୍କର ସମର୍ପଣ-ଜନିତ ଦର୍ଶନକୁ ଯେତିକି ନିଷ୍ଠାର ସହ ପ୍ରକାଶ କରିବାକୁ ଲାଗିଲେ ସେମାନେ ସେତିକି ଅସାଧୁ ହେଲେ । ଜୀବନରେ ସଙ୍କଳ୍ପ, ପ୍ରଚେଷ୍ଟା ଓ ଯୋଜନା ଦ୍ୱାରା ବ୍ୟକ୍ତିର ସୁଖସ୍ୱାଚ୍ଛନ୍ଦ୍ୟ ମିଳି ପାରୁଥିବାରୁ ଆସ୍ତିକତାବାଦୀମାନେ ଏଣେ ସମର୍ପଣ କଥା କହିଲେ ଅଥଚ ତେଣେ ସୁଖରେ ରହିବା ପାଇଁ ଯୋଜନା କଲେ । ଯେଉଁମାନେ ସମର୍ପଣର କଥା ନିଷ୍ଠାର ସହ କହିଥାନ୍ତି ସେମାନେ ମାନବୀକ ପ୍ରଚେଷ୍ଟାକୁ ପଙ୍ଗୁ କରିଦିଅନ୍ତି ଓ ଜୀବନର ଆବଶ୍ୟକତାକୁ ପୂରଣ କରିପାରିବାରେ ଅସମର୍ଥ ହେବା ସହିତ କୌଣସି ସଫଳତା ଲାଭ କରିପାରନ୍ତି ନାହିଁ । ପରିସ୍ଥିତିର ସୁଅରେ ସେମାନେ ଭାସିଯା'ନ୍ତି ସିନା ପରିସ୍ଥିତିକୁ ଜୀବନ ପାଇଁ ଉପଯୋଗୀ କରିପାରନ୍ତି ନାହିଁ । ସୁତରାଂ ଆସ୍ତିକତାବାଦୀ ବ୍ୟବସ୍ଥା ଭିତରେ ଅନେକ ସାମାଜିକ ବୈଷମ୍ୟ ସୃଷ୍ଟି ହୁଏ । ଏହି ବାତାବରଣରେ ଅସାଧୁ ବ୍ୟକ୍ତିବିଶେଷ ଅର୍ଥ, କ୍ଷମତା ଓ ପ୍ରାଚୁର୍ଯ୍ୟକୁ ନେଇ ସମାଜର ଶୀର୍ଷ ସ୍ଥାନରେ ରହିଥିବା ବେଳେ ଅଗଣିତ ସରଳ-ବିଶ୍ୱାସୀ ଜନଗଣ ସମାଜର ତଳସ୍ତରରେ ଅସହାୟ ଜୀବନ କଟାଉଥାନ୍ତି । ବସ୍ତୁତଃ ପରିବେଶ ପାଖରେ ନିଜର ଅସ୍ତିତ୍ୱକୁ ଜାହିର କରିବା ବା ଏହା ପାଖରେ ସମର୍ପଣ କରିବାର ପାର୍ଥକ୍ୟ ସହିତ ସାମାଜିକ ବୈଷମ୍ୟ ସମ୍ବନ୍ଧିତ ହୋଇ ରହିବା ଦେଖାଯାଏ ।

ଆଦିମ ମଣିଷମାନେ ଜରା ଓ ବ୍ୟାଧିରୁ ରକ୍ଷା ପାଇବା ପାଇଁ ପ୍ରେତାତ୍ମାମାନଙ୍କୁ ସନ୍ତୁଷ୍ଟ କରିବାକୁ ପୂଜାଆରାଧନା କରୁଥିଲେ । ସେମାନଙ୍କର ଏହି କାର୍ଯ୍ୟରେ ସେମାନେ ଅସାଧୁ ନଥିଲେ । ସେମାନଙ୍କର ସେହି କୁସଂସ୍କାରପୂର୍ଣ୍ଣ ଉଦ୍ଦଣ୍ଡ ପୂଜାଆରାଧନା ବ୍ୟତୀତ ସେମାନେ ଶିକାର କରିବା, ମଦ୍ୟପାନ କରିବା ଓ ପାର୍ଟିକରି ବୁଲିବା ଇତ୍ୟାଦିରେ ସ୍ୱାଧୀନ ଥିଲେ । ସେମାନଙ୍କର ସ୍ୱାଧୀନତା— ତାହା ଯେତେ ସହଜ ଓ ସଙ୍କୁଚିତ ଅର୍ଥରେ ବୁଝାଗଲେ ବି ସେମାନଙ୍କୁ ସମାନ କରି ରଖିଥିଲା । ସେମାନଙ୍କର ଦଳପତି ପୂଜାପାର୍ବଣରେ ବା ଦଳର ଲୋକମାନଙ୍କୁ ସମସ୍ୟାରେ ରକ୍ଷାକରିବା କ୍ଷେତ୍ରରେ ନିଜର କେତେକ କର୍ତ୍ତୃତ୍ୱ ଜାହିର କରୁଥିଲେ ବି ନିଜ ଦଳର ଲୋକମାନଙ୍କୁ ଶୋଷଣ କରି ବିଳାସପୂର୍ଣ୍ଣ ଭାବରେ ଜୀବନଧାରଣ କରୁ-ନଥିଲେ । ପରନ୍ତୁ ଯେତେବେଳେ ତର୍କସମ୍ମତ ଅସ୍ତିକତାବାଦର ଉଦ୍ଭବ ହେଲା ସେହି କୁଟିଳ ଆସ୍ତିକତାବାଦୀମାନେ ଈଶ୍ୱରଙ୍କୁ ସର୍ବଶକ୍ତିମାନ୍ କହି ନିଜର ସ୍ୱାଧୀନତାକୁ ମନା କରି ବସିଲେ । କିନ୍ତୁ ବାସ୍ତବ ଜୀବନରେ ଏହା ଏକ ପ୍ରହେଳିକା ସଦୃଶ ମନେହୁଏ । କାରଣ ବିଚାରପୂର୍ଣ୍ଣ ସଭ୍ୟ ଅସ୍ତିକତାବାଦର ଭାବଧାରା ଭିତରେ କୁଟିଳତା ପ୍ରବେଶ କରିବା ସହିତ ସାମାଜିକ ଜୀବନରେ ବୈଷମ୍ୟ ବୃଦ୍ଧି ପାଇବାକୁ ଲାଗିଲା ।

ଆଦିମ ସମାଜର ସମତାକୁ ଦୂର କରି ସଭ୍ୟ ଜଗତରେ ବୈଷମ୍ୟ ସୃଷ୍ଟି କରିବାରେ ଆସ୍ତିକତାବାଦ ମୁଖ୍ୟ ଭୂମିକା ଗ୍ରହଣ କରିଛି । ଈଶ୍ୱର, ଭାଗ୍ୟ ଓ ପରମ୍ପରାର ଦୁହାଇ ଦେଇ ପୂଜକ ଓ ଶାସକଗୋଷ୍ଠୀ ନିରୀହ ଜନଗଣଙ୍କୁ ଶୋଷଣ କରିଛନ୍ତି । ଇଜିପ୍ଟର ପିରାମିଡ୍, ଚାଇନାର ବିରାଟ ପ୍ରାଚୀର, ଭାରତବର୍ଷର ମନ୍ଦିର ଓ ଋଷିଆର କ୍ରେମଲିନ ପ୍ରାସାଦ ଅଗଣିତ ଶ୍ରମିକଙ୍କର ଶ୍ରମ ଉପରେ ସମାଜର ଚତୁର ଶ୍ରେଣୀ ନିର୍ମାଣ କରିଛନ୍ତି । ରୋମ ସାମ୍ରାଜ୍ୟ ଓ ମୋଗଲ ଶାସନ ଅଗଣିତ କ୍ରୀତଦାସଙ୍କର ସ୍ୱେଦ ଓ ରକ୍ତର ପ୍ରତିଦାନରେ ଗଢ଼ି ଉଠିଥିଲା । ଅଗଣିତ ଶୂଦ୍ରମାନଙ୍କୁ ଅଜ୍ଞତା ଭିତରକୁ ଠେଲି ଦେଇ ବ୍ରାହ୍ମଣମାନଙ୍କର ପାଣ୍ଡିତ୍ୟ ବିକାଶ ଲାଭ କଲା । ନାରୀ ଜାତିର ମାତୃତ୍ୱର ପ୍ରତିଦାନରେ ପୁରୁଷମାନଙ୍କର ପ୍ରାଧାନ୍ୟ ପ୍ରତିଷ୍ଠିତ ହେଲା । ଗୋରାମାନେ କଳାମାନଙ୍କଠାରୁ ନିଜର ପ୍ରାଧାନ୍ୟ ଦାବି କଲେ । ଶ୍ରମଜୀବୀଙ୍କର ଶ୍ରମ ଉପରେ ଉଦ୍‌ବୃତ୍ତ ଅର୍ଥ ସୃଷ୍ଟି ହେଲା ।

ସୁସଂହତ ସାମାଜିକ ବ୍ୟବସ୍ଥାରୁ ସୃଷ୍ଟ ନିରାପଦ ଜୀବନ ଓ ପ୍ରଯୁକ୍ତିବିଜ୍ଞାନର ଅଗ୍ରଗତି ସମାଜର ସକଳ ବ୍ୟକ୍ତିମାନଙ୍କର ବୌଦ୍ଧିକ ବିକାଶ କରାଇବା ସହିତ ଏକ ସ୍ୱାଧୀନ ବାତାବରଣ ଭିତରେ ସମସ୍ତଙ୍କୁ ସମଭାବରେ ବଞ୍ଚିବା ପାଇଁ ସାହାଯ୍ୟ କରିପାରିଥାନ୍ତା । କିନ୍ତୁ କ୍ଷମତାଲୋଭ ଓ ବିଳାସପୂର୍ଣ୍ଣ ଜୀବନର ଆକର୍ଷଣ ଭିତରେ

ଅସାଧୁ ଶାସକ ଓ ପୂଜକଶ୍ରେଣୀ ନିଜ ସ୍ୱାର୍ଥର ସୁଯୋଗ ନେଇ ସାଧାରଣ ଜନଗଣଙ୍କ ଭିତରେ ଈଶ୍ୱରୀୟ ବିଶ୍ୱାସ ସମ୍ବନ୍ଧ ସୃଷ୍ଟି କରିବାକୁ ଲାଗିଲେ। ସକଳ ଈଶ୍ୱରବିଶ୍ୱାସ ଭିତରେ ରହିଥିବା ସମର୍ପଣ ଭାବ ଯୋଗୁଁ ସାଧାରଣ ମଣିଷମାନେ ସହଜରେ ପ୍ରତାରଣାର ଶିକାର ହେବାକୁ ଲାଗିଲେ। ଏହି ବ୍ୟବସ୍ଥା ଦ୍ୱାରା ଉପକୃତ ହେଉଥିବା ବ୍ୟକ୍ତିଗଣ ନିଜର ଶୋଷଣ ଓ ଅତ୍ୟାଚାରକୁ ସୁଦୃଢ଼ କରିବା ପାଇଁ ସାଧାରଣ ଜନଗଣଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର କରିବାକୁ ଲାଗିଲେ। ଏହି ଶୋଷଣର ଇତିହାସ ହେଉଛି ମଣିଷ ସଭ୍ୟତାର ସବୁଠାରୁ ଅନ୍ଧକାର ଯୁଗର କାହାଣୀ। ପୂଜକ ଗୋଷ୍ଠୀ ରାଜାମାନଙ୍କୁ ଅଭିଷେକ କରାଇ ସେମାନଙ୍କୁ ଈଶ୍ୱରଙ୍କର ଅବତାର ବୋଲି ଅଭିହିତ କଲେ। ଫଳରେ ଶାସକଗୋଷ୍ଠୀ ନିଜର କର୍ତ୍ତବ୍ୟବୋଧ ଅପେକ୍ଷା ନିଜେ ଈଶ୍ୱରଙ୍କର ଅବତାର ବୋଲି ଏକ ବୃଥା ଅହମିକା ଦ୍ୱାରା ପରିଚାଳିତ ହେଲେ। ପୂଜକ ଗୋଷ୍ଠୀ ପ୍ରତି ପ୍ରତିଦାନରେ ଶାସକଗୋଷ୍ଠୀ ସେମାନଙ୍କର କ୍ଷମତା ଦ୍ୱାରା ସ୍ୱାଧୀନ, ଚିନ୍ତାଶୀଳ ବ୍ୟକ୍ତିବିଶେଷ ଓ ନିରୀଶ୍ୱରବାଦୀମାନଙ୍କୁ ଦବାଇ ଦେଲେ। ଶାସକଗୋଷ୍ଠୀ ଓ ପୂଜକଗୋଷ୍ଠୀଙ୍କର ଅତ୍ୟାଚାରର କାହାଣୀ ମଧ୍ୟଯୁଗୀୟ ଇତିହାସରୁ ଅନେକ ଦେଖିବାକୁ ମିଳିଥାଏ। ଏପରିକି ହିନ୍ଦୁ ପୁରାଣମାନଙ୍କରେ ବର୍ଣ୍ଣିତ ଅଛି ଯେ, ବିଶ୍ୱାମିତ୍ରଙ୍କର ଧର୍ମୀୟ କର୍ମକାଣ୍ଡ ଜନିତ ପୂଜାରାଧନାରେ ବିଶୃଙ୍ଖଳା ସୃଷ୍ଟି କରୁଥିବା ବ୍ୟକ୍ତିବିଶେଷଙ୍କ ବିରୁଦ୍ଧରେ ଯୁଦ୍ଧ କରିବାପାଇଁ ରାଜା ଦଶରଥ ନିଜର ପୁତ୍ର ରାମ ଓ ଲକ୍ଷ୍ମଣଙ୍କୁ ପଠାଇଥିଲେ। ବ୍ରୁନୋ ଓ ଗାଲିଲିଓଙ୍କ ଦ୍ୱାରା ଆରମ୍ଭ ହୋଇଥିବା ବୈଜ୍ଞାନିକ ଅନୁଶୀଳନକୁ ଶାସକ ଓ ପୂଜକଶ୍ରେଣୀର ଚକ୍ରାନ୍ତ ଦ୍ୱାରା ଦବାଇ ଦିଆଗଲା। କ୍ଷମତା ହାସଲ ନେଇ ରାଜପୁତ୍ର ଓ ପୂଜକଙ୍କ ଭିତରେ ଦ୍ୱନ୍ଦ୍ୱ ସୃଷ୍ଟି ହେବା ପର୍ଯ୍ୟନ୍ତ ସେମାନଙ୍କ ଭିତରେ ଏହି ମେଣ୍ଟ ଚାଲୁ ରହିଥିଲା। ଶାସନ କ୍ଷେତ୍ରରେ ଶାସକ ରାଜାମାନେ ସମସ୍ତ କ୍ଷମତାକୁ ନିୟନ୍ତ୍ରଣ କରି ସାଧାରଣ ଜନଗଣଙ୍କୁ ଅଧସ୍ତନ ଓ ଶୋଷିତ କରି ରଖିଲେ। ଈଶ୍ୱରଙ୍କ ପାଖରେ ସମର୍ପଣ କରିବା ସହିତ କ୍ଷମତାସୀନଙ୍କ ପାଖରେ ଅଧସ୍ତନ ହୋଇ ରହିବା ପାଇଁ ଲୋକମାନଙ୍କୁ କୁହାଗଲା। ଏହି ବ୍ୟବସ୍ଥାରେ ଜନଗଣଙ୍କୁ ସ୍ୱାଧୀନ ବ୍ୟକ୍ତିବିଶେଷ ଅପେକ୍ଷା ଶୋଷିତ ଓ କ୍ରୀତଦାସ ପରି ଗ୍ରହଣ କରାଗଲା।

ହେତୁବାଦୀ ବିଚାରଧାରାର ଅଭ୍ୟୁଦୟ ଓ ଧର୍ମନିରପେକ୍ଷ ଦୃଷ୍ଟିଭଙ୍ଗୀର ବିକାଶ ଫଳରେ ଈଶ୍ୱରୀୟ ଆସ୍ତିକତାବାଦ ଅସ୍ୱୀକୃତ ହେଲେ ବି ଶୋଷକୋରମାନେ ବୈଜ୍ଞାନିକ, ବୁଦ୍ଧିଜୀବୀ, କଳାକାର ଓ ଶିକ୍ଷାବିତ୍‌ମାନଙ୍କର କୌଶଳ ଓ ସାମର୍ଥ୍ୟକୁ ବିନିଯୋଗ କରି ଈଶ୍ୱରବିହୀନ ଆସ୍ତିକତାବାଦ ପ୍ରଚାର କଲେ। ଏହି ବୁଦ୍ଧିଜୀବୀଗଣ ସେମାନଙ୍କର ଜ୍ଞାନ ଓ ସଫଳତା ସତ୍ତ୍ୱେ ସାଧୁତାକୁ ଏତେ ଗୁରୁତ୍ୱ ଦେଲେ ନାହିଁ। ଅର୍ଥ, କ୍ଷମତା ଓ ପ୍ରଭାବ ରହିଥିବା ବ୍ୟକ୍ତିଙ୍କ ପାଖରେ ସେମାନେ ବଶୀଭୂତ ହୋଇ

ରହି ସେମାନଙ୍କର ଆଦେଶ ପାଳନ କରିବାକୁ ଲାଗିଲେ ଓ ସେମାନଙ୍କର ଶୋଷଣ ସହିତ ପରୋକ୍ଷରେ ସାମିଲ୍ ହେଲେ । ସେମାନେ ବିଶ୍ୱର ସାର୍ବଭୌମତ୍ୱ ଓ ପ୍ରାକୃତିକ ନିୟମଗୁଡ଼ିକର ଯଥାର୍ଥକୁ ସମର୍ଥନ କରିବାକୁ ଲାଗିଲେ । ସେମାନେ କାର୍ଯ୍ୟକାରଣଜନିତ ପୂର୍ବନିର୍ଦ୍ଦିଷ୍ଟ ବାଦକୁ ଗ୍ରହଣ କରି କେତେ କେତେ ବିକୃତ ଯୁକ୍ତି ଦ୍ୱାରା ସାମାଜିକ ବୈଷମ୍ୟକୁ ସ୍ୱୀକାର କରିନେଲେ । ଐତିହାସିକ ନିଶ୍ଚିତତା, ଜନ୍ମ ବିବର୍ତ୍ତନ ପ୍ରକ୍ରିୟା, ଜୈବିକ ଗଠନ ପ୍ରଣାଳୀ, ଭାଗ୍ୟଫଳ, ମୁଖ ସ୍ୱଭାବ ବିଦ୍ୟା (Physiognomist, ଯେ ମୁଖ ଦେଖି ସ୍ୱଭାବ କହିପାରେ) ପରି ଆଲଙ୍କାରିକ ଶବ୍ଦ ପ୍ରୟୋଗ କରି ସେମାନେ ସାଧାରଣ ମଣିଷକୁ ଅପ୍ରତିଭ କରିବାଦ୍ୱାରା ସେ ନିଜର ଅସହାୟ ଅବସ୍ଥାକୁ ଗ୍ରହଣ କରିନେଲା । ଆଧୁନିକ ଯୁଗର ଶ୍ରମିକ ଶ୍ରେଣୀ ସମାଜର ପରିବର୍ତ୍ତନ ଦେଖି ବିମୋହିତ ହେବାକୁ ଲାଗିଲେ, ଯେତିକି ସେମାନଙ୍କର ପିତାପ୍ରପିତାମାନେ ବସ୍ତି (Slum) ମାନଙ୍କରେ ବାସକରି ବି ସନ୍ତୁଷ୍ଟ ଭାବରେ ଏକ ପରଜଗତର କଳ୍ପନା କରୁଥିଲେ । ଏହା ସହିତ ଶାସକଶ୍ରେଣୀ ନାନା ମାରଣାସ୍ତ୍ରର ଅଧିକାରୀ ହେବା ଫଳରେ ହେତୁବାଦୀ ଓ ନିରୀଶ୍ୱରବାଦୀମାନଙ୍କୁ ନିଜ ପକ୍ଷକୁ ଆଣି ନପାରିଲେ ବି ସେମାନଙ୍କୁ ଦବାଇ ଦେଇ ରଖୁଥିଲେ । ପରମାଣୁ ବୋମା ପରି ମାରଣାସ୍ତ୍ରର ତିଆରି ବୈଜ୍ଞାନିକ ଜ୍ଞାନକୌଶଳ କ୍ଷେତ୍ରରେ ଏକ ବ୍ୟଭିଚାର କହିଲେ ଅତ୍ୟୁକ୍ତି ହେବନାହିଁ । ଆଣବିକ ଶକ୍ତି ସାମାଜିକ ପ୍ରଗତି ହାସଲ କ୍ଷେତ୍ରରେ ପ୍ରୟୋଗ ନହୋଇ କ୍ଷମତାଲିପ୍ସୁ ରାଜନୈତିକ ବ୍ୟକ୍ତିମାନଙ୍କର ସ୍ୱାର୍ଥସାଧନ ପାଇଁ ବିନିଯୋଗ ହେବାକୁ ଲାଗିଲା ।

ବସ୍ତୁବାଦ ଧର୍ମୀୟ ବିଶ୍ୱାସ ଅପେକ୍ଷା ଅଧିକ ବାସ୍ତବବାଦୀ ହେଲେ ବି ନୈତିକ ଆଚରଣ କ୍ଷେତ୍ରରେ ବସ୍ତୁବାଦୀମାନେ ଧାର୍ମିକ ବ୍ୟକ୍ତିମାନଙ୍କ ଅପେକ୍ଷା ଅଧିକ ଆଗ୍ରହ ପ୍ରକାଶ କରନ୍ତି ନାହିଁ । ମୋକ୍ଷଲାଭ ଆଶାରେ ଧାର୍ମିକ ବ୍ୟକ୍ତିଗଣ ଦାନ ଓ ଦୟାଭାବକୁ ଗୁରୁତ୍ୱ ଆରୋପ କରୁଥିବା ବେଳେ ବସ୍ତୁବାଦୀମାନେ ନୈତିକତା ଓ ସଂସ୍କୃତିକୁ ସାମାଜିକ ବ୍ୟବସ୍ଥାର ପରିପ୍ରକାଶ ବୋଲି ଗ୍ରହଣ କରନ୍ତି । ବସ୍ତୁବାଦୀ ରାଜନୈତିକ ଓ ଅର୍ଥନୈତିକ ବ୍ୟବସ୍ଥା ଅଣନୈତିକ ହୋଇଥିବାରୁ ଏହି ପ୍ରକ୍ରିୟାରେ ଶୋଷଣ ପ୍ରତି ଅନାସକ୍ତ ଭାବ ପୋଷଣ କରାଯାଏ । କିରାଣିମାନଙ୍କର ଫାଇଲ, ପ୍ରଯୁକ୍ତି-ବିଜ୍ଞାନୀଙ୍କ ବୋତଲ ଓ କଳକାରଖାନାର ଯନ୍ତ୍ର ଭିତରେ ଶୋଷଣ ନୈର୍ବ୍ୟକ୍ତିକ ହୋଇଯିବା ସହିତ ସକଳ ଲାଭାଂଶ କାରଖାନାର ଅର୍ଥ ବୋଲି ଧରିନିଆଯାଏ । ବସ୍ତୁବାଦୀମାନେ ମଣିଷ ଜୀବନକୁ ବିବର୍ତ୍ତନ ନିୟମ ଓ ଦ୍ୱନ୍ଦ୍ୱାତ୍ମକ ପ୍ରକ୍ରିୟାରେ ଏକ ଯନ୍ତ୍ରର ଗୋଟି ଭଳି ଅବବୋଧ କରିଥାନ୍ତି । ବସ୍ତୁବାଦୀ ବ୍ୟବସ୍ଥାରେ ଯୁଦ୍ଧ, ଅର୍ଥ, କ୍ଷମତା, ଦାରିଦ୍ର୍ୟକୁ ସାମାଜିକ ବିକାଶ ପ୍ରକ୍ରିୟାରେ ଅତି ସ୍ୱାଭାବିକ ବୋଲି ନିଆଯାଇଥାଏ । ବସ୍ତୁବାଦ ଏହାର ବ୍ୟବସ୍ଥା ସକଳକୁ ନୈର୍ବ୍ୟକ୍ତିକ କରିବା ସହିତ

ବ୍ୟକ୍ତିକୁ ଗୁରୁତ୍ୱହୀନ ଓ ତୁଚ୍ଛ କରିଥାଏ । କୁସଂସ୍କାର ଦ୍ୱାରା କରାଯାଉଥିବା ବଳିଦାନ ଅପେକ୍ଷା ସମଗ୍ର ଜାତିକୁ ପଦଦଳିତ କରି ରଖିବା ଯେ ଅଧିକ ମାରାତ୍ମକ ଏହା ବୁଝାଯାଇପାରେ । ବସ୍ତୁବାଦୀ ସଂସ୍କୃତି ଜନଗଣଙ୍କୁ କାରଖାନାର ଶ୍ରମିକ, ଯୁଦ୍ଧଭୂମିର ସୈନିକ ବା ଗଣତନ୍ତ୍ରର କେବଳ ଭୋଟଦାତା ଅପେକ୍ଷା ଅଧିକ କିଛି ବୋଲି ଗ୍ରହଣ କରେନାହିଁ । ଏହି ବ୍ୟବସ୍ଥାରେ କେବଳ କେତେକ ମୁଷ୍ଟିମେୟ ଅସାଧୁ ବ୍ୟକ୍ତି ଜନଗଣଙ୍କ ଉପରେ କର୍ତ୍ତୃତ୍ୱ ସ୍ଥାପନ କରି ସକଳ ବିଳାସ ଭିତରେ ରହିଥାନ୍ତି ।

ସମାଜରେ ରହିଥିବା ବିରାଟ ବୈଷମ୍ୟ ହେଉଛି ଆଧ୍ୟାତ୍ମିକ ବା ବସ୍ତୁବାଦୀ ଆସ୍ତିକତାବାଦର ପରିଣାମ । କିନ୍ତୁ ସମସ୍ତ ମଣିଷ ଏକଶ୍ରେଣୀର ପର୍ଯ୍ୟାୟଭୁକ୍ତ ହୋଇଥିବାରୁ ଏହି ବୈଷମ୍ୟ ହେଉଛି ସମ୍ପୂର୍ଣ୍ଣ ଅନ୍ୟାୟ । ସମସ୍ତ ବିହଙ୍ଗ ଏକା ପ୍ରକାରର ବଞ୍ଚନ୍ତି ଓ ସମସ୍ତ ଭରଢିଆ ପକ୍ଷୀ ସମାନ ଭାବରେ ବିଚରଣ କରିଥାନ୍ତି । ସେହିପରି ସମସ୍ତ ମଣିଷଙ୍କ ଭିତରେ ସମତା ରହିବା ଉଚିତ । ସେମାନଙ୍କ ଭିତରେ ରହିଥିବା ସାମର୍ଥ୍ୟ ଓ ଯୋଗ୍ୟତାର ପାର୍ଥକ୍ୟ ପାଇଁ ସେମାନଙ୍କୁ ପ୍ରଭୁ ଓ ଭୃତ୍ୟ, ବ୍ରାହ୍ମଣ ଓ ଚଣ୍ଡାଳ, ନର୍ଡିକ ଓ ନିଗ୍ରୋ ଶ୍ରେଣୀରେ ବିଭକ୍ତ କରାଯିବା ଉଚିତ ନୁହେଁ । କିମ୍ବା ମଣିଷମାନଙ୍କ ଭିତରେ ରହିଥିବା ପ୍ରାକୃତିକ ଭିନ୍ନତା ସହ ସେମାନଙ୍କ ଭିତରେ ଗଢ଼ି ଉଠିଥିବା ଅର୍ଥନୈତିକ, ରାଜନୈତିକ ଓ ସାମାଜିକ ସୁଯୋଗ ସ୍ତରର ବୈଷମ୍ୟ ସମ୍ବନ୍ଧିତ ନୁହେଁ । ସମସ୍ତ ମାଲିକ, ପୁଜକ ଓ ନର୍ଡିକ ବ୍ୟକ୍ତିଗଣ ଶକ୍ତିଶାଳୀ ଓ ବୁଦ୍ଧିମାନ ନୁହନ୍ତି ବା ସମସ୍ତ ଶ୍ରମିକ, ଅସବର୍ଣ୍ଣ ଓ ନିଗ୍ରୋମାନେ ଦୁର୍ବଳ ଓ ବୁଦ୍ଧିହୀନ ନୁହନ୍ତି । ଶ୍ରେଣୀ, ଜାତି ଓ ବର୍ଣ୍ଣ ନିର୍ବିଶେଷରେ ଭିନ୍ନତା ଓ ଅନୈକ୍ୟ ସମଭାବରେ ଦେଖିବାକୁ ମିଳିଥାଏ । ସମାନ ସୁଯୋଗ ଭିତରେ ମଣିଷମାନଙ୍କର ସୁସ୍ଥ ବିକାଶ ସମ୍ଭବ ହୋଇଥାଏ । ଏପରିକି ନାରୀ ଓ ପୁରୁଷମାନଙ୍କ ଭିତରେ ରହିଥିବା ଭିନ୍ନତା ସେମାନଙ୍କ ଭିତରେ ବ୍ୟକ୍ତ ହୋଇଥିବା ସାମର୍ଥ୍ୟ ଭିତରେ ପ୍ରଭେଦ ସୃଷ୍ଟି କରେନାହିଁ । ଜନ୍ ଅର୍କ ଓ ଲକ୍ଷ୍ମୀବାଈଙ୍କର ସାହସିକତା ଅନେକ ବୀର ସେନାପତିଙ୍କ ଅପେକ୍ଷା ଅଧିକ ବୋଲି ସୁବିଦିତ । ସେହିପରି ପଲ୍ ରୋବସନ, ଲୁମୁମ୍ବା ଓ ବି. ଆର୍. ଆମ୍ବେଦକରଙ୍କର ସଫଳତା ବେଶ୍ ଜଣାଶୁଣା । ଜଣେ ବିତ୍ତଶାଳୀ ବ୍ୟକ୍ତି ପରିସ୍ଥିତି କ୍ରମେ ନିଃସ୍ୱ ହୋଇଗଲେ ଜୀବନଧାରଣ ପାଇଁ ମୂଲିଆ କାର୍ଯ୍ୟ କରିଥାଏ ଓ ଜଣେ କର୍ମଗୃଷୀ କୌଣସି ବାଧା ଟଙ୍କା ପାଇଗଲେ ନିଜ ପ୍ରଭୁର ବ୍ୟବସାୟ ପ୍ରତିଷ୍ଠାନକୁ ମଧ୍ୟ କ୍ରୟ କରିପାରେ । ସମାଜବାଦର ବିକାଶ ଦ୍ୱାରା ଶ୍ରେଣୀବୈଷମ୍ୟ ଦୂର ହୋଇଥାଏ ଓ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଦ୍ୱାରା ଜାତିଗତ ପାର୍ଥକ୍ୟ ଲୋପ ପାଇଥାଏ । ଅନ୍ତର୍ଜାତି ବୈବାହିକ ସମ୍ବନ୍ଧ ଦ୍ୱାରା ଜାତିଗତ ବୈଷମ୍ୟ ଦୂର ହୋଇଥାଏ । ସେହିପରି ଯୁଦ୍ଧ ବା କୂଟନୈତିକ ସମ୍ବନ୍ଧ ରାଷ୍ଟ୍ରର ସୀମାକୁ ପରିବର୍ତ୍ତନ କରିପାରେ । ମଣିଷ ଭିତରେ ଏପରି କିଛି ଅନ୍ତର୍ନିହିତ ଗୁଣ

ଦେଖାଯାଏ ନାହିଁ ଯାହାକି ତାକୁ ଅନ୍ୟ ପାଖରୁ ସମ୍ପୂର୍ଣ୍ଣ ପୃଥକ୍ କରି ରଖିବ । ଏହାଛଡ଼ା ମାନବିକ ପ୍ରେମ ଓ ପ୍ରଚେଷ୍ଟା ଦ୍ୱାରା ପ୍ରାକୃତିକ ଭିନ୍ନତାରୁ ସୃଷ୍ଟି ପ୍ରତିବନ୍ଧକକୁ ଦୂର କରିହେବା ସମ୍ଭବ ।

ବିଭିନ୍ନ ଶ୍ରେଣୀ, ଜାତି ବା ବର୍ଣ୍ଣ ଭିତରେ ରହିଥିବା ପାର୍ଥକ୍ୟର ସେପରି କିଛି ସୁଦୃଢ଼ ଭିତ୍ତି ନଥିବାରୁ ଲୋକମାନଙ୍କ ଭିତରେ ରହିଥିବା ବୈଷମ୍ୟ ସମ୍ପୂର୍ଣ୍ଣ ଅନ୍ୟାୟ ଅଟେ । ସୁତରାଂ ବିଭିନ୍ନ ସମୟରେ ନିକ୍ଷେପିତ ହୋଇ ରହିଥିବା ବ୍ୟକ୍ତିଗଣ ସେମାନଙ୍କ ପ୍ରତି ହେଉଥିବା ଅପମାନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥାନ୍ତି । ଏହି ନିକ୍ଷେପିତ ମଣିଷଗଣ ଯେତେବେଳେ ଦେଖିଥାନ୍ତି ଯେ ସେମାନଙ୍କ ଉର୍ଦ୍ଧ୍ୱବର୍ଗ ଅସାଧୁ ଉପାୟରେ ବିଳାସବ୍ୟସନ ଭିତରେ ରହିଛନ୍ତି, ସେମାନେ ଛଳବିଶେଷରେ ନିଜ ସାଧୁତାର ପରିଣାମ ସ୍ୱରୂପ ଓ ନିଜର ଦୁଃଖକଷ୍ଟକୁ ଲଘବ କରିବା ପାଇଁ ଏକ ଭିନ୍ନ ଜଗତର ପରିକଳ୍ପନା କରିଥାନ୍ତି ଯେଉଁଠାରେ କି ସେମାନେ ଆନନ୍ଦ ଭିତରେ ରହିପାରିବେ । ବାସ୍ତବ ଜୀବନର ଦୁଃଖକଷ୍ଟକୁ ଭୁଲିବା ପାଇଁ ସେମାନେ ଅତି ଏକ ଆନନ୍ଦମୟ ଜଗତର ପରିକଳ୍ପନା କରି ତାହାକୁ ହିଁ ଜୀବନର ପରମ ଲକ୍ଷ୍ୟ ବୋଲି ବିଶ୍ୱାସ କରିଥାନ୍ତି ।

ନିଜର ଅସହାୟ ଅବସ୍ଥାକୁ ଦୂର କରିବା ସହିତ ନିଜକୁ ଅଧସ୍ତନ କରି ରଖିଥିବା ବ୍ୟବସ୍ଥାରୁ ମୁକ୍ତ ହେବା ପାଇଁ ସାଧାରଣ ଜନଗଣଙ୍କ ପାଖରେ ଦୁଇଟି ପନ୍ଥା ରହିଛି । ସେମାନେ ଅସାଧୁ ପନ୍ଥା ଅବଲମ୍ବନ କରି ଅନ୍ୟମାନଙ୍କ ପରି ଧୂର୍ତ୍ତ ହୋଇ ହୁଏତ ନିଜର ଅବସ୍ଥାକୁ ପରିବର୍ତ୍ତନ କରିପାରନ୍ତି ଅଥବା ସେମାନେ ଆସ୍ତିକତାବାଦୀ ବିଶ୍ୱାସ ସକଳକୁ ପରିହାର କରିବା ସହିତ ନିଜେ ସ୍ୱାଧୀନ ବୋଲି ଅନୁଭବ କରିପାରନ୍ତି । ଏହାଦ୍ୱାରା ସେମାନେ ନିଜର ଲକ୍ଷ୍ୟ ପୂରଣ କରିବା ପାଇଁ ସଚେତନ ହେବା ସହିତ ସାହସର ସହି କାର୍ଯ୍ୟକରି ସୁଖ ଓ ସମତା ମଧ୍ୟରେ ବାସ କରିପାରନ୍ତି । ସୁତରାଂ ଏଥିପାଇଁ ଅସାଧୁ ଆସ୍ତିକତାବାଦ ଓ ନୈତିକ ନିରୀଶ୍ୱରବାଦ ମଧ୍ୟରୁ ଗୋଟିଏ ପନ୍ଥାକୁ ସ୍ଥିର କରିବାର ରହିଛି ।

ଅସାଧୁ ପନ୍ଥାରେ ସାମୟିକ ସୁବିଧା ମିଳିପାରେ କିନ୍ତୁ ଏହାଦ୍ୱାରା ବ୍ୟବସ୍ଥା ବଦଳେ ନାହିଁ ବା ପରିସ୍ଥିତିର ପରିବର୍ତ୍ତନ ହୁଏନାହିଁ । ଜଣେ ଦରିଦ୍ର ଲୋକ ଚୋରି କରିବା ଫଳରେ ହୁଏତ କିଛି ଅର୍ଥ ଆଣି ସାମୟିକ ଭାବରେ ତା'ର ଅଭାବ ଦୂର କରିପାରେ; କିନ୍ତୁ ଏହା ଫଳରେ ବ୍ୟକ୍ତିଗତ ସମ୍ପତ୍ତି ମାଲିକାନା ବ୍ୟବସ୍ଥାର (ଯାହା ଅର୍ଥନୈତିକ ବୈଷମ୍ୟ ଓ ଧନଲାଭ ପାଇଁ ତୀବ୍ର ପ୍ରତିଯୋଗିତା ସୃଷ୍ଟି କରୁଥାଏ) ପରିବର୍ତ୍ତନ ହୁଏ ନାହିଁ । ସେହିପରି ଅଲକ୍ଷ୍ୟରେ ଦେଶ ଛାଡ଼ି ପଳାଉଥିବା କେତେକ ବ୍ୟକ୍ତି ହୁଏତ ଏକଛତ୍ରବାଦୀ ଶାସନ କବଳରୁ ରକ୍ଷା ପାଇଯା'ନ୍ତି କିନ୍ତୁ

ଏହା ଫଳରେ ଏକଚ୍ଛତ୍ରବାଦର ପରିବର୍ତ୍ତନ ହୁଏ ନାହିଁ । ଯେପର୍ଯ୍ୟନ୍ତ ଗୋଟିଏ ମନ୍ଦ ବ୍ୟବସ୍ଥା ଚାଲୁ ରହିଥାଏ ସେପର୍ଯ୍ୟନ୍ତ ଏହାର କୁପ୍ରଭାବ ସମସ୍ତଙ୍କୁ ଭୋଗ କରିବାକୁ ପଡ଼ିଥାଏ ।

ସମାଜର ଅସମତା ଓ ଅନ୍ୟାୟ ବିରୁଦ୍ଧରେ ନିଷ୍ପେଷିତ ଜନଗଣଙ୍କ ଦ୍ୱାରା ସମୟରେ ଦଙ୍ଗା ଓ ଆନ୍ଦୋଳନମାନ ହୋଇଛି । କିନ୍ତୁ ଏହାଦ୍ୱାରା କୌଣସି ସ୍ଥାୟୀ ସମାଧାନ ହୋଇପାରିନାହିଁ । ହୁଏତ ଏହା ଫଳରେ ସମୟରେ ଗୋଟିଏ ପ୍ରକାରର ଅନ୍ୟାୟ ଦୂର ହୋଇ ଅନ୍ୟପ୍ରକାରର ଅନ୍ୟାୟ ବ୍ୟବସ୍ଥା ଚାଲୁ ରହିଛି । ଗଣତାନ୍ତ୍ରିକ ବିପ୍ଳବ ଦ୍ୱାରା ସାବାଳକ ଭୋଟପ୍ରଥା ପ୍ରଚଳନ ହୋଇ ରାଜନୈତିକ ସମତା ଆସିଯାଇଛି କିନ୍ତୁ ଏହାଦ୍ୱାରା ସାମାଜିକ ଓ ଅର୍ଥନୈତିକ ବୈଷମ୍ୟ ଦୂର ହୋଇନାହିଁ । ସମାଜବାଦୀ ଆନ୍ଦୋଳନ ଅର୍ଥନୈତିକ ଅସମତା ଦୂର କରିଥିଲେ ବି ରାଜନୈତିକ ଏକଛତ୍ରବାଦକୁ ସୁଦୃଢ଼ କରିଛି । ସେହିପରି ମାନବବାଦ ସାମାଜିକ ସ୍ତରର ସମତାକୁ ସ୍ୱୀକୃତି ଦେଉଥିଲେ ବି ରାଜନୈତିକ ଓ ଆର୍ଥନୀତିକ ସ୍ତରରେ ରହିଥିବା ବୈଷମ୍ୟ ବିରୁଦ୍ଧରେ ସ୍ୱରଉତ୍ତୋଳନ କରିନାହିଁ ।

ସମାଜର ସକଳ ବୈଷମ୍ୟ ଓ ଅନ୍ୟାକୁ ନିଷ୍ପେଷିତ କରି ରଖିଥିବା ବ୍ୟବସ୍ଥାକୁ ଦୂର କରିବାପାଇଁ ଯେଉଁ ନିରାପଦ ଓ ସ୍ଥାୟୀ ପନ୍ଥା ପ୍ରୟୋଗ କରାଯିବା ଦରକାର ତାହା ହେଉଛି ନିରୀଶ୍ୱରବାଦକୁ ଗ୍ରହଣ କରିବା । ବାସ୍ତବରେ ସକଳ ବ୍ୟକ୍ତି-ବିଶେଷଙ୍କ ମଧ୍ୟରେ ନିରୀଶ୍ୱରବାଦୀ ଦୃଷ୍ଟିଭଙ୍ଗୀ ରହିଥିବା ଦେଖାଯାଏ । ଯଦି ସେମାନେ ଏହାର ଜୀବନ ଦର୍ଶନକୁ ଯଥାର୍ଥରେ ଗ୍ରହଣ କରନ୍ତେ ସେମାନେ ସକଳ ସ୍ତରରେ ନୈତିକ ହେବା ସହିତ ସ୍ୱାଧୀନ ଭାବରେ କାର୍ଯ୍ୟ କରିବା, ସଫଳତା ହାସଲ କରିବା ଓ ସୁଖ, ଶାନ୍ତିରେ ବାସ କରିବା କ୍ଷେତ୍ରରେ ରହିଥିବା ପ୍ରତିବନ୍ଧକକୁ ଦୂରକରିବାରେ ସମର୍ଥ ହୋଇପାରନ୍ତେ । ମୋଟ ଉପରେ ମଣିଷମାନେ ଏକ ଶ୍ରେଣୀର ହୋଇଥିବାରୁ ସକଳ ସ୍ୱାଧୀନ ବ୍ୟକ୍ତିବିଶେଷ ସମଭାବରେ ଜୀବନ ବଞ୍ଚିବା ସମ୍ଭବପର ଅଟେ ।

ଆଦିମ ମଣିଷର ଅଜ୍ଞତା ଓ ନିରାପଦହୀନ ଅବସ୍ଥା ଯୋଗୁଁ ସେ ଅନ୍ୟ ପାଖରେ ନିଜକୁ ଅଧସ୍ତନ ମଣୁଥିଲା ଓ ନିଜକୁ ସମର୍ପଣ କରି ରଖିଥିଲା । କିନ୍ତୁ ଆଜି ସଭ୍ୟତାର ବିକାଶ ଯୋଗୁଁ ସେ ଅବସ୍ଥା ନାହିଁ । ସମ୍ପ୍ରତି ମଣିଷର ଧର୍ମୀୟ ଭାବାବେଗ ପୂଜାଆରାଧନା ବା ଭକ୍ତିଭାବନା ବ୍ୟକ୍ତ କରିବା ପରିବର୍ତ୍ତେ ଅଧିକ ସାମାଜିକ ଉଦ୍ଦେଶ୍ୟ ସାଧନ କରୁଛି ଓ ଏହା ସହିତ ଏଥିରେ କର୍ମକାଣ୍ଡଜନିତ ଉପଚାର ଅପେକ୍ଷା କଳାତ୍ମକ ଅଭିବ୍ୟକ୍ତି ଅଧିକ ବ୍ୟକ୍ତ ହେଉଛି । ପ୍ରଯୁକ୍ତି ବିଜ୍ଞାନର ଅଗ୍ରଗତି ଦ୍ୱାରା ମଣିଷ ଆଜି ତା'ର ପରିବେଶକୁ ଅନେକାଂଶରେ ନିୟନ୍ତ୍ରଣ କରିବାରେ ସମର୍ଥ

ହୋଇଛି ଓ ସେ ପ୍ରକୃତିର ଭୟାବହତା ଦେଖି ଅସହାୟତ୍ୱବଶତଃ ଏହା ପାଖରେ ନିଜକୁ ସମର୍ପଣ କରି ଦେଉନାହିଁ । ଏହା ସହିତ ଅଛି ଏକ ପରଜଗତର ଭାବନା ଭିତରେ ନିବଦ୍ଧ ରହିବା ପରିବର୍ତ୍ତେ ଆଧୁନିକ ମଣିଷ ଅଧିକ ବାସ୍ତବବାଦୀ ହୋଇ-ପାରିଛି । ବସ୍ତୁତଃ ସାଂପ୍ରତିକ ପରିସ୍ଥିତିରେ ଜଣେ ଆଦର୍ଶ ବ୍ୟକ୍ତି ପାଖରେ ଆସ୍ତିକତାବାଦକୁ ଗ୍ରହଣ କରିବାର ଆବଶ୍ୟକତା ନାହିଁ ।

ଆସ୍ତିକତାବାଦୀ ବିଶ୍ୱାସ ଭିତରେ ରହିଥିବା ଦାସ ମନୋଭାବ ସମାଜରେ ବୈଷମ୍ୟ ସୃଷ୍ଟି କରିବାରେ ସାହାଯ୍ୟ କରିଆସିଛି । ଦାସମାନଙ୍କର ବିନା ପ୍ରତିରୋଧରେ ବଶ୍ୟତା ସ୍ୱୀକାର କରିବାଦ୍ୱାରା ପୁଞ୍ଜିପତି, ଏକଛତ୍ରବାଦୀ ଓ ସମ୍ଭ୍ରାନ୍ତ-ମାନେ ସେମାନଙ୍କୁ ପଦଦଳିତ କରି ରଖିବା ସହିତ ଅତ୍ୟାଚାର ଚାଲିଛନ୍ତି । ଯେପର୍ଯ୍ୟନ୍ତ ଦାସତ୍ୱ ମନୋଭାବ ଯାଇନାହିଁ ସେପର୍ଯ୍ୟନ୍ତ ଅତ୍ୟାଚାର ବିଲୋପ ହେବ ନାହିଁ । ଯେପର୍ଯ୍ୟନ୍ତ ଆସ୍ତିକତାବାଦ ଦୂର ହୋଇନାହିଁ ସେପର୍ଯ୍ୟନ୍ତ ଉତ୍ପୀଡ଼ନ ବି ଦୂର ହେବନାହିଁ । ସୁତରାଂ ସ୍ୱାଧୀନକାମୀ ସାଧୁ ବ୍ୟକ୍ତିଗଣ ଯେକୌଣସି ପ୍ରକାରର ଉତ୍ପୀଡ଼ନକୁ ଦୂର କରିବାପାଇଁ ବାସ୍ତବତଃ ନିରୀଶ୍ୱରବାଦର ପ୍ରସାର ଘଟାଇଥାନ୍ତି । ଏହିପରି କେତେକ ମହାନ୍ ବ୍ୟକ୍ତି ହେଲେ ମୋଜେସ୍, ବୁଦ୍ଧ, ସକ୍ରେଟିସ, କନଫୁସିଅସ୍, ଯୀଶୁଖ୍ରୀଷ୍ଟ, ମହମ୍ମଦ, ଭୋଲଟେୟାର, ମାର୍କସ୍ ଓ ଗାନ୍ଧୀ । ସେମାନଙ୍କର ସମସାମୟିକ ସ୍ୱବ୍ୟବସ୍ଥାବାଦୀମାନେ ସେମାନଙ୍କୁ ନିରୀଶ୍ୱରବାଦୀ ବୋଲି ନକହିଲେ ବି ସେମାନଙ୍କୁ ବିଧର୍ମୀ ବୋଲି ଆଖ୍ୟା ଦେଇଥିଲେ ଏବଂ କେତେକ କ୍ଷେତ୍ରରେ ସେମାନେ ପ୍ରଚଳିତ ପରମ୍ପରା ଓ ମୂଲ୍ୟବୋଧକୁ ବିରୋଧ କରୁଛନ୍ତି ବୋଲି ଅଭିଯୋଗ କରାଯାଇ କେତେକଙ୍କୁ ମୃତ୍ୟୁଦଣ୍ଡ ଦିଆଯାଇଥିଲା । ମେଲେଟସ୍ ସକ୍ରେଟିସଙ୍କୁ ନିରୀଶ୍ୱରବାଦୀ ବୋଲି କହି ତାଙ୍କୁ ବିଷପାନ କରି ମରିବାକୁ ବାଧ କରିଥିଲେ । ଯୀଶୁଖ୍ରୀଷ୍ଟ ଧର୍ମନିନ୍ଦାକାରୀ ବୋଲି ଅଭିଯୁକ୍ତ ହୋଇ କ୍ରୁଶବିଦ୍ଧ ହୋଇଥିଲେ । ମୋଜେସ୍, ମହମ୍ମଦ ଓ ମାର୍କସ୍ ବିପ୍ଲବର ବାର୍ତ୍ତା ପ୍ରଚାର କରୁଛନ୍ତି ବୋଲି ଅଭିଯୋଗ କରି ସେମାନଙ୍କୁ ନିଜ ଦେଶରୁ ବାହାର କରି ଦିଆଯାଇଥିଲା । ଅଣହିନ୍ଦୁମାନଙ୍କୁ ସାହାଯ୍ୟ କରୁଛନ୍ତି ବୋଲି କହି ଗାନ୍ଧୀଙ୍କୁ ହତ୍ୟା କରାଗଲା । କିନ୍ତୁ ନିଜର ସମସାମୟିକ ପରିସ୍ଥିତିରେ ଯେଉଁମାନେ ଧର୍ମବିରୋଧୀ ବୋଲି ଅଭିହିତ ହୋଇଥିଲେ ସେହିମାନେ ପରବର୍ତ୍ତୀ ଯୁଗରେ ମହାତ୍ମା ବୋଲି ସ୍ୱୀକୃତି ଲାଭ କଲେ ।

କିନ୍ତୁ ବାସ୍ତବପକ୍ଷେ ପ୍ରତ୍ୟେକ ଯୁଗର ଏହି ମହାତ୍ମାମାନେ ନିଜର ସମକାଳୀନ ବ୍ୟକ୍ତିମାନଙ୍କ ଅପେକ୍ଷା ଅଧିକ ନିରୀଶ୍ୱରବାଦୀ ଥିଲେ । ସେହି ମହାପୁରୁଷମାନଙ୍କର ଚିନ୍ତାଧାରାରେ ରହିଥିବା ନିରୀଶ୍ୱରବାଦୀ ବିଚାରବିମର୍ଶ ଜନଗଣଙ୍କୁ ସ୍ୱାଧୀନ ଭାବରେ ଚିନ୍ତା କରିବା ପାଇଁ ଅନେକ ପ୍ରେରଣା ଯୋଗାଇ

ପାରିଛି । ଏହି ବିଶ୍ଵରବିମର୍ଶ ବ୍ୟକ୍ତି ସ୍ଵାଧୀନତା ପାଇଁ ଯେଉଁ ପ୍ରେରଣା ଯୋଗାଇଲା ତଦ୍ଵାରା ଅର୍ଥନୈତିକ ବ୍ୟବସ୍ଥା ଓ ସାମାଜିକ ବୈଷମ୍ୟ ବିରୁଦ୍ଧରେ ଗଣଆନ୍ଦୋଳନ ମୁଣ୍ଡ ଟେକିବା ସମ୍ଭବ ହୋଇପାରିଲା । ତଥାପି ସମୟରେ ଏହି ମହାତ୍ମାମାନେ ସେମାନଙ୍କର ଚିନ୍ତାଧାରାକୁ ଆଦୃତ କରିବାପାଇଁ ଆସ୍ତିକତାବାଦୀ ବିଶ୍ଵାସ ସହିତ କେତେକାଂଶରେ ସାଲିସ କରିଛନ୍ତି । ବୁଦ୍ଧ କୁସଂସ୍କାରପୂର୍ଣ୍ଣ ପୂଜା ଆଡ଼ମ୍ବରକୁ ବିରୋଧ କରିଥିଲେ ବି ପୂର୍ବନିର୍ଦ୍ଦିଷ୍ଟ କର୍ମବାଦକୁ ସମର୍ଥନ କରିଥିଲେ । ଯୀଶୁଖ୍ରୀଷ୍ଟ ଓ ମହମ୍ମଦ ପ୍ରଚଳିତ ବହୁ ଈଶ୍ଵରବାଦକୁ ପ୍ରତ୍ୟାଖ୍ୟାନ କରି ତା'ର ସ୍ଥାନରେ ନୂତନ ଈଶ୍ଵର-ବିଶ୍ଵାସ ସୃଷ୍ଟି କରିଥିଲେ । ମାର୍କସ ଧର୍ମଧାରଣାକୁ ଅମୂଳକ ବୋଲି କହି ବସ୍ତୁବାଦକୁ ସମାନ ଯୁକ୍ତି ଉପରେ ପ୍ରତିଷ୍ଠା କରିଛନ୍ତି । ଗାନ୍ଧୀଜୀ ଅବଶ୍ୟ ଧନ୍ୟବାଦାର୍ହ ଯେ ସେ ସତ୍ୟ ଓ ନୈତିକତାର ଭିତ୍ତି ଉପରେ ସମସ୍ତ ଆଚରଣ ଓ କର୍ମପନ୍ଥାକୁ ଗ୍ରହଣ କରିଛନ୍ତି । ତଥାପି ସେ ଆସ୍ତିକତାବାଦର ପରିଭାଷା ମାଧ୍ୟମରେ ତାଙ୍କର ବିଶ୍ଵାସ ଦେଇଛନ୍ତି ।

କିନ୍ତୁ ଏହି ସାଲିସ୍ ଦ୍ଵାରା ପୁଣି ପ୍ରତିକ୍ରିୟା ସୃଷ୍ଟି ହୋଇଛି । ଏହି ମହାପୁରୁଷମାନଙ୍କର ବାଣୀ ଓ ବିଶ୍ଵାସଧାରା ଭିତରେ ରହିଥିବା ଆସ୍ତିକତାବାଦର ଅଂଶବିଶେଷ ସମାଜକୁ ସମୟାନୁକ୍ରମେ ପୁଣି କ୍ଷୟଶୀଳ କରାଇଛି । ମୂଲ୍ୟବୋଧ ସ୍ଥାନରେ କର୍ମକାଣ୍ଡ ଅଧିକ ଗୁରୁତ୍ଵପୂର୍ଣ୍ଣ ହୋଇଛି, ସମାଜବାଦ ପୋଷଣ କରୁଥିବା ସ୍ଵାଧୀନତାର ସ୍ଥାନକୁ ପରିଚାଳନାଗତ ବ୍ୟବସ୍ଥା କବଳିତ କରିଛି ଓ ଜନଗଣଙ୍କ ଦ୍ଵାରା ନିର୍ବାଚିତ ଲୋକପ୍ରତିନିଧିଗଣ କ୍ଷମତାକୁ ନିଜର ସ୍ଵାର୍ଥସାଧନ ପାଇଁ ବିନିଯୋଗ କରିଛନ୍ତି । ଅସାଧୁ ପୂଜକଗଣ ମହାନୀୟତାକୁ ବାଦ ଦେଇ ପୂଜା ଉପାସନାକୁ ମୁଖ୍ୟ କରି ରଖିଛନ୍ତି । ଏହିପରି ବ୍ୟକ୍ତି-ସ୍ଵାଧୀନତା ବହୁଭାବରେ ଅନ୍ଧକାରର ସମ୍ମୁଖୀନ ହୋଇଆସିଛି । ବସ୍ତୁତଃ ଜଣଙ୍କ ପରେ ଜଣେ ମହାପୁରୁଷ ଆସି ସମାଜର ଜୀବନଧାରାକୁ ଶୃଙ୍ଖଳିତ କରିବାପାଇଁ ପ୍ରେରଣା ଦେଇଛନ୍ତି ଓ କେତେ ଲକ୍ଷ-ଲକ୍ଷର ବଳିଦାନରେ ଗୋଟିଏ ପରେ ଗୋଟିଏ ବିପ୍ଳବ ସଂଘଟିତ ହୋଇଯାଇଛି । ଯେତେଦିନ ପର୍ଯ୍ୟନ୍ତ ଆସ୍ତିକତାବାଦର ପ୍ରଭାବ ସମାଜରୁ ଦୂର ହୋଇନାହିଁ, ଏହି ଧାରା ଅବ୍ୟାହତ ହିଁ ରହିବ । ସୁତରାଂ ସଭ୍ୟତାର କ୍ରମବିକାଶ ନାସ୍ତିକ୍ୟବାଦର ଅଗ୍ରଗତି କହିଲେ ଅତ୍ୟୁକ୍ତି ହେବନାହିଁ ।

ଯେତେବେଳେ ନାସ୍ତିକ୍ୟବାଦୀ ବିଶ୍ଵାସଧାରା ସାମଗ୍ରିକ ଭାବରେ ପ୍ରତିଷ୍ଠିତ ହୋଇପାରିବ ସେତେବେଳେ ହିଁ ସମାଜର ଅପ୍ରତିହତ ପ୍ରଗତି ସମ୍ଭବପର ହେବ । କୌଣସି ପ୍ରକାରର ସଙ୍କୋଚ ନରଖି ଚିନ୍ତାରେ, ଭାଷାରେ ଓ କାର୍ଯ୍ୟରେ ନାସ୍ତିକ୍ୟ-ବାଦକୁ ଗ୍ରହଣ କରିବା ଅର୍ଥ ପରିବେଶ ଉପରେ ନିଜର ନିୟନ୍ତ୍ରଣ ଜାହିର କରି ବ୍ୟକ୍ତି ସ୍ଵାଧୀନତା ଏବଂ ସାମାଜିକ ସମ୍ବନ୍ଧର ପ୍ରତ୍ୟେକ ସ୍ତରରେ ସମତାକୁ ସ୍ଥାପିତ କରିବା ।

ପ୍ରଚଳିତ ବ୍ୟବସ୍ଥାକୁ ନୀତିପୂର୍ଣ୍ଣ ଜୀବନ ଦ୍ୱାରା ପରିବର୍ତ୍ତନ କରାଯାଇପାରେ; କାରଣ ଏହା ଭିତରେ ପରମ୍ପରାଗତ ଆସ୍ତିକତାବାଦ ଓ ଆଧୁନିକ ହେତୁବାଦର ସମ୍ମିଶ୍ରଣ ଦେଖିବାକୁ ମିଳିଥାଏ । ଆମର ବ୍ୟବସ୍ଥାଟି ସମ୍ପୂର୍ଣ୍ଣ ଭାବରେ ନାସ୍ତିକ୍ୟବାଦୀ ଭାବଧାରା ଉପରେ ପର୍ଯ୍ୟବସିତ ନହେବା ପର୍ଯ୍ୟନ୍ତ ସାମାଜିକ ଆଚରଣରେ ପୂର୍ଣ୍ଣ ସାଧୁତା ଓ ସାମାଜିକ ସମ୍ବନ୍ଧ କ୍ଷେତ୍ରରେ ପୂର୍ଣ୍ଣ ସମତା ପ୍ରତିଷ୍ଠିତ ହେବା ସମ୍ଭବ ନୁହେଁ ।

ତେବେ ପ୍ରଶ୍ନ ଉଠୁଛି : ନାସ୍ତିକ୍ୟବାଦୀ ଦର୍ଶନ, ନୀତିଶାସ୍ତ୍ର, ରାଜନୀତି, ସୌନ୍ଦର୍ଯ୍ୟବୋଧ ଓ ପ୍ରଯୁକ୍ତିବିଦ୍ୟାର ରୂପରେଖ କି ପ୍ରକାର ହେବ—ତାହାହିଁ ଆମର ପରବର୍ତ୍ତୀ ଆଲୋଚ୍ୟ ବିଷୟ ।

ଦ୍ୱିତୀୟ ପରିଚ୍ଛେଦ :

# ନିରୀଶ୍ୱରବାଦୀ ଦର୍ଶନ

ଦର୍ଶନ ହେଉଛି ସତ୍ତାର ଅବବୋଧ କରିବା । ସୁତରାଂ ଏଠାରେ ଦୁଇଟି ପ୍ରଶ୍ନ ସଂଶ୍ଳିଷ୍ଟ ଯଥା, ଅବବୋଧ ଓ ସତ୍ତା ।

ଅବବୋଧ ବା ବିଚାରଶୀଳତା ମଣିଷ ଜୀବନରେ ଅତି ଗୁରୁତ୍ୱପୂର୍ଣ୍ଣ; କାରଣ ଏହା ବାହ୍ୟ ପରିସ୍ଥିତିର ପ୍ରଭାବକୁ ଅତିକ୍ରମ କରିପାରେ । ଯେପରି ଆତ୍ମହତ୍ୟା ବା ପୂର୍ଣ୍ଣ ବ୍ରହ୍ମଚର୍ଯ୍ୟ ଜାତି ସଂରକ୍ଷଣର ପରିପନ୍ଥୀ ସେହିପରି ନୃଶଂସତା ବିଚାର ପ୍ରଗତିର ପ୍ରତିକୂଳ । ବିଚାରବୁଦ୍ଧିର ପ୍ରାଧାନ୍ୟତା ଯୋଗୁଁ ମଣିଷ ସଭ୍ୟତାର ବିକାଶ ସମ୍ଭବପର ହୋଇଛି । ପୁଞ୍ଜିପତି ଓ ସମାଜବାଦୀ, ଗଣତନ୍ତ୍ରବାଦୀ ଓ ଏକଛତ୍ରବାଦୀ, ଜାତିବାଦୀ ଓ ମାନବବାଦୀ ବ୍ୟକ୍ତିସମୂହ ଏକାଠି ବାସ କରୁଥିଲେ ବି ସେମାନଙ୍କ ମଧ୍ୟରେ ଅନେକ ବିଚାରଗତ ଓ ଆଦର୍ଶଗତ ପାର୍ଥକ୍ୟ ରହିଥାଏ । ଅପରପକ୍ଷରେ ସମବିଚାର ବ୍ୟକ୍ତିଗଣ ପରସ୍ପରଠାରୁ ଦୂରରେ ରହୁଥିଲେ ବି ଓ ପରସ୍ପର ସହିତ ଜୀବନରେ କେବେ ଦେଖାସାକ୍ଷାତର ସମ୍ଭାବନା ନ ରହିଥିଲେ ବି ପରସ୍ପର ମଧ୍ୟରେ ଭାବଗତ ବନ୍ଧୁତା ସ୍ଥାପନ କରିପାରନ୍ତି । ସୁତରାଂ ବ୍ୟକ୍ତିର ଜୀବନଧାରାକୁ ବିଚାରବୁଦ୍ଧି ଓ ଆଦର୍ଶ ପ୍ରଭାବିତ କରିଥାଏ । ବ୍ୟକ୍ତି ତା'ର ଦର୍ଶନଦ୍ୱାରା ପରିଚିତ ହୁଏ ।

ସମ୍ପତ୍ତିର ବ୍ୟକ୍ତିଗତ ମାଲିକାନା ଭଳି ଏକ ବିଚାରରୁ ଅଗଣିତ ଜନଗଣଙ୍କ ଦାରିଦ୍ର୍ୟ ଓ ମୁଷ୍ଟିମେୟ ବ୍ୟକ୍ତିଙ୍କ ପ୍ରାଚୁର୍ଯ୍ୟ ଉଦ୍ଭବ ହୋଇଛି । ହିନ୍ଦୁ ସମାଜର ଜାତି ବ୍ୟବସ୍ଥାର ପରିଣାମ ଅନେକ ବ୍ୟକ୍ତିଙ୍କୁ ଅସ୍ପୃଶ୍ୟ କରିଛି । ସେହିପରି କେତେକ ଦାର୍ଶନିକ ବିଚାରଦ୍ୱାରା ପରିଚାଳିତ ହୋଇ କେହି କେହି ସନ୍ନ୍ୟାସୀ ହୋଇ ନିଃସଙ୍ଗରେ ଜୀବନ ଯାପନ କରିଛନ୍ତି ତ ଅନ୍ୟ କେହି ଶହୀଦ ହୋଇଛନ୍ତି । ମଣିଷର ବିଚାରବୁଦ୍ଧି ସ୍ତରରେ ପରିବର୍ତ୍ତନ ବ୍ୟକ୍ତିର ଜୀବନଧାରାକୁ ପ୍ରଭାବିତ କରିଥାଏ । ଜନଗଣଙ୍କ ଦୃଷ୍ଟିଭଙ୍ଗୀରେ କୌଣସି ମୌଳିକ ପରିବର୍ତ୍ତନ ଆସିଲେ ବିପ୍ଳବର ସୂତ୍ରପାତ ହୁଏ ।

ସୁତରାଂ ବୌଦ୍ଧିକ ଅବବୋଧ ଜୀବନରେ ଯେତିକି ଗୁରୁତ୍ୱପୂର୍ଣ୍ଣ, ସତ୍ୟର ଅବବୋଧ ସେହିପରି ମହତ୍ତ୍ୱପୂର୍ଣ୍ଣ । କିନ୍ତୁ ସେହି ସତ୍ତା ବା ସତ୍ୟର ସ୍ୱରୂପ କ'ଣ ? ଗୋଟିଏ ପରିସ୍ଥିତିକୁ ବିଭିନ୍ନ ବ୍ୟକ୍ତିଗଣ ନିଜର ଉଦ୍ଦେଶ୍ୟ ଓ ଲକ୍ଷ୍ୟ ନେଇ ନାନା-ଭାବରେ ଅବବୋଧ କରିଥା'ନ୍ତି । ଗୋଟିଏ ଫୁଲର ମହତ୍ତ୍ୱ ବିଭିନ୍ନ ବ୍ୟକ୍ତିଙ୍କୁ ଭିନ୍ନ

ଭିନ୍ନ ହୋଇପାରେ । ଫୁଲକୁ ନେଇ ଖେଳୁଥିବା ଗୋଟିଏ ଶିଶୁ, ନିଜର ଗୃହକୁ ଏଥିରେ ସଜାଉଥିବା ଜଣେ ଗୃହିଣୀ, ଏଥିରେ ବ୍ୟବସାୟ କରୁଥିବା ଜଣେ ମାଳୀ, ଏହା ସାହାଯ୍ୟରେ ଚିତ୍ର କରୁଥିବା ଜଣେ କଳାକାର, ଏହାକୁ ବିଜ୍ଞାନାଗାରରେ ବିଶ୍ଳେଷଣ କରୁଥିବା ଜଣେ ଉଦ୍ଭିଦବିତ୍ ଓ ଏହାକୁ ନେଇ କେତେ କେତେ କଳ୍ପନା କରୁଥିବା ଜଣେ କବି ଭିନ୍ନ ଭିନ୍ନ ଭାବରେ ଏହାକୁ ଅବବୋଧ କରିଥାନ୍ତି । ସେହିପରି ଦାସତ୍ୱ ମନୋବୃତ୍ତି ପୋଷଣ କରୁଥିବା ଜଣେ ଆସ୍ତିକତାବାଦୀ ଜଗତ ପାଖରେ ନିଜକୁ ଅଧସ୍ତନ ବୋଲି ବିଚାର କରୁଥିବାବେଳେ ଜଣେ ନିରୀଶ୍ୱରବାଦୀ ପ୍ରତ୍ୟେକଟି ପରିସ୍ଥିତିରେ ନିଜର ପ୍ରାଧାନ୍ୟକୁ ଅନୁଭବ କରିଥାନ୍ତି ।

କିନ୍ତୁ ଭିନ୍ନ ଭିନ୍ନ ଅବବୋଧ ଭିତରେ କେଉଁଟି ବାସ୍ତବ ? ବିଚାରବୁଦ୍ଧିର ଉତ୍କର୍ଷତା ଯେତିକି ମହତ୍ତ୍ୱପୂର୍ଣ୍ଣ ସତ୍ୟର ଯଥାର୍ଥ ଅବବୋଧ ପାଇଁ ମୂଲ୍ୟାୟନ ସେତିକି ଗୁରୁତ୍ୱପୂର୍ଣ୍ଣ । କାରଣ ଯଥାର୍ଥ ବିଚାରଦ୍ୱାରା ସହମତ ସୃଷ୍ଟି ହେବା ସହିତ ବ୍ୟକ୍ତି ଯଥାର୍ଥ ଭୂମିଟି ଉପରେ ଦଣ୍ଡାୟମାନ ହୋଇପାରିବ । ଅଥଚ ବିଚାରବୁଦ୍ଧି ଅବାସ୍ତବ ହେବାଦ୍ୱାରା ମଣିଷ ଦୁଃଖର ଶିକାର ହେବ ।

ପ୍ରତ୍ୟକ୍ଷ ଜ୍ଞାନ ଦ୍ୱାରା ଜାଣୁଥିବା ସକଳ ଘଟଣାବଳୀ ସାଧାରଣ ବ୍ୟକ୍ତିଙ୍କ ପାଇଁ ବାସ୍ତବ ଅଟେ । କୋଇଲର ରଙ୍ଗ କଳା, ଅଗ୍ନି ତାପଯୁକ୍ତ ଓ ଚିନିର ସ୍ୱାଦ ମିଠା ଇତ୍ୟାଦି ଘଟଣାଗୁଡ଼ିକ ନିର୍ବିବାଦରେ ସତ୍ୟ ଅଟେ । ଅବଶ୍ୟ ଜଣେ ଯଦି ରଙ୍ଗ ଦୃଷ୍ଟିହୀନତା ବା ସେହିପରି କିଛି ଇନ୍ଦ୍ରିୟଗତ ବିକାରରେ ଆକ୍ରାନ୍ତ, ତେବେ ସେ ଅନ୍ୟମାନଙ୍କ ପରି ପ୍ରତ୍ୟକ୍ଷାନୁଭୂତି ଲାଭ କରିପାରିବ ନାହିଁ । ବସ୍ତୁତଃ ଆମର ଜ୍ଞାନସକଳ ଆମର ଦେଖିବା, ଶୁଣିବା, ଘ୍ରାଣ କରିବା, ସ୍ପର୍ଶ କରିବା ଓ ସ୍ୱାଦ ବାରିବାର ଇନ୍ଦ୍ରିୟାନୁଭୂତିକୁ ନେଇ ସୃଷ୍ଟ ହୋଇଥାଏ । ଆମର ଇନ୍ଦ୍ରିୟ ସକଳର ସ୍ୱରୂପ ଓ ସାମର୍ଥ୍ୟ ଉପରେ ଆମର ଜ୍ଞାନ ଗଢ଼ି ଉଠିଥାଏ । ଅନେକଗୁଡ଼ିଏ ଚକ୍ଷୁଥିବା ଗୋଟିଏ କୀଟକୁ ବସ୍ତୁସକଳ କିପରି ଦେଖାଯାଏ ବା କୌଣସି ଇନ୍ଦ୍ରିୟ ନଥିବା ଗୋଟିଏ କୀଟାଣୁକୁ ଜଗତ କିପରି ଅନୁଭୂତ ହୁଏ ତାହା ଆମେ କହିପାରିବା ନାହିଁ । ବସ୍ତୁତଃ ଆମ ଇନ୍ଦ୍ରିୟ ସାହାଯ୍ୟରେ ଆମେ ଜଗତକୁ ଯେପରି ପ୍ରତ୍ୟକ୍ଷ କରୁ ତାହା ହିଁ ହେଉଛି ଆମର ବସ୍ତୁଭିତ୍ତିକ ଜ୍ଞାନ । କୌଣସି ଉପକରଣର ବିନିଯୋଗ ଦ୍ୱାରା ବସ୍ତୁଜଗତର ପରିବର୍ତ୍ତନ ହୁଏ ନାହିଁ । ଗୋଟିଏ ଅଣୁବୀକ୍ଷଣ ଯନ୍ତ୍ରରେ ଦେଖିବା ଦ୍ୱାରା ବା ଉରଶ୍ରବରେ ହୃଦସ୍ପନ୍ଦନ ମାପିବା ଦ୍ୱାରା ଆମର ଅନୁଭୂତି ପୃଥକ୍ ହୁଏ ନାହିଁ । ଅର୍ଥାତ୍ ଆମର ଇନ୍ଦ୍ରିୟାନୁଭବ ଦ୍ୱାରା ବସ୍ତୁନିଷ୍ଠଜ୍ଞାନ ସମପ୍ରକାରର ହୋଇଥାଏ ।

କିନ୍ତୁ ପ୍ରତ୍ୟକ୍ଷାନୁଭବ ଦ୍ୱାରା ଜାଣୁଥିବା ଘଟଣା ଭିତରେ ଆମର ଜ୍ଞାନ ସୀମିତ ନୁହେଁ । କଳ୍ପନା ସାହାଯ୍ୟରେ ଘଟଣାଗୁଡ଼ିକୁ ଆମେ ନାନା ପ୍ରକାର ବିଶ୍ଳେଷଣ,

ବିଶ୍ଳେଷଣ ଓ ଶୋଧନ ଦ୍ୱାରା ପରିବର୍ତ୍ତିତ କରି ନୂତନ ପ୍ରତ୍ୟୟ ସୃଷ୍ଟି କରିଥାଉ । କିନ୍ତୁ ଯେଉଁ କଳ୍ପନାପ୍ରସୂତ ଧାରଣାଗୁଡ଼ିକ ଇନ୍ଦ୍ରିୟଦ୍ୱାରା ଗୃହୀତ ନୁହନ୍ତି ସେଗୁଡ଼ିକ ଅବାସ୍ତବ ଅଟନ୍ତି । ବର୍ତ୍ତମାନ ପାଇଁ ସେଗୁଡ଼ିକ ଆକର୍ଷଣୀୟ ମନେ ହେଉଥିଲେ ବି ଭବିଷ୍ୟତରେ ସେମାନେ ଅବାସ୍ତବ ବୋଲି ପ୍ରମାଣିତ ହୁଅନ୍ତି । ଅବଶ୍ୟ ଆମର ଅନେକ ଭବିଷ୍ୟ କଳ୍ପନା ଆମର ସାଂପ୍ରତିକ ଜୀବନକୁ ବହୁଳ ଭାବରେ ପ୍ରଭାବିତ କରିଥାଏ । ତଥାପି ଆମର କଳ୍ପନାପ୍ରସୂତ ଧାରଣା ସକଳ, ଯାହା କେବେ ବି ଇନ୍ଦ୍ରିୟଦ୍ୱାରା ଅନୁଭବ୍ୟ ନୁହେଁ, ଅବାସ୍ତବ ବୋଲି କହିବାକୁ ହେବ । ସେଗୁଡ଼ିକ ଅବାସ୍ତବ ହେଲେ ବି ସେହି ପ୍ରତ୍ୟୟ ସକଳ ଆମର ଜ୍ଞାନକୁ ସମୃଦ୍ଧ କରିବା ସହିତ ଜୀବନକୁ ବ୍ୟାପକ କରିଥାନ୍ତି । ମଣିଷର କଳ୍ପନାଶକ୍ତି ମଣିଷକୁ ସଭ୍ୟ ହେବାରେ ସାହାଯ୍ୟ କରିଛି ।

ଆମର ପ୍ରତ୍ୟୟଗୁଡ଼ିକ କବିର ସୃଜନାତ୍ମକ ଭାବନା ପରି କାଳ୍ପନିକ ଦୃଷ୍ଟିଭଙ୍ଗୀ ବ୍ୟକ୍ତ କରିପାରେ କିମ୍ବା ସୈଦ୍ଧାନ୍ତିକ ଜ୍ଞାନ ପରି ପ୍ରଣାଳୀବଦ୍ଧ ହୋଇପାରେ । ଆମର ଅନୁଭୂତି, ମତ ବା ବିଚାର ଦ୍ୱାରା ଆମର କଳ୍ପନା ପ୍ରଭାବିତ ଓ ଓ ସୁବ୍ୟବସ୍ଥିତ ହୋଇଥାଏ । କଳ୍ପନା ଓ ଅନୁମାନ ଦ୍ୱାରା ଗଢ଼ି ଉଠୁଥିବା ପ୍ରତ୍ୟୟଗୁଡ଼ିକ ସ୍ଥଳ ବିଶେଷରେ ଉପଯୋଗୀ ହେଉଥିଲେ ହେଁ ସେଥିରେ ସଂଶୟ ରହିଥାଏ । ଏପରିକି ଏହା ଆମର ଆଦର୍ଶ, ଭାବନା, ଯୋଜନା ଓ ଭବିଷ୍ୟତ ଲକ୍ଷ୍ୟ ସକଳକୁ ପ୍ରଭାବିତ କରିଥାଏ । ତା ସତ୍ତ୍ୱେ କଳ୍ପନାର ଆଧାର ଉପରେ ସୃଷ୍ଟି ହେଉଥିବା ପ୍ରତ୍ୟୟଗୁଡ଼ିକ ସ୍ୱରୂପତଃ ଅବାସ୍ତବ ଅଟେ ।

ପ୍ରତ୍ୟୟଗୁଡ଼ିକ ତଥ୍ୟଠାରୁ ପୃଥକ୍ ଓ ସ୍ଥଳ ବିଶେଷରେ ଅବାସ୍ତବ ଯୋଗୁଁ ଗ୍ରହଣଯୋଗ୍ୟ ହୋଇପାରନ୍ତି ନାହିଁ । ତଥ୍ୟଗୁଡ଼ିକ ପରୀକ୍ଷିତ ଓ ପ୍ରତ୍ୟକ୍ଷ ଭାବରେ ଅନୁଭୂତ ହେଉଥିବାରୁ ଗ୍ରହଣଯୋଗ୍ୟ । କେହି କାହାର ଗୁଣ ବିଷୟରେ ସନ୍ଦିହାନ ହେଲେ ଏହାକୁ ପ୍ରତ୍ୟକ୍ଷ କରିବା ପରେ ନିଶ୍ଚିତ ହୋଇଥାଏ । କିନ୍ତୁ ଭବିଷ୍ୟତର ଘଟଣାକୁ ତତ୍‌କ୍ଷଣାତ୍ ଦେଖାଇବା ସମ୍ଭବ ନୁହେଁ । ଏହାକୁ କେବଳ ବିଶ୍ୱାସ କରାଯାଇପାରେ । ଅନ୍ୟର ବିଶ୍ୱାସକୁ ଗ୍ରହଣ କରାଯାଇପାରେ ବା ପ୍ରତ୍ୟାଖ୍ୟାନ କରାଯାଇପାରେ । ଆମେ ତଥ୍ୟଗୁଡ଼ିକୁ ପ୍ରତ୍ୟକ୍ଷ ଭାବେ ଜାଣୁଥିବାବେଳେ ମତାମତକୁ ବିଶ୍ୱାସ କରିଥାଉ ।

ବୈଜ୍ଞାନିକ ପ୍ରଣାଳୀ ସାହାଯ୍ୟରେ କଳ୍ପନାର ମୂଲ୍ୟାୟନ କରାଯାଇ ସେଗୁଡ଼ିକ କେତେଦୂର ବାସ୍ତବ ବା ଅବାସ୍ତବ ତାହା ନିର୍ଣ୍ଣୟ କରାଯାଇପାରେ । ଉଦାହରଣ ସ୍ୱରୂପ ଆସନ୍ତାକାଲର ପାଗ ଶୁଖିଲା ରହିବ ବୋଲି ଆଜିର ପାଗ ସମ୍ବନ୍ଧୀୟ ପର୍ଯ୍ୟବେକ୍ଷଣକୁ ଦେଖି କୁହାଯାଇପାରେ । କିନ୍ତୁ ବାସ୍ତବ ପକ୍ଷେ

ଯେତେବେଳେ କାଳର ପାଗକୁ ଯେପରି ପ୍ରତ୍ୟକ୍ଷ କରାଯାଏ ସେତେବେଳେ ପୂର୍ବର ଅନୁମାନ ଠିକ୍ କି ଭୁଲ୍ ତାହା ପ୍ରମାଣିତ ହୋଇଥାଏ ।

ଆମର କଳ୍ପନା ସକଳ ମୁଖ୍ୟତଃ କେତେକ ମୌଳିକ ତଥ୍ୟରୁ ଉଦ୍ଭବ ହୋଇଥାଏ । କଳ୍ପନାଗୁଡ଼ିକ ପ୍ରାଥମିକ ଅବସ୍ଥାରେ ସତ୍ୟ ବା ମିଥ୍ୟା ନୁହେଁ । ସେଗୁଡ଼ିକ କେବଳ କେତେକ ମତ ମାତ୍ର ଯାହାକୁ କି ଜଣେ ବିଶ୍ୱାସ କରିପାରେ ବା ନକରିପାରେ । କିନ୍ତୁ କଳ୍ପନା ସକଳକୁ ଯେତେବେଳେ ପ୍ରତ୍ୟକ୍ଷ ଭାବରେ ପରୀକ୍ଷା କରାଯାଏ ସେଗୁଡ଼ିକର ସତ୍ୟାସତ୍ୟ ଜଣାପଡ଼େ । ଯେଉଁ ବିଶ୍ୱାସଗୁଡ଼ିକ ପରୀକ୍ଷା ଦ୍ୱାରା ବାସ୍ତବ ତଥ୍ୟ ସହ ମେଳଖାଏ ସେଗୁଡ଼ିକ ସତ୍ୟ ହେବାବେଳେ ମେଳ ନଥିବା କଳ୍ପନାଗୁଡ଼ିକ ମିଥ୍ୟା ବୋଲି ଗ୍ରହଣ କରାଯାଏ । ବିଜ୍ଞାନ ମୁଖ୍ୟତଃ ଏହି ପ୍ରକାର ବସ୍ତୁନିଷ୍ଠ ପରୀକ୍ଷା ଉପରେ ନିର୍ଭର କରି ଘଟଣାବଳୀର ସତ୍ୟାସତ୍ୟ ନିରୂପଣ କରିଥାଏ । ବସ୍ତୁତଃ ପରୀକ୍ଷାଜନିତ ସତ୍ୟାପନ ବିଜ୍ଞାନର ପ୍ରଣାଳୀ ଅଟେ ।

ସତ୍ୟ ବା ମିଥ୍ୟା ତଥ୍ୟର ପର୍ଯ୍ୟବେକ୍ଷଣ ଓ ସତ୍ୟାପନ ଉପରେ ନିର୍ଭର କରୁଥିବାରୁ ଆପେକ୍ଷିକ ଅଟେ । ଅପରୀକ୍ଷିତ କଳ୍ପନା ସକଳକୁ ସତ୍ୟ ବା ମିଥ୍ୟା କୁହାନଯାଇ କେବଳ କେତେକ ମତ ବୋଲି କୁହାଯାଇପାରେ । ସେହିପରି ନିରଙ୍କୁଶ ସତ୍ୟ ମଧ୍ୟ ଅଯୌକ୍ତିକ କାରଣ ଏହା ସତ୍ୟାପନ ଉପରେ ପ୍ରତିଷ୍ଠିତ ନୁହଁ । ନିରଙ୍କୁଶ ସତ୍ୟ, ମୂଳ କାରଣ ବା ଅସୀମତ୍ୱ ପରିକଳ୍ପନାଗୁଡ଼ିକ ଅଧିବେଶିରେ ପ୍ରକଳ୍ପ ବୋଲି କୁଆଯାଇପାରେ । ସେହିପରି କାବ୍ୟିକ ଚିତ୍ରକଳ୍ପଗୁଡ଼ିକ ମନୋହର ହେଲେ ବି ସେଗୁଡ଼ିକ ବିଶୁଦ୍ଧ କଳ୍ପନା କହିଲେ ଅତ୍ୟୁକ୍ତି ହେବ ନାହିଁ । ଯେପରି ଅପ୍ସର ଗଳ୍ପ ବା ପୁରାଣବର୍ଣ୍ଣିତ ଅପ୍ସରାଗୁଡ଼ିକ ସମ୍ପୂର୍ଣ୍ଣ ଭାବରେ କଳ୍ପନା ଉପରେ ଆଧାରିତ । ସେଗୁଡ଼ିକ ପିଲାଙ୍କ ପାଇଁ କୌତୁକପ୍ରଦ ଓ କେତେକ ସ୍ଥଳରେ ନୈତିକ ଆଦର୍ଶଯୁକ୍ତ । ଗୋଟିଏ କାଳ୍ପନିକ କାହାଣୀର ଜନପ୍ରିୟତା ବା ତା'ର ନୈତିକ ଅଭିମୁଖ୍ୟ ତାହାକୁ ସତ୍ୟ ଘଟଣାରେ ରୂପାନ୍ତରିତ କରିଦଏ ନାହିଁ ।

ଗୋଟିଏ ଘଟଣା ପୂର୍ଣ୍ଣଭାବେ ସତ୍ୟାପନ ହୋଇପାରୁଥିବା ବେଳେ ଅପରୀକ୍ଷିତ ସତ୍ୟତା କ୍ଷେତ୍ରରେ କିଛି ବିଶ୍ୱାସର ଉପାଦାନ ରହିଥାଏ । ଗୋଟିଏ ଘଟଣା ସୀମିତ ହୋଇଥିବା ବେଳେ ସତ୍ୟତା କ୍ଷେତ୍ରରେ ସାମାନ୍ୟୀକରଣ ହୋଇଥାଏ । ସୁତରାଂ ଏକ ବିଶ୍ୱାସ ସତ୍ୟ ବୋଲି ପ୍ରମାଣିତ ହେବାର ତାତ୍ପର୍ଯ୍ୟ ନୁହେଁ ଯେ ଏହା ତା'ର ସାମଗ୍ରିକ ଘଟଣାବଳୀରେ ପରୀକ୍ଷିତ ହେବ । ଯେପରି ହେଉଥିଲେ ସତ୍ୟ ଏକ ଘଟଣାରେ ପରିଣତ ହୋଇଯିବ । ବସ୍ତୁତଃ ଅନେକ ସମୟରେ କଳ୍ପନା ଦ୍ୱାରା ଆମେ କୌଣସି ବିଷୟ ଅବବୋଧ କରି ପରବର୍ତ୍ତୀ ପର୍ଯ୍ୟାୟରେ ତାକୁ ଯେପରି ପରୀକ୍ଷା କରିଥାଉ ତାହା ସମ୍ଭବପର ହେବନାହିଁ ଓ ଜ୍ଞାନର ପରିସର ସଙ୍କୁଚିତ ହୋଇଯିବ । ଗୋଟିଏ ବିଶ୍ୱାସର ସତ୍ୟାସତ୍ୟ ଗ୍ରହଣ କରିବା ନେଇ

ନିଦର୍ଶନ ସ୍ୱରୂପ କେତେକ ଘଟଣାକୁ ଦୃଷ୍ଟାନ୍ତ ରୂପେ ନେଇ ପରୀକ୍ଷା କରାଯାଇଥାଏ । ବସ୍ତୁତଃ ସ୍ଥଳ ବିଶେଷରେ ସତ୍ୟ ସନ୍ଦେହ ବିଶ୍ୱାସ ସଂଶ୍ଳିଷ୍ଟ ହୋଇ ରହିଯାଏ; କାରଣ ପ୍ରତ୍ୟେକ ତଥ୍ୟ ସତ୍ୟାପନ ପାଇଁ ଅସୀମ ଘଟଣାକୁ ପରୀକ୍ଷା କରିବାର ଆବଶ୍ୟକ ହୋଇଥାଏ । ଏ ଦୃଷ୍ଟିରୁ ଗୋଟିଏ ସତ୍ୟ ଘଟଣାକୁ ନୂତନ ତଥ୍ୟର ମାନଦଣ୍ଡରେ ସନ୍ଦେହ କରିବାର ଅବକାଶ ରହିଥାଏ । ନିୟୁଟନଙ୍କର ମାଧ୍ୟାକର୍ଷଣ ନିୟମକୁ ନୂତନ ଘଟଣା ପ୍ରବାହର ପ୍ରତ୍ୟକ୍ଷଣ ଯୋଗୁଁ ପରିବର୍ତ୍ତନ କରାଯାଇଥିଲା । ସୁତରାଂ ବୈଜ୍ଞାନିକ ଘଟଣାର କାର୍ଯ୍ୟକାରିତା ଏକ ମୁକ୍ତ ଦୃଷ୍ଟିକୋଣ ଆବଶ୍ୟକ କରିଥାଏ ।

ବୈଜ୍ଞାନିକ ଅନୁମାନ ଓ ସତ୍ୟାପନ ପାଇଁ ତଥ୍ୟଗୁଡ଼ିକ ନିର୍ଭରଯୋଗ୍ୟ ହେବା ଆବଶ୍ୟକ । କେତେକ ସମୟରେ ବିଭ୍ରମ ଦ୍ୱାରା ତଥ୍ୟଗୁଡ଼ିକ ଭୁଲଭାବରେ ପ୍ରତ୍ୟକ୍ଷ ହୋଇଥାଏ । ଜଣେ ନିମନ୍ତ୍ରକ ଜଣେ ବନ୍ଧୁଙ୍କର ଆଗମନକୁ ଅପେକ୍ଷା କରିବା ସମୟରେ ଦ୍ୱାର ପାଖରେ ତାଙ୍କ ଆଗମନର ଶବ୍ଦ ଶୁଣିପାରନ୍ତି । କିନ୍ତୁ ଦ୍ୱାର ଖୋଲି ବନ୍ଧୁଙ୍କର ଅନୁପସ୍ଥିତି ଦେଖି ବିଭ୍ରମ ହେବା ଜାଣନ୍ତି । ଜଣେ ନିଶା ସେବନକାରୀ ବ୍ୟକ୍ତି ବା ମସ୍ତିଷ୍କବିକୃତି ଘଟିଥିବା ରୋଗୀ ବିଭ୍ରମଜନିତ ଅନୁଭୂତି ଲାଭ କରିଥାନ୍ତି । ଧାର୍ମିକ ଭକ୍ତଗଣ ବିଭ୍ରମାତ୍ମକ ଅନୁଭୂତି ବି ପାଇଥାନ୍ତି । ନିଜର ମାନସିକ ଚିନ୍ତନ ଅନୁଯାୟୀ ସେମାନେ ଦିବ୍ୟାନୁଭୂତି ଲାଭ କରିଥାନ୍ତି ଓ ସେମାନେ ଜାଣିଥିବା ଭାଷା ମାଧ୍ୟମରେ ଈଶ୍ୱରୀୟ ବାଣୀ ପାଇଥାନ୍ତି । ଜଣେ ହିନ୍ଦୁ ଈଶ୍ୱରଙ୍କୁ ଚତୁର୍ଭୁଜମୂରତି ବୋଲି ଦେଖିବାବେଳେ ଜଣେ ଖ୍ରୀଷ୍ଟିଆନ ଈଶ୍ୱରଙ୍କୁ ଯୀଶୁଖ୍ରୀଷ୍ଟଙ୍କ ରୂପ ଭିତରେ, ଏକ ମେଣ୍ଢା ନେଇଥିବା ଅବସ୍ଥାରେ ବା ଏକ କୁଷ୍ଠରୋଗୀଙ୍କୁ ଆରୋଗ୍ୟ କରୁଥିବା ଅବସ୍ଥାରେ ହିଁ ଦେଖିଥାଏ । ସେହିପରି ଜଣେ ମୁସଲମାନ ଭକ୍ତ ନିଜ ମନର କଳ୍ପନାନୁସାରେ ଈଶ୍ୱରଙ୍କୁ ଭ୍ରାତୃତ୍ୱର ବାଣୀ ବା ଜିହାଦ୍ ଭାବରେ ଅନୁଭବ କରିଥାଏ । କବି, କଳାକାର ଓ ଶିଳ୍ପୀଗଣ ନିଜର କଳ୍ପନାକୁ ନିଜ ସୃଷ୍ଟିରେ ରୂପରେଖ ଦେଇଥାନ୍ତି । ନିଜର ବିବାହ ନେଇ ଦ୍ୱନ୍ଦ୍ୱରେ ଥିବା ଜଣେ ଖ୍ରୀଷ୍ଟିଆନ ଝିଅ ଚର୍ଚ୍ଚଘଣ୍ଟାରୁ ବିବାହ ପାଇଁ ନିର୍ଦ୍ଦେଶ ଆସୁଥିବା ଶୁଣିପାରେ । ପରବର୍ତ୍ତୀ ପର୍ଯ୍ୟାୟରେ ବୈବାହିକ ଜୀବନରେ ଗୁରୁତର ଅଶାନ୍ତି ହେଲେ ବି ସେହିପରି ଚର୍ଚ୍ଚଘଣ୍ଟାରୁ ବି···ଚ୍ଛେ···ଦର ଶବ୍ଦ ଶୁଣେ । ବିଭ୍ରମ ଓ ଭ୍ରମାବସ୍ଥା ହେଉଛି ମାନସିକ ବିକାର ସକଳର ବସ୍ତୁନିଷ୍ଠ ଅଭିବ୍ୟକ୍ତି । ଏହିସବୁ ନିଶାଦ୍ରବ୍ୟ ସେବନ, ରୋଗାବସ୍ଥା ବା ଅତ୍ୟଧିକ ଆବେଗ ମଧ୍ୟରୁ ଉଦ୍ଭବ ହୋଇଥାଏ । ସେସବୁର ଅନୁଭୂତି ହେଉଥିବା ବେଳେ ଅନୁଭବୀଙ୍କୁ ଏହା ବାସ୍ତବ ବୋଲି ଜଣାପଡ଼େ । ସେ ମୁହୂର୍ତ୍ତ ଅତିକ୍ରାନ୍ତ ହୋଇଯିବା ପରେ ସେହି ବ୍ୟକ୍ତି ପୁନର୍ବାର ସେହି ପ୍ରକାରର ଅନୁଭୂତି ଲାଭ କରିପାରେ ନାହିଁ ବା ସେ କରୁଥିବା ପ୍ରତ୍ୟକ୍ଷ ଅନ୍ୟମାନେ ବି ଦେଖିପାରନ୍ତି ନାହିଁ । ସୁତରାଂ ମଣିଷର ବିଭ୍ରମ ସକଳ ସମ୍ପୂର୍ଣ୍ଣଭାବେ ବ୍ୟକ୍ତିନିଷ୍ଠ ଯାହା ନା ବସ୍ତୁନିଷ୍ଠ ଦୃଷ୍ଟିରୁ ମିଥ୍ୟା ବୋଲି କୁହାଯାଇପାରେ ।

ଅପରପକ୍ଷରେ ଭ୍ରମାତ୍ମକ ଅନୁଭୂତି କ୍ଷେତ୍ରରେ କିଛି ବସ୍ତୁ ରହିଥାଏ ଯାହା ନାନାବିଧ କାରଣ ଯୋଗୁଁ ଅପ୍ରାକୃତିକ ପରିସ୍ଥିତି ଭିତରେ ଭୁଲ ପ୍ରତ୍ୟକ୍ଷ ହୁଏ । ଏକ ମରୀଚିକା ବା ଏକ ପ୍ରତିଧ୍ୱନି ଏକା ସମୟ ଓ ସ୍ଥାନରେ ଥିବା ଯେକୌଣସି ବ୍ୟକ୍ତିଦ୍ୱାରା ଯଥାକ୍ରମେ ଦେଖିହେବ ବା ଶୁଣିହେବ । ଅପର ପକ୍ଷରେ ଅଲୌକିକ ଘଟଣା କେବେ ଉଦ୍ଭବ ହୁଏନାହିଁ ଏବଂ ତାହା ଏକ ଯାଦୁ ଘଟଣା ବୋଲି ପରୀକ୍ଷା ଦ୍ୱାରା ଜାଣିହେବ । ଭେଳକିବିଦ୍ୟା, ଇନ୍ଦ୍ରଜାଲ, ସମ୍ମୋହନ, କବଚ ପ୍ରଦାନ, ମନ୍ତ୍ର-ତନ୍ତ୍ର ଓ ଗୁଣିଗାରେଡ଼ି ଇତ୍ୟାଦି କଳା-ଯାଦୁ ସମୂହ ମନର ଆବେଗରୁ ଅଥବା ଭ୍ରମାତ୍ମକ ଅନୁଭୂତିରୁ ସୃଷ୍ଟି ହୋଇଥାଏ ।

ବସ୍ତୁତଃ ବିଭ୍ରମ ଓ ଭ୍ରମାତ୍ମକ ଅନୁଭୂତି ସମୂହ ବାସ୍ତବ ଘଟଣା ନୁହେଁ ଓ ବୈଜ୍ଞାନିକ ଅନୁଶୀଳନ ପାଇଁ ସେସବୁର କୌଣସି ଉପଯୋଗିତା ନାହିଁ ।

"ପରାମନସ୍ତାତ୍ତ୍ୱିକ ଘଟଣାବଳୀର ଯଥାର୍ଥତା ବି ଅନେକାଂଶରେ ସନ୍ଦେହ-ଜନକ ଅଟେ । ଦୂର ସମ୍ବେଦନ କ୍ଷେତ୍ରରେ କୁହାଯାଉଥିବା ଅତୀନ୍ଦ୍ରିୟ ପ୍ରତ୍ୟକ୍ଷ ବୈଜ୍ଞାନିକ ମାନଦଣ୍ଡରୁ ଅବ୍ୟାହତ ନୁହେଁ । ସେସବୁ ବରଂ କେତୋଟି ମୋଟାମୋଟି ସମ୍ଭାବ୍ୟଜନିତ ଘଟଣା ଭାବରେ ନିଆଯାଇପାରେ, ଯାହାକି ବୈଜ୍ଞାନିକ ପରୀକ୍ଷା ଦ୍ୱାରା ପ୍ରମାଣ କରିହେବ ନାହିଁ । ଛ'ଟି ଆଙ୍ଗୁଳି ଥିବା ହାତ ବା ପ୍ରକୃତି ଭିତରେ ଥିବା ଦୁଇଟି ଯାଆଁଳା ପିମ୍ପୁଡ଼ି ସଦୃଶ ସେଗୁଡ଼ିକୁ ଆକସ୍ମିକ ଘଟଣା ଭାବରେ ନିଆଯାଇପାରେ । ଏହି ବ୍ୟତିକ୍ରମ ଘଟଣାଗୁଡ଼ିକର ପରିସଂଖ୍ୟାନ ନିଆଯାଇପାରେ କିନ୍ତୁ ତାହାକୁ କୌଣସି ନିୟମର ଧାରାରେ ବୁଝାଇ ହେବ ନାହିଁ । ଦୃଢ଼ ଇଙ୍ଗିତ ଦ୍ୱାରା ଅନ୍ୟ ଉପରେ ସମ୍ମୋହନ ପ୍ରଭାବ ମଧ୍ୟ ସୃଷ୍ଟି କରାଯାଇପାରେ ।

ଧର୍ମଯାଜକମାନେ ନିଜର ଶିଷ୍ୟ ଭିତରେ ନାନା ଶକ୍ତିର ଅଧିକାରୀ ବୋଲି କଳ୍ପନା କରି ସାଧାରଣ ଲୋକଙ୍କ ଭିତରେ ଏହି ବିଶ୍ୱାସ ସୃଷ୍ଟି କରିଥାନ୍ତି, ଯଦ୍ୱାରା ଲୋକମାନେ ସେମାନଙ୍କ ପ୍ରତି ଭକ୍ତି ଓ ଭୟଭାବ ପୋଷଣ କରିବେ । ଏପରିକି ସେମାନେ ହାସ୍ୟାସ୍ପଦ ଭାବରେ ମହାନ୍ ବ୍ୟକ୍ତିମାନଙ୍କ ପ୍ରତି ନାନା ଅଲୌକିକତା ଆରୋପ କରିଥାନ୍ତି । କିନ୍ତୁ ବିନା ଅଲୌକିକତାରେ ସେମାନଙ୍କର ମହାନୀୟତା ନ୍ୟୂନ ହୋଇଯାଏ ନାହିଁ । ଯୀଶୁଖ୍ରୀଷ୍ଟଙ୍କର ପର୍ବତ ଶିଖରରେ ଦେଇଥିବା ଉପଦେଶ ନିଜ ଗୁଣରେ ମହତ୍ତ୍ୱପୂର୍ଣ୍ଣ; ଏଥିପାଇଁ ତାଙ୍କର ଜଳ ଉପରେ ଚାଲିବା ଓ ଡିମ୍ବିରିଗଛକୁ ଅଭିଶାପ ଦେବାର ଅବତାରଣା କରିବାର ଯଥାର୍ଥତା ନାହିଁ । ଚନ୍ଦ୍ରକୁ ଭାଙ୍ଗିଦେବା ପରି ଅଲୌକିକ ଘଟଣା ବ୍ୟତୀତ କୋରାନରେ ରହିଥିବା ଉପଦେଶାବଳୀ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ଏହି ମହାତ୍ମାମାନଙ୍କର ଜୀବନ ସହିତ ଅଲୌକିକତା ସଂଶ୍ଳିଷ୍ଟ କରିବା ଦ୍ୱାରା ସେମାନଙ୍କର ମହନୀୟତା ବୃଦ୍ଧି ପାଇବା

ପରିବର୍ତ୍ତେ ବରଂ ସେମାନଙ୍କୁ ସାଧାରଣ ଜନଗଣଙ୍କ ପାଖରୁ ଦୂରେଇ ନିଆଯାଇଛି । ଫଳରେ ଲୋକମାନେ ସେମାନଙ୍କ ସଦ୍‌ଗୁଣର ଅଧିକାରୀ ହେବାକୁ ସଚେଷ୍ଟ ହେବା ପରିବର୍ତ୍ତେ ସେମାନଙ୍କୁ ପୂଜାର ସାମଗ୍ରୀ କରି ଦେଇଛନ୍ତି । ପରବର୍ତ୍ତୀ ଯୁଗରେ ଯେଉଁମାନଙ୍କୁ ଅବତାର କରିଦିଆଗଲା ସେମାନେ ନିଜ ଜୀବନକାଳ ଭିତରେ ସାଧାରଣ ମଣିଷ ପରି ଜୀବନ ବଞ୍ଚିଥିଲେ ଓ ସାଧାରଣ ମଣିଷ ପ୍ରତି ଅନୁଗତ ରହିଥିଲେ । ଅବଶ୍ୟ ସେମାନେ ବଳିଷ୍ଠ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ ଓ ସମସ୍ତଙ୍କର ସୁଖଶାନ୍ତିମୟ ଜୀବନ କାମନା କରୁଥିଲେ । ଏପରିକି ସେମାନେ ନିଜ ସମୟର ପୁରୋହିତ, ଏକଛତ୍ରବାଦୀ ଶାସକ ଓ ସମ୍ରାଟମାନଙ୍କ ଦ୍ୱାରା ଘୃଣିତ ହୋଇଛନ୍ତି । ସେହି ମହାତ୍ମାମାନଙ୍କର ଅନ୍ତଃପ୍ରଜ୍ଞା ବୋଲି ଯାହା କୁହାଯାଉଛି ସେସବୁ କେବଳ କଳ୍ପନା ମାତ୍ର । ବିନା ଅନୁଶୀଳନରେ ମହାତ୍ମାମାନଙ୍କର ଅନ୍ତଃପ୍ରଜ୍ଞାକୁ ଗ୍ରହଣ କରିହୁଏ ନାହିଁ । ବ୍ରିଟିଶ ଔପନିବେଶିକ ଶାସନରୁ ଭାରତକୁ ଏକ ସ୍ୱାଧୀନ ରାଷ୍ଟ୍ର କରିବା ପାଇଁ ଜାତୀୟ ଆନ୍ଦୋଳନକୁ ନେତୃତ୍ୱ ଦେବା ଅବସରରେ ଗାନ୍ଧୀ ଅନେକ କ୍ଷେତ୍ରରେ ନିଜର କାର୍ଯ୍ୟ ହିମାଳୟ ସଦୃଶ ଭୁଲ ବୋଲି ନିଜେ ସ୍ୱୀକାର କରିଛନ୍ତି । ସୁତରାଂ ସତ୍ୟତା ଓ ଉପାଦେୟତା ଉଭୟ ଦୃଷ୍ଟିରୁ ତଥାକଥିତ ଅତୀନ୍ଦ୍ରିୟ ପ୍ରତ୍ୟକ୍ଷ-ଗୁଡ଼ିକର ମୂଲ୍ୟାୟନ ହେବା ଦରକାର । ସେହିପରି ବୈଜ୍ଞାନିକ ବିଶ୍ଳେଷଣ ପୁନର୍ଜନ୍ମ ବିଶ୍ୱାସକୁ ଭିତ୍ତିହୀନ ବୋଲି ପ୍ରମାଣ କରିଛି । ହିନ୍ଦୁମାନେ ପୁନର୍ଜନ୍ମରେ ବିଶ୍ୱାସ କରୁଥିବାରୁ ତତ୍‌ଜନିତ ଘଟଣା ବିଷୟରେ ଉଲ୍ଲେଖ କରିଥାନ୍ତି ଅଥଚ ମୁସଲମାନ ବା ଖ୍ରୀଷ୍ଟିଆନ ଧର୍ମଧାରଣାରେ ଏହି ବିଶ୍ୱାସ ନଥିବାରୁ ସେମାନେ ଏହା ଭାବିବାର ଅବକାଶ ନଥାଏ ।

ଆମର କଳ୍ପନା ସକଳକୁ ପ୍ରଣାଳୀବଦ୍ଧ କରିବା ସହିତ ସେଗୁଡ଼ିକର ସମ୍ଭାବନାକୁ ସ୍ପଷ୍ଟ କରିବା ଦିଗରେ ତର୍କ ଓ ଜ୍ଞାନ ମୀମାଂସାଜନିତ ବିଶ୍ଳେଷଣ ସାହାଯ୍ୟ କରିଥାଏ । କିନ୍ତୁ ବାସ୍ତବ ଘଟଣା ସହିତ ସହମତ ନହେଲେ କୌଣସି ବିଶ୍ୱାସ ସତ୍ୟ ହୋଇଯାଏ ନାହିଁ । ଅର୍ଥାତ୍ କୌଣସି ବିଶ୍ୱାସ ଯେତେ ତର୍କସମ୍ମତ, ଗ୍ରହଣଯୋଗ୍ୟ ଓ ଧର୍ମସଙ୍ଗତ ହେଲେ ବି ବିନା ପ୍ରମାଣ ଓ ସତ୍ୟାପନ ବ୍ୟତୀତ ସତ୍ୟ ବୋଲି ଗ୍ରହଣଯୋଗ୍ୟ ହେବ ନାହିଁ । ବାସ୍ତବ ଘଟଣାଠାରୁ କଳ୍ପନାପ୍ରସୂତ କାହାଣୀ ପର୍ଯ୍ୟନ୍ତ ସବୁ କିଛି ମଣିଷ ନିଜର ଅବବୋଧ ଭିତରେ ଆଣିଥାଏ । ବାସ୍ତବ ଘଟଣା ଓ କଳ୍ପନାପ୍ରସୂତ ଅନୁମାନ ଭିତରେ ଆମର ବିଶ୍ୱାସ ସକଳ ଦୋଳାୟମାନ ହେଉଥାଏ, କିନ୍ତୁ କେଉଁଗୁଡ଼ିକ ତଥ୍ୟ ଆଧାରିତ ସତ୍ୟ ଓ କେଉଁଗୁଡ଼ିକ ନିଛକ କଳ୍ପନା ତାହା ପ୍ରତ୍ୟକ୍ଷ ସତ୍ୟାପନ ଦ୍ୱାରା ସ୍ଥିର କରାଯାଇଥାଏ ।

ବିଶ୍ୱାସଗୁଡ଼ିକୁ ତଥ୍ୟ ବୋଲି ଗ୍ରହଣ କରିବା ହେଉଛି ଅଧିକ ବିଚାରବୋଧର ଦୁର୍ବଳତା । ଈଶ୍ୱର, ଆତ୍ମା, ପର ଜଗତ ଓ ପୁନର୍ଜନ୍ମରେ କେହି ବିଶ୍ୱାସ କରି-ପାରନ୍ତି କିନ୍ତୁ ଏଗୁଡ଼ିକ ବିଶ୍ୱାସ ମାତ୍ର, ତଥ୍ୟ ଆଧାରିତ ନୁହେଁ । ଏପରିକି ସେଗୁଡ଼ିକ

ଅପ୍ରମାଣିତ ତଥ୍ୟ ମଧ୍ୟ ନୁହନ୍ତି । ସ୍ୱାଧୀନ ସଂକଳ୍ପ ଏହି ପାରଲୌକିକ ବିଶ୍ୱାସକୁ ମିଥ୍ୟା ବୋଲି ଦର୍ଶାଇଥାଏ । ଏକ ସର୍ବଶକ୍ତିମାନ୍ ଈଶ୍ୱର ପ୍ରତୀତ ସ୍ୱାଧୀନ ସଂକଳ୍ପର ପରିପନ୍ଥୀ ହୋଇଥିବାରୁ ଏହାକୁ ଅତି ବେଶିରେ ଏକ ବିଶ୍ୱାସ ଭାବରେ ନିଆଯାଇ ପାରେ । ଏହା ଏକ କାଳ୍ପନିକ ବିଶ୍ୱାସ, ଯଦିବା ଅତୀତରେ ଏହି ବିଶ୍ୱାସ ଉପଯୋଗୀ ହୋଇଛି ।

ଆସ୍ତିକତାବାଦୀ ଦର୍ଶନର ସାରମର୍ମ ହେଉଛି ପୂର୍ବନିର୍ଦ୍ଧିଷ୍ଟବାଦ । ଏହି ପୂର୍ବ ନିର୍ଦ୍ଧାରକ ଈଶ୍ୱର ବା ସ୍ୱର୍ଗୀୟସର ଆଧ୍ୟାତ୍ମିକ ଶକ୍ତି ହୋଇପାରେ ଅଥବା କାର୍ଯ୍ୟକାରଣବାଦ, ପ୍ରାକୃତିକ ନିୟମ, ପ୍ରଜନନ ଗଠନ ପ୍ରକ୍ରିୟା, ପାରମାଣବିକ ଶକ୍ତି, ଉତ୍ପାଦନ ସାଧନ, ରକ୍ତଶକ୍ତି ବା କୌଣସି ବାହ୍ୟିକ ଶକ୍ତି ପରି ବସ୍ତୁବାଦୀ ଉପାଦାନ ହୋଇପାରେ । ଏହା ଯାହା ହେଉନା କାହିଁକି ଆସ୍ତିକତାବାଦୀମାନେ ସେମାନଙ୍କର ଜୀବନ ଯେ ପୂର୍ବନିର୍ଦ୍ଧିଷ୍ଟ ଓ କୌଣସି ଶକ୍ତିଦ୍ୱାରା ସମ୍ପୂର୍ଣ୍ଣ ନିୟନ୍ତ୍ରିତ, ଏହା ବିଶ୍ୱାସ କରିଥାନ୍ତି । କିନ୍ତୁ ବାସ୍ତବ ଅନୁଭୂତି ବ୍ୟକ୍ତି ଭିତରେ ଥିବା ସ୍ୱାଧୀନ ସଂକଳ୍ପକୁ ସ୍ୱୀକାର କରେ । ସୁତରାଂ ପୂର୍ବ ନିର୍ଦ୍ଧିଷ୍ଟବାଦ ଅମୂଳକ ଓ ଏଥିରେ ବିଶ୍ୱାସ ଏକ ଦାସତ୍ୱ ମନୋବୃତ୍ତି ଦ୍ୱାରା ପରିଚାଳିତ ଯାହାକି ଆସ୍ତିକତାବାଦୀ ଦର୍ଶନର ମୂଳଭିତ୍ତି ଅଟେ ।

ନାସ୍ତିକବାଦ ବ୍ୟକ୍ତି ସ୍ୱତନ୍ତ୍ରତାକୁ ଗୁରୁତ୍ୱ ଦେଇଥାଏ । ନାସ୍ତିକବାଦୀ ବିଶ୍ୱାସ ଓ ତଥ୍ୟ ଭିତରେ ପାର୍ଥକ୍ୟ ଦେଖାଇ ସତ୍ତାର ଅବବୋଧ କରିଥାଏ । ସେମାନେ ଅପରୋକ୍ଷ ଜ୍ଞାନଲଭ କ୍ଷେତ୍ରରେ କଳ୍ପନାର ଭୂମିକାକୁ ଗ୍ରହଣ କରିଥାନ୍ତି । ସେମାନେ ନାନା ପ୍ରକଳ୍ପକୁ ପରୀକ୍ଷା କରି ସିଦ୍ଧାନ୍ତମାନ ସୃଷ୍ଟି କରିବା ସହିତ ମନୋ-ହାରୀ କଳ୍ପନାକୁ ଉପଭୋଗ କରିଥାନ୍ତି । କିନ୍ତୁ ସେମାନେ ଆସ୍ତିକତାବାଦୀମାନଙ୍କ ପରି ଶଙ୍କିତ ଭାବରେ ସେମାନଙ୍କର ସ୍ୱାଧୀନ ବିଚାରକୁ ବନ୍ଦ କରିଦିଅନ୍ତି ନାହିଁ । ଆସ୍ତିକତାବାଦୀମାନେ ସେମାନଙ୍କର ବିଶ୍ୱାସକୁ ବିନା ତଥ୍ୟରେ ସତ୍ୟ ବୋଲି ଗ୍ରହଣ କରି ନିଜ ବିଶ୍ୱାସର ପରିସୀମା ଭିତରେ ଆବଦ୍ଧ ରହିଯାନ୍ତି । ଅଥଚ ନାସ୍ତିକବାଦୀ-ମାନେ ଖୋଲି ମନନେଇ ସବୁକିଛିକୁ ପର୍ଯ୍ୟବେକ୍ଷଣ କରନ୍ତି ଓ ପରୀକ୍ଷିତ ତଥ୍ୟ ଭିତ୍ତିରେ ବିଶ୍ୱାସଗୁଡ଼ିକର ସତ୍ୟାସତ୍ୟ ନିରୂପଣ କରନ୍ତି ।

ନାସ୍ତିକବାଦୀ ଦର୍ଶନର ଅଭିମୁଖ୍ୟ ହେଉଛି—ଯାହା ପରୀକ୍ଷିତ ଓ ବ୍ୟକ୍ତି ପାଇଁ ଉପଯୋଗୀ ତାହା ଗ୍ରହଣ କରିବା ଅଥଚ ଯାହା ପରୀକ୍ଷିତ ନୁହଁ ଓ ଅନୁପଯୋଗୀ ତାହାକୁ ମାତ୍ର ଏକ ମତଭାବରେ ନେବା । ଜ୍ଞାନର ପରିସରକୁ ବୃଦ୍ଧି କରିବା କ୍ଷେତ୍ରରେ କୌଣସି ମତକୁ ଗ୍ରହଣ କରି ତା'ର ବିଶ୍ଳେଷଣ କରିବା ଏକ ଶୃଙ୍ଖଳା । ସ୍ୱାଧୀନ ଭାବରେ କୌଣସି ମତ ପୋଷଣ କରିବାର ଅଧିକାର ନରହିଲେ

ମଣିଷର ସୃଜନଶୀଳତା ବ୍ୟାହତ ହୋଇଥାଏ । ଅବଶ୍ୟ ଯେକୌଣସି ମତର ସତ୍ୟତା ତା'ର ପରୀକ୍ଷା ଓ ଉପଯୋଗିତା ଉପରେ ନିର୍ଭରକରେ । ଜ୍ଞାନଲାଭ କ୍ଷେତ୍ରରେ ନିରୀଶ୍ୱରବାଦ ଏକ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରେ । ଯେକୌଣସି ମତକୁ ସମ୍ମାନ କଲେ ବି ଗୋଟିଏ ମତର ସତ୍ୟତା ଏହାର ବସ୍ତୁନିଷ୍ଠ ପରୀକ୍ଷଣ ଉପରେ ଯେ ନିର୍ଭର କରେ ଏହା ନିରୀଶ୍ୱରବାଦ ଗ୍ରହଣ କରିଥାଏ ।

ବିଚାର ବିମର୍ଶ କ୍ଷେତ୍ରରେ ନିରୀଶ୍ୱରବାଦ ବ୍ୟକ୍ତିର ସ୍ୱାଧୀନତାକୁ ପ୍ରଥମେ ଗ୍ରହଣ କରିଥାଏ । ଏହାକୁ ସ୍ୱୀକାର କରିବାଦ୍ୱାରା ହିଁ ଆମେ ନାନା କଥାର ପରିକଳ୍ପନା ସହିତ ନାନା ସିଦ୍ଧାନ୍ତଗୁଡ଼ିକର ଯଥାର୍ଥ ମୂଲ୍ୟାୟନ କରିପାରିବା । କିନ୍ତୁ ଅସ୍ତିକତାବାଦୀ ବିଚାର ବିମର୍ଶରେ ସ୍ୱାଧୀନତା ହେଉଛି ଏକ ଭ୍ରାନ୍ତି । କାରଣ ଆମ ବିଚାରର ସ୍ୱତନ୍ତ୍ରତା ବୋଲି ଯାହା କୁହାଯାଉଛି ତାହା ସମ୍ପୂର୍ଣ୍ଣ ଭାବରେ ପୂର୍ବ ନିର୍ଦ୍ଧାରିତ । ଏହା କୌଣସି ଇଶ୍ୱରୀୟ ବ୍ୟବସ୍ଥା, ଭାଗ୍ୟ, କାର୍ଯ୍ୟକାରଣବୋଧ, ଦ୍ୱନ୍ଦ୍ୱାତ୍ମକ ପ୍ରଗତି, ବିବର୍ତ୍ତନବାଦ ବା ଐତିହାସିକ ନିଶ୍ଚିତତା ଦ୍ୱାରା ସମ୍ପୂର୍ଣ୍ଣଭାବରେ ନିୟନ୍ତ୍ରିତ । ମାର୍କସୀୟ ବସ୍ତୁବାଦୀ ବିଶ୍ଳେଷଣରେ ଏହା କୁହାଯାଇଥାଏ ଯେ ସାମାଜିକ ବ୍ୟବସ୍ଥା ଓ ଆମର ଦୃଷ୍ଟିଭଙ୍ଗୀ ଜୀବନର ବସ୍ତୁଗତ ଆବଶ୍ୟକତା ନେଇ ପରିପୁଷ୍ଟ ହୋଇଥାଏ । ସମ୍ପତ୍ତି ବା ଉତ୍ପାଦନର ସାଧନ ଉପରେ ମାଲିକାନାକୁ ନେଇ ମଣିଷର ସଂସ୍କୃତି ସାମନ୍ତବାଦୀ, ପୁଞ୍ଜିବାଦୀ, ବୁର୍ଜୁଆବାଦୀ ବା ଶ୍ରମଜୀବୀବାଦୀ ହୋଇପାରେ । ବସ୍ତୁତଃ ଧର୍ମୀୟ ବ୍ୟବସ୍ଥାରେ ବ୍ୟକ୍ତିର ସ୍ୱତନ୍ତ୍ରତାକୁ ବା ସ୍ୱାଧୀନ ସଂକଳ୍ପକୁ ଯେପରି ଅସ୍ୱୀକାର କରାଯାଇଛି ମାର୍କସୀୟ ଦର୍ଶନରେ ଏକ ଭିନ୍ନ ମାନଦଣ୍ଡରେ ମଧ୍ୟ ତାହା ହୋଇଛି ।

ସେହିପରି ଶଙ୍କର ଦର୍ଶନରେ ମାୟାବାଦ ସିଦ୍ଧାନ୍ତୀୟ ଯୁକ୍ତି ବାସ୍ତବବାଦୀ ନହୋଇ ଅଧିକ ବୁଦ୍ଧିବାଦୀ ମନେହୁଏ । ମାୟାବାଦର ମୁଖ୍ୟ ପ୍ରବକ୍ତା ଶଙ୍କରାଚାର୍ଯ୍ୟ ବ୍ରହ୍ମଙ୍କର ଅସ୍ତିତ୍ୱକୁ ପ୍ରତିଷ୍ଠା କରିବାକୁ ଯାଇ ବ୍ୟକ୍ତିର ସ୍ୱାଧୀନ ସଂକଳ୍ପକୁ ଅସ୍ୱୀକାର କରୁଥିବା ଯୁକ୍ତି ଏକ ପ୍ରହେଳିକା ପରି ମନେହୁଏ । ମଣିଷର ସ୍ୱାଧୀନ ସଂକଳ୍ପ ରହିଛି କି ନାହିଁ ଯୁକ୍ତି କରିବା ହେଉଛି ଏକ ସ୍ୱାଧୀନ ବିଚାରର ଅବତାରଣା କରିବା । ଏକ କଠିନ ଶିଳାକୁ ଗୋଡ଼ରେ ଠେଲିଦେଇ ସାରିବା ପରେ ଏହାର ଅସ୍ତିତ୍ୱକୁ ଅସ୍ୱୀକାର କରିବା ଯାହା, ନିଜର ସ୍ୱାଧୀନ ପ୍ରଚେଷ୍ଟା, ସଂକଳ୍ପ ଓ ଅସ୍ତିତ୍ୱକୁ ମାୟା ବୋଲି ଗ୍ରହଣ କରିବା ଠିକ୍ ସେହିପରି ମନେହୁଏ । ମୁଁ ବର୍ତ୍ତମାନ ଯାହା ଲେଖୁଛି ଓ ଆପଣ ଯାହା ପଢ଼ୁଛନ୍ତି ଏସବୁ ଭ୍ରମ ଓ ମାୟା ବୋଲି କହିବା କୌତୁକପ୍ରଦ ନୁହେଁ କି ?

ଅଧ୍ୟାତ୍ମବାଦ ବା ବସ୍ତୁବାଦ ଯେଉଁ ଦୃଷ୍ଟିକୋଣରୁ ହେଉନା କାହିଁକି ବ୍ୟକ୍ତି ସ୍ୱାଧୀନତାକୁ ଅସ୍ୱୀକାର କରିବାଦ୍ୱାରା ନୈତିକତା ନିରର୍ଥକ ହୋଇପଡ଼େ । ନିଜର

କାର୍ଯ୍ୟ ପାଇଁ କେହି ଅଙ୍ଗୀକାରବଦ୍ଧ ନରହିଲେ ନୀତିବାନ୍ ହୋଇପାରିବେ ନାହିଁ । ଭଲମନ୍ଦ ବିଗ୍ଭର କରିବା ପାଇଁ—ତାହା ଯେକୌଣସି ମାନଦଣ୍ଡରୁ ହେଉନା କାହିଁକି—ଜଣଙ୍କର ସ୍ୱାଧୀନତା ନରହିଲେ ଦାୟିତ୍ୱବୋଧ ସୃଷ୍ଟି ହୋଇପାରିବ ନାହିଁ । ନୈତିକ ଆଚରଣ ପ୍ରତି ପ୍ରୋତ୍ସାହନ ବା ସାମାଜିକ ସମ୍ମାନ ନରହିଲେ କୌଣସି ସାମାଜିକ ସଙ୍ଗ ବା ଶୃଙ୍ଖଳା ସମ୍ଭବ ହେବନାହିଁ । ଯେହେତୁ ଭଲମନ୍ଦର ବିଗ୍ଭର, ନୈତିକତା ଓ ଶୃଙ୍ଖଳାବୋଧ ଆମର ରହିଛି ସେହେତୁ ଆମର ସ୍ୱାଧୀନ ସଙ୍କଳ୍ପ ମଧ୍ୟ ରହିଛି । ଅଥଚ ମାୟାବାଦ ଏକ ଚତୁର ଫନ୍ଦି ଭିତରେ ଏହି ନୈତିକ ଦାୟିତ୍ୱବୋଧକୁ ଅସ୍ୱୀକାର କରିଥାଏ ଅଥବା ଈଶ୍ୱରୀୟ ଧାରଣାକୁ କେତେକ ଯୌକ୍ତିକ ଯୁକ୍ତି ଆଳରେ ପ୍ରତିଷ୍ଠା କରିବାକୁ ପ୍ରଯତ୍ନ କରିଥାଏ । ବ୍ୟବହାରିକ ମାନଦଣ୍ଡରୁ ହିନ୍ଦୁମାନଙ୍କ ମଧ୍ୟରେ ଏହି ମାୟାବାଦର ପ୍ରଭାବ ଯୋଗୁଁ ସେମାନେ ଅନେକାଂଶରେ ଭାବବିଳାସୀ, ଶ୍ରମକାତର ଓ ଦାୟିତ୍ୱଶୂନ୍ୟ ମନେହୁଅନ୍ତି । ଏହି ଜୀବନାଦର୍ଶକୁ ପରିହାର କରି ସ୍ୱାଧୀନ ସଙ୍କଳ୍ପ ଓ ବ୍ୟକ୍ତିର ନୈତିକ ଅଙ୍ଗୀକାର-ବଦ୍ଧତାକୁ ସ୍ୱୀକାର କରିଯିବା ଆବଶ୍ୟକ । ତଦ୍ଦ୍ୱାରା ହିନ୍ଦୁମାନଙ୍କ ଭିତରେ ଏକ ଜାଗରଣ ସୃଷ୍ଟି ହୋଇପାରିବ ଓ ସାମାଜିକ ଜୀବନରେ କର୍ମପ୍ରବଣତା ଓ ବ୍ୟକ୍ତି ମର୍ଯ୍ୟାଦାବୋଧ ସୃଷ୍ଟି ହେବ ।

ନିରୀଶ୍ୱରବାଦୀ ଅବବୋଧ ବ୍ୟକ୍ତି ସଙ୍କଳ୍ପର ନିରଙ୍କୁଶତାକୁ ପ୍ରକାଶ କରିଥାଏ । ଅବଶ୍ୟ ଏହାର ଅର୍ଥ ନୁହେଁ ଯେ ଜଣେ ମଣିଷ ଯାହା ଅଭିଳାଷ କରେ ତାହା ସେ ପୂର୍ଣ୍ଣଭାବେ ଲାଭକରେ । ସଂସାରରେ ମଣିଷ ନାନା ବସ୍ତୁ, ପାରିପାର୍ଶ୍ୱିକ ଘଟଣା ଓ ତା' ପରି ସ୍ୱାଧୀନ ସଂକଳ୍ପ ପୋଷଣ କରୁଥିବା ଅନ୍ୟମାନଙ୍କ ସହ ଜୀବନ ବଞ୍ଚିଥାଏ । ସେମାନେ କେତେବେଳେ ତା'ର ଅଭିଳାଷ ପ୍ରତି ଅନୁକୂଳ, କେତେବେଳେ ପ୍ରତିକୂଳ ବା ଉଦାସୀନ ହୁଅନ୍ତି । ତା'ର ସଂକଳ୍ପ ପୂରଣ ହେବା ଦିଗରେ ଏସବୁ ବାହ୍ୟ ପରିସ୍ଥିତିର ପ୍ରଭାବ ସମ୍ପୂର୍ଣ୍ଣ ଭାବରେ ରହିଥାଏ । କିନ୍ତୁ ନିଜ ସଙ୍କଳ୍ପର ଦୃଢ଼ତା ଦ୍ୱାରା ଜଣେ ବାହ୍ୟ ପରିସ୍ଥିତିକୁ ନିଜର ଅନୁକୂଳ ବି କରିପାରେ । ସୁତରାଂ ନିରୀଶ୍ୱରବାଦୀ ଦର୍ଶନରେ ବ୍ୟକ୍ତି ସଂକଳ୍ପର ଭୂମିକା ଗୁରୁତ୍ୱପୂର୍ଣ୍ଣ ମନେହୁଏ । ଆସ୍ତିକତାବାଦୀମାନେ ଏକ ବାହ୍ୟ ନିୟାମକ ଶକ୍ତିର ପ୍ରାଧାନ୍ୟକୁ ସ୍ୱୀକାର କରୁ-ଥିବାରୁ ତା' ପାଖରେ ନିଜକୁ ସମର୍ପଣ କରିଥାନ୍ତି । ଏହାଦ୍ୱାରା ସେମାନଙ୍କର ସଂକଳ୍ପ ଦୁର୍ବଳ ହୋଇଯାଏ ଓ ପରିସ୍ଥିତିକୁ ନିଜ ପାଇଁ ଅନୁକୂଳ କରାଇବା ପାଇଁ ଚେଷ୍ଟା କରିବା ପରିବର୍ତ୍ତେ ସେମାନେ ଏହାର ଦାସ ବୋଲି ନିଜକୁ ବିଗ୍ଭର କରନ୍ତି । ଏହାଦ୍ୱାରା ସେମାନେ ହୁଏତ ନିଜର ଅଭିଳାଷକୁ ସଙ୍କୁଚିତ କରି ଏକ ଅସହାୟ ଅବସ୍ଥାରେ ଜୀବନଧାରଣ କରନ୍ତି ଅଥବା ପରିସ୍ଥିତି ପ୍ରତି ଉଦାସୀନ ରହି ଈଶ୍ୱରଙ୍କର ଆଶୀର୍ବାଦ ପାଇଁ ପ୍ରାର୍ଥନା କରିଥାନ୍ତି । ବାହ୍ୟ ପରିସ୍ଥିତିକୁ ନିୟନ୍ତ୍ରଣ

କରିବା ପାଇଁ ସେମାନେ ନିଜର ପ୍ରଯୁକ୍ତିଗତ ଜ୍ଞାନ କୌଶଳକୁ ପ୍ରୟୋଗ କରିଥାନ୍ତି । ଏହା ସହିତ ନୈତିକ ଶୃଙ୍ଖଳା ଓ ସାମାଜିକ ସଙ୍ଗଠନ କରିଆରେ ସମସ୍ତଙ୍କର ସହଯୋଗ ଦ୍ୱାରା ପରିସ୍ଥିତିକୁ ନିୟନ୍ତ୍ରଣ କରିଥାନ୍ତି । ପରିସ୍ଥିତିକୁ ନିୟନ୍ତ୍ରଣ କରିବାରେ ସେମାନେ ଅସହାୟ ବୋଧ କରନ୍ତି ନାହିଁ ବା ଈଶ୍ୱରଙ୍କୁ ପ୍ରାର୍ଥନା କରି ବସନ୍ତି ନାହିଁ । ଜଣେ ଖେଳୁଆଡ଼ ଯେପରି ନିଜର ସହଯୋଗୀ ଓ ପ୍ରତିପକ୍ଷ ଉଭୟଙ୍କ ସହାୟତାରେ ଖେଳିବାକୁ ସମର୍ଥ ହୋଇଥାଏ ଜଣେ ନିରୀଶ୍ୱରବାଦୀ ସେହିପରି ଅନୁକୂଳ ଓ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇ ଏହା ଉପରେ ନିଜର ନିୟନ୍ତ୍ରଣ ଆଣିଥାଏ । ଜୀବନର ନାନା ଅନୁଭୂତି ମଧ୍ୟ ଦେଇ ସେ ପକ୍ୱତା ଲାଭ କରିଥାଏ ।

ବ୍ୟକ୍ତି ସ୍ୱାଧୀନତା ଓ ପରିସ୍ଥିତି ଉପରେ କର୍ତ୍ତୃତ୍ୱବୋଧରୁ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଉଦ୍ଭବ ହୁଏ । ବାସ୍ତବତାକୁ ଅବବୋଧ କରିବାରେ ବୈଜ୍ଞାନିକ ପ୍ରଣାଳୀ ନିରୀଶ୍ୱରବାଦୀ ପାଇଁ ଉପଯୋଗୀ ହୋଇଥାଏ । ବୈଜ୍ଞାନିକ ପ୍ରଣାଳୀ ସମ୍ପ୍ରତି ସମାଜରେ ଯଥେଷ୍ଟ ଆଦୃତ ହେବାରେ ଲାଗିଛି । ଏହାର ପ୍ରୟୋଗ ଦ୍ୱାରା ବୈଷୟିକ ଜ୍ଞାନକୌଶଳର ଯଥେଷ୍ଟ ଅଗ୍ରଗତି ହୋଇଛି । ଏପରିକି କଳାତ୍ମକ ଅଧ୍ୟୟନ କ୍ଷେତ୍ରରେ ବୈଜ୍ଞାନିକ ପଦ୍ଧତି ଅନୁସୃତ ହେଉଛି ଓ ଏହାକୁ ବି ବିଜ୍ଞାନ ବୋଲି ଆଖ୍ୟା ଦିଆଯାଉଛି । ଯଦିବା ଏ କ୍ଷେତ୍ରରେ ବୈଜ୍ଞାନିକ ଜ୍ଞାନ ସହିତ କେତେକ କୁସଂସ୍କାର ପରମ୍ପରାଗତ ପ୍ରଭାବ ଯୋଗୁଁ ମିଶି ରହିଛି ତଥାପି ନିରୀଶ୍ୱରବାଦୀ ବିଚାର ବିମର୍ଶର ବିକାଶ ଦ୍ୱାରା କୁସଂସ୍କାରଜନିତ ବିଶ୍ୱାସ ସବୁକୁ ଏଥିରୁ ପୃଥକ୍ କରିବା ସମ୍ଭବପର ହୋଇପାରିଛି ।

ଆସ୍ତିକତାବାଦୀମାନେ ଯେହେତୁ ସବୁକିଛି ଈଶ୍ୱରଙ୍କଦ୍ୱାରା ସୃଷ୍ଟ ବୋଲି ବିଶ୍ୱାସ କରନ୍ତି ସେମାନେ ଯେଉଁସବୁ ପ୍ରଶ୍ନ ଉତ୍ଥାପନ କରନ୍ତି ସେସବୁ ଯେ ଈଶ୍ୱରଙ୍କ ବିଧାନର ପରିଣାମ ଏହିପରି ଏକ ସହଜିଆ ଉତ୍ତରରେ ସନ୍ତୁଷ୍ଟ ହୋଇ ରହିଯା'ନ୍ତି । ଏହି ପ୍ରଶ୍ନ ତାଲରୁ ତାଲ ଦୀର୍ଘ ହୋଇପାରେ । ସେମାନଙ୍କର ଈଶ୍ୱର ସମ୍ବନ୍ଧୀୟ ପ୍ରଶ୍ନ ଓ ଉତ୍ତର ବାସ୍ତବ ଜୀବନ ସହିତ ଅସମ୍ପର୍କିତ; ଏଗୁଡ଼ିକ କେବଳ ଏକ ପାରମ୍ପରିକ ବିଶ୍ୱାସ ଛଡ଼ା ଅନ୍ୟକିଛି ନୁହେଁ । କିନ୍ତୁ ସେମାନଙ୍କର ବାସ୍ତବ ଅନୁସନ୍ଧିତ୍ସା ପାଇଁ ସେମାନଙ୍କୁ ଅସ୍ତିକତାବାଦ ପରିସର ବାହାରକୁ ଯିବାକୁ ହୋଇଥାଏ । ଅପର ପକ୍ଷରେ ନିରୀଶ୍ୱରବାଦୀମାନେ ବାସ୍ତବବାଦୀ ଓ ସେମାନଙ୍କର ସକଳ ଅନୁସନ୍ଧିତ୍ସା ବାସ୍ତବ ଜୀବନ ପାଇଁ ଯେପରି ଉପଯୋଗୀ ବୈଜ୍ଞାନିକ ମାନଦଣ୍ଡରୁ ମଧ୍ୟ ସେହିପରି ସୁବ୍ୟବସ୍ଥିତ । ଅସ୍ତିକତାବାଦୀମାନେ ବିଚାର ବିମର୍ଶ ପରି ସକଳ ଅନୁସନ୍ଧିତ୍ସାକୁ ଈଶ୍ୱରଙ୍କ ସର୍ଜନା ନାମରେ ଚପାଇ ଦେବାର ଅବକାଶ ଏଥିରେ ନଥାଏ ।

ଯଥାର୍ଥ ଜ୍ଞାନ ଓ କାରଣଗତ ବିଜ୍ଞାନ ସାହାଯ୍ୟରେ ମୌଳିକ ବସ୍ତୁର ନିୟନ୍ତ୍ରଣ, ରୋଗ ପ୍ରତିଷେଧ ଓ ଆୟୁଃ ବୃଦ୍ଧି ଇତ୍ୟାଦି ସମ୍ଭବପର ହୋଇଛି । ଜ୍ଞାନର ପରିସର ଯେତିକି ଯେତିକି ବୃଦ୍ଧି ହେଉଛି, ଜରା, ମୃତ୍ୟୁ ଇତ୍ୟାଦି ସମ୍ପର୍କରେ ମଣିଷ ସେତିକି ନୂତନ ତଥ୍ୟ ଜାଣିବାକୁ ସମର୍ଥ ହୋଇଛି । ଜୀବାଣୁ ଓ ପ୍ରାକୃତିକ ମୃତ୍ୟୁବାହିତ ଜନନକ୍ଷମ ଭୂତାଣୁମାନଙ୍କ ସମ୍ପର୍କରେ ଅଧ୍ୟୟନ ଦ୍ୱାରା ଏସବୁକୁ ନିୟନ୍ତ୍ରିତ କରିବା ହୁଏତ ସମ୍ଭବପର ହୋଇପାରେ । ଯେଉଁସବୁ ପ୍ରଶ୍ନଗୁଡ଼ିକ ଆସ୍ତିକତାବାଦୀମାନେ ଭାଗ୍ୟର ଫଳ ବୋଲି ଛାଡ଼ି ଦେଉଥିଲେ ସେସବୁର ଅଧ୍ୟୟନ ଦ୍ୱାରା ସେ ସମ୍ବନ୍ଧରେ ଆମର ପ୍ରାଚୀନ ଧାରଣାଗୁଡ଼ିକ ବଦଳି ଯିବାରେ ଲାଗିଛି । ବ୍ୟକ୍ତି ବ୍ୟକ୍ତି ଭିତରେ ରହିଥିବା ପ୍ରଭେଦ କଥା କହି ମଣିଷ ମଣିଷ ଭିତରେ ଯେଉଁ ପ୍ରାଚୀର ଛିଡ଼ା କରାଯାଇଛି ନିରୀଶ୍ୱରବାଦ ତାହାକୁ ପ୍ରତ୍ୟାଖ୍ୟାନ କରିଥାଏ । ସବୁ ମଣିଷଙ୍କୁ ସମାନ ବୋଲି ବିଚାର କରି ସମସ୍ତଙ୍କ ଭିତରେ ବୈବାହିକ ବା ସାମାଜିକ ସମ୍ପର୍କର ପ୍ରତିଷ୍ଠା ସମ୍ଭବ ବୋଲି ନିରୀଶ୍ୱରବାଦ ଗ୍ରହଣ କରିଥାଏ । ବସ୍ତୁତଃ ବଂଶଗତ, ଜାତିଗତ, ସାଂସ୍କୃତିକ ବା ଜାତୀୟତା ନେଇ ରହିଥିବା ପ୍ରାଚୀନ ବିଭେଦ ସକଳକୁ କେବଳ ଭାବଗତ ପାର୍ଥକ୍ୟ କହିବା ଛଡ଼ା ଏହା ପଶ୍ଚାତରେ କୌଣସି ବଳିଷ୍ଠ ଭିତ୍ତି ଥିବା ମନେହୁଏ ନାହିଁ । କେବଳ ନିଜ ସ୍ୱାର୍ଥର ଚରିତାର୍ଥ ପାଇଁ ଅସତ୍ ଉଦ୍ଦେଶ୍ୟ ରଖି କେତେକ ବ୍ୟକ୍ତି ମଣିଷ ମଣିଷ ଭିତରେ ସାଂପ୍ରଦାୟିକ ବିଭେଦ ବଜାୟ ରଖିବାକୁ ଚାହିଁଥାନ୍ତି ।

ନିରୀଶ୍ୱରବାଦ ମଣିଷର ଦୃଷ୍ଟିଭଙ୍ଗୀକୁ ବ୍ୟାପକ କରାଇବା ସହିତ ମଣିଷ ମଣିଷ ଭିତରେ ଥିବା ବିଭେଦକୁ ସଙ୍କୁଚିତ କରିଥାଏ । ପବିତ୍ର ଧର୍ମଗ୍ରନ୍ଥମାନଙ୍କ ଭିତରେ ଥିବା ପାର୍ଥକ୍ୟ ଯଦିଓ ମଣିଷ ମଣିଷ ଭିତରେ ବିଭେଦ ସୃଷ୍ଟି କରିବାରେ ସହାୟକ ହୁଏ ତେବେ ଏହି ଧର୍ମଗ୍ରନ୍ଥଗୁଡ଼ିକ ଆଦୌ ପବିତ୍ର ନୁହନ୍ତି । ଧର୍ମଗ୍ରନ୍ଥଗୁଡ଼ିକ ଯଦିବା ସୁ ଉଦ୍ଦେଶ୍ୟରେ ମହାନ୍ ବ୍ୟକ୍ତିମାନଙ୍କ ଦ୍ୱାରା ପ୍ରଣୀତ, ତଥାପି ସେଗୁଡ଼ିକ ସୀମିତ ଜ୍ଞାନ ଉପରେ ଆଧାରିତ ଓ ଅଭ୍ରାନ୍ତ ନୁହଁ । ସେମାନଙ୍କର ପ୍ରାଚୀନତା ପାଇଁ ସେମାନଙ୍କୁ ପବିତ୍ର ଭାବିବା ଉଚିତ ନୁହେଁ । କୌଣସି ବିଷୟରେ କୌଣସି ଭାବନା ସବିଶେଷ ବା ଅନ୍ତିମ ବୋଲି ଭାବିବା ରୁଦ୍ଧ ମନୋଭାବର ପରିଚୟ ଦେଇଥାଏ । ରୁଦ୍ଧ ମନୋବୃତ୍ତି ନିଶ୍ଚେଷ୍ଟତା ଓ ଅବକ୍ଷୟତାର ପ୍ରତୀକ ଅଟେ । ଅଥଚ ଜୀବନ ହେଉଛି କ୍ରିୟାଶୀଳ ଓ ବିକାଶଶୀଳ । ସୁତରାଂ ପ୍ରାଚୀନ ବିଶ୍ୱାସ ସାଂପ୍ରତିକ ଭାବଧାରା ସହିତ ସ୍ଥଳବିଶେଷରେ ଅସଲଗ୍ନ ଓ ଏହାର ବିରୁଦ୍ଧ ବି ହୋଇପାରେ । ପରିଣାମତଃ ନିରୀଶ୍ୱରବାଦ ଏକ ମୁକ୍ତ ଦୃଷ୍ଟିଭଙ୍ଗୀକୁ ପ୍ରଶ୍ରୟ ଦେବା ସହିତ ଯାହା କିଛି ମାନବୀୟ ଐକ୍ୟ ଦିଗରେ ଅନ୍ତରାୟ ତାହାକୁ ପ୍ରତ୍ୟାଖ୍ୟାନ କରିଥାଏ ।

ଆସ୍ତିକତାବାଦୀ ଦର୍ଶନ କେତେକ ବୈଗୁରିକ ଶୃଙ୍ଖଳା ପ୍ରତିଷ୍ଠା କରିବାରେ ସମର୍ଥ ହୋଇଛି । କିନ୍ତୁ ଏହାର ଏକ ବଡ଼ ଦୁର୍ବଳତା ହେଉଛି ଏହା ବିନା

ପରୀକ୍ଷଣରେ ଏହାର ସିଦ୍ଧାନ୍ତଗୁଡ଼ିକୁ ସତ୍ୟ ବୋଲି ଗ୍ରହଣ କରି ନେଇଥାଏ। କିନ୍ତୁ ନାସ୍ତିକ୍ୟବାଦୀ ଦର୍ଶନ ସେହି ଶୃଙ୍ଖଳାକୁ ଗ୍ରହଣ କଲେ ବି ବସ୍ତୁନିଷ୍ଠ ପରୀକ୍ଷଣର ଭିତ୍ତି ଉପରେ ଏହାର ସିଦ୍ଧାନ୍ତକୁ ଅବତାରଣା କରିଥାଏ।

କାର୍ଯ୍ୟ-କାରଣ ନିୟମ ଆଧୁନିକ ବିଜ୍ଞାନର ବିମର୍ଶ କ୍ଷେତ୍ରରେ କେତେକ ଶୃଙ୍ଖଳା ପ୍ରତିଷ୍ଠା କରିପାରିଛି। ଘଟଣା ସକଳ କାର୍ଯ୍ୟକାରଣ ନିୟମ ଉପରେ ଆଧାରିତ ବୋଲି ଏହା ସୂଚାଇଥାଏ। ସାଦୃଶ୍ୟଜନିତ ବିଚାର ପରିବର୍ତ୍ତେ କାର୍ଯ୍ୟକାରଣବାଦ ନିୟମକୁ ଗ୍ରହଣ କରିବା ଦ୍ୱାରା ଅନେକ କୁସଂସ୍କାର ଦୂର ହୋଇପାରିଛି। ପ୍ରତ୍ୟେକ କାର୍ଯ୍ୟର କିଛି ପ୍ରାକୃତିକ କାରଣ ରହିଛି ବୋଲି ଗ୍ରହଣ କରିବା ଦ୍ୱାରା ଏହି ଜଗତର କେହି କର୍ତ୍ତା ରହିଛନ୍ତି ଏହି ବିଶ୍ୱାସ ଅମୂଳକ ଜଣାପଡ଼ୁଛି। ବସ୍ତୁତଃ ପ୍ରାର୍ଥନା ବା ପୂଜାରାଧନା ଅନାବଶ୍ୟକ ହୋଇପଡ଼ୁଛି। ଏହି ପର୍ଯ୍ୟନ୍ତ କାର୍ଯ୍ୟକାରଣ ବିଚାରଧାରା ଉପଯୋଗୀ ମନେ ହେଉଛି।

କିନ୍ତୁ ଏହି ଅବବୋଧ ଯେତେବେଳେ ଧରିନିଏ ଯେ କାରଣ ଓ କାର୍ଯ୍ୟ ଭିତରେ ଏକ ନିଶ୍ଚିତ ଓ ସାର୍ବିକ ସମ୍ବନ୍ଧ ରହିଛି ଏହା ତ୍ରୁଟିପୂର୍ଣ୍ଣ ହୋଇପଡ଼େ। କାର୍ଯ୍ୟକାରଣ ଶୃଙ୍ଖଳ ଭିତରେ ପ୍ରତ୍ୟେକଟି କାର୍ଯ୍ୟ ପୂର୍ବନିର୍ଦ୍ଦିଷ୍ଟ କାରଣ ଦ୍ୱାରା ସମ୍ପୂର୍ଣ୍ଣ ଭାବରେ ନିୟନ୍ତ୍ରିତ ବୋଲି ବିଚାର କରିବା ଦ୍ୱାରା ସ୍ୱାଧୀନ ସଂକଳ୍ପର ଅବକାଶ ରହିପାରେ ନାହିଁ। ଏହିଥିରୁ ହିଁ ଭାଗ୍ୟବାଦର ସୃଷ୍ଟି ହୁଏ। ବସ୍ତୁତଃ କାର୍ଯ୍ୟକାରଣଜନିତ ପୂର୍ବନିର୍ଦ୍ଦିଷ୍ଟବାଦ ଆତ୍ମସମର୍ପଣଜନିତ ଦୃଷ୍ଟିଭଙ୍ଗୀ ଦ୍ୱାରା ପରିଚାଳିତ ବୋଲି ମନେହୁଏ। ସୁତରାଂ ଅସ୍ତିକତାବାଦୀମାନେ କାର୍ଯ୍ୟକାରଣବାଦକୁ ଏକ ନିର୍ଦ୍ଦିଷ୍ଟ ଓ ସାର୍ବିକ ସତ୍ୟ ବୋଲି ଗ୍ରହଣ କରିଥାନ୍ତି। କିନ୍ତୁ ସ୍ୱାଧୀନ ବିଶ୍ଳେଷଣ ଦ୍ୱାରା କାର୍ଯ୍ୟକାରଣବାଦର ନିଶ୍ଚିତତା ଓ ସାର୍ବିକତା ତ୍ରୁଟିପୂର୍ଣ୍ଣ ବୋଲି ଜଣାପଡ଼େ। ସାର୍ବିକତା ଦୃଷ୍ଟିରୁ ବିଚାର କଲେ ଯଦି ପ୍ରତ୍ୟେକଟି କାର୍ଯ୍ୟର ଏକ କାରଣ ଥାଏ ତେବେ ଆଦିକାରଣର ମଧ୍ୟ ଏକ କାରଣ ରହିବା ସମ୍ଭବ। ଯଦି ଆଦିକାରଣ ବୋଲି ଯାହା କୁହାଯାଇଛି ତାହାର କୌଣସି କାରଣ ନାହିଁ ବୋଲି ଧରାଯାଏ ତେବେ ପ୍ରତ୍ୟେକଟି କାର୍ଯ୍ୟର ମଧ୍ୟ କାରଣ ରହିବ; ଏହା ଗ୍ରହଣ କରାଯାଇ ପାରିବ ନାହିଁ। ସୁତରାଂ କାର୍ଯ୍ୟକାରଣବାଦର ସାର୍ବିକତା ଓ ଆଦିକାରଣରେ ପ୍ରତ୍ୟୟ ତର୍କସମ୍ମତ ହେବା ପରିବର୍ତ୍ତେ ଅସଙ୍ଗତ ମନେହୁଏ। ସେହିପରି କାର୍ଯ୍ୟ-କାରଣ ନିୟମର ନିଶ୍ଚିତତାକୁ ଯେତେବେଳେ ପୂର୍ବନିର୍ଦ୍ଦିଷ୍ଟବାଦ ଭାବରେ ବିଚାର କରାଯାଏ ସେତେବେଳେ ନୈତିକ ଶୃଙ୍ଖଳା ନିରର୍ଥକ ହୋଇପଡ଼େ। କାରଣ ପ୍ରତ୍ୟେକଟି ଅନୈତିକ କାର୍ଯ୍ୟ ପୂର୍ବନିର୍ଦ୍ଦିଷ୍ଟ କର୍ମବାଦର ପରିଣାମ ବୋଲି ବିଚାର୍ଯ୍ୟ ହୁଏ। କର୍ମଫଳଜନିତ ପୂର୍ବନିର୍ଦ୍ଦିଷ୍ଟବାଦ ଦ୍ୱାରା ପରିଚାଳିତ ହେବା ଯୋଗୁଁ ହିନ୍ଦୁ ଦର୍ଶନ ଜନ୍ମାନ୍ତରବାଦକୁ ଗ୍ରହଣ କରିଥାଏ। କାରଣ ଗୋଟିଏ ଜନ୍ମରେ ଭୋଗ

ହୋଇନଥିବା କର୍ମର ଫଳକୁ ବ୍ୟକ୍ତି ପରଜନ୍ମରେ ଭୋଗ କରିବାକୁ ବାଧ୍ୟ ବୋଲି ଧରି ନିଆଯାଏ । ଯେପରି ଅନିବାର୍ଯ୍ୟକାରଣ ପ୍ରତ୍ୟୟଟି କାର୍ଯ୍ୟକାରଣବାଦରୁ ସୃଷ୍ଟି ହୋଇଥିଲେ ବି ସେହି ବିଚାରଧାରା ଭିତରେ ଅସଙ୍ଗତ ବୋଧହୁଏ ସେହିପରି କର୍ମଫଳ-ବାଦରୁ ସୃଷ୍ଟ ଅଦୃଷ୍ଟକର୍ମର ଧାରଣା ବି ଅବାନ୍ତର ମନେହୁଏ । ବସ୍ତୁତଃ କାର୍ଯ୍ୟକାରଣ-ବାଦ ନିୟମ ସାର୍ବିକ ଅଥବା ନିଶ୍ଚିତ ନୁହେଁ । କାର୍ଯ୍ୟକାରଣବାଦ ଓ ପୂର୍ବନିର୍ଦ୍ଦିଷ୍ଟ-ବାଦ ସ୍ୱାଧୀନ ସଂକଳ୍ପ ଓ ନୈତିକତାବୋଧ ବିଚାର ପରିପ୍ରେକ୍ଷୀରେ ତ୍ରୁଟିପୂର୍ଣ୍ଣ ଜଣାପଡ଼େ ।

ନିରୀଶ୍ୱରବାଦୀ ଦର୍ଶନ କାର୍ଯ୍ୟକାରଣ ନିୟମକୁ ଏକ ଭିନ୍ନ ମାନଦଣ୍ଡରେ ବିଚାର କରିଥାଏ । କାର୍ଯ୍ୟକାରଣ ସମ୍ବନ୍ଧକୁ ଏହା ନିଶ୍ଚିତ ବୋଲି ନନେଇ ସମ୍ଭାବ୍ୟ ବୋଲି ଧରିଥାଏ । ଦୁଇଟି ଘଟଣା ଭିତରେ କାର୍ଯ୍ୟକାରଣ ସମ୍ପର୍କ ନେଇ ଅନୁଭୂତିର ପରିସର ଯେତିକି ବ୍ୟାପକ ହୋଇଥାଏ ଦୁଇଟି ଘଟଣା ମଧ୍ୟରେ କାର୍ଯ୍ୟକାରଣ ସମ୍ବନ୍ଧର ସମ୍ଭାବନା ସେତିକି ଅଧିକ ହୋଇଥାଏ । ଅଥଚ ସେହି ପରିସର ଯେତିକି ସୀମିତ ଥାଏ ସେହି ସମ୍ଭାବନା ସେତିକି ସଙ୍କୁଚିତ ହୋଇଥାଏ । ଆଜିଠାରୁ ଦଶଦିନ ବା ଅଧିକ ଦିନ ତଳର ଘଟଣାକୁ ଜାଣିବା ଅପେକ୍ଷା କାଲିର ଘଟଣା ପ୍ରବାହକୁ ଜାଣିବା କ୍ଷେତ୍ରରେ ଅଧିକ ସମ୍ଭାବନା ରହିଥାଏ । କୌଣସି ଯୋଜନା କ୍ଷେତ୍ରରେ ଆମର ଅନୁମାନ ବା ପରିକଳ୍ପନା ଉପଯୋଗୀ ମନେହେଉଥିଲେ ବି ସେ କ୍ଷେତ୍ରରେ ରହିଥିବା ଅନିଶ୍ଚିତତା ଓ ବିଫଳତାକୁ ଅସ୍ୱୀକାର କରାଯାଇ ପାରିବନାହିଁ ।

ଏହି ଅନିଶ୍ଚିତବୋଧରୁ ସକଳ ଉଦ୍ୟୋଗ, ପରିକଳ୍ପନା ଓ ଆଦର୍ଶବୋଧ ରୂପ ନେଇଥାଏ । ଅନିଶ୍ଚିତତାର ଭୟ ଯୋଗୁଁ ଆସ୍ତିକତାବାଦୀମାନେ କାର୍ଯ୍ୟ-କାରଣ ସମ୍ବନ୍ଧକୁ ଏକ ନିଶ୍ଚିତ ନିୟମ ବୋଲି ଗ୍ରହଣ କରିଥାନ୍ତି । ଫଳରେ ଏହା ସେମାନଙ୍କର ଉଦ୍ୟମକୁ ବ୍ୟାହତ କରିବା ସଙ୍ଗେ ସଙ୍ଗେ ପୂର୍ବନିର୍ଦ୍ଦିଷ୍ଟବାଦକୁ ଉଦ୍ରେକ କରାଇଥାଏ । ଅପର ପକ୍ଷରେ ନିରୀଶ୍ୱରବାଦୀମାନେ ସାହସରସହିତ ସକଳ ସମ୍ଭାବନାକୁ ନିରୀକ୍ଷା କରି ନାନା ସଫଳତା ହାସଲ କରିଥାନ୍ତି । ସ୍ୱାଧୀନ ସଂକଳ୍ପ ଓ ନିଜସ୍ୱ ପ୍ରଚେଷ୍ଟା ଦ୍ୱାରା ସେମାନେ ଅନିଶ୍ଚିତତାକୁ ପରାହତ କରିପାରିଥାନ୍ତି । ତଥାପି ଜୀବନର ଘଟଣା ପ୍ରବାହ ଭିତରେ ନୈତିକ ଚରିତ୍ର, ପ୍ରତିଜ୍ଞା ଓ କର୍ତ୍ତବ୍ୟ ସମ୍ପାଦନ ଜୀବନରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ମନେହୁଏ ।

ନିରୀଶ୍ୱରବାଦୀ ଦର୍ଶନ ପରିପ୍ରେକ୍ଷୀରେ କାର୍ଯ୍ୟକାରଣ ନିୟମର ନିଶ୍ଚିତତା ବି ଗ୍ରହଣଯୋଗ୍ୟ ବୋଲି ଯୁକ୍ତି କରାଯାଇପାରେ । ନିରୀଶ୍ୱରବାଦରେ ଉଦ୍ୟମକୁ ପ୍ରତ୍ୟେକଟି ସଫଳତାର କାରଣଭାବେ ନିଆଯାଇଥିବାରୁ ଏ କ୍ଷେତ୍ରରେ ବି ନିୟମଟିର

ନିଶ୍ଚିତତାକୁ ସ୍ୱୀକାର କରାଯାଉଛି ବୋଲି କେହି ଦର୍ଶାଇ ପାରନ୍ତି । କିନ୍ତୁ ଏହି ପ୍ରକାରର ଯୁକ୍ତି ଦୁଇଟି କାରଣରୁ ତ୍ରୁଟିପୂର୍ଣ୍ଣ ମନେହୁଏ । ପ୍ରଥମତଃ କୌଣସି କ୍ଷେତ୍ରରେ କିଛି ସଫଳତା ପାଇଁ ନିରୀଶ୍ୱରବାଦୀମାନେ ସେ କ୍ଷେତ୍ରରେ ଉଦ୍ୟମକୁ ସବୁକିଛି ମନେକରନ୍ତି ନାହିଁ । ଉଦ୍ୟମ ସତ୍ତ୍ୱେ ବି ସ୍ଥଳବିଶେଷରେ କୌଣସି ସଫଳତା ନେଇ କେବଳ ସମ୍ଭାବନା ରହିଥାଏ । କେବଳ ସମସ୍ତ ପୂର୍ବଗାମୀ କାରଣ ସକଳକୁ ଅନୁଧ୍ୟାନ କରିବାଦ୍ୱାରା କୌଣସି ଘଟଣାର ପରିଣାମକୁ ନିଶ୍ଚିତ ଭାବେ ଅନୁମାନ କରିହେବନାହିଁ । କାରଣ ଘଟଣାବଳୀର ସ୍ୱରୂପ ଏପ୍ରକାର ଯେ ଏ କ୍ଷେତ୍ରରେ ଗାଣିତିକ ନିଶ୍ଚିତତା ରହିପାରିବ ନାହିଁ । ବସ୍ତୁ ସମ୍ପର୍କିତ ଘଟଣାବଳୀ ଅପେକ୍ଷା ମାନବୀୟ ଘଟଣାବଳୀ କ୍ଷେତ୍ରରେ ଏହି ଅନିଶ୍ଚିତତା ଅଧିକ ବୋଲି କୁହାଯାଇପାରେ । ଦ୍ୱିତୀୟତଃ କୌଣସି ସଫଳତା ପଶ୍ଚାତରେ ରହିଥିବା ଉଦ୍ୟମକୁ ଏକ କାରଣଭାବେ ନିଆଗଲେ ବି ଏହା ସୀମିତ ଅର୍ଥରେ ଏକ କାରଣ ହୋଇପାରେ । କାରଣ ଉଦ୍ୟମ ବା ପ୍ରଚେଷ୍ଟା କାରଣ ରହିତ ଅଟେ । ଏପରିକି କୌଣସି ଉଦ୍ୟମକୁ କାର୍ଯ୍ୟକାରଣ ନିୟମର ଏକ ପରିଣାମ ଭାବରେ ନେବା ଦ୍ୱାରା ଉଦ୍ୟମର ମୌଳିକତା ନଷ୍ଟ ହୋଇଯାଏ । ବସ୍ତୁତଃ କାର୍ଯ୍ୟକାରଣ ନିୟମର ଶୃଙ୍ଖଳା ପ୍ରତ୍ୟେକଟି ପ୍ରଚେଷ୍ଟା କ୍ଷେତ୍ରରେ ବାରମ୍ବାର ବିଡ଼ମ୍ବିତ ହୋଇ ରହୁଥାଏ । ଫଳରେ କାର୍ଯ୍ୟକାରଣ ନିୟମ କ୍ଷେତ୍ରର ସାର୍ବିକତା ରକ୍ଷା ହୋଇପାରେ ନାହିଁ । ସ୍ୱାଧୀନ ସଙ୍କଳ୍ପକୁ ଏକ କାରଣବିହୀନ କାରଣ ଭାବରେ ବିଚାର କରି କାର୍ଯ୍ୟକାରଣ ନିୟମର ସାର୍ବିକତାକୁ ପ୍ରତିପାଦନ କରିବା ଏକ ଶସ୍ତା ଯୁକ୍ତି ବୋଲି ପ୍ରତୀତ ହୁଏ ।

ପ୍ରାକୃତିକ ନିୟମର ଅବବୋଧ ମଧ୍ୟ ଆମ ଚିନ୍ତାସ୍ତରରେ ଏକ ଶୃଙ୍ଖଳା ପ୍ରତିଷ୍ଠା କରିବା ମନେହୁଏ । ପ୍ରାକୃତିକ ଘଟଣାବଳୀକୁ ସଂଯୋଜିତ କରାଯାଇ ତା'ର ସମ୍ଭାବ୍ୟ ବ୍ୟତିକ୍ରମକୁ ଅନୁଧ୍ୟାନ କରି ପ୍ରାକୃତିକ ନିୟମର ଅବତାରଣା କରାଯାଏ । ଏହାଦ୍ୱାରା ପ୍ରାକୃତିକ ଘଟଣାବଳୀକୁ ସୁବ୍ୟବସ୍ଥିତ ଭାବରେ ଅନୁଧ୍ୟାନ କରାଯାଏ ଓ ଏହାଦ୍ୱାରା ଚିନ୍ତା କରିବାର ସାମର୍ଥ୍ୟ ମଧ୍ୟ ବୃଦ୍ଧି ହୋଇଥାଏ । ଋତୁଚକ୍ରର ଆବର୍ତ୍ତନ ନିୟମକୁ ବିଶ୍ୱାସ କରି ଆମେ ଆମର କାର୍ଯ୍ୟକୁ ଯୋଜନାବଦ୍ଧ କରିଥାଉ । କିନ୍ତୁ ଗଭୀର ଅନୁଶୀଳନ ଦ୍ୱାରା ଏହା ସ୍ପଷ୍ଟ ହୁଏ ଯେ ପ୍ରାକୃତିକ ନିୟମଚୟ ପ୍ରାକୃତିକ ଘଟଣା ଭିତରେ ଅନ୍ତର୍ନିହିତ ହୋଇ ରହିନଥାଏ । ବରଂ ବସ୍ତୁସକଳ ସମ୍ବନ୍ଧରେ ଆମର ଅନୁଭୂତିକୁ ବିଶ୍ଳେଷଣ କରି ଆମେ ଏହି ନିୟମ ବିଷୟରେ ଧାରଣା, କରିଥାଉ । ଯେତେବେଳେ ନୂତନ ଘଟଣାବଳୀର ସନ୍ଧାନ ମିଳେ ଅଥବା ଉପସ୍ଥିତ ଘଟଣାବଳୀକୁ ଭିନ୍ନ ଭାବରେ ବିଶ୍ଳେଷଣ କରିବା ସମ୍ଭବ ହୁଏ ସେତେବେଳେ କୌଣସି ପ୍ରତିଷ୍ଠିତ ନିୟମକୁ ନୂତନ ଅନୁଭୂତିର ମାନଦଣ୍ଡରେ ପରିବର୍ତ୍ତନ କରାଯାଇଥାଏ । ବସ୍ତୁର ଅଣୁକୁ ସବିଶେଷ ଓ ଅବିଭାଜ୍ୟ ବୋଲି

ଡାଲଟନ୍ ପରିକଳ୍ପନା କରିଥିଲେ । ଅଥଚ ଉଦ୍ଧା ବିଶ୍ଳେଷଣାତ୍ମକ ଘଟଣା (radio activity) ଅଣୁର ଏହି ଧାରଣାକୁ ସମ୍ପୂର୍ଣ୍ଣ ପରିବର୍ତ୍ତନ କରିଦେଲା । ସେହିପରି କୌଣସି ପ୍ରାକୃତିକ ନିୟମ ସମ୍ପୂର୍ଣ୍ଣଭାବେ କୌଣସି ଘଟଣା ପ୍ରତି ପ୍ରଯୁଜ୍ୟ ହୋଇ ନପାରେ । ନିୟମ ଓ ଘଟଣା ଭିତରେ ହେଉଥିବା ସମ୍ବନ୍ଧ କେବଳ ଏକ ଅସନ୍ତ-ମାନ ଉପରେ ପର୍ଯ୍ୟବସିତ ହୋଇପାରେ । ଏକ ବ୍ୟାପକ ପରିସରରେ ସେମାନଙ୍କ ଭିତରେ ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ । ଯେପରି ବର୍ତ୍ତମାନ ସୂର୍ଯ୍ୟୋଦୟ ସମୟର ଗଣନା ଓ ପୁରାତନ ଗଣନା ଭିତରେ ପାର୍ଥକ୍ୟ ପରିଲକ୍ଷିତ ହୁଏ । ଅବଶ୍ୟ ଏହା ନୁହେଁ ଯେ ଅତୀତର ସମସ୍ତ ଗଣନା ଭ୍ରମାତ୍ମକ; ବରଂ ଘଟଣାଗୁଡ଼ିକ କ୍ଷେତ୍ରରେ ବି ପରିବର୍ତ୍ତନ ହେବା ଲକ୍ଷ୍ୟ କରାଯାଏ । ସୁତରାଂ ଆମେ ଅବବୋଧ କରୁଥିବା ପ୍ରାକୃତିକ ନିୟମ ସକଳ ଆମର ବର୍ତ୍ତମାନର ଅନୁଭୂତି ଓ ତା'ର ବିଶ୍ଳେଷଣର ପରିଣାମ କହିଲେ ଅଯୁକ୍ତ ହେବନାହିଁ । ପ୍ରାକୃତିକ ନିୟମଦ୍ୱାରା ଯେ ଘଟଣାବଳୀ ନିୟନ୍ତ୍ରିତ ତାହା ନୁହେଁ, ବରଂ ଘଟଣାବଳୀକୁ ଦେଖି ପ୍ରାକୃତିକ ନିୟମ ସମ୍ପର୍କରେ ଆମର ଅବବୋଧ ସୃଷ୍ଟି ହୋଇଥାଏ । ଯେପରି ଆମେ ଜୋତା ଦୋକାନକୁ ଯାଇ ଆମର ଗୋଡ଼ ଅନୁଯାୟୀ ଜୋତା ସ୍ଥିର କରିଥାଉ, କିନ୍ତୁ ମୋଚି ଆମ ଗୋଡ଼ ମାପରେ ଜୋତା ତିଆରି କରିନଥାଏ ।

ଅସ୍ତିକତାବାଦୀମାନେ ପ୍ରାକୃତିକ ନିୟମକୁ ନିର୍ଦ୍ଦିଷ୍ଟ ଓ ଅପରିବର୍ତ୍ତନୀୟ ବୋଲି ଗ୍ରହଣ କରି ତାହା ପାଖରେ ବଶ୍ୟତା ସ୍ୱୀକାର କରିଥାନ୍ତି । ଅଥଚ ନିରୀଶ୍ୱରବାଦୀମାନେ ଘଟଣାବଳୀର ପରୀକ୍ଷଣରୁ ନିୟମ ସମ୍ପର୍କରେ ଧାରଣା କରି ସେଗୁଡ଼ିକର ବିନିଯୋଗ ପାଇଁ ପ୍ରଯତ୍ନ କରିଥାନ୍ତି । ସେହି ନିୟମଗୁଡ଼ିକ ଯେତେବେଳେ ନୂତନ ଘଟଣାବଳୀ ସହିତ ଅସଯୋଜିତ ହୋଇଥାଏ ସେଗୁଡ଼ିକର ମଧ୍ୟ ପରିବର୍ତ୍ତନ କରାଯାଏ । ସେହି ନିୟମଗୁଡ଼ିକ ପାଖରେ ବଶ୍ୟତା ସ୍ୱୀକାର କରିବା ଦ୍ୱାରା ରକ୍ଷଣଶୀଳ ମନୋଭାବ ସୃଷ୍ଟି ହୋଇଥାଏ । ଅଥଚ ସେଗୁଡ଼ିକ ଉପରେ କର୍ତ୍ତୃତ୍ୱ ସ୍ଥାପନ କରିବା ଓ ସ୍ଥଳ ବିଶେଷରେ ସେମାନଙ୍କର ପରିବର୍ତ୍ତନ ହେବା ସମ୍ଭବ ବୋଲି ବିଚାର କରିବାଦ୍ୱାରା ପ୍ରଗତିଶୀଳ ଚିନ୍ତାଧାରାର ବିକାଶ ସାଧନ ହୋଇଥାଏ ।

ଆମ ଚତୁଃପାର୍ଶ୍ୱର ପରିବେଶକୁ ବୁଝିବା ଦିଗରେ ବିବର୍ତ୍ତନବାଦ ପରି ଏକ ସହଜ ପ୍ରାକୃତିକ ନିୟମ ସାହାଯ୍ୟ କରିଥାଏ । ଏହି ନିୟମକୁ ଗ୍ରହଣ କରିବା ଦ୍ୱାରା ଆମ ପରିବେଶର ବସ୍ତୁସକଳ ଓ ଘଟଣାବଳୀକୁ ବୁଝିବାରେ କୌଣସି ସୃଷ୍ଟିକର୍ତ୍ତାଙ୍କୁ ଅନୁମାନ କରିବା ଆବଶ୍ୟକ ହୁଏନାହିଁ । ଗୋଟିଏ ସୀମିତ ଓ ପର୍ଯ୍ୟବେକ୍ଷଣଯୁକ୍ତ ପରିସର ଭିତରେ ବିବର୍ତ୍ତନବାଦକୁ ଗ୍ରହଣ କରିବାରେ ଅସୁବିଧା ନାହିଁ । କିନ୍ତୁ ଏହି ନିୟମକୁ ଯେତେବେଳେ ନୀହାରିକା ଓ ଆଦିମ ବସ୍ତୁସତ୍ତା ସ୍ତରକୁ ପ୍ରସାରିତ କରାଯାଏ; ଏହା ଅଧିକାରଣ ସଦୃଶ ଭ୍ରମାତ୍ମକ ହୋଇପଡ଼େ । ଏକ ଭିକାରୀ ସମତଳ

ଭୂମି ବୋଲି ପ୍ରତୀତ ହେଲେ ବି ସମସ୍ତ ଭୂଖଣ୍ଡକୁ ମିଶାଇ ସମଗ୍ର ପୃଥିବୀକୁ ସମତଳ ବୋଲି ଅନୁମାନ କରାଯାଇ ପାରିବ ନାହିଁ । ସେହିପରି ବିବର୍ତ୍ତନ ନିୟମଟି ଅନେକ ଘଟଣାକୁ ବୁଝିବାରେ ସାହାଯ୍ୟ କରୁଥିଲେ ବି ଏହାର ଅସାବଧାନ ପ୍ରୟୋଗ ଦ୍ୱାରା ଏହାର ଫାନ୍ଦ ଭିତରେ ପଡ଼ିଯିବାର ସମ୍ଭାବନା ରହିଥାଏ ।

ପ୍ରାକୃତିକ ନିୟମ ସକଳର ବିଶ୍ୱାସରୁ ପ୍ରକୃତି ଭିତରେ ରହିଥିବା ଏକ ଉଦ୍ଦେଶ୍ୟ ବା ଅଭିକଳ୍ପର ଧାରଣା ସୃଷ୍ଟି ହୋଇଥାଏ । କିନ୍ତୁ ପ୍ରକୃତରେ ଶୃଙ୍ଖଳା ବା ଉଦ୍ଦେଶ୍ୟ ରହିଛି ବୋଲି ଦର୍ଶାଯାଉଥିବା ଯୁକ୍ତି ବିରୋଧାତ୍ମକ ମନେହୁଏ । ପ୍ରତ୍ୟେକଟି ଉଦ୍ଦେଶ୍ୟ ପଶ୍ଚାତ୍ତରେ ଏକ ଉଦ୍ଦେଶ୍ୟକାରୀ ଓ ତାଙ୍କର ଲକ୍ଷ୍ୟକୁ ସ୍ୱୀକାର କରାଯାଏ । ସେହି ଉଦ୍ଦେଶ୍ୟକାରୀଙ୍କୁ ସର୍ବଦା ଈଶ୍ୱର ବୋଲି ନିଆଯାଇ ତାଙ୍କୁ ପ୍ରେମମୟ ଓ କରୁଣାମୟ ବୋଲି କୁହାଯାଏ । ତେବେ ପ୍ରଶ୍ନ ଉଠେ, ଯଦି ଈଶ୍ୱର ସୃଷ୍ଟିକର୍ତ୍ତା ଓ କରୁଣାମୟ ତେବେ ସଂସାରରେ ମନ୍ଦ କାହିଁକି ରହିଛି ? ଯଦି ଯୁଦ୍ଧ, ବିଶ୍ୱାସିକା, ଠକାମି, ଦାରିଦ୍ର୍ୟ, ଅସ୍ପୃଶ୍ୟତା, ବର୍ଣ୍ଣବୈଷମ୍ୟ, ଶିଶୁମୃତ୍ୟୁ, କ୍ୟାନସର ପରି ଦୁରାରୋଗ୍ୟ ବ୍ୟାଧି, ମହାମାରୀ ସୃଷ୍ଟି କରୁଥିବା ଜୀବାଣୁ, ଦୁର୍ଭିକ୍ଷ ଇତ୍ୟାଦି ଈଶ୍ୱରଙ୍କ ସୃଷ୍ଟି ସର୍ଜନାରେ ଉଦ୍ଦେଶ୍ୟମୂଳକ ଭାବରେ ରହିଛି, ତେବେ ସେହି ଈଶ୍ୱର ପ୍ରେମମୟ ଓ କରୁଣାମୟ ବୋଲି ଆରାଧନା ହେବା ପରିବର୍ତ୍ତେ ତାଙ୍କର ଏହି ଖଳ ପ୍ରକୃତି ପାଇଁ ଦଣ୍ଡନୀୟ ହେବା ଦରକାର । ସୁତରାଂ ଏହି ମନ୍ଦଗୁଡ଼ିକ ରହିଥିବା ପର୍ଯ୍ୟନ୍ତ ସୃଷ୍ଟିର ଉଦ୍ଦେଶ୍ୟ ପଶ୍ଚାତରେ ରହିଥିବା ଈଶ୍ୱରୀୟ ଉଦ୍ଦେଶ୍ୟ ନେଇ ଏକ ଗୋଲକଧନ୍ଦା ସୃଷ୍ଟି ହୋଇଥାଏ । ହୁଏତ ଈଶ୍ୱର ସର୍ବଶକ୍ତିମାନ ନୁହନ୍ତି; ଯେହେତୁ ତାଙ୍କ ସୃଷ୍ଟିବିଧାନ ଭିତରେ ଅନେକ ମନ୍ଦ ରହିଛି ଅଥବା ସେ ପ୍ରେମମୟ ବା କରୁଣାମୟ ନୁହନ୍ତି । ଯଦି ଧରିନିଆଯାଏ ଯେ, ମଣିଷର ପରୀକ୍ଷା ପାଇଁ ଏହି ମନ୍ଦ ପ୍ରଲୋଭନ ସୃଷ୍ଟି କରାଯାଇଛି ତେବେ ଏହା ପାଖରେ ସମର୍ପଣ ବା ଏହାର ପ୍ରତିରୋଧ କରିବା ନେଇ ବ୍ୟକ୍ତିକୁ ଏକ କ୍ରୀଡ଼ନକ କରାଯାଇଛି । ଏହାଦ୍ୱାରା ବ୍ୟକ୍ତି ସ୍ୱାଧୀନତା ଖର୍ବ ହେବା ସହିତ ଈଶ୍ୱରଙ୍କ ନୈତିକତ୍ୱ ମଧ୍ୟ ସ୍ୱୀକୃତ ହେଉନାହିଁ । ନିଜର ସନ୍ତାନମାନଙ୍କ ସହିତ ଏହିପରି ଏକ ନିଷ୍ଠୁର ଖେଳ ଖେଳୁଥିବା ଈଶ୍ୱର ମଙ୍ଗଳମୟ ହେବା ପରିବର୍ତ୍ତେ ଏକ ଖଳ ଓ ଅନିଷ୍ଟକାରୀ ଶକ୍ତି ଭାବରେ ଅଧିକ ବୋଧଗମ୍ୟ ହୁଅନ୍ତି ।

ବାସ୍ତବପକ୍ଷେ ସୃଷ୍ଟି ପଶ୍ଚାତରେ କୌଣସି ଉଦ୍ଦେଶ୍ୟ ବା ଅଭିକଳ୍ପ ନାହିଁ । ଏହି ଅଭିକଳ୍ପ ପ୍ରତ୍ୟୟ ଆଦିମକାଳ ମଣିଷର ଏକ ପରିକଳ୍ପନା କହିବାକୁ ହେବ । ଆଦିମ ମଣିଷମାନେ ସାଦୃଶ୍ୟମୂଳକ ଯୁକ୍ତି ମାଧ୍ୟମରେ ଓ ନିଜ ମାନଦଣ୍ଡରୁ ଏକ ଅମୃ-ସତ୍ତାର ପରିକଳ୍ପନା କରୁଥିଲେ । ଜଗତର ପ୍ରତ୍ୟେକଟି ଘଟଣାକୁ ଏକ ଅମୃ-ସତ୍ତା ରୂପଦେବା ବା ନିୟନ୍ତ୍ରଣ କରୁଥିବା ତାଙ୍କର ବିଶ୍ୱାସ ଥିଲା । ଆଦିମ ମଣିଷର

ବିଶ୍ୱାସଠାରୁ ଆଧୁନିକ ଯୁଗର ସଭ୍ୟ ଆସ୍ତିକତାବାଦମାନଙ୍କର ଯୁକ୍ତି ଭିନ୍ନ ନୁହେଁ । ଆଧୁନିକ ଯୁଗର ଆସ୍ତିକତାବାଦୀମାନେ ଯୋଜନା, ଅଭିକଳ୍ପ, ନିୟମ, କ୍ରମ ଓ ଶୃଙ୍ଖଳା ଇତ୍ୟାଦି ପ୍ରତ୍ୟୟ ସହିତ ବେଶ୍ ପରିଚିତ ଥିବାରୁ ଜଗତ କ୍ଷେତ୍ରରେ ଏକ ଶୃଙ୍ଖଳା ଓ ଅଭିକଳ୍ପ ଥିବା ଅନୁମାନ କରିଥାନ୍ତି । ବାସ୍ତବପକ୍ଷେ ଏହି ଅଭିକଳ୍ପର ପରିକଳ୍ପନା ଯୋଗୁଁ ନିଜର ବିଶ୍ୱାସ ଓ ଗୁରୁତ୍ୱ ଭିତରେ ଆସ୍ତିକତାବାଦୀମାନେ ସଂସାରର ଦୁଃଖଦୈନ୍ୟକୁ ଏକ ଦୈବୀଫଳ ବୋଲି ସ୍ୱୀକାର କରିଥାନ୍ତି । ନାସ୍ତିକତାବାଦ ଏହି ଐଶ୍ୱରୀୟ ଅଭିକଳ୍ପ ଭାବନାକୁ ପରିହାର କରୁଥିବାରୁ ଜନଗଣଙ୍କ ଭିତରେ ସମତାର ଚେତନା ଜାଗ୍ରତ କରିବାକୁ ପ୍ରଯତ୍ନ କରିଥାଏ । ସମାଜର ରାଜନୈତିକ, ଅର୍ଥନୈତିକ ଓ ସାମାଜିକ ଅନ୍ୟାୟ ଓ ମନ୍ଦ ବ୍ୟବସ୍ଥାର ବିଲୋପ ସାଧନ ପାଇଁ ସ୍ୱରଉତ୍ତୋଳନ କରିବାକୁ ଏହା ଜନଗଣଙ୍କୁ ସଙ୍ଗଠିତ କରିଥାଏ ।

ଆସ୍ତିକତାବାଦୀ ଦର୍ଶନର ଏକ ମୁଖ୍ୟ ଆଭିମୁଖ୍ୟ ହେଉଛି ଏହା ବିଶ୍ୱ-ବ୍ରହ୍ମାଣ୍ଡକୁ ସାର୍ବିକ ନିୟମଦ୍ୱାରା ପରିଚାଳିତ ବୋଲି ଗ୍ରହଣ କରିବା । ପ୍ରାକୃତିକ ଘଟଣା ଓ ମାନବ ଜୀବନ ମଧ୍ୟ ଏଥିରେ ଅନ୍ତର୍ଭୁକ୍ତ । ଆସ୍ତିକତାବାଦୀ ସମର୍ପଣ ଭାବନା ସହ ଏହି ବିଶ୍ୱାସ ସୁସଙ୍ଗତ ହେଉଥିବା ମନେହୁଏ । ବ୍ୟକ୍ତି ଜଗତର ଅଂଶବିଶେଷ ଭାବରେ ପ୍ରକୃତି ପାଖରେ ଅଧସ୍ତନ ହୋଇ ରହିବା ଏହା ଗ୍ରହଣ କରେ । ସୃଷ୍ଟିପ୍ରକ୍ରିୟା ଓ ଜଗତର ଗତିଶୀଳତା ନେଇ ଧର୍ମବିଶ୍ୱାସୀ ଓ ବସ୍ତୁବାଦୀମାନଙ୍କ ଭିତରେ ମୌଳିକ ପାର୍ଥକ୍ୟ ରହିଥିଲେ ବି ଜଗତର ସାର୍ବ-ଭୌମତ୍ୱକୁ ଗ୍ରହଣ କରିବା ଓ ବ୍ୟକ୍ତିର ସ୍ୱାଧୀନତାକୁ ଅସ୍ୱୀକାର କରିବା କ୍ଷେତ୍ରରେ ସେମାନଙ୍କ ମଧ୍ୟରେ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ ।

କିନ୍ତୁ ବ୍ୟକ୍ତି ସ୍ୱାଧୀନତାକୁ ସ୍ୱୀକାର କରିବା ଦ୍ୱାରା ଜଗତର ଏକ ଭିନ୍ନ ବ୍ୟାଖ୍ୟା ଦେବାକୁ ହୋଇଥାଏ । ନାସ୍ତିକତାବାଦୀମାନେ ବିଶ୍ୱକୁ ଏକ ସମାହାର ପ୍ରତ୍ୟୟ ଭାବରେ ନେଇଥାନ୍ତି । ପକ୍ଷୀମାନେ ପରସ୍ପରଠାରୁ ଭିନ୍ନ ହେଲେ ବି ଏକତ୍ର ହେଲେ ଯେପରି ପକ୍ଷୀଦଳ ହୁଅନ୍ତି, ସେହିପରି ଜଗତ ଏକ ସମଷ୍ଟି ଅର୍ଥରେ ବୁଝାଯାଏ । ପକ୍ଷୀମାନେ ଯେତେବେଳେ ନିଜ ନିଜର ପଥରେ ଚାଲିଯାନ୍ତି ସେତେବେଳେ ତାଙ୍କ ଦଳର ସ୍ଥିତି ରହେନାହିଁ । ଦଳର ସ୍ଥିତି ଭାଙ୍ଗିଯାଉଥିଲେ ବି ପ୍ରତ୍ୟେକଟି ପକ୍ଷୀ ନିଜେ ରହୁଥାଏ । ସୁତରାଂ ପ୍ରତ୍ୟେକ ପକ୍ଷୀବିଶେଷ ହିଁ ବାସ୍ତବ, କିନ୍ତୁ ଦଳ ସେପରି ବାସ୍ତବ ନୁହେଁ । ସେହିପରି ଜଗତ ନିଜ ଭାବରେ ଅବସ୍ଥିତ ନୁହେଁ । ବହୁ ଘଟଣାବଳୀ ଓ ବ୍ୟକ୍ତିବିଶେଷର ସ୍ଥିତି ରହିଥିବା ବେଳେ ଜଗତର ସ୍ଥିତି ଏହିସବୁ ଉପରେ ନିର୍ଭର କରିଥାଏ । ଅବଶ୍ୟ ସେମାନଙ୍କର ସ୍ଥିତି ମଧ୍ୟ

ଚିରସ୍ଥାୟୀ ନୁହେଁ । ପ୍ରତ୍ୟେକର ଆକାର ଓ ସ୍ଥିତିରେ ପରିବର୍ତ୍ତନ ସଂଘଟିତ ହେଉଥାଏ । ଘଟଣାତନ୍ତ୍ରବାଦ ଓ ବ୍ୟକ୍ତିବିଶେଷଙ୍କର ସମଷ୍ଟିରେ ହିଁ ଜଗତର ଧାରଣା ନିହିତ ଥାଏ ।

ଅବଶ୍ୟ ଜଗତର ଘଟଣା ପ୍ରବାହକୁ ପୃଥକ୍ ଭାବରେ ବିବେଚନା କରିବା-ଦ୍ୱାରା ଏକ ଅବ୍ୟବସ୍ଥିତ ବିଶ୍ୱର ଚିତ୍ର ଆସିଥାଏ । ଭିନ୍ନ ଭିନ୍ନ ଘଟଣା ପ୍ରବାହକୁ ସାମଗ୍ରିକ ଭାବରେ ନେବାଦ୍ୱାରା ପ୍ରାକୃତିକ ନିୟମ ଓ ଏକରୂପତା ପ୍ରକାଶ ପାଇଥାଏ । ଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର ବାଲିକଣିକା ମିଶି ଏକ ସ୍ତୂପାକୃତି କୋନ୍ ତିଆରି କରିଥାନ୍ତି । ସ୍ତୂପଜନିତ ଗଢ଼ଣଟି ସେହି ଗଦା ଭିତରେ ପୂର୍ବରୁ ଅବସ୍ଥିତ ନଥାଏ । କିନ୍ତୁ ଅନିୟମିତ କ୍ଷୁଦ୍ର କ୍ଷୁଦ୍ର ବାଲିକଣିକା ଏକତ୍ର ମିଶି ଏହା ଗଦା ସୃଷ୍ଟି କରିଥାନ୍ତି ଯାହା ବ୍ୟବସ୍ଥିତ ଥିବା ମନେହେଉଥାଏ । ସେହିପରି ଗୋଟିଏ ଗୋଟିଏ ଘଟଣା ଓ ବ୍ୟକ୍ତିବିଶେଷଙ୍କର ସମଷ୍ଟିରେ ଜଗତର ପରିକଳ୍ପନା ହୋଇଥାଏ । କିନ୍ତୁ ଜଗତ ନିଜ ସ୍ୱରୂପରେ ଅବସ୍ଥିତ ନୁହେଁ ବା ଏକକ ସତ୍ତା ନୁହେଁ; ଯଦିବା ଏହାକୁ ଆମେ ସେପରି କଳ୍ପନା କରିଥାଉ । ଆସ୍ତିକତାବାଦ ଜଗତରୁ ବ୍ୟକ୍ତିସ୍ତରକୁ ଆସିଥାଏ କିନ୍ତୁ ନିରୀଶ୍ୱରବାଦ ବ୍ୟକ୍ତିଠାରୁ ଜଗତ ସ୍ତରକୁ ଆମର ଭାବନାକୁ ପ୍ରସାରିତ କରିଥାଏ । ନିରୀଶ୍ୱରବାଦୀ ଅବବୋଧ ଭିତରେ ମଣିଷର ପ୍ରାଧାନ୍ୟକୁ ସ୍ୱୀକାର କରାଯିବାଦ୍ୱାରା ବ୍ୟକ୍ତି ସ୍ୱାଧୀନତାକୁ ଗୁରୁତ୍ୱ ଆରୋପ କରାଯାଏ । ଅଥଚ ଆସ୍ତିକତା-ବାଦୀ ଅବବୋଧ ଭିତରେ ବ୍ୟକ୍ତିକୁ ଅଧସ୍ତନ କରିବାଦ୍ୱାରା ବ୍ୟକ୍ତି ସ୍ୱାଧୀନତା ବିଡ଼ମ୍ବିତ ହୋଇଥାଏ ।

ଆମର କଳ୍ପନା ଦ୍ୱାରା ଆମେ ଅନେକ ସମଷ୍ଟିଗତ ପ୍ରତ୍ୟୟକୁ ଧାରଣ କରିଥାଉ । ପରିବାର, ସମାଜ, ରାଷ୍ଟ୍ର, ସରକାର, ବିଶ୍ୱ ଓ ମାନବ ସମାଜ ସମଷ୍ଟି-ଗତ ଧାରଣା ଅଟେ । ସଂକ୍ଷେପରେ ସଭ୍ୟ ଜଗତର ସକଳ ବ୍ୟବସ୍ଥା ଓ ଅନୁଷ୍ଠାନ ବ୍ୟକ୍ତିମାନଙ୍କର ସହଯୋଗ ଓ ସମଷ୍ଟିରେ ହିଁ ହୋଇଥାଏ । ପରିଣାମତଃ ସରକାର ପରି ଏକ ରାଜନୈତିକ ବ୍ୟବସ୍ଥା ଲୋକମାନଙ୍କ ସହଯୋଗ ଦ୍ୱାରା ଉଦ୍ଭବ ହୋଇ ନିଜର କର୍ତ୍ତୃତ୍ୱ ସ୍ଥାପନ କରିଥାଏ । ଲୋକମାନଙ୍କର ସହଯୋଗ ଓ କର ପ୍ରଦାନଦ୍ୱାରା ଦେଶର ରାଜସ୍ୱ ବ୍ୟବସ୍ଥା ପୁଷ୍ଟ ହୋଇଥାଏ । ବସ୍ତୁତଃ ସରକାରୀ ବ୍ୟବସ୍ଥା ଜନଗଣଙ୍କ ସହଯୋଗରେ ତିଷ୍ଠି ରହିଥିବାରୁ ଦେଶର ଜନଗଣ ହିଁ ସରକାରକୁ ନିୟନ୍ତ୍ରଣ କରିଥାନ୍ତି । କିନ୍ତୁ ଆସ୍ତିକତାବାଦୀ ବିଚାରଧାରାରେ ଜନଗଣ ପରିବର୍ତ୍ତେ ସରକାରର ସାର୍ବଭୌମତ୍ୱ କଥା କୁହାଯାଇ ଏହା ପାଖରେ ଜନଗଣଙ୍କୁ ଅଧସ୍ତନ କରାଯାଏ । ଏକ ପୁଞ୍ଜିବାଦୀ ଅର୍ଥନୈତିକ ବ୍ୟବସ୍ଥାରେ ଶ୍ରମିକଠାରୁ ଉଦ୍‌ବୃତ୍ତ ଅର୍ଥକୁ ସ୍ୱତ୍ୱାଧିକାରୀ ବଳପୂର୍ବକ ଦଖଲ୍ କରିଥାଏ । ଏହା ସହିତ ବ୍ୟକ୍ତିବିଶେଷଙ୍କର ସାମାଜିକ ଘଟଣା-

ପ୍ରବାହ ଓ ଜୀବନଧାରାକୁ ନେଇ ସମାଜ ଜୀବନ ସୃଷ୍ଟି ହୋଇଥାଏ । ସମାଜର ସାଧାରଣ ଘଟଣାଗୁଡ଼ିକ ଛଡ଼ା ପ୍ରତ୍ୟେକ ବ୍ୟକ୍ତିର ନିଜସ୍ୱ ବୈଶିଷ୍ଟ୍ୟ ରହିଥାଏ । ଜଣେ ବ୍ୟକ୍ତିର ବ୍ୟକ୍ତିତ୍ୱ ସାମାଜିକ ଜୀବନର ପ୍ରଭାବ ଓ ନିଜର ଭାବଧାରାଦ୍ୱାରା ପରିପୁଷ୍ଟ ହୋଇଥାଏ । ସାମାଜିକ ଜୀବନରେ କେତେକଙ୍କ ସହ ସମ୍ପର୍କର ନିବିଡ଼ତା ଯୋଗୁଁ ସେମାନଙ୍କ ସହିତ ବ୍ୟକ୍ତିର ସମ୍ପର୍କ ଦୃଢ଼ହୁଏ । ଅନ୍ୟମାନଙ୍କ ସହ ନିଜର ସମ୍ପର୍କକୁ ଅଧିକ କରିବା ବା ହ୍ରାସ କରିବା ତାହା ବ୍ୟକ୍ତିର ନିଜସ୍ୱ ବିଚାର ଉପରେ ନିର୍ଭର କରେ । ନିର୍ଜନରେ ବାସ କରୁଥିବା ଜଣେ ସନ୍ନ୍ୟାସୀର ଅନ୍ୟମାନଙ୍କ ସହ ବିଶେଷ ସମ୍ପର୍କ ନଥାଏ । ସେ କେବଳ ନିଜ ଭିତରେ ହିଁ ଜୀବନ ବଞ୍ଚିଥାଏ । ବ୍ୟକ୍ତିମାନଙ୍କର ଅନ୍ୟମାନଙ୍କ ସହ ରହିଥିବା କେତେକ ସମ୍ପର୍କ ପରିପ୍ରେକ୍ଷୀରେ ସାମାଜିକ ଜୀବନ ବିକାଶ ଲାଭ କରେ । ସୁତରାଂ ବ୍ୟକ୍ତି ହିଁ ଅଧିକ ଗୁରୁତ୍ୱପୂର୍ଣ୍ଣ ଓ ବ୍ୟକ୍ତି ବ୍ୟତୀତ କୌଣସି ସାମାଜିକ ସମଷ୍ଟିର ସ୍ଥିତି ନଥାଏ ।

ବାସ୍ତବ ପକ୍ଷେ ଅନ୍ୟମାନଙ୍କ ସହ ସାମଞ୍ଜସ୍ୟ ଛଡ଼ା ବ୍ୟକ୍ତି ଭିତରେ ଥିବା ନିଜସ୍ୱ ଦିଗଟି ସାମାଜିକ ବିକାଶ କ୍ଷେତ୍ରରେ ନୂତନତା ଓ ପ୍ରଗତିଶୀଳତାର ସୂତ୍ରପାତ କରିଥାଏ । ବ୍ୟକ୍ତିମାନଙ୍କ ଭିତରେ ଥିବା ସାମଞ୍ଜସ୍ୟ ସାମାଜିକ ସମ୍ପର୍କକୁ ସୁଦୃଢ଼ କରୁଥିବା ବେଳେ ସେମାନଙ୍କ ଭିତରେ ଥିବା ପାର୍ଥକ୍ୟ ସମାଜର ଅଗ୍ରଗତି ପାଇଁ ସହାୟକ ହୋଇଥାଏ । ବ୍ୟକ୍ତିମାନଙ୍କର ସାମଞ୍ଜସ୍ୟଜନିତ ସମଷ୍ଟିରୁ ସମାଜ ଉଦ୍ଭବ ହୋଇଥିଲେ ହେଁ ଦାସତ୍ୱ ମନୋଭାବ ପୋଷଣ କରୁଥିବା ବ୍ୟକ୍ତିବିଶେଷ ସମାଜ ପାଖରେ ନିଜକୁ ସମ୍ପୂର୍ଣ୍ଣ ଭାବରେ ଅଧସ୍ତନ ମନେ କରିଥାନ୍ତି । ନିରୀଶ୍ୱର-ବାଦୀମାନେ ବ୍ୟକ୍ତି ଓ ସମାଜ ଭିତରେ ଥିବା ସମ୍ପର୍କକୁ ଯଥାର୍ଥ ଭାବରେ ମୂଲ୍ୟାୟନ କରିଥାନ୍ତି । ସେମାନେ ବ୍ୟକ୍ତିର ଭୂମିକା ନେଇ ସଚେତନ ଥିବାରୁ ସାମାଜିକ ବ୍ୟବସ୍ଥା ସକଳ ବ୍ୟକ୍ତିମାନଙ୍କର ସହଯୋଗରେ ଗଢ଼ି ଉଠିଥାଏ ବୋଲି ବିଚାର କରିଥାନ୍ତି । ଆସ୍ତିକତାବାଦୀ ବିଚାରବିମର୍ଶରେ ବ୍ୟକ୍ତି ମର୍ଯ୍ୟାଦାବୋଧ ନ୍ୟୂନ ଥିବାବେଳେ ନିରୀଶ୍ୱରବାଦୀ ଦୃଷ୍ଟିଭଙ୍ଗୀରେ ବ୍ୟକ୍ତି ହିଁ ଅଧିକ ଗୁରୁତ୍ୱପୂର୍ଣ୍ଣ ହୋଇଥାଏ । ନିରୀଶ୍ୱରବାଦୀମାନେ ସମାଜର ରାଜନୈତିକ, ଅର୍ଥନୈତିକ ଓ ସାଂସ୍କୃତିକ ବ୍ୟବସ୍ଥା ଉପରେ ନିୟନ୍ତ୍ରଣ ସ୍ଥାପନ କରିଥାନ୍ତି ।

ଯେପରି ବିଶ୍ୱ ଏକକ ବସ୍ତୁମାନଙ୍କର ସମାହାର ସେହିପରି ବ୍ୟକ୍ତି ଜୀବନକୋଷ-ମାନଙ୍କର ସମଷ୍ଟି ଓ ପ୍ରତ୍ୟେକଟି ଜୀବକୋଷ ଅଣୁ ଓ ତଡ଼ିତାଣୁର ସମଷ୍ଟି । ଏହି ଯୁକ୍ତି ସ୍ଥିତି କ୍ଷେତ୍ରରେ ବ୍ୟକ୍ତି ଅପେକ୍ଷା କୋଷ, ଅଣୁ ବା ସେହିପରି କିଛି ସତ୍ତାକୁ ମୂଳ ବୋଲି ସ୍ୱୀକାର କରିଥାଏ । କିନ୍ତୁ ଏହି ଯୁକ୍ତି ଦୋଷଯୁକ୍ତ ଜଣାପଡ଼େ । ମଣିଷ ବ୍ୟକ୍ତିକୁ ଏକକ ଭାବରେ ନେଇ ଅଣୁମାନଙ୍କ ସଂଶ୍ଳେଷଣାତ୍ମକ ଭାବରେ ପ୍ରସାରିତ

କରିବାଦ୍ୱାରା ଈଶ୍ୱର ପରିକଳ୍ପନା ହୋଇଥାଏ ଓ ବିଶ୍ଳେଷଣାତ୍ମକ ଭାବରେ ପ୍ରସାରିତ କରିବାଦ୍ୱାରା ଅଣୁର ଧାରଣା ସୃଷ୍ଟି ହୋଇଥାଏ । କିନ୍ତୁ ଈଶ୍ୱ ବା ଅଣୁ ମଣିଷ ସମ୍ପର୍କରେ ଚିନ୍ତା କରନ୍ତି ନାହିଁ । ପରନ୍ତୁ ମଣିଷ ସେସବୁ ସମ୍ବନ୍ଧରେ ଚିନ୍ତା କରିଥାଏ ଓ ସେସବୁକୁ ରୂପରେଖ ଦେଇଥାଏ । ସୁତରାଂ ଈଶ୍ୱ ଓ ଅଣୁର ପ୍ରତ୍ୟୟ ମଣିଷ ହିଁ ପୋଷଣ କରିପାରେ । ମଣିଷ ଅନେକ କିଛି କଳ୍ପନା କରିପାରେ ଓ ନିଜର ଚିନ୍ତା, ଅନୁଭୂତି ଓ ଅନ୍ତଃଦୃଷ୍ଟିର ପରିବର୍ତ୍ତନ ଦ୍ୱାରା ନିଜର ବିଶ୍ବାସକୁ ପରିବର୍ତ୍ତନ କରିଥାଏ । ଏଣୁ ଜୀବକୋଷ ବା ଅଣୁ ଅପେକ୍ଷା ମଣିଷ ଓ ତା'ର ସ୍ଥିତି ଅଧିକ ବାସ୍ତବ ଅଟେ । ଅଣୁ ସମ୍ପର୍କରେ ଅଜ୍ଞ ଥିବା ବ୍ୟକ୍ତି ପାଇଁ ଏହାର ସ୍ଥିତିର ଅର୍ଥ କିଛି ନଥାଏ । ବସ୍ତୁ ସକଳର ଅବସ୍ଥିତି ଆମ ଅବବୋଧ ଉପରେ ନିର୍ଭର କରେ । ଜଣେ ସୁପ୍ତ ମଣିଷ ବିଷୟରେ ଅନ୍ୟମାନେ ଅବଗତ ହେଉଥିବାବେଳେ ସେ ନିଜେ ଜାଗ୍ରତ ହେବାଦ୍ୱାରା ହିଁ ନିଜ ସ୍ଥିତି ସମ୍ପର୍କରେ ସଚେତନ ହୋଇଥାଏ । ସୁପ୍ତ ଅବସ୍ଥାରେ ଜଣଙ୍କର ମୃତ୍ୟୁ ହେଲେ ସେ ଶୋଇବାଠାରୁ ନିଜ ସ୍ଥିତିର ଅବସ୍ଥିତି ନେଇ ସଚେତନ ରହି ନଥାଏ । ଜାଗ୍ରତ ଅବସ୍ଥାରେ ହିଁ ଆମେ ଆମର ଶୋଇବା ସମୟର ସ୍ୱପ୍ନ ସମ୍ପର୍କରେ ଭାବିଥାଉ ଅଥଚ ସ୍ୱପ୍ନାବସ୍ଥାରେ ଆମେ ସ୍ୱପ୍ନ ସମ୍ପର୍କରେ ଅବଗତ ହୋଇପାରୁନାହିଁ । ସଚେତନତାର ମହତ୍ତ୍ୱ ଦୃଷ୍ଟିରୁ ବ୍ୟକ୍ତିକୁ କେବଳ ଜୀବକୋଷ ଓ ଅଣୁମାନଙ୍କର ସମାହାର ଭାବରେ ଗ୍ରହଣ ନକରି ବ୍ୟକ୍ତିକୁ ଏକ ସଚେତନ ଓ ବାସ୍ତବ ସତ୍ତା ଭାବରେ ଗ୍ରହଣ କରାଯିବା ଦରକାର ।

ବସ୍ତୁବାଦ ହେଉଛି ଆସ୍ତିକତାବାଦୀ ବିଶ୍ବାସ ପ୍ରଣାଳୀର ଶେଷ ପରିଣତି । ଇନ୍ଦ୍ରିୟାନୁଭୂତି ଉପରେ ଗୁରୁତ୍ୱ ଦେଉଥିବାରୁ ବସ୍ତୁବାଦ ବାସ୍ତବବାଦୀ ହୋଇଥାଏ । ଏହା ସୁତରାଂ ଅଧ୍ୟାତ୍ମବାଦଠାରୁ ଭିନ୍ନ । ତଥାପି ଏହି ବିଶ୍ବାସବିମର୍ଶରେ ବ୍ୟକ୍ତିକୁ ସମଷ୍ଟି ପାଖରେ ଅଧସ୍ତନ କରାଯାଇଥାଏ । ଅଧ୍ୟାତ୍ମବାଦୀ ବିଶ୍ବାସଧାରାରେ ଈଶ୍ୱର ଓ ଧର୍ମୀୟ ଉପାସନା ପାଖରେ ବ୍ୟକ୍ତିକୁ ଅଧସ୍ତନ କରାଯାଉଥିବାବେଳେ ବସ୍ତୁବାଦୀ ସଭ୍ୟତାରେ ଅର୍ଥନୈତିକ ପୁଞ୍ଜିବାଦ, ରାଜନୈତିକ ଏକଛତ୍ରବାଦ ବା ସାମାଜିକ ପରମ୍ପରା ଭଳି ବାହ୍ୟ ଶକ୍ତି ପାଖରେ ଏହା କରାଯାଏ ।

ଆସ୍ତିକତାବାଦୀ ସଭ୍ୟତାରେ କେତେକ ପରିସଂଖ୍ୟାନ ବ୍ୟବସ୍ଥା ମାଧ୍ୟମରେ ନିର୍ବାଚନର ଫଳାଫଳ ବା ଜନଗଣଙ୍କର ପ୍ରତିକ୍ରିୟାକୁ ପ୍ରକାଶ କରାଯିବାଦ୍ୱାରା ବ୍ୟକ୍ତିମାନଙ୍କର ନିର୍ଦ୍ଦିଷ୍ଟତାକୁ ଗ୍ରହଣ କରାଯାଏ । ଯେପରି ପାଗବିଜ୍ଞାନ ସନ୍ଧାନୀ ପର୍ଯ୍ୟବେକ୍ଷଣଦ୍ୱାରା ପାଗ ବିଷୟରେ ସୂଚନା ଦିଆଯାଇଥାଏ, ସେହିପରି ପରିସଂଖ୍ୟାନ ମାଧ୍ୟମରେ ବ୍ୟକ୍ତିମାନଙ୍କର ବ୍ୟବହାର ଓ ପ୍ରତିକ୍ରିୟାକୁ ପ୍ରକାଶ କରାଯାଇଥାଏ । ବସ୍ତୁବାଦୀ ସଭ୍ୟତାରେ ବ୍ୟକ୍ତି ସ୍ୱାଧୀନତାକୁ ନ୍ୟୂନ କରାଯାଇ ବ୍ୟକ୍ତିକୁ ଏକ ଗୋଷ୍ଠୀର ଏକକ ଭାବରେ ହିଁ ଗ୍ରହଣ କରାଯାଏ । ଯେପର୍ଯ୍ୟନ୍ତ ମଣିଷ ନିଜର ସ୍ୱତନ୍ତ୍ରତାକୁ ହରାଇ

ପରିସ୍ଥିତିର ଦାସ ବୋଲି ନିଜକୁ ବିଚାର କରୁଥିବା ସେପର୍ଯ୍ୟନ୍ତ କୌଣସି କୌଶଳ ପ୍ରୟୋଗ କରି ବ୍ୟକ୍ତିମାନଙ୍କର ମତାମତକୁ କହିଦିଆଯାଇ ପାରିବ । କିନ୍ତୁ ଯେତେବେଳେ ନିରୀଶ୍ୱରବାଦୀ ଦୃଷ୍ଟିଭଙ୍ଗୀ ଦ୍ୱାରା ବ୍ୟକ୍ତିର ଆବେଗ, ଆକାଂକ୍ଷା ଓ ଆଦର୍ଶକୁ ଉଜ୍ଜୀବିତ କରାଯାଇ ପାରିବ ସେତେବେଳେ ବ୍ୟକ୍ତି ସମ୍ପର୍କରେ କୌଣସି ଭବିଷ୍ୟବାଣୀ କରିବା ସମ୍ଭବ ହେବନାହିଁ । କାର୍ଲମାର୍କସ ଇତିହାସର ବସ୍ତୁବାଦୀ ବିଶ୍ଳେଷଣ କରି ଶିଳ୍ପୋନ୍ନତ ଜର୍ମାନୀରେ ପ୍ରଥମେ ସମାଜବାଦୀ ବିପ୍ଳବ ଆସିପାରିବ ବୋଲି ଭବିଷ୍ୟବାଣୀ ଶୁଣାଇଥିଲେ । କିନ୍ତୁ ଲେନିନଙ୍କର କୌଶଳ ଓ ହିଟ୍‌ଲରଙ୍କର ସାହସିକତା ମାର୍କସଙ୍କର ପରିକଳ୍ପନାକୁ ଏପଟ ସେପଟ କରିଦେଲା । କୃଷିପ୍ରଧାନ ରୁଷରେ ପ୍ରଥମେ ସମାଜବାଦୀ ବିପ୍ଳବ ଆସିପାରିଲା । ଅଥଚ ଜର୍ମାନୀ ଏକ ସ୍ୱେଚ୍ଛାଚାରୀ ଏକଛତ୍ରବାଦୀ ଶାସକଙ୍କଦ୍ୱାରା କବଳିତ ହେଲା । ସୁତରାଂ କାର୍ଲମାର୍କସ ଜଣେ ମହାନ୍ ଚିନ୍ତାନାୟକ ହେଲେ ବି ତାଙ୍କର ଭବିଷ୍ୟବାଣୀ ସାର୍ଥକ ହେଲା ନାହିଁ । ମଣିଷ ବସ୍ତୁବାଦୀ ହେବା ପରିବର୍ତ୍ତେ ଅଧିକ ମନସ୍ତାତ୍ତ୍ୱିକ ବୋଲି କୁହାଯାଇପାରେ ।

କୌଣସି ଭାଗ୍ୟବିଧାନ ବା ଦ୍ୱନ୍ଦ୍ୱାତ୍ମକ ସାମାଜିକ ବ୍ୟବସ୍ଥାଦ୍ୱାରା ମଣିଷ ସ୍ୱଭାବ ସମ୍ପର୍କରେ ଭବିଷ୍ୟବାଣୀ କରିବା ସମ୍ଭବ ନୁହେଁ । ବରଂ ବ୍ୟକ୍ତିର ଦୃଢ଼ ମନୋଭାବ ଓ ସଙ୍କଳ୍ପକୁ ଦେଖି ତା' ସମ୍ପର୍କରେ କିଛି ଧାରଣା କରାଯାଇପାରେ । ଫଳିତ ଜ୍ୟୋତିଷ, ସାମୁଦ୍ରିକ ବିଦ୍ୟା ଓ ଶୁଭାଶୁଭ ଗଣନା ଇତ୍ୟାଦି ନିରୀଶ୍ୱରବାଦୀ ବିଚାର ବିମର୍ଶରେ ଭିତ୍ତିହୀନ ଅଟେ । ନିରୀଶ୍ୱରବାଦୀମାନେ ମଣିଷ ବିଷୟରେ ଭବିଷ୍ୟବାଣୀ କରିବା ନେଇ ବ୍ୟକ୍ତିର ଅନୁଭୂତି, ନ୍ୟାୟବୋଧ, ସାଧୁତା ଓ ଆଦର୍ଶବାଦକୁ ଗ୍ରହଣ କରିଥାନ୍ତି । ଈଶ୍ୱର, ସରକାର, ପରମ୍ପରା ଓ ସାମାଜିକ ବ୍ୟବସ୍ଥା ପାଖରେ ବ୍ୟକ୍ତିକୁ ଅଧସ୍ତନ କରି ରଖୁଥିବା ବିଚାରଠାରୁ ନିରୀଶ୍ୱରବାଦୀ ଜୀବନଦର୍ଶନ ସମ୍ପୂର୍ଣ୍ଣ ପୃଥକ୍ ଅଟେ । କାରଣ ଏହା ବ୍ୟକ୍ତିର ଅଧସ୍ତନତାକୁ ସ୍ୱୀକାର ନକରି ସର୍ବଦା ବ୍ୟକ୍ତି ସ୍ୱତନ୍ତ୍ରତା ଓ ସ୍ୱାଧୀନତାକୁ ଗ୍ରହଣ କରିଥାଏ ।

ଗାନ୍ଧୀଜୀଙ୍କର ସତ୍ୟାଗ୍ରହ ଓ ଅସ୍ତିତ୍ୱବାଦ ଅନେକାଂଶରେ ବ୍ୟକ୍ତି ସ୍ୱାଧୀନତାକୁ ସ୍ୱୀକାର କରିଥାଏ ।

ସତ୍ୟାଗ୍ରହରେ ସତ୍ୟ ଉପରେ ଗୁରୁତ୍ୱ ଦିଆଯାଏ । ଏହା ସହିତ ବ୍ୟକ୍ତିର ବିଚାର ସ୍ୱତନ୍ତ୍ରତାକୁ ଏଥିରେ ପ୍ରାଧାନ୍ୟ ଦିଆଯାଏ । ଜଣେ ସତ୍ୟାଗ୍ରହୀ ସାମାଜିକସମ୍ବନ୍ଧ କ୍ଷେତ୍ରରେ ସତ୍ୟବାଦିତାକୁ ଗୁରୁତ୍ୱ ଦେବା ଆବଶ୍ୟକ । ସାମାଜିକ ସମ୍ବନ୍ଧ ପରିପ୍ରେକ୍ଷୀରେ ସତ୍ୟକୁ କ୍ରିୟାଶୀଳ କରାଇବା ସତ୍ୟାଗ୍ରହୀର ଉଦ୍ଦେଶ୍ୟ ହେବା ଆବଶ୍ୟକ । ସତ୍ୟ ବାସ୍ତବ ଜୀବନରେ ପରୀକ୍ଷଣ ଦ୍ୱାରା ସ୍ଥିର ହୋଇପାରିବ । କୌଣସି କ୍ଷେତ୍ରରେ ମତପାର୍ଥକ୍ୟ ରହିଲେ ପରୀକ୍ଷଣ ଦ୍ୱାରା ତାହା ପରିବର୍ତ୍ତନ କରାଯାଇ

ପାରିବ । ସତ୍ୟାଗ୍ରହରେ ହିଂସାତ୍ମକ କାର୍ଯ୍ୟକୁ ପରିହାର କରାଯାଇଥାଏ । ଜନଗଣ ସ୍ୱାଧୀନ, ଅହିଂସ ଓ ଖୋଲା ମନୋଭାବ ପୋଷଣ କରିବାରେ ସତ୍ୟାଗ୍ରହ ସହାୟକ ହୋଇଥାଏ । ଏସବୁ ବି ସମାଜର ନୈତିକ ଉତ୍କର୍ଷ ଦିଗରେ ସହାୟକ ହୁଏ । ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଯେଉଁ ଗଣ ଆନ୍ଦୋଳନ ସଙ୍ଗଠିତ ହୋଇଥିଲା ତାହା ଜନଗଣଙ୍କ ଦ୍ୱାରା ଆଦୃତ ହେବା ସହିତ ଲୋକମାନଙ୍କର ନୈତିକ ମାନଦଣ୍ଡକୁ ବୃଦ୍ଧି କରିବାରେ ସହାୟକ ହୋଇଥିଲା । ଯେହିଁ ଆନ୍ଦୋଳନ ଯଦିବା ଦକ୍ଷିଣ ଆଫ୍ରିକା ଓ ଭାରତବର୍ଷରେ ରହିଥିବା ଔପନିବେଶିକ ଶାସନର ଅନ୍ୟାୟ ବିରୁଦ୍ଧରେ ସଙ୍ଗଠିତ ହୋଇଥିଲା ତଥାପି ତାହା ଅନ୍ୟାୟ ବିରୁଦ୍ଧରେ ଅହିଂସ ଆନ୍ଦୋଳନ ପାଇଁ ପୃଥିବୀରେ ସଚେତନତା ସୃଷ୍ଟି କରିଥିଲା ।

ସତ୍ୟାଗ୍ରହ ବ୍ୟକ୍ତି ସ୍ୱାଧୀନତା ଓ ସତ୍ୟ ଉପରେ ଗୁରୁତ୍ୱ ଦେବା ଯୋଗୁଁ ମୌଳିକତଃ ନିରୀଶ୍ୱରବାଦର ନିକଟବର୍ତ୍ତୀ ଅଟେ । ନିରୀଶ୍ୱରବାଦର ବିକାଶ ପାଇଁ ଏହାକୁ ଆଧାର ଭାବରେ ନିଆଯାଇ ପାରିଥାନ୍ତା । କିନ୍ତୁ ଏହାର ପ୍ରବର୍ତ୍ତକ ମହାତ୍ମା ଗାନ୍ଧୀ ଆସ୍ତିକତାବାଦୀ ପରିଭାଷା ଭିତରେ ସତ୍ୟାଗ୍ରହର ବ୍ୟାଖ୍ୟା କଲେ । ଆସ୍ତିକତାବାଦ ସହ ଜନଗଣ ଅଧିକ ଅଭ୍ୟସ୍ତ ଥିବାରୁ ଗାନ୍ଧୀଜୀଙ୍କର ବିଶ୍ଳେଷଣ ଜନମାନସରେ ସ୍ୱୀକୃତ ହେଲା । କିନ୍ତୁ ଗାନ୍ଧୀଙ୍କ ପରେ ସତ୍ୟାଗ୍ରହ ପରିଭାଷା ଭିତରେ ଆସ୍ତିକତାବାଦ ସ୍ୱୀକୃତ ହୋଇଗଲା । ଫଳରେ ସତ୍ୟାଗ୍ରହର ମୌଳିକ ଆଭିମୁଖ୍ୟ ଯଥା ସତ୍ୟ, ସମତା ଓ ଅହିଂସା ଯଥେଷ୍ଟ ସ୍ୱୀକୃତ ହେଲାନାହିଁ । ସୁତରାଂ ଏହି ଅନୁଭୂତିରୁ ଏହା କୁହାଯାଇପାରେ ଯେ ସମାଜର ସ୍ଥାୟୀ ବିକାଶ ପାଇଁ ସଙ୍କଳ୍ପବଦ୍ଧ ଭାବରେ ନିରୀଶ୍ୱରବାଦ ଗ୍ରହଣ ହେବା ଆବଶ୍ୟକ । ଗାନ୍ଧୀଜୀଙ୍କ ସତ୍ୟାଗ୍ରହର ଉପଯୋଗିତା ପାଇଁ ଏହାକୁ ନିରୀଶ୍ୱରବାଦୀ ମାନଦଣ୍ଡରେ ପ୍ରକାଶ କରାଯିବା ଆବଶ୍ୟକ ।

ଅସ୍ତିତ୍ୱବାଦ ବ୍ୟକ୍ତିର ଅସ୍ତିତ୍ୱକୁ ଅଧିକ ଗୁରୁତ୍ୱପୂର୍ଣ୍ଣ ବୋଲି ବିବେଚନା କରିଥାଏ । ଏହା ନିରୀଶ୍ୱରବାଦୀ ଭାବଧାରା ସହିତ ସାମଞ୍ଜସ୍ୟ ଅଟେ । ଅସ୍ତିତ୍ୱ-ବାଦରେ ସାମାଜିକ ପରମ୍ପରା, ସରକାରୀ ନିୟନ୍ତ୍ରଣ, ଅର୍ଥନୈତିକ ଚାପ ଓ ସାଂସ୍କୃତିକ ପ୍ରଭାବ ଭିତରୁ ବ୍ୟକ୍ତିସତ୍ତାକୁ ମୁକ୍ତ କରି ତାହାର ସ୍ୱାଧୀନ ବିକାଶ ପାଇଁ ଗୁରୁତ୍ୱ ଆରୋପ କରିଥାଏ ।

ନିଃସନ୍ଦେହରେ କୁହାଯାଇପାରେ ଯେ ସ୍ୱାଧୀନଚେତା ଓ ସତ୍ୟବାଦୀ ବ୍ୟକ୍ତି-ବିଶେଷ ସୃଷ୍ଟି ଦିଗରେ ଅସ୍ତିତ୍ୱବାଦୀ ଦର୍ଶନ ସହାୟକ ହୋଇଛି । କିନ୍ତୁ ଅସ୍ତିତ୍ୱବାଦୀ-ମାନେ ସତ୍ୟାଗ୍ରହୀ ନୁହନ୍ତି ଓ ସେମାନଙ୍କର ସାମାଜିକ ଅଙ୍ଗୀକାରବୋଧ କମ୍ ଥିବା ମନେହୁଏ । ବ୍ୟକ୍ତି ସ୍ୱାଧୀନତାର ମନୋଭାବ ସାମାଜିକ କର୍ତ୍ତବ୍ୟବୋଧ କ୍ଷେତ୍ରରେ ଅନ୍ତରାୟ ହୋଇଛି । ଏହାର ଉଦାହରଣ ହେଉଛି ହିପ୍ପୀ ସଂସ୍କୃତି । ସେମାନେ

ବନ୍ଧୁଙ୍କ ଭଳି ଡାଳରୁ ଡାଳକୁ ଯାଇ ନିଜ ଇଚ୍ଛାରେ ଜୀବନ ବଞ୍ଚିବାକୁ ଭଲପାଆନ୍ତି । ସେମାନଙ୍କ ପାଖରେ କୌଣସି ସାମାଜିକ ଅଙ୍ଗୀକାରବୋଧ ନଥାଏ ।

ଅଧ୍ୟାତ୍ମବାଦୀ ଓ ବସ୍ତୁବାଦୀ ବ୍ୟବସ୍ଥାର ଭିତ୍ତିହୀନ ବିରୁଦ୍ଧରେ ଅସ୍ତିତ୍ୱବାଦ ଦୃଢ଼ ସ୍ୱର ଉତ୍ତୋଳନ କରିଛି । ତଥାପି ଏହାର ବିକାଶ କେବଳ ଗୋଟିଏ ଦିଗରୁ ହୋଇଛି । ଏଥିରେ ସାମାଜିକ ଅଙ୍ଗୀକାରବୋଧକୁ ନ୍ୟୁନ କରାଯାଇଛି । ଆଧୁନିକ ଯୁଗରେ ସାମାଜିକ ଘଟଣା-ପ୍ରବାହ ପ୍ରତି ନିରପେକ୍ଷ ରହି କୌଣସି ବ୍ୟକ୍ତି ବା ବର୍ଗର ଅଧିକ ଅଗ୍ରସର ହୋଇପାରିବ ନାହିଁ । ବାସ୍ତବ ପକ୍ଷେ ହିପ୍‌ପୀମାନେ ସାମାଜିକ ବ୍ୟବସ୍ଥାରୁ ଖାଦ୍ୟ, ଯାତାୟାତର ସୁବିଧା ତଥା ନିରାପତ୍ତାର ସୁଯୋଗ ଲାଭ କରିବା ଦ୍ୱାରା ସ୍ୱାଧୀନ ଭାବରେ ବଞ୍ଚି ପାରିଛନ୍ତି । ସେମାନେ ସମାଜରୁ ଅନେକ ଉପକାର ପାଉଥିଲା ବେଳେ ସମାଜକୁ ପ୍ରତିଦାନରେ କୌଣସି ଅବଦାନ ଦିଅନ୍ତି ନାହିଁ ।

ବସ୍ତୁବାଦ, ଗାନ୍ଧୀବାଦ ଓ ଅସ୍ତିତ୍ୱବାଦ ବିଶ୍ୱାସବିମର୍ଶମାନଙ୍କର ସୀମିତତା ସତ୍ତ୍ୱେ ସେମାନେ ସଭ୍ୟତାର ନାସ୍ତିକ୍ୟବାଦୀ ବିକାଶ ଦିଗରେ ସହାୟକ ହୋଇଛନ୍ତି । ବସ୍ତୁବାଦ ମୌଳିକତଃ ଅନ୍ତିକତାବାଦୀ ହେଲେ ବି ଏହା ଦେବତ୍ୱ ଭାବନା ଓ କାଳ୍ପନିକ ଆଦର୍ଶବୋଧକୁ ପରିହାର କରିଛି । ଏହା ଜୀବନର ବିଧାନକୁ ବାସ୍ତବତାର ଭିତ୍ତି ଉପରେ ପ୍ରତିଷ୍ଠା କରିଛି । ଗାନ୍ଧୀଙ୍କର ସତ୍ୟାଗ୍ରହ ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ଏକ ସାଧନ ଯୋଗାଇଛି । ଯେହେତୁ ପ୍ରତ୍ୟେକେ ସତ୍ୟାଗ୍ରହ ପ୍ରୟୋଗ କରିପାରିବେ ସେହେତୁ ନିଷ୍ପେଷିତ ଜନତାଙ୍କ ପାଇଁ ଏହା ଏକ ବିଶିଷ୍ଟ ଅସ୍ତ୍ର ହୋଇଛି । ଅସ୍ତିତ୍ୱବାଦ ବ୍ୟକ୍ତିର ସ୍ୱାତନ୍ତ୍ର୍ୟକୁ ଅଗ୍ରାଧିକାର ଦେଇଛି । ବ୍ୟକ୍ତିର ଅସ୍ତିତ୍ୱ ହେଉଛି ସବୁଠାରୁ ମୂଳ ପ୍ରଶ୍ନ ବୋଲି ଏହା ଗ୍ରହଣ କରିଛି । ତଥାପି ବସ୍ତୁବାଦ, ଗାନ୍ଧୀବାଦ ଓ ଅସ୍ତିତ୍ୱବାଦ ପ୍ରକାଶ୍ୟରେ ନାସ୍ତିକ୍ୟବାଦ ଓ ତା'ର ଆନୁଷଙ୍ଗିକ ମୂଲ୍ୟବୋଧକୁ ଗ୍ରହଣ କରୁନଥିବା ଯୋଗୁଁ ସେମାନେ ପ୍ରତ୍ୟେକ ସ୍ତରରେ ସମତା ଆଣିପାରି ନାହାନ୍ତି । ସେମାନେ ଆଂଶିକ ଭାବରେ ନାସ୍ତିକ୍ୟବାଦକୁ ଗ୍ରହଣ କରୁଥିଲେ ମଧ୍ୟ ଅନ୍ତିକତାବାଦର ଅବଶେଷ ସହ କେତେକାଂଶରେ ଆପୋଷ କରିଛନ୍ତି । ସୁତରାଂ ସେମାନଙ୍କ ବିରୁଦ୍ଧରେ ପରବର୍ତ୍ତୀ ପର୍ଯ୍ୟାୟରେ କେତେକ ପ୍ରତିକ୍ରିୟା ପ୍ରକାଶ ପାଇଛି । ମାର୍କସୀୟ ବସ୍ତୁବାଦ ଅର୍ଥନୈତିକ ସମତା ଆଣିପାରିଲେ ହେଁ ଏହି ଲକ୍ଷ୍ୟ ସାଧନ ପାଇଁ ରାଜନୈତିକ ଏକଛତ୍ରବାଦକୁ ପ୍ରଶ୍ରୟ ଦେଇଛି । ଗାନ୍ଧୀବାଦ ଗଣତନ୍ତ୍ରକୁ ସ୍ୱୀକାର କରିଛି କିନ୍ତୁ ପୁଞ୍ଜିବାଦକୁ ଦୂର କରିବାରେ ସଫଳକାମୀ ହୋଇନାହିଁ । ସେହିପରି ଅସ୍ତିତ୍ୱବାଦ ବିନା ସାମାଜିକ ପରିବର୍ତ୍ତନରେ ବ୍ୟକ୍ତି ସ୍ୱାଧୀନତାର ଜୟଗାନ କରିଛି । ଏହି ପ୍ରତ୍ୟେକଟି ବ୍ୟବସ୍ଥା ନାସ୍ତିକ୍ୟବାଦୀ ବିଶ୍ୱାସକୁ ଗ୍ରହଣକଲେ ସମାଜର ସର୍ବାଙ୍ଗୀନ ବିକାଶ ସୃଷ୍ଟି କରିବାରେ ସହାୟକ ହେବ ।

ନିରୀଶ୍ୱରବାଦକୁ ସର୍ବାଙ୍ଗୀନ ଭାବରେ ଗ୍ରହଣ ନ କରିବା ଦ୍ୱାରା ବୈଜ୍ଞାନିକମାନେ ବି କୁସଂସ୍କାରରୁ ମୁକ୍ତ ହୋଇପାରୁ ନାହାନ୍ତି । ବିଜ୍ଞାନ ଶିକ୍ଷାର ପ୍ରସାର ପାଇଁ ବହୁତ ଉଦ୍ୟମ କରିଥିବା ଓ ବୈଦ୍ୟୁତିକ ଚୁମ୍ବକୀୟ ଗୁଣ ଉପରେ ଗବେଷଣା ଚଳାଇ ବେତାର ସରବରାହ କରିବା ପାଇଁ ପଥପ୍ରଦର୍ଶକ ହୋଇଥିବା ସାର ଅଲିଭର୍ ଲଜ୍ ଦୂର ସମ୍ବେଦନ ଓ ଭାବନାର ହସ୍ତାନ୍ତର ଉପରେ ବିଶ୍ୱାସ ରଖିଥିଲେ । ଅବଶ୍ୟ ତାଙ୍କର ଏହି ବିଶ୍ୱାସ ସହ ତାଙ୍କର ସମସାମୟିକ ବୈଜ୍ଞାନିକମାନେ ସହମତ ନଥିଲେ । ସେହିପରି ପ୍ରଯୁକ୍ତିବିଦ୍ୟାରେ ଅଭୂତପୂର୍ବ ସଫଳତା ଯୋଗୁଁ ଚନ୍ଦ୍ରପୃଷ୍ଠରେ ଅବତରଣ କରି ପାରିଥିବା ବ୍ୟକ୍ତିମାନେ ଏହି କାର୍ଯ୍ୟରେ ସଫଳତା ପାଇଁ ଭଗବାନଙ୍କୁ ପ୍ରାର୍ଥନା କରିଥିଲେ । କେତେକ ଧୁରୀଣ ବ୍ୟକ୍ତିଗଣ ବିଜ୍ଞାନାଗାରରେ କାର୍ଯ୍ୟ କଲାବେଳେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରିଥାନ୍ତି, ଅଥଚ ବ୍ୟକ୍ତିଗତ ଜୀବନରେ କୁସଂସ୍କାର ଉପରେ ବିଶ୍ୱାସ ରଖିଥାନ୍ତି । ସେମାନଙ୍କ ଭିତରୁ କେତେକ ମନ୍ତ୍ରପାଠ କରିବା, ଶୁଭାଶୁଭରେ ବିଶ୍ୱାସ ରଖିବା, ଗ୍ରହଶାନ୍ତି ପାଇଁ କବଚ ପିନ୍ଧିବା, ଅଲୌକିକତାକୁ ଗ୍ରହଣ କରିବା ଓ ଧର୍ମୀୟ ପରମ୍ପରା ଓ ପ୍ରାର୍ଥନା ଇତ୍ୟାଦିକୁ ନିଷ୍ଠାର ସହ ପାଳନ କରିବା ଦେଖାଯାଏ । ବସ୍ତୁତଃ ଏହି ବୈଜ୍ଞାନିକଙ୍କ ଭିତରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଅଭାବ ପରିଲକ୍ଷିତ ହୁଏ । ଏପରିସ୍ଥଳେ ଅସାଧୁ ଆସ୍ତିକତାବାଦୀ ଓ ସ୍ୱାର୍ଥାନ୍ୱେଷୀ ଶାସକମାନେ ବୈଜ୍ଞାନିକମାନଙ୍କ ପ୍ରତିଭାର ବିନିଯୋଗ କରି ହିଂସାତ୍ମକ ପନ୍ଥାରେ ଏକଛତ୍ରବାଦ ପ୍ରତିଷ୍ଠା କରିଥାନ୍ତି । କିନ୍ତୁ ବିଜ୍ଞାନ ମୌଳିକତଃ ନିରୀଶ୍ୱରବାଦକୁ ଗ୍ରହଣ କରେ । ନିରୀଶ୍ୱରବାଦୀ ମୂଲ୍ୟଚୟକୁ ସ୍ୱୀକାର ନକରିବା ଦ୍ୱାରା ବୈଜ୍ଞାନିକ ଅଗ୍ରଗତି ଅସତ୍ ପନ୍ଥାରେ ବିନିଯୋଗ ହେବାର ସମ୍ଭାବନା ଥାଏ ।

ସମ୍ପ୍ରତି ପ୍ରାଚୀନ ସଭ୍ୟତା ରହିଥିବା ଏସିଆ, ଆଫ୍ରିକା ଓ ପୃଥିବୀର ଆଦିମତମ ଅଧିବାସୀ ରହିଥିବା ବିଭିନ୍ନ ଭୂଖଣ୍ଡରେ ନିରୀଶ୍ୱରବାଦୀ ମୂଲ୍ୟଚୟ ବିକାଶର ଯଥେଷ୍ଟ ଆବଶ୍ୟକତା ରହିଛି । ୟୁରୋପରେ ଖ୍ରୀଷ୍ଟଧର୍ମ, ପ୍ରୋଟେଷ୍ଟାଣ୍ଟବାଦ, ବସ୍ତୁବାଦ ଓ ଅସ୍ତିତ୍ୱବାଦ ଭଳି ବିଚାରଧାରା ଆସିବା ଦ୍ୱାରା ଅନେକଗୁଡ଼ିଏ ସାଂସ୍କୃତିକ ବିପ୍ଳବ ସଂଘଟିତ ହୋଇଯାଇଛି । ଏହି ପ୍ରତ୍ୟେକଟି ମତବାଦକୁ ତତ୍କାଳୀନ ଯୁଗରେ ଧର୍ମବିରୋଧୀ ବା ନାସ୍ତିକ ବୋଲି ଆକ୍ଷେପ କରାଯାଇଛି । କିନ୍ତୁ ଏହି ପ୍ରତ୍ୟେକଟି ବିଶ୍ୱର ସମାଜରେ ସାଂସ୍କୃତିକ ବିପ୍ଳବ ଆଣି ପ୍ରାଚୀନ କୁସଂସ୍କାରଗୁଡ଼ିକର ବିଲୋପ ଘଟାଇଛି । ଅନେକାଂଶରେ ୟୁରୋପୀୟମାନେ ବର୍ତ୍ତମାନ ଧର୍ମନିରପେକ୍ଷ ବୋଲି କୁହାଯାଇପାରେ । ସେମାନଙ୍କର ଚର୍ଚ୍ଚକୁ ଯିବାର ଉଦ୍ଦେଶ୍ୟ ହେଉଛି କେତେକାଂଶରେ ସାମାଜିକ ସମ୍ପର୍କ ସୃଷ୍ଟି କରିବା ଓ ଏସିଆ ତଥା ଆଫ୍ରିକାର ଦେଶମାନଙ୍କରେ ଆସ୍ତିକତାବାଦ ପ୍ରଚାର କରି ଔପନିବେଶବାଦକୁ ସୁଦୃଢ଼ କରିବା । ସେହିପରି ମଧ୍ୟପ୍ରାଚ୍ୟରେ ଇସ୍‌ଲାମ୍ ଧର୍ମର ପ୍ରସାର ଦ୍ୱାରା ଆରବୀୟମାନଙ୍କର ପିତୁଳା

ପୂଜାଜନିତ କୁସଂସ୍କାର ଲୋପ ପାଇଥିଲା । ଭାରତବର୍ଷରେ ଯଦିଓ ବୌଦ୍ଧଧର୍ମ ରହିଥାନ୍ତା ତେବେ ହିନ୍ଦୁଧର୍ମର ପ୍ରାଚୀନ ବଳିପ୍ରଥା ଇତ୍ୟାଦିକୁ ବିଲୋପ କରି ଏହାର ବିକାଶ ଦିଗରେ ସହାୟକ ହୋଇଥାନ୍ତା । ଶଙ୍କର ବୌଦ୍ଧଧର୍ମର ଅନୀତିଗୁଡ଼ିକ ବିରୁଦ୍ଧରେ ସ୍ୱରଉତ୍ତୋଳନ କରିବାକୁ ଯାଇ ହିନ୍ଦୁଧର୍ମର ପୁନରୁତ୍ଥାନ କରିବାଦ୍ୱାରା ହିନ୍ଦୁଧର୍ମର ପୁନଶ୍ଚ ପଶ୍ଚାତ୍‌ଗତି ହେବାକୁ ଲଗିଲା । ସୁଦୂର ପ୍ରାଚ୍ୟର ବୌଦ୍ଧ-ଧର୍ମାବଲମ୍ବୀମାନେ ଭାରତର ହିନ୍ଦୁମାନଙ୍କ ଅପେକ୍ଷା ଅଧିକ ମୁକ୍ତ ମନୋଭାବ ପୋଷଣ କରିବା ଦେଖାଯାଏ । ଖ୍ରୀଷ୍ଟଧର୍ମ ଓ ଇସ୍‌ଲାମର ପ୍ରଚାର ହୋଇନଥିଲେ ଅଫ୍ରିକୀୟ-ମାନେ ପ୍ରାଚୀନ ଅଧିବାସୀମାନଙ୍କ ପରି ରହି ଯାଇଥାନ୍ତେ । ଯେଉଁ ଅଧିବାସୀମାନେ ନିରୋଳାରେ ବଣଜଙ୍ଗଲରେ ବାସ କରୁଛନ୍ତି; ସେମାନେ ଅଦ୍ୟାବଧି ପୁରାତନ ସଂସ୍କାର ଭିତରେ ରହିଛନ୍ତି । ହୁଏତ ସେମାନେ ନିଜର ଗୋଷ୍ଠୀଟି ଭିତରେ ସମାନଭାବେ ବାସ କରୁଛନ୍ତି । କିନ୍ତୁ ସେମାନଙ୍କର ଜୀବନଧାରା ପ୍ରଗତିଶୀଳ ନହୋଇ ରକ୍ଷଣଶୀଳ ହୋଇ ରହିଛି ।

ରୁଷ ଓ ବିଶେଷତଃ ଚୀନରେ ମାର୍କସୀୟ ବସ୍ତୁବାଦର ବିକାଶ ଦ୍ୱାରା ଜନଗଣଙ୍କ ଦୃଷ୍ଟିଭଙ୍ଗୀରେ ଯେଉଁ ପରିବର୍ତ୍ତନ ହେଲା ତାହା ସେମାନଙ୍କର ଜୀବନ-ଧାରଣ ମାନରେ ମଧ୍ୟ ବିପ୍ଳବର ସୂତ୍ରପାତ କରାଇଲା । ପୂର୍ବରୁ ଚୀନରେ ଅଫିମର ପ୍ରସାର ଯୋଗୁଁ ଚୀନାମାନେ ୟୁରୋପୀୟ ଓ ଜାପାନୀମାନଙ୍କ ଦ୍ୱାରା ଶୋଷିତ ହୋଇ ଦୟନୀୟ ଅବସ୍ଥାରେ ରହିଥିଲେ । କିନ୍ତୁ ଚୀନରେ ଏହି ସାଂସ୍କୃତିକ ବିପ୍ଳବ ସଙ୍ଘଟିତ ହେବାପରେ ଏହା ଅଳ୍ପ ବର୍ଷରେ ଏକ ଶକ୍ତିଶାଳୀ ରାଷ୍ଟ୍ର ଭାବରେ ନିଜକୁ ପ୍ରତିଷ୍ଠା କରିପାରିଛି । ପ୍ରତିମା ପୂଜା ଓ ଜାତିପ୍ରଥା ଭିତରେ ଆବଦ୍ଧ ରହିଥିବା ଭାରତୀୟମାନେ ସତ୍ୟାଗ୍ରହ ଆନ୍ଦୋଳନ କରିବା ଦ୍ୱାରା ଉଚ୍ଚ ସମ୍ମାନର ଅଧିକାରୀ ହୋଇପାରିଲେ । ଜନଗଣଙ୍କ ଭିତରେ ସ୍ୱାଧୀନତାବୋଧ ସେମାନଙ୍କୁ ନୀତିବାନ କରିବା ସହିତ ସେମାନଙ୍କ ମଧ୍ୟରେ ଏକ ବୈଜ୍ଞାନିକ ଓ ପ୍ରଗତିଶୀଳ ଦୃଷ୍ଟିଭଙ୍ଗୀ ସୃଷ୍ଟି କରିପାରିଥିଲା ।

ଯେପର୍ଯ୍ୟନ୍ତ ଏସିଆ ଓ ଅଫ୍ରିକାର ଲୋକମାନେ ଅଲୌକିକତାବାଦୀ ବିଶ୍ୱାସ ଭିତରେ ଦାସତ୍ୱ ମନୋଭାବ ପୋଷଣ କରୁଥିବେ ସେପର୍ଯ୍ୟନ୍ତ ବସ୍ତୁବାଦୀ ୟୁରୋପୀୟ ଓ ଆମେରିକୀୟମାନେ ସେମାନଙ୍କୁ ଶୋଷଣ କରି ରଖିଥିବେ । ଦାସତ୍ୱ ମନୋଭାବକୁ ଦୂର କରି ବ୍ୟକ୍ତି ସ୍ୱାଧୀନତାକୁ ଜାହିର କରିବା ଦ୍ୱାରା ଯେକୌଣସି ପ୍ରକାର ଶୋଷଣକୁ—ତାହା ଯେକୌଣସି ସ୍ଥାନରେ ହେଉନା କାହିଁକି—ଦୂର କରାଯାଇ ପାରିବ । ନିଜକୁ ଦାସକରି ରଖିବା ଦ୍ୱାରା ଶୋଷଣକାରୀ ଭାଇ ସୃଷ୍ଟି ହୋଇଥାଏ । ଯେତେବେଳେ ଦାସମାନେ ନିଜର ଗୋଡ଼ରେ ଛିଡ଼ାହେବେ ସେମାନେ

ସେମାନଙ୍କର ପ୍ରଭୁଙ୍କ ସହ ସମକକ୍ଷ ବୋଲି ଅନୁଭବ କରିପାରିବେ। ନିଜକୁ ନ୍ୟୂନ କରିବା ଦ୍ୱାରା ଅନ୍ୟମାନେ ବଶ୍ୟତା ସ୍ୱୀକାର କରାଇଥାନ୍ତି । ବସ୍ତୁତଃ ନିରୀଶ୍ୱରବାଦୀ ଜୀବନ ଦର୍ଶନକୁ ଯେତେ ବହୁଳ ଭାବରେ ପ୍ରତିଷ୍ଠା କରାଯାଇ ପାରିବ ଦାସତ୍ୱ ମନୋଭାବକୁ ସେତେ ସଫଳତାର ସହ ଦୂର କରିହେବ । ଏହା ଫଳରେ ଏସିଆ ଓ ଆଫ୍ରିକାର ଜନଗଣଙ୍କ ଭିତରେ ବ୍ୟକ୍ତି ସ୍ୱାଧୀନତାର ମନୋଭାବକୁ ପ୍ରସାର କରିବା ସହିତ ସବୁ ସ୍ତରରେ ସମତା ଆଣିବା ସମ୍ଭବ ହେବ ।

ବ୍ୟକ୍ତି ସ୍ୱାଧୀନତାକୁ ସ୍ୱୀକାର କରିବା ଦ୍ୱାରା ଜୀବନ ପ୍ରତି ଯେଉଁ ନୂତନ ଅଭିମୁଖ୍ୟ ଆସିବ ତଦ୍ୱାରା ଆମର ନୈତିକ, ରାଜନୀତିକ, ଅର୍ଥନୀତିକ, ନାଗରିକ ଓ ବୈଷୟିକ ବ୍ୟବସ୍ଥା ସକଳର ମଧ୍ୟ ପରିବର୍ତ୍ତନ ହେବ । ପରମ୍ପରା ଓ ସରକାରୀ ନିୟନ୍ତ୍ରଣ ବ୍ୟକ୍ତି ଉପରେ କର୍ତ୍ତୃତ୍ୱ ସ୍ଥାପନ କରିବା ପରିବର୍ତ୍ତେ ବ୍ୟକ୍ତି ସେମାନଙ୍କ ଉପରେ କର୍ତ୍ତୃତ୍ୱ ସ୍ଥାପନ କରିବ ।

ତୃତୀୟ ପରିଚ୍ଛେଦ

# ନିରୀଶ୍ୱରବାଦୀ ନୈତିକତା

ଯେଉଁ ଶୃଙ୍ଖଳିକ ଶୃଙ୍ଖଳା ଦ୍ୱାରା ବ୍ୟକ୍ତି ସୁଖରେ ରହିପାରେ ତାହା ହେଉଛି ନୈତିକତା । ନିଜର ଆକାଂକ୍ଷାକୁ ପୂରଣ କରିବା ଦ୍ୱାରା ବ୍ୟକ୍ତି ସୁଖରେ ରହିପାରେ । ଜଣେ ଯୋଗୀ ନିରୋଳାରେ ରହି ପ୍ରାର୍ଥନା ଓ ଧ୍ୟାନ କରି ପରଜଗତରେ ମୁକ୍ତିଲାଭ କରିବାର ଆକାଂକ୍ଷା ପୋଷଣ କରିପାରେ । ଏହି ଆକାଂକ୍ଷା ପୂରଣ ହୋଇପାରୁଥିବା ଆଶାରେ ବି ସେ ସୁଖ ଅନୁଭୂତି ଲାଭ କରିପାରେ । ଏଣୁ ହିନ୍ଦୁ ସନ୍ନ୍ୟାସୀମାନେ ପର୍ବତଶିଖରର ଗୁମ୍ଫା ଭିତରେ ବସି ଫଳମୂଳ ଖାଇ ଓ କ୍ଷୁଦ୍ର ଗ୍ଲାନିରେ ଶରୀର ଆବୃତ କରିବାକୁ ଆଗ୍ରହୀ ହୋଇଛନ୍ତି । ଧର୍ମବିଶ୍ୱାସୀମାନେ ଏହି ସନ୍ନ୍ୟାସୀମାନଙ୍କୁ ଅତ୍ୟନ୍ତ ନୀତିବାନ ବୋଲି ଗ୍ରହଣ କରିଥାନ୍ତି ।

ପରନ୍ତୁ ବୁଦ୍ଧିର ବିକାଶ ସହିତ ମଣିଷର ଆକାଂକ୍ଷା ପାର୍ଥିବ ଓ ବାସ୍ତବଧର୍ମୀ ହୋଇଛି । ସନ୍ନ୍ୟାସୀମାନଙ୍କର ପରଜଗତରେ ମୁକ୍ତିର ବାସନା ଅପେକ୍ଷା ମଣିଷର ବୁଦ୍ଧିମନ୍ତ ଆକାଂକ୍ଷା ଖାଦ୍ୟ, ବାସଗୃହ, ପାରିବାରିକ ଜୀବନ ଓ ସମ୍ମାନବୋଧକୁ ଅଧିକ ଗ୍ରହଣ କରିଛି । ନିଜର କଳ୍ପନା ମଣିଷକୁ ଅଧିକ ସୁଖମୟ ଓ ସମ୍ମାନାସ୍ପଦ ଜୀବନ ପ୍ରତି ଆଗ୍ରହୀ କରିଥାଏ । ମଣିଷର ଆବଶ୍ୟକତା ବଢ଼ିବା ସହିତ ସେସବୁ ଲାଭ କରି ସୁଖରେ ରହିବା ପାଇଁ ସାମର୍ଥ୍ୟ ମଧ୍ୟ ଆସିଥାଏ । କାରଣ ଆକାଂକ୍ଷା ଓ ପ୍ରାପ୍ତି ଭିତରେ ସମତାଳ ଦ୍ୱାରା ହିଁ ସୁଖ ସମ୍ଭବ ହୋଇଥାଏ ।

ମଣିଷ ନିଜର ଆବଶ୍ୟକତା ଅନୁଯାୟୀ ଆକାଂକ୍ଷା ପୋଷଣ କରି ନିଜର ସାମର୍ଥ୍ୟ ଭିତରେ ତାହା ହାସଲ କରିବାକୁ ଉଦ୍ୟମ କରିଥାଏ । କାରଣ ସେ ନିଜର ସାମର୍ଥ୍ୟ ଅନୁଯାୟୀ ହିଁ ଆକାଂକ୍ଷା କରିଥାଏ । ସୁତରାଂ ଆଳସ୍ୟ ଓ ଅଭିଯୋଗ— ଯାହା ସାମର୍ଥ୍ୟ ଓ ଆକାଂକ୍ଷା ଭିତରେ ଅସାମଞ୍ଜସ୍ୟତାରୁ ସୃଷ୍ଟି—ଦାୟିତ୍ୱହୀନତାକୁ ହିଁ ବୁଝାଇଥାଏ ।

ନିଜର ଆକାଂକ୍ଷାକୁ ସୀମିତ ରଖିବା ବା ରୂପଦେବା ମଣିଷର ନିଜସ୍ୱ ସଙ୍କଳ୍ପ ଉପରେ ନିର୍ଭର କରେ । ମଣିଷର ମନ ଯେପରି ପରିବର୍ତ୍ତିତ ହୁଏ, ତାହା ତା'ର ଆକାଂକ୍ଷାକୁ ମଧ୍ୟ ସେହିପରି ପ୍ରଭାବିତ କରେ । ରାଜପୁତ୍ର ବୁଦ୍ଧ ନିଜର ସିଂହାସନକୁ

ପ୍ରତ୍ୟାଖ୍ୟାନ କରିଥିଲେ । ହିଟଲର କିନ୍ତୁ ସମଗ୍ର ପୃଥିବୀର ଅଧୀଶ୍ୱର ହେବାକୁ ଚାହିଁଥିଲେ ।

ମଣିଷର ଆକାଂକ୍ଷା କାଳ୍ପନିକ ହୋଇପାରେ କିନ୍ତୁ କିଛି ହାସଲ କରିବା ପାଇଁ ସାମର୍ଥ୍ୟ ବାସ୍ତବ ଅଟେ । ମଣିଷ ଯେତେବେଳେ ନିଜ ଲକ୍ଷ୍ୟହାସଲ ପାଇଁ ବାସ୍ତବ ଉଦ୍ୟମ ନକରି କଳ୍ପନାପ୍ରବଣ ହୋଇ ଅନେକ କିଛି ଆକାଂକ୍ଷା ପୋଷଣ କରେ ସେତେବେଳେ ଅନୁଶୋଚନା ଓ ନୈରାଶ୍ୟ ହିଁ ଆସିଥାଏ ।

ଉପକରଣର ବିନିଯୋଗ ଦ୍ୱାରା ବା ଅନ୍ୟମାନଙ୍କର ସହଯୋଗ ଦ୍ୱାରା ବ୍ୟକ୍ତି ତା'ର ଆବଶ୍ୟକତାକୁ ପୂରଣ କରିବା ପାଇଁ ସମର୍ଥ ହୁଏ । ଉପକରଣ ବା ଯନ୍ତ୍ରର ବିନିଯୋଗର କୌଶଳରୁ ପ୍ରଯୁକ୍ତିବିଦ୍ୟାର ଉଦ୍ରେକ ହୋଇଛି ଓ ପାରସ୍ପରିକ ସହଯୋଗରୁ ସାମାଜିକ ସଙ୍ଗଠନ ବ୍ୟବସ୍ଥାର ବିକାଶ ହୋଇଛି । ପରସ୍ପର ଉପରେ ନିର୍ଭରଶୀଳ ହୋଇ ପ୍ରଯୁକ୍ତିବିଦ୍ୟା ଓ ସାମାଜିକ ସଙ୍ଗଠନ ନିଜ ନିଜର ବିକାଶ କରିଛନ୍ତି । ଅଗଣିତ ଜନଗଣଙ୍କର ପୁରୁଷ ପୁରୁଷ ଧରି ସମ୍ମିଳିତ ଉଦ୍ୟମ ଯୋଗୁଁ ପଥର ନିର୍ମିତ ଉପକରଣରୁ ଶକ୍ତିଶାଳୀ କାରଖାନାର ବିକାଶ ସମ୍ଭବପର ହୋଇଛି । ସେହିପରି ଯାନ୍ତ୍ରିକ ଯୋଜନା ଦ୍ୱାରା ଗମନାଗମନର ପ୍ରଭୂତ ବିକାଶ, ଡାକ୍ତରୀ ଗବେଷଣା ଓ ଖାଦ୍ୟ ଉତ୍ପାଦନ ବୃଦ୍ଧି ଯୋଗୁଁ ଆଦିମ ଦଳଠାରୁ ସମ୍ପ୍ରତି ବିରାଟ ନଗରୀମାନ ଗଢ଼ି ଉଠିଛି ।

ପ୍ରଯୁକ୍ତିବିଦ୍ୟା କ୍ଷେତ୍ରରେ ମଣିଷ ବସ୍ତୁ ଓ ଉପକରଣ ସହିତ କାର୍ଯ୍ୟ କରିଥାଏ । ସେ କାଠ ଓ ଧାତୁକୁ ନିଜ ଇଚ୍ଛାରେ ବିନିଯୋଗ କରିପାରେ ଓ ନିଜ କୌଶଳ ପ୍ରୟୋଗ କରି ବୃକ୍ଷ ଓ ପଶୁମାନଙ୍କର ଯତ୍ନ ନେଇପାରେ । କିନ୍ତୁ ସାମାଜିକ ସମ୍ବନ୍ଧ କ୍ଷେତ୍ରରେ ନିଜପରି ଆବେଗ, ଅନୁଭୂତି, ଶ୍ରଦ୍ଧା, ଘୃଣା ଓ ଆଶା ଥିବା ଅନ୍ୟ ବ୍ୟକ୍ତିମାନଙ୍କ ସହ ସେ ସମ୍ପର୍କିତ ହୁଏ । ଏହି ପାରସ୍ପରିକ ସମ୍ପର୍କ ଭିତରୁ ନୈତିକତା କିମ୍ବା ବିଚାରଶୀଳତାର ଉଦ୍ରେକ ହୁଏ । ସୁତରାଂ ନିଜର ସୁଖସ୍ୱାଚ୍ଛନ୍ଦ୍ୟ ଓ ଆକାଂକ୍ଷାକୁ ପୂରଣ କରିବା ପାଇଁ ଆବଶ୍ୟକ ହେଉଥିବା ସମ୍ମିଳିତ ଉଦ୍ୟମ ଓ ତତ୍ଜନିତ ବିସ୍ତୃତ ପାରସ୍ପରିକ ସମ୍ବନ୍ଧ ହିଁ ହେଉଛି ନୈତିକତା ।

ନୈତିକ ଆଚରଣର ଦୁଇଟି ମୌଳିକ ନିୟମ ହେଉଛି—ସାଧୁତା ଓ ସହନଶୀଳତା ।

କଥା ଓ କାର୍ଯ୍ୟରେ ସଙ୍ଗତି ହେଉଛି ସାଧୁତା । ଅନ୍ୟମାନେ ଯାହା କୁହନ୍ତି ତାହା କରନ୍ତି ଓ ଯାହା କରନ୍ତି ତାହା କୁହନ୍ତି ବୋଲି ଯଦି ଜଣଙ୍କର ବିଶ୍ୱାସ ନରୁହେ ଓ ସେହିପରି ତା'ର କଥା ଓ କାର୍ଯ୍ୟରେ ସଙ୍ଗତି ଥିବା ଅନ୍ୟମାନେ ବିଶ୍ୱାସ ନକରନ୍ତି, ତେବେ ସାମାଜିକ ସମ୍ପର୍କ କ୍ଷେତ୍ରରେ ସହମତି ଓ ପାରସ୍ପରିକ ସହଯୋଗ

ରହିବ ନାହିଁ । ସୁତରାଂ ପାରସ୍ପରିକ ସହଯୋଗ ପାଇଁ ସାଧୁତା ଅପରିହାର୍ଯ୍ୟ ମନେହୁଏ । ସାମାଜିକ ସମ୍ପର୍କ କ୍ଷେତ୍ରରେ ଏହାହିଁ ବ୍ୟକ୍ତି ବ୍ୟକ୍ତି ଭିତରେ ସମ୍ବନ୍ଧକୁ ବାନ୍ଧି ରଖିଥାଏ । ଯେପରି ସିମେଣ୍ଟ ବ୍ୟତୀତ ଇଟା ସବୁ ଏକ ଗଦାରେ ପରିଣତ ହୁଅନ୍ତି କିନ୍ତୁ କାନ୍ଥ ସୃଷ୍ଟି କରିପାରନ୍ତି ନାହିଁ ସେହିପରି ସାଧୁତା ବିନା ଜନଗଣ ଏକ ସମାବେଶ କରନ୍ତି ସିନା ସମାଜ ସୃଷ୍ଟି କରିପାରନ୍ତି ନାହିଁ । ବର୍ତ୍ତମାନ ଆମର ସହର ଜୀବନ କେତେକାଂଶରେ ଏକ ଜନ ସମାବେଶ କହିଲେ ଅତ୍ୟୁକ୍ତି ହେବନାହିଁ । ଏକ ଜନଗହଳିପୂର୍ଣ୍ଣ ରାସ୍ତାରେ ଜଣେ ବ୍ୟକ୍ତି ନିଃସଙ୍ଗ ଭାବରେ ଦଣ୍ଡାୟମାନ ହୋଇଥାଏ; କାରଣ ସେ ଅନ୍ୟପ୍ରତି ଧ୍ୟାନ ଦିଏନାହିଁ ବା କେହି ତା' ପ୍ରତି ଦୃଷ୍ଟି ଦିଅନ୍ତି ନାହିଁ । ସେ ଯଦି ଗାଡ଼ି ଦ୍ୱାରା ଧକ୍କା ଖାଇ ଦୁର୍ଘଟଣାଗ୍ରସ୍ତ ହୁଏ ତେବେ ଏହି ଘଟଣା ସାମାଜିକ ଗୁରୁତ୍ୱ ପରିବର୍ତ୍ତେ ମାତ୍ର ଏକ ସମ୍ବାଦପତ୍ର ପାଇଁ ବିଷୟ ହୁଏ । କିନ୍ତୁ ସାଧୁତା ଗଣସମାବେଶକୁ ସମାଜରେ ପରିବର୍ତ୍ତିତ କରେ ।

ଯେହେତୁ କଥା ଓ କାର୍ଯ୍ୟ ଚିନ୍ତାରୁ ନିଃସୃତ ହୁଏ, ସାଧୁତା କେବଳ କଥା ଓ କାର୍ଯ୍ୟ ଭିତରେ ଐକ୍ୟ ହେବା ପରିବର୍ତ୍ତେ ଚିନ୍ତା, କଥା ଓ କାର୍ଯ୍ୟ ଭିତରର ସଙ୍ଗତିକୁ ବୁଝାଇଥାଏ । କିନ୍ତୁ ଚିନ୍ତାସକଳ ବ୍ୟକ୍ତିଗତ ହୋଇଥିବାରୁ ଜଣେ ବ୍ୟକ୍ତି ହିଁ ନିଜର ଭାବନାକୁ ଜାଣିବା ସମ୍ଭବପର ହୁଏ । ଅନ୍ୟମାନେ ଜଣେ ବ୍ୟକ୍ତିର ଚିନ୍ତାକୁ ତା'ର କଥା ଓ କାର୍ଯ୍ୟରୁ ଜାଣିପାରନ୍ତି ଅର୍ଥାତ୍ ଜଣକର ବ୍ୟକ୍ତିଗତ ଭାବନାସକଳ ତା'ର ବାହ୍ୟିକ କାର୍ଯ୍ୟ ଓ କଥା ମାଧ୍ୟମରେ ପ୍ରକାଶଲାଭ କରେ । ସୁତରାଂ ସାମାଜିକ ସମ୍ପର୍କ ସ୍ତରରେ ସହମତ ପ୍ରକାଶ ପାଇବା ପାଇଁ କଥା ଓ କାର୍ଯ୍ୟସାଧନ ଭାବରେ କାର୍ଯ୍ୟ କରିଥାଏ । ଏଣୁ ସାଧୁତା କଥା ଓ କାର୍ଯ୍ୟ ଭିତରେ ଥିବା ଐକ୍ୟକୁ ହିଁ ବୁଝାଇଥାଏ ।

ନିଜର ଭାବନା ସହିତ ନିଜର କଥା ଓ କାର୍ଯ୍ୟର ମେଳ ରହିବା ହେଉଛି ବ୍ୟକ୍ତିଗତ ସାଧୁତା । ଏହା ବ୍ୟକ୍ତିକୁ ନିଜର ବିବେକର ଦଂଶନରୁ ରକ୍ଷା କରିଥାଏ । ଅବଶ୍ୟ ଏକ ନିର୍ଦ୍ଦିଷ୍ଟ ବିଷୟ ଉପରେ ଜଣେ ବ୍ୟକ୍ତି ବହୁବିଧ ମତାମତ ପୋଷଣ କରିପାରେ । କିନ୍ତୁ ଶେଷରେ ନିଜର ଏକ ବା ଏକାଧିକ ନିଷ୍ପତ୍ତିକୁ ନିଜର କଥା ଓ କାର୍ଯ୍ୟ ମାଧ୍ୟମରେ ବ୍ୟକ୍ତ କରିଥାଏ । ତା'ପରେ ହିଁ ଜଣଙ୍କର କାର୍ଯ୍ୟର ସାମାଜିକ ଗୁରୁତ୍ୱ ଆସିଥାଏ । ଯେଉଁ ଭାବନା ସକଳ କଥା ବା କାର୍ଯ୍ୟରେ ବ୍ୟକ୍ତ ହୁଏନାହିଁ ତାହା ଅର୍ଥଶୂନ୍ୟ ହୋଇପଡ଼େ ଓ ସେସବୁର କୌଣସି ସାମାଜିକ ଗୁରୁତ୍ୱ ରହେନାହିଁ । ଜଣଙ୍କର କଥା ବା କାର୍ଯ୍ୟ ବ୍ୟତୀତ ତାଙ୍କର ଭାବନା ପ୍ରତି କୌଣସି ଉଦ୍ଦେଶ୍ୟ ଆରୋପ କରିବା ଅନ୍ୟାୟ ଅଟେ । କଥା ବା କାର୍ଯ୍ୟରେ ବ୍ୟକ୍ତ ନହେବା

ପର୍ଯ୍ୟନ୍ତ ଗୁପ୍ତ ଉଦ୍ଦେଶ୍ୟକୁ ସନ୍ଦେହ କରାଯିବା ଉଚିତ ନୁହେଁ । ଜଣେ ନିଜର ମନର ଭାବନାକୁ ପରିବର୍ତ୍ତନ କରି ସେହି ପରିବର୍ତ୍ତନକୁ ଆନୁଷଙ୍ଗିକ ଭାଷା ଓ କାର୍ଯ୍ୟରେ ବ୍ୟକ୍ତ କରିବାଦ୍ୱାରା ନିଜ ସାଧୁତାର ପରିଚୟ ଦେଇଥାଏ । ବାସ୍ତବପକ୍ଷେ ସମୟର ବ୍ୟବଧାନ ଭିତରେ ପରିବର୍ତ୍ତିତ ପରିସ୍ଥିତି ସହିତ ସମତାଲ ରକ୍ଷାକରିବା ପାଇଁ କେତେକ ପରିବର୍ତ୍ତନ ଅବଶ୍ୟମ୍ଭାବୀ ହୋଇଥାଏ । ଏହା ନକଲେ ଜଣେ ରକ୍ଷଣଶୀଳ ହୋଇପଡ଼େ । ଅବଶ୍ୟ ବାରମ୍ବାର ମତ ପରିବର୍ତ୍ତନ ଦ୍ୱାରା ଜଣଙ୍କର ଅସାଧୁତା ପରିବର୍ତ୍ତେ ଉଦ୍ଦେଶ୍ୟହୀନତା ବା ଅସ୍ଥିରତା ପ୍ରକାଶିତ ହୋଇଥାଏ ।

ସାଧୁତା ଓ ଗୁପ୍ତତା ପରସ୍ପର ଅସଂଲଗ୍ନ; କାରଣ ଗୁପ୍ତତାଦ୍ୱାରା ଯାହା କରାଯାଇଥାଏ ତାହା ବ୍ୟକ୍ତ କରାଯାଏ ନାହିଁ । ମିଥ୍ୟାବାଦିତା ହେଉଛି ସବୁଠାରୁ ଖରାପ । କାରଣ ଯାହା ପ୍ରକୃତରେ କରାଯାଏ ତାହା କୁହା ନଯାଇ ଅନ୍ୟ କିଛି କୁହାଯାଏ । ଗୁପ୍ତତା ଓ ମିଥ୍ୟା ହେଉଛି ଅସାଧୁତା; କାରଣ ଏଥିରେ କଥା ଓ କାର୍ଯ୍ୟରେ ସଂଗତି ରକ୍ଷା କରାଯାଇନଥାଏ ।

ଅବଶ୍ୟ ଗୁପ୍ତତା ଓ ଗୋପନୀୟତା ପରସ୍ପରଠାରୁ ପୃଥକ୍ । ଗୋପନୀୟତା ହେଉଛି ଏକ ବ୍ୟକ୍ତିଗତ ବ୍ୟାପାର ଯାହା ସହିତ ଅନ୍ୟମାନଙ୍କର ସମ୍ବନ୍ଧ ନଥାଏ । ଯେତେବେଳେ କୌଣସି ଉଦ୍ଦେଶ୍ୟ ପ୍ରତିପନ୍ନଯୋଗ୍ୟ ହୋଇଥାଏ, ସେତେବେଳେ ଏକ ବ୍ୟକ୍ତିଗତ କାର୍ଯ୍ୟକୁ ପ୍ରକାଶ କରିବା କ୍ଷେତ୍ରରେ ଅସୁବିଧା ନଥାଏ । ଅପରପକ୍ଷରେ ଗୁପ୍ତତା ଓ ମିଥ୍ୟା ଦ୍ୱାରା ଘଟଣାକୁ ଉଦ୍ଦେଶ୍ୟମୂଳକ ଭାବେ ଲୁଚାଯାଏ ବା ବିକୃତ କରି ବ୍ୟକ୍ତ କରାଯାଏ ।

ଗୁପ୍ତତା ହେଉଛି ସାମାଜିକ ଦାୟିତ୍ୱବୋଧରୁ ପଳାୟନ । ବ୍ୟକ୍ତିଗତ ସ୍ୱାର୍ଥ ହାସଲ ପାଇଁ ବା ଗୋଷ୍ଠୀଗତ ଦୃଷ୍ଟିଭଙ୍ଗୀକୁ ପୋଷଣ କରିବା କ୍ଷେତ୍ରରେ ଏହା ଉଦ୍ରେକ ହୋଇଥାଏ । ଗୋଟିଏ ଗୋଷ୍ଠୀର ସଭ୍ୟମାନେ ପରସ୍ପର ଭିତରେ ସାଧୁ ହେଲେ ବି ଗୋଷ୍ଠୀବାହାରେ ଅନ୍ୟମାନଙ୍କ ସହିତ ସମ୍ପର୍କ କ୍ଷେତ୍ରରେ ଅସାଧୁ ହୋଇଥାନ୍ତି । ଜାତିପ୍ରଥା, ସାମ୍ପ୍ରଦାୟିକତା, ଜାତୀୟତା ଏବଂ ଦଳବଦ୍ଧତା ଇତ୍ୟାଦି ଏହି ଗୋଷ୍ଠୀଗତ ବ୍ୟବହାରର ପରିଣାମ ବୋଲି କହିବାକୁ ହେବ । ଏକ ବୃହତ୍ତର ସାମାଜିକ ସମ୍ବନ୍ଧ କ୍ଷେତ୍ରରେ ସାମ୍ପ୍ରଦାୟିକ ମନୋଭାବ ଗୁପ୍ତତା ଭଳି ଅସାଧୁ ମଧ୍ୟ ଅଟେ ।

ସାଧୁତା ଶୃଙ୍ଖଳା ଆବଶ୍ୟକ କରିଥାଏ । ବ୍ୟକ୍ତିଗତ ସ୍ୱାର୍ଥ ଓ ଆଳସ୍ୟ ନୈତିକ ଆଚରଣ ପାଇଁ ଯେପରି ପ୍ରତିବନ୍ଧକ ହୋଇଥାଏ, ସେପରି ମଧ୍ୟ ବ୍ୟକ୍ତିକୁ ଅସାଧୁତା ପ୍ରତି ଆକୃଷ୍ଟ କରିଥାଏ । ସୁତରାଂ ସାମାଜିକ ସମ୍ପର୍କ କ୍ଷେତ୍ରରେ ସହଯୋଗିତା ପାଇଁ ଜଣେ ବ୍ୟକ୍ତି ନିଜର ବ୍ୟକ୍ତିଗତ ସ୍ୱାର୍ଥ ଓ ତତ୍କ୍ଷଣାତ୍ ଲାଭକୁ

ପରିହାର କରିବା ଆବଶ୍ୟକ । ନୈତିକ ଆଚରଣ ପ୍ରତି ଉଦାସୀନତା ପ୍ରକାଶ କରିବାଦ୍ୱାରା ସାମାଜିକ ସମ୍ମାନ ଓ ସହଯୋଗ ହରାଇବାର ଆଶଙ୍କା ଥାଏ । ସେ କ୍ଷେତ୍ରରେ ନିଜର ତତ୍କ୍ଷଣାତ୍ ସ୍ୱାର୍ଥ ହାସଲ ଅପେକ୍ଷା ସ୍ୱାର୍ଥତ୍ୟାଗ ଯଥାର୍ଥରେ ଏକ ମହତ୍ତ୍ୱପ୍ରାପ୍ତି ହୋଇଥାଏ । କିନ୍ତୁ ମଣିଷସ୍ୱଭାବ ଭିତରେ ସାମାଜିକତା ଓ ସ୍ୱାର୍ଥପରତା ଉଭୟ ଥିବା ଦେଖାଯାଏ । ସୁତରାଂ ମଣିଷ ଭିତରେ ଥିବା ତ୍ୟାଗ ମନୋଭାବ ସହିଷ୍ଣୁତା ଓ ସମ୍ବେଦନଶୀଳତା ଆଦି ସାମାଜିକ ଗୁଣଗୁଡ଼ିକର ବିକାଶ କରିବା ଓ ଆଳସ୍ୟ, ସ୍ୱାର୍ଥପରତା, ଘୃଣା ଆଦି ଅସାମାଜିକ ଗୁଣଗୁଡ଼ିକର ପରିହାର କରିବାପାଇଁ ଚିନ୍ତା ଓ ପ୍ରଣାଳୀ ବାହାର କରାଯିବା ଆବଶ୍ୟକ ।

ବ୍ୟକ୍ତିକୁ ନୈତିକ ଓ ସାମାଜିକ କରିବାପାଇଁ ପ୍ରଚଳିତ ଥିବା ତିନୋଟି ଆୟୁଧ ହେଉଛି ଆତ୍ମଶୃଙ୍ଖଳା, ଧର୍ମଗତବିଶ୍ୱାସ ଓ ରାଜନୈତିକ କ୍ଷମତା ।

ନୈତିକ ଆଚରଣ ଉଜ୍ଜୀବିତ କରିବାର ପ୍ରକୃଷ୍ଟ ପଦ୍ଧତି ହେଉଛି ପ୍ରତ୍ୟେକ ବ୍ୟକ୍ତିର ନୈତିକ କର୍ତ୍ତବ୍ୟପରାୟଣତାକୁ ସମାଦର କରିବା । ଆତ୍ମଶୃଙ୍ଖଳା ପାଇଁ ଗାନ୍ଧୀଙ୍କର ରଚନାତ୍ମକ କାର୍ଯ୍ୟକ୍ରମ ଉଦ୍ଦିଷ୍ଟ ଥିଲା । ଆତ୍ମଶୃଙ୍ଖଳା ଦ୍ୱାରା ପ୍ରତ୍ୟେକ ବ୍ୟକ୍ତି କର୍ତ୍ତବ୍ୟ ସମ୍ପାଦନ କ୍ଷେତ୍ରରେ ବା ସାମାଜିକ ଜୀବନରେ ସାଧୁତା ରକ୍ଷା କରିବାରେ ନିଜ ଉପରେ ନିୟନ୍ତ୍ରଣ ଆଣିଥାଏ । ଅନ୍ୟପକ୍ଷରେ କୌଣସି ବ୍ୟକ୍ତିର ଅସାଧୁ କାର୍ଯ୍ୟକଳାପଦ୍ୱାରା ଅନ୍ୟର ସୁଖଶାନ୍ତି ବ୍ୟାହତ ହୋଇଥାଏ । ଯଦି କୌଣସି ସଭାର ବକ୍ତା ବିଳମ୍ବରେ ଆସନ୍ତି ତେବେ ସେ ଶ୍ରୋତାଙ୍କ ଭିତରୁ ଅନେକଙ୍କର ସମୟ ନଷ୍ଟ କରିଥାନ୍ତି । ଏଣୁ ଜଣେ ବକ୍ତା ଯେପରି ସମୟାନୁବର୍ତ୍ତୀ ହେବା ଆବଶ୍ୟକ ସେହିପରି ବକ୍ତାଙ୍କର ଅସମୟାନୁବର୍ତ୍ତିତା ପାଇଁ ତାଙ୍କୁ ସୁଝାଇ ଦେବା ହେଉଛି ଶ୍ରୋତାଙ୍କର ଅଧିକାର । ସାମାଜିକ ସମ୍ପର୍କ କ୍ଷେତ୍ରର ଦୁଇ ପାର୍ଶ୍ୱ ହେଉଛି ଅଧିକାର ଓ କର୍ତ୍ତବ୍ୟ । ସାମାଜିକ ସମ୍ପର୍କକୁ ମାତ୍ରାନିଷ୍ଠ କରିବା ପାଇଁ ଏହା ହେଉଛି ବିଧାନ ଓ ପ୍ରତିରୋଧ ବା ପ୍ରତିବିଧାନ ।

ଯଦି ବା ଆଦିମ ମନୁଷ୍ୟମାନଙ୍କ ଭିତରେ ଉଚ୍ଚ ସାମାଜିକ ଚେତନା ଓ ଆତ୍ମଶୃଙ୍ଖଳା ନେଇ ସଚେତନତା ରହିନଥିଲା ତଥାପି ସାମାଜିକ ଜୀବନରେ ସଙ୍ଘବଦ୍ଧ ହୋଇ ରହିବାପାଇଁ ସାଧୁତା ଆବଶ୍ୟକ ହେଉଥିଲା । ସଙ୍ଘବଦ୍ଧ ହୋଇ ରହିବା ପାଇଁ ଆବଶ୍ୟକ ହେଉଥିବା ନିୟମାନୁବର୍ତ୍ତିତା ଆତ୍ମଶୃଙ୍ଖଳା ସହିତ ସମାନ ବୋଲି କହିହେବ । ଆଦିବାସୀ ଜୀବନର ସୀମା ଭିତରେ ଆଦିମ ମଣିଷମାନେ ପରମ୍ପରାକ୍ରମେ କେତେକ ନିୟମକୁ ଗ୍ରହଣ କରୁଥିଲେ ଓ କେତେକ ନିଷେଧ ଯୋଗୁଁ ଅସାଧୁତା ପରିହାର କରୁଥିଲେ । ସେତେବେଳେ ଅପରାଧମୂଳକ କାର୍ଯ୍ୟକୁ ଜୋରିମାନା ବା ଶାରୀରିକ ଦଣ୍ଡଦ୍ୱାରା କଠିନ ଭାବରେ ଦମନ କରାଯାଉଥିଲା । ସାମାଜିକ ଜୀବନରେ

ନୈତିକ ଆଚରଣରେ ଆବଶ୍ୟକତା—ତାହା ଯେତେ ଅପରିପକ୍ୱ ଭାବରେ ହେଉ ନା କାହିଁକି—ଆଦିମ ଜୀବନର ଏକ ବୈଶିଷ୍ଟ୍ୟ ଅଟେ । ସେମାନଙ୍କ ଭିତରେ ରହିଥିବା ଏହି ସାଧୁତା ସେମାନଙ୍କ ଭିତରେ କୌଣସି କାର୍ଯ୍ୟହାସଲ ପାଇଁ ଅପରିମିତ ସହଯୋଗ ସୃଷ୍ଟି କରିବା ସହିତ ସେମାନଙ୍କ ଭିତରେ ସମତା ରକ୍ଷା କରିପାରିଥିଲି ।

ସେମାନଙ୍କର ଆଦିମ ଅବସ୍ଥା ଓ ପରିବେଷ୍ଟନୀ ଭିତରେ ଶୃଙ୍ଖଳାଭିତ୍ତି ସାମାଜିକ ମୂଲ୍ୟବୋଧ, ସାଧୁତା ଓ ସମତାର ବିକାଶ ପାଇଁ ଅନୁକୂଳ ହେଲା । ଯଦି ଏହି ବିକାଶଧାରା ଅପ୍ରତିହତଭାବେ ଅଗ୍ରଗତି କରିଥାନ୍ତା, ତେବେ ଏହା ଆଦିମ ସମାଜର ଅନ୍ୟାନ୍ୟ ପ୍ରତିବନ୍ଧକକୁ ପଛରେ ପକାଇ ସଭ୍ୟତାର ବିକାଶ କ୍ଷେତ୍ରରେ ଯଥାର୍ଥ ନୈତିକ ମୂଲ୍ୟବୋଧର ବିବର୍ତ୍ତନ ଦିଗରେ ସାହାଯ୍ୟ କରିଥାନ୍ତା ।

କିନ୍ତୁ ଏହି କ୍ଷେତ୍ରରେ ଧର୍ମୀୟବିଶ୍ୱାସ ସକଳର ଅନୁପ୍ରବେଶ ଦ୍ୱାରା ନୈତିକ ଆଚରଣ ସାମାଜିକ ଜୀବନର ଭିତ୍ତି ହେବା ପରିବର୍ତ୍ତେ ଏକ ପାରଲୌକିକ ଜଗତରେ ମୁକ୍ତି ପାଇଁ ଉଦ୍ଦିଷ୍ଟ ହେଲା । ନୈତିକ ଆଚରଣଦ୍ୱାରା ମୁକ୍ତିଲାଭ କରାଯାଇପାରିବ ବୋଲି ଧର୍ମବିଶ୍ୱାସୀମାନେ ଗ୍ରହଣ କରିନେଲେ । ଫଳରେ ନୈତିକ କାର୍ଯ୍ୟକୁ ପୁଣ୍ୟ ଓ ଅନୈତିକ କାର୍ଯ୍ୟକୁ ପାପ ବୋଲି ଅଭିହିତ କରାଗଲା । ସ୍ୱର୍ଗପ୍ରାପ୍ତିର ଆଶା ଓ ନର୍କର ଭୟଦ୍ୱାରା ଲୋକମାନେ ପୁଣ୍ୟକାର୍ଯ୍ୟ ପ୍ରତି ଆଗ୍ରହୀ ହେବା ଓ ପାପକାର୍ଯ୍ୟକୁ ପରିହାର କରିବା ଦେଖାଗଲା ।

ଧର୍ମୀୟବିଶ୍ୱାସର ଧାରା ଆଦିବାସୀମାନଙ୍କର ଜୀବନର ସୀମିତ ପରିଧିକୁ ଅତିକ୍ରାନ୍ତ କରି କେତେକ ସାଧାରଣ ବିଶ୍ୱାସ ଉପରେ ଆଧାରିତ ଏକ ବୃହତ୍ତର ସାମାଜିକ ସମ୍ବନ୍ଧ ସୃଷ୍ଟି କଲା । ସାମାଜିକ ସମ୍ବନ୍ଧର ପରିସର ଯେତିକି ବୃଦ୍ଧି ପାଇବାକୁ ଲାଗିଲା, ପାପ ଓ ପୁଣ୍ୟର ହିସାବ ବି ସେହିପରି ବଢ଼ିବାକୁ ଲାଗିଲା । ପ୍ରେମ, ସତ୍ୟ, କରୁଣା ଓ ସହଯୋଗରେ ସୁଫଳ ମିଳୁଥିବା ବେଳେ ଘୃଣା, ଲୋଭ ଓ ମିଥ୍ୟାଦ୍ୱାରା ଧ୍ୱଂସ ହେଉଥିବା କଥା ଅନେକ କାହାଣୀ, କିମ୍ବଦନ୍ତୀ, କେତେ ଦେବଦେବୀ, ସ୍ୱର୍ଗଦୂତ, ଅପ୍ସରା ଓ ରାକ୍ଷସଙ୍କ ଉପରେ କଳ୍ପିତ ରୂପକଥା ଓ ପୌରାଣିକ ଉପାଖ୍ୟାନମାନଙ୍କ ଜରିଆରେ କୁହାଗଲା ।

ଧର୍ମଭିତ୍ତିକ ନୈତିକତା ଅନେକ ବିଶ୍ୱାସୀଙ୍କୁ ପ୍ରେମ ଓ ସତ୍ୟବାଦିତା ପାଇଁ ପ୍ରେରଣା ଯୋଗାଇଲା । ଈଶ୍ୱରପ୍ରାପ୍ତି ଓ ମୁକ୍ତିଲାଭ ଆଶାରେ ସେମାନେ ନୈତିକ ଆଚରଣ କ୍ଷେତ୍ରରେ ଉତ୍କର୍ଷତା ଲାଭ କରିଛନ୍ତି । ପରଜଗତରେ ମୁକ୍ତିଲାଭ ଆଶାରେ କେତେକ ଧର୍ମବିଶ୍ୱାସୀ ସାଧୁତା ପାଇଁ ନିଜ ଜୀବନକୁ ଉତ୍ସର୍ଗ କରିବାକୁ ବି କୁଣ୍ଠା ପ୍ରକାଶ କରିନାହାନ୍ତି । ଏତଦ୍‌ବ୍ୟତୀତ 'ମଣିଷ ଯାହାକିଛି ଗୁପ୍ତରେ କଲେ ବି ତାହା

ଈଶ୍ୱର ଜାଣିଛନ୍ତି' ଏହି ବିଶ୍ୱାସ ବ୍ୟକ୍ତିଗତ ଚରିତ୍ରକୁ ଶୁଦ୍ଧି କରିବାରେ ସାହାଯ୍ୟ କରିଛି ।

ତଥାପି ଧର୍ମଭିତ୍ତିକ ନୈତିକ ଶୃଙ୍ଖଳାର ଉପଯୋଗିତା ସତ୍ତ୍ୱେ ଏଥିରେ ଥିବା ଅନ୍ତର୍ନିହିତ ତ୍ରୁଟି ଏହାର ମୂଲ୍ୟକୁ ହ୍ରାସ କରିଦେଲା । ଆତ୍ମଶୃଙ୍ଖଳା ଓ ନୈତିକତାକୁ ଏକ ସାମାଜିକ କର୍ତ୍ତବ୍ୟ ଭାବରେ ଗ୍ରହଣ କଲାବେଳେ ଧର୍ମବିଶ୍ୱାସ ନୈତିକତାକୁ ଗୌଣ ସ୍ଥାନ ଦେଲା । କାରଣ ନୈତିକତା ସାମାଜିକ କର୍ତ୍ତବ୍ୟବୋଧ ସହ ସମ୍ପର୍କିତ ନହୋଇ ଏକ ପାରଲୌକିକ ଜଗତରେ ମୁକ୍ତିଲାଭ ପାଇଁ ଉଦ୍ଦିଷ୍ଟ ହୋଇରହିଲା । ଫଳରେ ଯଦିଓ ଅନ୍ୟ ପନ୍ଥାରେ ମୁକ୍ତି ମିଳିବା ସମ୍ଭବ ମନେହେଲା ତେବେ ଜଣେ ଧର୍ମବିଶ୍ୱାସୀ ନିଜର ସାମାଜିକ କର୍ତ୍ତବ୍ୟବୋଧକୁ ଅସ୍ୱୀକାର କଲା । ମଠ ଜୀବନ ହେଉଛି ଏହାର ଏକ ଜ୍ୱଳନ୍ତ ଉଦାହରଣ । ଧର୍ମୀୟ ବିଶ୍ୱାସ ଯେହେତୁ ସମ୍ମାନବୋଧ ଦ୍ୱାରା ଭୂଷିତ ହୋଇରହିଲା, ସେହେତୁ ଶ୍ରମକାତର ବ୍ୟକ୍ତିଗଣ ସାମାଜିକ ଆବଶ୍ୟକତାକୁ ପୂରଣ କରିବା ପରିବର୍ତ୍ତେ ପ୍ରାର୍ଥନା, ଧ୍ୟାନ, ଉପବାସ ଓ ମାଳା ଜପିବାରେ ସମୟ କଟାଇବାରେ ଲାଗିଲେ । କିନ୍ତୁ ଯୁକ୍ତିସମ୍ମତ ଦୃଷ୍ଟିକୋଣରୁ ବାବାଜୀମାନେ ହେଉଛନ୍ତି ଶ୍ରମକାତର ଓ ପ୍ରାର୍ଥନା ହେଉଛି ସମୟ ନଷ୍ଟ ସହିତ ସମାନ । ଅଧିକନ୍ତୁ ଯେତେବେଳେ ଧର୍ମଯାଜକମାନେ ଆଶ୍ରୟଦାତା ହୋଇ ଧର୍ମକୁ ଏକ ବ୍ୟବସାୟରେ ପରିଣତ କଲେ ସେତେବେଳେ ସାମାଜିକ ଅବସ୍ଥାର ଆହୁରି ଅବକ୍ଷୟ ହେବାକୁ ଲାଗିଲା । ଏହାଦ୍ୱାରା ତପସ୍ୟା ଓ ପ୍ରାୟଶ୍ଚିତ୍ତର ଆଳ ଦେଖାଇ ଅପରାଧୀମାନେ ନିଜର ଅପକୀର୍ତ୍ତିକୁ ଏଡ଼ାଇ ଦେଲେ ଓ ଶଠମାନେ ସରଳ-ବିଶ୍ୱାସୀମାନଙ୍କୁ ଠକିବାରେ ଲାଗିଲେ ।

ଧର୍ମୀୟ ଧାରାର ଆଉ ଏକ ତ୍ରୁଟି ହେଲା କ'ଣ କରଣୀୟ ବା କ'ଣ ନୁହେଁ ଜନିତ ନିର୍ଦ୍ଦେଶ ଦେବା । ଏହା ଭକ୍ତମାନଙ୍କୁ ନିର୍ଦ୍ଦିଷ୍ଟ ଔପଚାରିକ ଗୁଳା ଭିତରେ ଯିବାକୁ ନିର୍ଦ୍ଦେଶ ଦେଇ ସେମାନଙ୍କର ନିଜସ୍ୱ ପ୍ରଚେଷ୍ଟାକୁ ନଷ୍ଟ କରିଦେଲା । ବାଇବେଲ୍, କୋରାନ, ଜେନ୍ଦାଭେସ୍ତା ଓ ଭଗବତ୍ ଗୀତା ଆଦି ଧର୍ମଗ୍ରନ୍ଥଗୁଡ଼ିକର ରଚୟିତାମାନେ ସୁଉଦ୍ଦେଶ୍ୟ ରଖି କ'ଣ କରଣୀୟ ଓ କ'ଣ କରଣୀୟ ନୁହେଁ, ତାହାର ଏକ ତାଲିକା ପ୍ରଦାନ କଲେ । ସେହି ଅନୁଯାୟୀ ସକାଳରୁ ସନ୍ଧ୍ୟା ଓ ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ଜୀବନଚର୍ଯ୍ୟାଗୁଡ଼ିକୁ ପାଳନ କରିବାକୁ ଧର୍ମାନୁଗତ ବ୍ୟକ୍ତିଙ୍କୁ କୁହାଗଲା । କିନ୍ତୁ କାଳକ୍ରମେ ସେଗୁଡ଼ିକ ପୁରୁଣା ହୋଇଗଲା ଓ ଜୀବନର ନୂତନ ପରିସ୍ଥିତିରେ ସୃଷ୍ଟ ଆବଶ୍ୟକତାକୁ ପୂରଣ କରିବାରେ ଅସମର୍ଥ ହେଲା । ଧର୍ମଗ୍ରନ୍ଥ-ଗୁଡ଼ିକ କୌଣସି ପରିବର୍ତ୍ତନକୁ ଗ୍ରହଣ କଲାନାହିଁ । ରାଷ୍ଟ୍ରୀୟ ସମ୍ବିଧାନମାନଙ୍କରେ ବିଶିଷ୍ଟ କ୍ଷମତା ବା ଏହାର ଧାରାଗୁଡ଼ିକର ପରିବର୍ତ୍ତନ ପାଇଁ ବ୍ୟବସ୍ଥା ଥାଏ । କିନ୍ତୁ ପ୍ରତ୍ୟେକ ଧର୍ମଗ୍ରନ୍ଥକୁ ଈଶ୍ୱରଙ୍କର ବାଣୀ ବୋଲି ନିଆଯିବା ସହିତ ଏହାକୁ ଚିରନ୍ତନ

ଓ ଧ୍ରୁବ ବୋଲି ଗ୍ରହଣ କରାଯାଏ । ଗୋଟିଏ ଧର୍ମର ଅନୁରକ୍ତ ବିଶ୍ୱାସୀମାନେ ଅନ୍ୟ ଗୋଟିଏ ଧର୍ମଗ୍ରନ୍ଥକୁ ପ୍ରଜ୍ଞାଦୀପ୍ତ ଓ ପବିତ୍ର ବୋଲି ବିଶ୍ୱାସ ନକରି ନିଜର ବିଶ୍ୱାସ ସକଳ ଭିତରେ ଆବଦ୍ଧ ରହିଥାନ୍ତି । ପରିଣାମତଃ ଈଶ୍ୱର ଓ ଧର୍ମଭିତ୍ତିକ ନୈତିକ ମୂଲ୍ୟଚୟ କାଳକ୍ରମେ ରକ୍ଷଣଶୀଳ ଓ ପୁରୁଣାକାଳିଆ ହୋଇଯିବା ସହିତ ଧର୍ମ-ବିଶ୍ୱାସୀମାନେ ଏକଦେଶଦର୍ଶୀ ଓ ଧର୍ମାନ୍ଧ ହୋଇଯାଆନ୍ତି । ଧର୍ମଗ୍ରନ୍ଥମାନଙ୍କର ନିର୍ଦ୍ଦେଶଗୁଡ଼ିକୁ ଅଲଙ୍ଘନୀୟ ବୋଲି ଗ୍ରହଣ କରିବାଦ୍ୱାରା ଧର୍ମବିଶ୍ୱାସୀମାନେ ଅସାଧୁ ହେବା ଅବଶ୍ୟମ୍ଭାବୀ ହୋଇପଡ଼ୁଛି । ଫଳରେ ବିଭିନ୍ନ ସମୟରେ ସାଂପ୍ରତିକ ଆବଶ୍ୟକତା ପୂରଣ କରିବାରେ ସେମାନେ କପଟତାର ଆଶ୍ରୟ ନିଅନ୍ତି । ଭଗବତ ଗୀତା ସେହିପରି ଏକ ଦ୍ୱିବିଧ ବ୍ୟକ୍ତିତ୍ୱକୁ ଅତି ସୂକ୍ଷ୍ମ ଭାବରେ ପ୍ରତିପାଦନ କରିଛି । ଫଳରେ ହିନ୍ଦୁମାନେ ଅଦ୍ୱୈତ ବା ସବୁ ବ୍ୟକ୍ତି ଏକାତ୍ମ ବୋଲି କହି ଅପର ପକ୍ଷରେ ଅନ୍ୟ ମନୁଷ୍ୟମାନଙ୍କୁ ଅସ୍ପୃଶ୍ୟ ବୋଲି ଗ୍ରହଣ କରିଥାନ୍ତି । ଖ୍ରୀଷ୍ଟିଆନମାନେ ପ୍ରେମକଥା କହି ଅନେକ ଯୁଦ୍ଧରେ ନିଜକୁ ସମ୍ପୃକ୍ତ କରାଇଛନ୍ତି । ସେହିପରି ମୁସଲମାନମାନେ ଭ୍ରାତୃତ୍ୱ କଥା କହି ଅନ୍ୟ ଧର୍ମର ବ୍ୟକ୍ତିମାନଙ୍କୁ ଧ୍ୱଂସ କରିବାକୁ ବିଗ୍ରହ କରିଛନ୍ତି । ଈଶ୍ୱରଙ୍କର ସମସ୍ତେ ସନ୍ତାନ ବୋଲି ଭାବିବା ଦ୍ୱାରା ସମସ୍ତ ବ୍ୟକ୍ତିମାନଙ୍କ ଭିତରେ ଭ୍ରାତୃତ୍ୱ ପ୍ରତିଷ୍ଠା ହୋଇନାହିଁ । କାରଣ ତା'ଦ୍ୱାରା ବ୍ୟକ୍ତି ବ୍ୟକ୍ତି ଭିତରେ ସମ୍ବନ୍ଧ ସୃଷ୍ଟି ନହୋଇ ମଣିଷ ଓ ଈଶ୍ୱର ଭିତରେ ସମ୍ବନ୍ଧ ସୃଷ୍ଟି ହୋଇଛି । ସୁତରାଂ କେତେ କେତେ ଧର୍ମ ଉପଦେଶ ଓ ପବିତ୍ର କାମନା ସତ୍ତ୍ୱେ ଧର୍ମୀୟ ପନ୍ଥା ବ୍ୟକ୍ତିକୁ ସାଧୁ, ସ୍ନେହୀ ଓ କାରୁଣିକ କରିବାରେ ସମର୍ଥ ହୋଇନାହିଁ ।

ଧର୍ମୀୟ ବିଶ୍ୱାସ ଓ ଉଗ୍ର ସ୍ୱଦେଶପ୍ରୀତିର ଯୁଗରେ ସହନଶୀଳତା ବା ଅନ୍ୟ ମତ ପ୍ରତି ସମ୍ମାନବୋଧ ସେପରି କିଛି ସାମାଜିକ ସ୍ୱୀକୃତି ଲାଭ କରିନଥିଲା । ନିଜ ନିଜର ଧର୍ମବିଶ୍ୱାସ ପାଇଁ ଗର୍ବ କରୁଥିବା ବ୍ୟକ୍ତିମାନେ ସର୍ବଦା ପରସ୍ପର ଭିତରେ ସଙ୍ଘର୍ଷରେ ବ୍ୟାପୃତ ରହୁଥିଲେ । ଧର୍ମବିଶ୍ୱାସୀ ଓ ଦେଶପ୍ରେମୀ ବ୍ୟକ୍ତିମାନେ ନିଜର ଈଶ୍ୱର ବା ଦେଶମାତୃକାର ସନ୍ତୁଷ୍ଟି ପାଇଁ ଅନ୍ୟ ବିଶ୍ୱାସର ଲୋକମାନଙ୍କୁ ହତ୍ୟା କରୁଥିଲେ । ସାଧାରଣ ଜନଗଣଙ୍କୁ ଦବାଇ କରି ରଖାଯାଉଥିଲା ଓ ଈଶ୍ୱରଙ୍କୁ ହାଣେକଣ୍ଠା ଭାବେ ପ୍ରାର୍ଥନା କରିବା ପରିବର୍ତ୍ତେ ସେମାନଙ୍କର ଅନ୍ୟଗତି ନଥିଲା । ଧର୍ମଦ୍ୱାରା ସୃଷ୍ଟ ଏହି ମନ୍ଦ ଓ ଅନିଷ୍ଟକର ବ୍ୟବସ୍ଥାକୁ ଦୂର କରିବାକୁ ଧର୍ମର କୌଣସି ପ୍ରତିବିଧାନ ନଥିଲା । ବରଂ ସାଂସାରିକ କାମନାକୁ ପରିତ୍ୟାଗ କରି ଏକ ପାରଲୌକିକ ଜଗତରେ ଶାନ୍ତି ପାଇଁ ଏହା ନିରନ୍ତର ଉପଦେଶ ଦେଉଥିଲା ।

ଯେତେବେଳେ ଧର୍ମୀୟ ପନ୍ଥା କ୍ଷୟଶୀଳ ମନେହେଲା ଗାନ୍ଧୀ ତାହାକୁ ପୁନରୁଦ୍ଧାର କରି ତାହା ଯେଉଁ କାରଣ ପାଇଁ ଆରମ୍ଭ ହୋଇଥିଲା ତାକୁ ସେହି ଲକ୍ଷ୍ୟରେ ପରିଚାଳିତ କରିବାକୁ ସାଂପ୍ରତିକ ଯୁଗରେ ଚେଷ୍ଟା କରିଥିଲେ । ସେ

ସତ୍ୟବାଦିତା ଓ ସହନଶୀଳତାକୁ ନିର୍ଭୁଲ ଭାବରେ ଗ୍ରହଣ କଲେ ଯାହା ବାସ୍ତବ ପକ୍ଷେ ସାଧୁତା ଓ ଅହିଂସାକୁ ସୂଚାଇଲା । ଆଧୁନିକ ଜୀବନର ଅନେକ ସମସ୍ୟାକୁ ଦୂର କରିବାକୁ ସତ୍ୟବାଦିତା ଓ ସତ୍ୟାଗ୍ରହଜନିତ ଅହିଂସ ପଦ୍ଧତି ଗାନ୍ଧୀଜୀ ପ୍ରୟୋଗ କରିଥିବାରୁ ତାଙ୍କର ପ୍ରବର୍ତ୍ତିତ ପଦ୍ଧତି ଆଜି ବିଶ୍ୱରେ ବହୁଳ ଭାବେ ଅନ୍ୟମାନଙ୍କର ଦୃଷ୍ଟି ଆକର୍ଷଣ କରିଛି । ଧର୍ମୀୟ ଧାରାରେ ତାଙ୍କର ବିଶ୍ୱାସ ଯୋଗୁଁ ସେ ନିଜର ଅନୁଭୂତି ସକଳକୁ ସେହି ଭାବରେ ବ୍ୟାଖ୍ୟା କରିଛନ୍ତି । ସତ୍ୟ ଓ ଈଶ୍ୱର ଅଭିନ୍ନ ବୋଲି କହିବା ତାଙ୍କର ଧର୍ମୀୟ ଅହେତୁକ ବିଶ୍ୱାସର ଏକ ଉଦାହରଣ— କହିବାକୁ ହେବ ।

ସତ୍ୟପ୍ରତି ଅନୁରକ୍ତି ଯୋଗୁଁ ଗାନ୍ଧୀ ବାସ୍ତବବାଦୀ ହୋଇଥିଲେ । ସତ୍ ଉପାୟରେ ଜୀବନଧାରଣ କ୍ଷେତ୍ରରେ ଧର୍ମୀୟ ବିଶ୍ୱାସ ପ୍ରତିବନ୍ଧକ ହେବାକୁ ସେ ପ୍ରଶ୍ରୟ ଦେଇ ନଥିଲେ । ନୂତନ ପରିସ୍ଥିତି ସହ ମେଳ ଖାଇବାକୁ ସେ ପୁରାତନ ଶବ୍ଦମାନଙ୍କର ନୂତନ ବ୍ୟାଖ୍ୟା ମାତ୍ର ପ୍ରଦାନ କରିଥିଲେ । ଯଦିବା ସେ ହିନ୍ଦୁ-ମାନଙ୍କର ଦେବତା 'ରାମ'ଙ୍କର ନାମ ଉଚ୍ଚାରଣ କରୁଥିଲେ ତଥାପି ସେ କହୁଥିଲେ ଯେ ତାଙ୍କର ରାମ ଏକ ଆଦର୍ଶର ପ୍ରତୀକ ଓ ସେ ହିନ୍ଦୁ ପୁରାଣରେ ବର୍ଣ୍ଣିତ ଦଶରଥଙ୍କର ପୁତ୍ର ବା ସୀତାଙ୍କର ପତି ନୁହନ୍ତି । ସେ ଈଶ୍ୱରବିଶ୍ୱାସ ଅପେକ୍ଷା ସତ୍ୟ ଆଚରଣ ପ୍ରତି ଅଧିକ ଗୁରୁତ୍ୱ ଦେଉଥିଲେ । 'ଭଗବାନ ସତ୍ୟ' ଅପେକ୍ଷା 'ସତ୍ୟ ହିଁ ଭଗବାନ' ଅଧିକ ଯୁକ୍ତିସମ୍ମତ କହିବା ଦ୍ୱାରା ସେ ସତ୍ୟ ପ୍ରତି ଅଧିକ ଗୁରୁତ୍ୱ ପ୍ରଦାନ କରିଥିଲେ । ଜଣେ ନାସ୍ତିକବାଦୀଙ୍କର ବିରୋଧ ଓ ଆହ୍ୱାନ ଯୋଗୁଁ ସେ 'ଈଶ୍ୱର' ଶବ୍ଦ ପରିହାର କରି 'ସତ୍ୟ' ଶବ୍ଦ ବ୍ୟବହାର କରିଥିଲେ । ଯେତେବେଳେ ଧର୍ମଜନିତ ବିବାଦ ଭାରତୀୟ ସମାଜରେ ଭୀଷଣ ଅନୁଭୂତ ହୋଇଥିଲା ସେତେବେଳେ ସେ ଏକ ଧର୍ମନିରପେକ୍ଷ ରାଷ୍ଟ୍ରକୁ ସ୍ୱୀକୃତି ଦେଇ ଧର୍ମବିଶ୍ୱାସକୁ ଏକ ବ୍ୟକ୍ତିଗତ ବ୍ୟାପାର ବୋଲି ଗ୍ରହଣ କରିଥିଲେ । ସୁତରାଂ ଯେତେବେଳେ ସେ ଈଶ୍ୱରବିଶ୍ୱାସ ଓ ସତ୍ୟବାଦିତା ଭିତରେ ଅମେଳ ଦେଖୁଥିଲେ ସେତେବେଳେ ସତ୍ୟବାଦିତାକୁ ଅଧିକ ଗୁରୁତ୍ୱ ଦେଇ ବିଶ୍ୱାସକୁ ଗୌଣ ସ୍ଥାନ ଦେଉଥିଲେ ।

ସାମାଜିକ ମୂଲ୍ୟବୋଧ ସ୍ତରରେ ସତ୍ୟକୁ ସର୍ବଶ୍ରେଷ୍ଠ ସ୍ଥାନ ଦେବାରେ ଗାନ୍ଧୀ ମହାନ୍ ଥିଲେ । ଅବଶ୍ୟ ସତ୍ୟର ରୂପାୟନ ପାଇଁ ସେ ଧର୍ମୀୟଧାରା ବିନିଯୋଗ କରିଛନ୍ତି । ତଥାପି ଧର୍ମୀୟ ଆଚରଣ ଅପେକ୍ଷା ତାଙ୍କର ସତ୍ୟ ପ୍ରତି ଗଭୀର ଅନୁରକ୍ତି ଯୋଗୁଁ ସେ ବିଧର୍ମୀ ମନେ ହୋଇଛନ୍ତି ଓ ଏପରିକି ଜଣେ ଧର୍ମାନ୍ଧ ବ୍ୟକ୍ତିଦ୍ୱାରା ନିହତ ହୋଇଛନ୍ତି । ସତ୍ୟ ପାଇଁ ସେ ଆତ୍ମୋତ୍ସର୍ଗ କରିଛନ୍ତି । ତଥାପି ଧର୍ମୀୟ ବିଶ୍ୱାସ— ତାହା ଯେତେ ଉଦାର ହେଲେ ବି—ସଭ୍ୟତାର କ୍ରମବର୍ଦ୍ଧିଷ୍ଣୁ ବିକାଶ ସହିତ ସୁସମନ୍ତସ୍ୟ ହୋଇପାରିବ ନାହିଁ । କାରଣ ଧର୍ମବିଶ୍ୱାସ ବ୍ୟକ୍ତିଗତ ପ୍ରଚେଷ୍ଟାକୁ

ସୀମିତ କରିବା ସହିତ ମଣିଷର ମନକୁ ରୁଦ୍ଧ କରିଦିଏ । ସ୍ୱତନ୍ତ୍ର ପୂର୍ଣ୍ଣ ଓ ନୈତିକ ବ୍ୟକ୍ତିତ୍ୱ ସୃଷ୍ଟି କରିବା ପାଇଁ ନିରୀଶ୍ୱରବାଦ ଯଥାର୍ଥ ପନ୍ଥା ବୋଲି ମନେହୁଏ ।

ନିରୀଶ୍ୱରବାଦୀର ସ୍ୱାଧୀନତା ନୈତିକତାକୁ ଏକ ନୂଆ ଦିଗରୁ ବିଚାର କରିବାରେ ସାହାଯ୍ୟ କରିଥାଏ । ଧର୍ମୀୟ ଉପଦେଶ କ'ଣ କରଣୀୟ ଓ କ'ଣ କରଣୀୟ ନୁହେଁ, ଗୁଡ଼ାରେ ନିରୀଶ୍ୱରବାଦୀ ଭୁଲେ ନାହିଁ । ନୈତିକତାକୁ ଏକ ସାମାଜିକ ଅବଶ୍ୟକତା ଭାବରେ ନେଇ ସେ ସ୍ୱଇଚ୍ଛାରେ ନୈତିକ ଆଚରଣରେ ବ୍ରତୀ ହୋଇଥାଏ । ପ୍ରାଚୀନ ଧାରାରେ ବା ଧର୍ମୀୟ ପଦ୍ଧତିରେ—କେତେକ ଶୃଙ୍ଖଳା ବ୍ୟକ୍ତି ଉପରେ ଲଦି ଦିଆଯିବା ବେଳେ ନିରୀଶ୍ୱରବାଦୀ ଆତ୍ମଶୃଙ୍ଖଳା ଦ୍ୱାରା ନୈତିକ ଜୀବନ ପ୍ରତି ଆଗ୍ରହୀ ହୋଇଥାଏ । ଯେହେତୁ ସେ ନିଜକୁ ମୁକ୍ତ ବୋଲି ଅନୁଭବ କରେ ଓ ଗୋଟିଏ ସଚେତନ ଜୀବନ ବଞ୍ଚେ ସେହେତୁ ତା' ପାଖରେ ଆତ୍ମଶୃଙ୍ଖଳା ସମ୍ଭବ ହୋଇଥାଏ । ମୁକ୍ତ ଓ ଅହିଂସ ସତ୍ୟାଗ୍ରହ ପଦ୍ଧତି ଦ୍ୱାରା ଶୃଙ୍ଖଳା କ୍ଷେତ୍ରରେ ଥିବା ତ୍ରୁଟିକୁ ସେ ସୁଧାରି ନେବାରେ ସମର୍ଥ ହୋଇଥାଏ । ସତ୍ୟାଗ୍ରହ ଦ୍ୱାରା ଜଣେ ଅନ୍ୟକୁ ନିଜର ଆଦର୍ଶରେ ଅନୁପ୍ରାଣିତ ହେବାକୁ ବି ପ୍ରଭାବିତ କରିପାରେ । ଏହାଦ୍ୱାରା ମଧ୍ୟ ଅସାଧୁତାକୁ ସାମାଜିକ ପ୍ରତିରୋଧ ଦିଆଯାଇ ପାରେ । ଜଣେ ନିଶାଗ୍ରସ୍ତ ବ୍ୟକ୍ତି ନିଶା ନିବାରଣ ସପକ୍ଷରେ ଯୁକ୍ତି କରିପାରେ ନାହିଁ । କିନ୍ତୁ ସେ ପ୍ରକାରର ଅସଙ୍ଗତି ସତ୍ୟାଗ୍ରହ ଓ ସତ୍ୟାଗ୍ରହୀ ଭିତରେ ଦେଖାଯାଏ ନାହିଁ । ଫଳରେ ସତ୍ୟାଗ୍ରହୀମାନଙ୍କ ଭିତରେ ନୈତିକ ବନ୍ଧନ ଦୃଢ଼ ହୋଇଥାଏ ।

"ବିନା ଈଶ୍ୱର ବିଶ୍ୱାସରେ ଜଣେ ସତ୍ୟାଗ୍ରହୀ ହେବା ସମ୍ଭବ ନୁହେଁ"—କହିବା ଦ୍ୱାରା ଗାନ୍ଧୀ ନିଜର ଧର୍ମଗତ ଝୁଙ୍କ୍‌କୁ ପ୍ରକାଶ କରିଛନ୍ତି । ଅପରପକ୍ଷରେ ସତ୍ୟାଗ୍ରହ ହେଉଛି ମୂଳତଃ ଈଶ୍ୱର—ନିରପେକ୍ଷ କାରଣ ଜଣେ ସତ୍ୟାଗ୍ରହୀ ଅନ୍ୟକୁ ସାମାଜିକ ଜୀବନରେ ନୀତିପୂର୍ଣ୍ଣ ହେବାକୁ ବାଧ୍ୟ କରିପାରିବ । ଗାନ୍ଧୀଜୀ ଯେହେତୁ ନିରୀଶ୍ୱରବାଦକୁ ଗ୍ରହଣ କରୁନଥିଲେ ସେହେତୁ ପରେ ସତ୍ୟାଗ୍ରହ ତାହାର ପ୍ରାଧାନ୍ୟ ହରାଇବା ସହିତ ପରବର୍ତ୍ତୀ ସମୟରେ ଏହା ଏକ ସାମ୍ପ୍ରଦାୟିକବାଦରେ ପରିଣତ ହୋଇଗଲା । ପରନ୍ତୁ ନିରୀଶ୍ୱରବାଦକୁ ଗ୍ରହଣ କରିବା ଦ୍ୱାରା ସତ୍ୟାଗ୍ରହ ପୁନଶ୍ଚ ଏକ ଶକ୍ତିରେ ପରିଣତ ହୋଇପାରିବ । ତଦ୍ୱାରା ଅସାଧୁତାକୁ ପ୍ରତିରୋଧ କରିବା କ୍ଷେତ୍ରରେ ଏହା ଏକ ନିର୍ଭରଯୋଗ୍ୟ ଆୟୁଧ ହୋଇପାରିବ ।

ଅବଶ୍ୟ ସତ୍ୟବାଦିତା ଉପରେ ଗୁରୁତ୍ୱ ଦେବାଦ୍ୱାରା ବ୍ୟକ୍ତିର ସ୍ୱାଧୀନତା କ୍ଷୁଣ୍ଣ ହେବନାହିଁ । ସତ୍ୟାଗ୍ରହରେ ଥିବା ସାମାଜିକ କର୍ତ୍ତବ୍ୟବୋଧ ବ୍ୟକ୍ତି ସ୍ୱାଧୀନତାକୁ ନୈତିକ ସ୍ୱାଧୀନତାରେ ପରିଣତ କରିପାରିବ । ଜଣେ ନିରୀଶ୍ୱରବାଦୀ ଯେପରି ଭାବେ ସେପରି କହିବା ବା କରିବା କ୍ଷେତ୍ରରେ ସ୍ୱାଧୀନ ଅନୁଭବ କରେ,

ଯାହା ସେ ଯାହା କୁହେ ତାହା କରେ ଓ ଯାହା କରେ ତାହା କୁହେ । ସୁତରାଂ ସାମାଜିକ ସମ୍ବନ୍ଧ ପରିପ୍ରେକ୍ଷୀରେ ବ୍ୟକ୍ତିର ସ୍ୱାଧୀନତା ନୈତିକ ସ୍ୱାଧୀନତାକୁ ବୁଝାଇଥାଏ । ଅବଶ୍ୟ ସାମାଜିକ ସମ୍ବନ୍ଧ, ପରିବେଷ୍ଟନତା, ସ୍ୱାର୍ଥପରତା ବା ଗୁପ୍ତତାକୁ ସ୍ୱୀକୃତି ଦିଏନାହିଁ ।

ନୈତିକ ସ୍ୱାଧୀନତାର ପ୍ରବର୍ତ୍ତନ ଦ୍ୱାରା ସମସ୍ତ ବ୍ୟକ୍ତିମାନଙ୍କ ଭିତରେ ସମତା ପ୍ରତିଷ୍ଠା କରିବା ସମ୍ଭବ ହୁଏ । କାରଣ ମୁକ୍ତ ଆଚରଣ କେବେହେଲେ ବୈଷମ୍ୟକୁ ସ୍ୱୀକୃତି ଦେବନାହିଁ । ବୈଷମ୍ୟ ଓ ହିଂସା ଆଚରଣ ସ୍ୱାର୍ଥପରତା ଓ ସାଂପ୍ରଦାୟିକ ମନୋଭାବକୁ ବ୍ୟକ୍ତ କରିଥାଏ । ଯେଉଁ ବ୍ୟକ୍ତିବିଶେଷ ଏହି ଧାରାରେ ବିଶ୍ୱାସ କରନ୍ତି ସେମାନେ ଅନ୍ୟମାନଙ୍କ ଉପରେ ବିଶ୍ୱାସ ସ୍ଥାପନ କରିପାରନ୍ତି ନାହିଁ ଓ ଗୁପ୍ତ ଆଚରଣରେ ବ୍ରତୀ ହୁଅନ୍ତି । ଅପର ପକ୍ଷରେ ମୁକ୍ତ ଆଚରଣ କୌଣସି ସାଂପ୍ରଦାୟିକ ଦୃଷ୍ଟିଭଙ୍ଗୀକୁ ଗ୍ରହଣ ନକରିବା ହେତୁ ବୈଷମ୍ୟ ଓ ହିଂସାଭାବକୁ ମଧ୍ୟ ପ୍ରଶ୍ରୟ ଦିଏନାହିଁ ।

ଜାତି, ଶ୍ରେଣୀ, ଭାଷା, ବର୍ଣ୍ଣ ଓ ରକ୍ତଜନିତ ଗୋଷ୍ଠୀଗତ ଦୃଷ୍ଟିଭଙ୍ଗୀ ବ୍ୟକ୍ତିକୁ ଏକ ସୀମିତ ପରିସର ମଧ୍ୟରେ ଆବଦ୍ଧ କରି ରଖିଲା । ଏହାଦ୍ୱାରା ନିଜ ଗୋଷ୍ଠୀର ବିକାଶ ପ୍ରାଧାନ୍ୟ ଲାଭକଲା ଓ ବ୍ୟକ୍ତି ସ୍ୱାର୍ଥକୈନ୍ଦ୍ରିକ ହୋଇପଡ଼ିଲା । ପରେ ସାମ୍ରାଜ୍ୟବାଦର ବିକାଶ ଓ ଦଳମାନଙ୍କର ବିସ୍ତୃତି ଯୋଗୁଁ ଗୋଷ୍ଠୀ ଗୋଷ୍ଠୀ ଭିତରେ ଦ୍ୱନ୍ଦ୍ୱ ସୃଷ୍ଟି ହେଲା । ନିଜର ଆତ୍ମସୁରକ୍ଷା ପାଇଁ ପରାଜିତ ଗୋଷ୍ଠୀ ସଂଖ୍ୟାଲଘୁ ଶ୍ରେଣୀରେ ପରିଣତ ହେଲେ ।

ସମସ୍ତ ବ୍ୟକ୍ତି ନିଜକୁ ସ୍ୱାଧୀନ ଓ ମୁକ୍ତ ବୋଲି ଅନୁଭବ କରିବାଦ୍ୱାରା ଗୋଷ୍ଠୀଗତ ଦୃଷ୍ଟିକୋଣ ଓ ତଜ୍ଜନିତ ଦଳସବୁ ବିଲୋପ ହୋଇଥାଏ । ତଦ୍ଦ୍ୱାରା ସମସ୍ତଙ୍କ ଭିତରେ ଐକ୍ୟ ସୃଷ୍ଟି ହୁଏ । ନାସ୍ତିକ୍ୟବାଦୀ ନୈତିକତା ଜାତି, ଶ୍ରେଣୀ, ଦଳ ଓ ରକ୍ତଜନିତ ଗୋଷ୍ଠୀଗତ ମନୋଭାବକୁ ପ୍ରଶ୍ରୟ ଦିଏନାହିଁ । ନାସ୍ତିକ୍ୟବାଦୀ ନୈତିକତା ସମସ୍ତ ବ୍ୟକ୍ତିମାନଙ୍କୁ ସମାନ ବୋଲି ଗ୍ରହଣ କରିବା ସହିତ ଏକ ବିଶ୍ୱ ଓ ଏକ ମଣିଷ ସମାଜର ଅଗ୍ରଗତିକୁ ଲକ୍ଷ୍ୟ ଭାବରେ ଗ୍ରହଣ କରେ । ପ୍ରାଚୀନ ବ୍ୟବସ୍ଥାରେ ଯେପରି ପୁରୁଷ ଓ ନାରୀ, କଳା ଓ ଗୋରା, ଧନୀ ଓ ଦରିଦ୍ର, ବ୍ରାହ୍ମଣ ଓ ଶୂଦ୍ର ଏବଂ ପ୍ରଭୁ ଓ ଭୃତ୍ୟମାନଙ୍କ ପାଇଁ ଭିନ୍ନ ଭିନ୍ନ ନୈତିକ ମାନଦଣ୍ଡ ଓ ଆଚରଣ ବିଧି ବିନିଯୋଗ କରାଯାଉଥିଲା ତାହାକୁ ଏହା ପ୍ରତ୍ୟାଖ୍ୟାନ କରିବା ସହିତ ସମସ୍ତଙ୍କ ପାଇଁ ଏକପ୍ରକାରର ବିଧି ଗ୍ରହଣ କରିଥାଏ । ସେହିପରି ବ୍ୟକ୍ତି ସ୍ୱାଧୀନତା ଦ୍ୱାରା ଦଳଗତ ଓ ଗୋଷ୍ଠୀଗତ ସୀମା ଓ ବିଭାଜନ ଲୋପ ପାଇଥାଏ । ପରିଣାମତଃ ଜାତି ଜାତି ମଧ୍ୟରେ ସାଂସ୍କୃତିକ ଭିନ୍ନତା ମଧ୍ୟ ନିରର୍ଥକ ମନେହୁଏ । ବ୍ୟକ୍ତିମାନେ

ଗୋଷ୍ଠୀଗତ ବିଚାରର ବଶବର୍ତ୍ତୀ ନହୋଇ ପରସ୍ପର ସହ ମିଶିବା ଦ୍ୱାରା ସେମାନେ ଏକ ମଣିଷ ଜାତି ବୋଲି ଅନୁଭବ କରନ୍ତି । ଯେଉଁ ଆଚରଣ ଦ୍ୱାରା ବ୍ୟକ୍ତି ଅନ୍ୟମାନଙ୍କୁ ନିଜ ସହ ସମାନ ବୋଲି ଗ୍ରହଣ କରିଥାଏ ତାହା ହେଉଛି ସଂସ୍କୃତି । ଜାତି, ଗୋଷ୍ଠୀ, ସମ୍ପ୍ରଦାୟ, ଶ୍ରେଣୀ ଓ ରାଷ୍ଟ୍ରର ରୂପଦ୍ୱାରା ସଂସ୍କୃତିକୁ ଆଖ୍ୟାଦେବା ନିଶ୍ଚିତ ଭାବରେ ଅପସଂସ୍କୃତି ଅଟେ । ନିରୀଶ୍ୱରବାଦୀ ଦୃଷ୍ଟିକୋଣରୁ ଭଲମନ୍ଦର ପାର୍ଥକ୍ୟ ଆଚରଣ ଭିତରେ ସଂଶ୍ଲିଷ୍ଟ ଥିବା ମନୋଭାବରୁ ସ୍ପଷ୍ଟ ହୋଇଥାଏ । ଯେଉଁ କାର୍ଯ୍ୟ ଖୋଲାଖୋଲି ଭାବରେ କରାଯାଏ ତାହା ନୈତିକ ମନେହେବାବେଳେ ଯାହା ଗୁପ୍ତରେ କରାଯାଏ ତାହା ଅନୈତିକ ମନେହୁଏ । ଏକ ସଂଘର୍ଷ କ୍ଷେତ୍ରରେ ଦୁଇଦଳ ମୁହାଁମୁହିଁ ହୋଇ କାର୍ଯ୍ୟ କରୁଥିଲେ ବି ଏହା ଅନୈତିକ, କାରଣ ସଂଘର୍ଷ କ୍ଷେତ୍ରରେ ପ୍ରତ୍ୟେକ ପକ୍ଷ ଅତି ଗୁପ୍ତରେ ନିଜ ନିଜର ଯୋଜନା ପ୍ରସ୍ତୁତ କରିଥାନ୍ତି । ସମସ୍ତ କାର୍ଯ୍ୟ ଖୋଲାଖୋଲି ଭାବରେ ହେବାଦ୍ୱାରା ସାମାଜିକ ସମ୍ପର୍କ କ୍ଷେତ୍ରରେ ହିଂସାକୁ ପ୍ରତିହତ କରାଯାଇପାରେ । ଭାବପ୍ରବଣଜନିତ ହିଂସାତ୍ମକ ଅଭିବ୍ୟକ୍ତି ଗୁପ୍ତ ଯୋଜନାଦ୍ୱାରା ହିଂସାତ୍ମକ କାର୍ଯ୍ୟ ଅପେକ୍ଷା ଅଧିକ ମାରାତ୍ମକ ନୁହେଁ । ଗୁପ୍ତରେ କରାଯାଉଥିବା ହିଂସାତ୍ମକ କାର୍ଯ୍ୟକୁ ଏକ ଚକ୍ରାନ୍ତ ବୋଲି କୁହାଯାଇପାରିବ । କାରଣ ଏହା ପଶ୍ଚାତ୍‌ରେ କୌଣସି ଅନୁତାପ ରହିବା ପରିବର୍ତ୍ତେ ବରଂ ସ୍ୱୀକୃତି ରହିଥାଏ । କିନ୍ତୁ ଭାବପ୍ରବଣ ହୋଇ କରାଯାଉଥିବା ହିଂସାତ୍ମକ କାର୍ଯ୍ୟକ୍ଷେତ୍ରରେ ବେଳକେ ଅନୁତାପ ଆସେ ଓ ଏହାଦ୍ୱାରା ଆଚରଣକୁ ସଂଶୋଧନ କରାଯାଇପାରେ ।

ଖୋଲାଖୋଲିଭାବେ କରାଯାଉଥିବା କୌଣସି କାର୍ଯ୍ୟ ଯଦିବା ନୀତିପୂର୍ଣ୍ଣ ମନେହୁଏ ତଥାପି ଏକ ପରାଧୀନ ବା ଅଧସ୍ତନ ମନୋଭାବ ପୋଷଣ କରୁଥିବା ଆସ୍ତିକତାବାଦୀ ପରମ୍ପରାରେ ତାହା ଈଶ୍ୱରୀୟ ହେଉ ବା ଅଣଈଶ୍ୱରୀୟ ହେଉ, କେତେକ ଗର୍ହିତ କାର୍ଯ୍ୟକୁ ବି ଖୋଲାଖୋଲିଭାବେ କରାଯାଇଥାଏ । ଅସ୍ପୃଶ୍ୟତା, କଳାଗୋରା ବିଭେଦ (apartheid) ଓ ବିଷାକ୍ତ ବାଷ୍ପଦ୍ୱାରା କୋଠରି ଭିତରେ ବ୍ୟକ୍ତିମାନଙ୍କୁ ନିହତ କରିବା ଇତ୍ୟାଦି କ୍ରୂର କାର୍ଯ୍ୟ ସବୁ ଖୋଲାଖୋଲି ଭାବରେ କରାଯାଏ । ଆସ୍ତିକତାବାଦ ପୃଷ୍ଠଭୂମି ଉପରେ ଏହି କ୍ରୂରପୂର୍ଣ୍ଣ କାର୍ଯ୍ୟରେ କ୍ଷତିଗ୍ରସ୍ତ ହେଉଥିବା ବ୍ୟକ୍ତିମାନେ ଧରି ନେଇଥାନ୍ତି ଯେ ସେମାନଙ୍କର ଏହି ନିର୍ଯାତନା ପୂର୍ବନିର୍ଦ୍ଦିଷ୍ଟ ବା ପରିସ୍ଥିତି ଦ୍ୱାରା ନିୟନ୍ତ୍ରିତ । ଈଶ୍ୱରଙ୍କର କରୁଣା ହେଲେ ସାମାଜିକ ନ୍ୟାୟ ପ୍ରତିଷ୍ଠା ହେବ ଭାବି ସେମାନେ ଅପମାନ ଓ ନିଷ୍ଠୁରତାରୁ ଉଦ୍ଧାର ପାଇବାକୁ ପ୍ରଚେଷ୍ଟା ନକରି ଏହାକୁ ଅନାୟାସରେ ଗ୍ରହଣ କରି ନେଇଥାନ୍ତି । ଏଣୁ ଆସ୍ତିକତାବାଦୀ ସଭ୍ୟତାରେ ନିଷ୍ଠୁର କାର୍ଯ୍ୟ ବି ଖୋଲାଖୋଲି ଭାବରେ ସଂଗଠିତ ହେବା ଦେଖାଯାଏ ।

ସ୍ୱର୍ଗ ଓ ପୂର୍ବନିର୍ଦ୍ଧିଷ୍ଟବାଦକୁ ନିରୀଶ୍ୱରବାଦୀମାନେ ପ୍ରତ୍ୟାଖ୍ୟାନ କରିଥାନ୍ତି । ସେମାନେ ସାମାଜିକ ବୈଷମ୍ୟଜନିତ ଅନ୍ୟାୟ ବିରୁଦ୍ଧରେ ଆନ୍ଦୋଳନ ଚଳାଇ-ଥା'ନ୍ତି । ଏଣୁ ନିରୀଶ୍ୱରବାଦୀ ନୈତିକତା କାର୍ଯ୍ୟର ଔଚିତ୍ୟକୁ ଉନ୍ମୁକ୍ତ ବ୍ୟବସ୍ଥାଦ୍ୱାରା ଗ୍ରହଣ କରେ । ଏହା ସହିତ ସାମାଜିକ ସମ୍ବନ୍ଧ କ୍ଷେତ୍ରରେ ସାମ୍ୟ ପ୍ରତିଷ୍ଠାକୁ ଲକ୍ଷ୍ୟ ଭାବରେ ନେଇଥାଏ । ସୁତରାଂ ସାମାଜିକ ସମତାକୁ ଲକ୍ଷ୍ୟ ଓ ଉନ୍ମୁକ୍ତ ବ୍ୟବସ୍ଥାକୁ ଏହାର ପ୍ରଣାଳୀ ଭାବରେ ଗ୍ରହଣ କରୁଥିବା ନିରୀଶ୍ୱରବାଦୀ ନୈତିକତାରେ ଅନ୍ୟ ପ୍ରତି ଅସମ୍ମାନ ବା ସାମାଜିକ ବୈଷମ୍ୟର ସ୍ଥାନ ନଥାଏ ।

ମୁକ୍ତ ଭାବରେ କରାଯାଉଥିବା କାର୍ଯ୍ୟ ଯଥାର୍ଥ ମନେହେବା ସହିତ ଏହାଦ୍ୱାରା ସାମାଜିକ ସମ୍ପର୍କ ପ୍ରଗତିଶୀଳ ଭାବେ ସମ୍ପୂର୍ଣ୍ଣ ହୋଇଥାଏ । ଶାସ୍ତ୍ରାନୁମୋଦିତ 'କରଣୀୟ' ଓ 'ଅକରଣୀୟ' ସୀମା ଭିତରେ ଜଣେ ନିରୀଶ୍ୱରବାଦୀ ସୀମିତ ରୁହେ ନାହିଁ । କାରଣ କ'ଣ କରିବା ଉଚିତ ଓ କ'ଣ ଅନୁଚିତ ସବୁ ପରିସ୍ଥିତି ପାଇଁ ସମାନ ହୋଇନପାରେ ଓ ଏ ପ୍ରକାର ମତ ଏକ ରକ୍ଷଣଶୀଳ ମନୋଭାବର ପରିଚୟ ଦେଇଥାଏ । ଜଣେ ନିରୀଶ୍ୱରବାଦୀ ନିଜର ହୃଦୟ ଓ ବିଚାର ଭିତରେ ଯାହା କରିବା ଉଚିତ ମନେକରେ ତାହା ପ୍ରକାଶ୍ୟରେ କରିଥାଏ । ପ୍ରକାଶ୍ୟରେ ହେଉଥିବା କାର୍ଯ୍ୟ ପଶ୍ଚାତ୍‌ରେ ସାଧୁ ମନୋଭାବ ରହିଥାଏ ଓ ନିଜର କାର୍ଯ୍ୟ ପାଇଁ ପ୍ରଚେଷ୍ଟା ରହିଥିବାରୁ ଏହା ପ୍ରଗତିଶୀଳ ଦୃଷ୍ଟିଭଙ୍ଗୀର ପରିଚୟ ଦେଇଥାଏ । କୌଣସି କାର୍ଯ୍ୟ ପ୍ରତି ଲୋକମାନଙ୍କର ସ୍ୱୀକୃତି ରହିବାଦ୍ୱାରା ତାହା ବାସ୍ତବ ଜୀବନ ପାଇଁ ଯେ ଉପଯୋଗୀ ଏହା ହୁଏତ ବୁଝାଯାଇପାରେ । ଅବଶ୍ୟ ଏହି ସ୍ୱୀକୃତି ଓ ଉପଯୋଗିତା ସହିତ କେହି ସହମତ ନହେଲେ ସେ ନିଜର ନୂତନ ବିଚାର ଦେଇପାରନ୍ତି ଓ ଏପରିକି ନିଜ ବିଚାରର ଯଥାର୍ଥତା ନେଇ ଯେକୌଣସି ଆହ୍ୱାନର ସମ୍ମୁଖୀନ ହୋଇପାରନ୍ତି ଓ ତ୍ୟାଗ ସହିପାରନ୍ତି । ନିରୀଶ୍ୱରବାଦର ବିକାଶଦ୍ୱାରା ଲୋକମାନେ ସ୍ୱାଧୀନଭାବେ ଚିନ୍ତା କରିବା ସହିତ ନୂତନ ଭାବନା ସୃଷ୍ଟି ଦିଗରେ ସମର୍ଥ ହୁଅନ୍ତି । ଏହା ସହିତ ଧର୍ମୀୟ ଉତ୍ପୀଡ଼ନ ହ୍ରାସ ହେବା ଦେଖାଯାଏ । ରାଜନୈତିକ ସ୍ୱାଧୀନତା ପାଇଁ ସଂଗ୍ରାମ ଓ ସତ୍ୟାଗ୍ରହ ଆନ୍ଦୋଳନ ଜାତିଆଣ ଭାବନାଦ୍ୱାରା ଆକ୍ରାନ୍ତ ହୋଇ ରହିଥିବା ହିନ୍ଦୁମାନଙ୍କୁ ଏହି ମନୋଭାବରୁ ମୁକ୍ତ କରିପାରିଥିଲା । ଏହା ହିନ୍ଦୁମାନଙ୍କୁ ପ୍ରଭାବିତ କରିବାଦ୍ୱାରା ସେମାନେ ଅସ୍ପୃଶ୍ୟତା ପରି ଏକ ପ୍ରାଚୀନ ପ୍ରଥାକୁ ଦୂର କରିବାପାଇଁ ସମ୍ବିଧାନରେ ବ୍ୟବସ୍ଥା କଲେ ।

ନିରୀଶ୍ୱରବାଦୀମାନଙ୍କର ସ୍ୱାଧୀନ ଦୃଷ୍ଟିଭଙ୍ଗୀ, ବ୍ୟକ୍ତିଗତ ସମ୍ପତ୍ତି ମାଲିକାନା ଓ ପାରିବାରିକ ଆନୁଗତ୍ୟକୁ ମଧ୍ୟ କୋହଳ କରିଥାଏ । ଲୋକମାନଙ୍କର ସାମାଜିକ ନିରାପତ୍ତାର ଦାୟିତ୍ୱ ନେବାପାଇଁ ରାଷ୍ଟ୍ର ଯେତେବେଳେ ପ୍ରତିଷ୍ଠିତ ହୋଇନଥିଲା ସେତେବେଳେ ଏସବୁ ଅନୁଷ୍ଠାନ ଗଠନ ହୋଇଥିଲା । ବ୍ୟକ୍ତିଗତ ସମ୍ପତ୍ତି ମାଲିକାନା

ଅର୍ଥନୈତିକ ବୈଷମ୍ୟ ସୃଷ୍ଟି କରିଥିଲା ଓ ପରିବାର ନାରୀମାନଙ୍କ ଅଧିକାରକୁ କ୍ଷୁଣ୍ଣ କଲା । ତଥାପି ସେସବୁ ବ୍ୟକ୍ତିକୁ ନିରାପତ୍ତା ପ୍ରଦାନ କରୁଥିବାରୁ ତାହାର ଯାହାସବୁ ମନ୍ଦ ପରିଣାମ ଥିଲା ତାହାକୁ ଗ୍ରହଣ କରି ନିଆଯାଉଥିଲା । ବ୍ୟକ୍ତିଗତ ସମ୍ପତ୍ତିର ଅଧିକାରୀ ହେବାଦ୍ୱାରା ଜଣେ ନିଜର ସୁଖ ଓ ନିରାପତ୍ତା ପାଇଁ ବ୍ୟବସ୍ଥା କରିପାରିଲା । ଏହା ସହିତ ଆବଶ୍ୟକ ସମୟରେ ବୃଦ୍ଧାବସ୍ଥାରେ ଓ ଅକର୍ମଣ୍ୟ ହେବାରେ ପାରିବାରିକ ଜୀବନ ଅତ୍ୟନ୍ତ ଉପଯୋଗୀ ହେଲା ।

ସ୍ଥିର ସରକାର ଗଠନ ହେବାଦ୍ୱାରା ଆଧୁନିକ ଯୁଗରେ ଅବସ୍ଥାର ପରିବର୍ତ୍ତନ ହୋଇଛି । ସାମାଜିକ ନିରାପତ୍ତା ପ୍ରଦାନ କରିବା କ୍ଷେତ୍ରରେ ବ୍ୟକ୍ତିଗତ ସମ୍ପତ୍ତି ମାଲିକାନା—ଯାହାର ସୁବିଧାସୁଯୋଗ ସୀମିତ ଓ ପରିବେଷ୍ଟନୀ ମଧ୍ୟରେ ସୀମାବଦ୍ଧ ଅପେକ୍ଷା ସ୍ଥାୟୀ ସରକାର ଓ ତତ୍‌ଜନିତ ଅନୁଷ୍ଠାନ ଅଧିକ ଉପଯୋଗୀ ହୋଇଛି । ଅବଶ୍ୟ ସରକାରୀ ବ୍ୟବସ୍ଥା ଭିତରେ କେନ୍ଦ୍ରୀକରଣର ପ୍ରାଧାନ୍ୟ ଅଧିକ ହୋଇଥାଏ । କିନ୍ତୁ ଏହି ପ୍ରକାରର ଅହିତକର ପ୍ରତିବନ୍ଧକକୁ ବ୍ୟକ୍ତିଗତ ଅଧିକାର ଓ ସ୍ୱାଧୀନତାଦ୍ୱାରା ନିୟନ୍ତ୍ରଣ କରାଯାଇପାରିବ । ନାରୀମାନଙ୍କର ଅଧିକାରକୁ ସାବ୍ୟସ୍ତ କରିବା ଓ ବ୍ୟକ୍ତିଗତ ସମ୍ପତ୍ତି ଅଧିକାରଜନିତ ବୈଷମ୍ୟକୁ ଦୂର କରିବା ପାଇଁ ରାଷ୍ଟ୍ର ଅଧିକ ସଫଳତାର ସହିତ ପଦକ୍ଷେପ ନେଇପାରିବ । କେବଳ ସମାଜର ଶୀର୍ଣ୍ଣ ନୈତିକ ନିୟମର ପରିବର୍ତ୍ତନ ଦ୍ୱାରା ଏହି ଲକ୍ଷ୍ୟ ହାସଲ ହୋଇ-ପାରିବା ସମ୍ଭବ ନୁହେଁ । ଏହି ଦୃଷ୍ଟିରୁ ନାସ୍ତିକବାଦୀ ନୈତିକତା ଏକ ରାଜନୈତିକ ବ୍ୟବସ୍ଥାର ସୂତ୍ରପାତ କରିଥାଏ ।

ଚତୁର୍ଥ ପରିଚ୍ଛେଦ :

# ନିରୀଶ୍ୱରବାଦୀ ରାଜନୀତି

ଜନଗଣଙ୍କର ସମସ୍ୟାକୁ ସମାଧାନ କରିବା ପାଇଁ ଉଦ୍ଦିଷ୍ଟ ସରକାରୀ ବ୍ୟବସ୍ଥା ହେଉଛି ରାଜନୀତି । ଆତ୍ମଶୃଙ୍ଖଳା ଓ ଧର୍ମଗତ ବିଶ୍ୱାସ ଦ୍ୱାରା ଯେତେବେଳେ ଜନଗଣଙ୍କର ସମସ୍ୟା ସମାଧାନ ହୋଇପାରିଲା ନାହିଁ ତାହାର ପରିଣାମ ସ୍ୱରୂପ ରାଜନୈତିକ ବ୍ୟବସ୍ଥାର ଉଦ୍ଭବ ହେଲା । ନିରୀଶ୍ୱରବାଦକୁ ଗ୍ରହଣ ନକରିବା ଦ୍ୱାରା ପୂର୍ବୋକ୍ତ ପ୍ରକ୍ରିୟା ବିଫଳ ହେଲା ।

ଆତ୍ମଶୃଙ୍ଖଳା ଓ ଧର୍ମଗତ ବିଶ୍ୱାସ କେତେକ ଉତ୍ତମ ବ୍ୟକ୍ତି ସୃଷ୍ଟି କଲା ସତ, କିନ୍ତୁ ଏକ ଉନ୍ନତ ସମାଜ ଦିଗରେ ସହାୟକ ହେଲାନାହିଁ । ବ୍ୟକ୍ତିଗତ ସ୍ତରରେ ଜଣେ ବ୍ରାହ୍ମଣ ଶୃଙ୍ଖଳିତ, ମାର୍ଜିତ ଓ ପରିଚ୍ଛନ୍ନ ହୋଇପାରେ କିନ୍ତୁ ବ୍ରାହ୍ମଣମାନେ କ୍ଷୁଦ୍ର ଗୋଷ୍ଠୀ ଭିତରେ ସୀମିତ ରହିଲେ ଓ ହିନ୍ଦୁ ସମାଜର ଅଧୋପତନ ହେଲା । ସେହିପରି ଜଣେ ଖ୍ରୀଷ୍ଟିଆନ ଭଦ୍ର ଓ ଉନ୍ନତ ଚରିତ୍ରର ହୋଇପାରେ କିନ୍ତୁ ଖ୍ରୀଷ୍ଟିଆନ ସଭ୍ୟତା ସାମ୍ରାଜ୍ୟବାଦର ବିସ୍ତାର ଦିଗରେ ସହାୟକ ହୋଇଛି ଓ ହିରୋସିମାରେ ଆଣବିକ ବୋମା ବିସ୍ଫୋରଣ କରିଛି । ସେହିପରି ଜଣେ ମୁସଲମାନ ପ୍ରାର୍ଥନା କରିବା ସମୟରେ ଅନ୍ୟମାନଙ୍କ ସହିତ ନିଜକୁ ସମାନ ଭାବିପାରେ, ପରନ୍ତୁ ଅନ୍ୟ ସମୟରେ ଅନ୍ୟମାନଙ୍କ ଅପେକ୍ଷା ନିଜର ସୁବିଧା ସୁଯୋଗକୁ କାଇମ କରିବାକୁ ସଚେତନ ହୁଏ । ମୋଟ ଉପରେ କହିବାକୁ ଗଲେ ଧର୍ମଗତ ବିଶ୍ୱାସ ବ୍ୟକ୍ତିକୁ ବାସ୍ତବବାଦୀ କରିବା ପରିବର୍ତ୍ତେ ଅଧିକ ଔପଚାରିକ ହେବାରେ ସହାୟକ ହେଉଛି । ସେହିପରି ଆତ୍ମଶୃଙ୍ଖଳାବୋଧ ଏକ ବୃହତ୍ତର ପରିପ୍ରେକ୍ଷୀରେ ଅନୁପଯୋଗୀ ହୋଇଛି । କିନ୍ତୁ ରାଜନୈତିକ ବ୍ୟବସ୍ଥା ଅଧିକ ସାମାଜିକ ଓ ନିରପେକ୍ଷ ରହି ଜନଗଣଙ୍କର ସମସ୍ୟାର ସମାଧାନ କରିବା ଦିଗରେ ବ୍ରତୀ ହୋଇଛି ।

ଅତୀତରେ ଧର୍ମଯାଜକମାନେ ପାପୀମାନଙ୍କୁ ଶାରୀରିକ ଦଣ୍ଡ ଦେଉଥିଲେ । ସେମାନେ ଆଧ୍ୟାତ୍ମିକ ଓ ନିରପେକ୍ଷ ଦଣ୍ଡ ବ୍ୟବସ୍ଥା ଦ୍ୱାରା ଅସାଧୁତାକୁ ନିୟନ୍ତ୍ରଣ କରୁଥିଲେ । ଏହି ବ୍ୟବସ୍ଥାରୁ ଧର୍ମଗତ ପ୍ରଣାଳୀର ବିକାଶ ହେଲା ଓ ଦଣ୍ଡ ବ୍ୟବସ୍ଥାରୁ ରାଜନୈତିକ ପ୍ରକ୍ରିୟାର ଭିତ୍ତି ପଡ଼ିଲା । ଧର୍ମୀୟ ପ୍ରଣାଳୀରେ ଯେଉଁ ଦଣ୍ଡ

ବ୍ୟବସ୍ଥାର ସୂତ୍ରପାତ ହୋଇଥିଲା କାଳକ୍ରମେ ତାହା ଏକ ରାଜନୈତିକ ପ୍ରକ୍ରିୟାରେ ରୂପାନ୍ତରିତ ହୋଇଗଲା । ଧର୍ମୀୟ ବ୍ୟବସ୍ଥାରେ ନୈତିକ ଜୀବନ ସହିତ ସ୍ୱର୍ଗପ୍ରାପ୍ତି ଓ ପାପ ସହିତ ନର୍କବାସ ସଶ୍ଳିଷ୍ଟ ହୋଇ ରହିଲା । କିନ୍ତୁ ରାଜନୈତିକ ବ୍ୟବସ୍ଥା ଅଧିକ ସାମାଜିକ ଅଭିମୁଖ୍ୟ ଗ୍ରହଣ କଲା । ରାଜନୈତିକ ବ୍ୟବସ୍ଥାର କାର୍ଯ୍ୟକାରିତା ପାଇଁ ସରକାର ଗଢ଼ାହେଲା, ଜନଗଣଙ୍କ ସହଯୋଗରେ ଓ କର ବା ଟିକସ ପ୍ରଦାନ ଦ୍ୱାରା ସରକାରୀ ବ୍ୟବସ୍ଥା ସୁଦୃଢ଼ ହେଲା । ଆସ୍ତେ ଆସ୍ତେ ରାଜନୈତିକ ବ୍ୟବସ୍ଥା ସୁଦୃଢ଼ ହୋଇଗଲା । ଯେତେବେଳେ ରାଷ୍ଟ୍ରର ଅଧିକାଂଶ ଲୋକ ସରକାର ପାଖରୁ ସହଯୋଗ ପ୍ରତ୍ୟାହାର କରିନେବେ କିମ୍ବା କର ପ୍ରଦାନ ବନ୍ଦ କରିବେ ସେତେବେଳେ ସରକାରୀ ବ୍ୟବସ୍ଥାଟି ଭୁଶୁଡ଼ି ପଡ଼ିବ । ସୁତରାଂ ଯେକୌଣସି ସରକାରୀ ବ୍ୟବସ୍ଥାର ମାଲିକ ଜନଗଣ ହେଉଥିଲେ ବି ସେମାନଙ୍କର ସେହି ସଚେତନତା ନରହିଲେ ତାହା ସମ୍ଭବ ହୋଇପାରିବ ନାହିଁ । କିନ୍ତୁ ଅଧସ୍ତନ ମନୋବୃତ୍ତି, ଜନଗଣ ସରକାରୀ ବ୍ୟବସ୍ଥାର ନିୟନ୍ତ୍ରକ ହେବାରେ ଅନ୍ତରାୟ ହେଲା । ଅପର ପକ୍ଷରେ ଯେଉଁ ସରକାରୀ ବ୍ୟବସ୍ଥା ଲୋକମାନଙ୍କର ସହଯୋଗରେ ସୃଷ୍ଟି ହୋଇଥିଲା ତା' ପାଖରେ ସେମାନେ ନିଜକୁ ନ୍ୟୂନ ବୋଲି ବିଚାର କଲେ ଅଥଚ ନିଜର ସହଯୋଗ ଅବ୍ୟାହତ ରଖିଲେ । ବସ୍ତୁତଃ ରାଷ୍ଟ୍ରମୁଖ୍ୟମାନେ ଜନଗଣଙ୍କର ସେବକ ଭାବରେ ନିଜକୁ ନଭାବି ନିଜର ପ୍ରଭୁତ୍ୱ ବିସ୍ତାର କରି ଶୋଷଣ କରିବାରେ ଲାଗିଲେ । ଶାସକମାନେ ଏକଛତ୍ରବାଦୀ ହୋଇ ଲୋକମାନଙ୍କ ଉପରେ ଅତ୍ୟାଚାର କରି ନିଜର ବିଳାସ ପାଇଁ ଜନଗଣଙ୍କ ଶ୍ରମରେ ପ୍ରାସାଦ ନିର୍ମାଣ କଲେ । ଇଜିପ୍ଟର ପିରାମିଡ୍, ରୋମ୍‌ର ଅଟ୍ଟାଳିକା, ରୁଷ୍‌ର କ୍ରେମ୍‌ଲିନ ପ୍ରାସାଦ ଓ ଭାରତର ତାଜମହଲ ରାଜାମାନଙ୍କର ଗର୍ବ ଓ ଖିଆଲର ପ୍ରତୀକ ଭାବେ ଏବେ ବି ଦଣ୍ଡାୟମାନ । ଶାସକମାନେ ଜନଗଣଙ୍କର ଶ୍ରମ ଉପରେ ଏହି କୀର୍ତ୍ତିଗୁଡ଼ିକ ସୃଷ୍ଟି କରିଥିଲା ବେଳେ ଅଗଣିତ ମଣିଷ ଦୟନୀୟ ଭାବେ କୁଡ଼ିଆରେ ବାସ କରୁଥିଲେ ।

ରାଜନୈତିକ ହେତୁବାଦୀମାନେ ପ୍ରଚଳିତ ଶାସନ ବ୍ୟବସ୍ଥାଟିରେ ରହିଥିବା ଅନ୍ୟାୟର ବିରୋଧ କଲେ । ରାଜତନ୍ତ୍ର ବିରୁଦ୍ଧରେ ବିପ୍ଳବ କରି ସେମାନେ ଗଣତାନ୍ତ୍ରିକ ବ୍ୟବସ୍ଥାର ପ୍ରବର୍ତ୍ତନ କଲେ ଓ ବ୍ୟକ୍ତି ସ୍ୱାଧୀନତାର ଜୟଗାନ କଲେ । ଫଳରେ ଗଣତନ୍ତ୍ରବାଦୀମାନଙ୍କୁ ରାଜନବର୍ଗ ବିରୋଧୀଭାବେ ଦବାଇବାକୁ ଚେଷ୍ଟା କଲେ । କିନ୍ତୁ ଗଣତନ୍ତ୍ରବାଦୀମାନେ ଜନଗଣଙ୍କ ଭିତରେ ସ୍ୱାଧୀନତାର ମନୋଭାବ ଉଦ୍ରେକ କରିବା ଦ୍ୱାରା ସମାଜରେ ରାଜତନ୍ତ୍ର ବିରୁଦ୍ଧରେ ସ୍ୱର ଗୁଞ୍ଜରି ଉଠିଲା । ରାଜନୈତିକ ପ୍ରକ୍ରିୟାରେ ରହିଥିବା ଅଧସ୍ତନ ମନୋଭାବ ଆସ୍ତିକତାବାଦୀ ଦୃଷ୍ଟିଭଙ୍ଗୀ ସହ ମେଳ ଖାଉଥିବା ପ୍ରତୀତ ହୁଏ ।

ରାଜତନ୍ତ୍ର ବ୍ୟବସ୍ଥାରେ ଶାସକମାନେ ପୁରୁଷାନୁକ୍ରମେ ରହୁଥିବାବେଳେ ଗଣତାନ୍ତ୍ରିକ ବ୍ୟବସ୍ଥାରେ ରାଷ୍ଟ୍ରମୁଖ୍ୟମାନେ ଗୋଟିଏ ନିର୍ଦ୍ଦିଷ୍ଟ ସମୟ ସୀମା ପାଇଁ ନିର୍ବାଚିତ ହୋଇଥାଆନ୍ତି । ଯେକୌଣସି ରାଜନୈତିକ ବ୍ୟବସ୍ଥା ହେଉନା କାହିଁକି ପ୍ରତ୍ୟେକଟିର କାର୍ଯ୍ୟକାରିତା ଜନଗଣଙ୍କର ସହଯୋଗ ଓ ଟିକସ ବ୍ୟବସ୍ଥା ଉପରେ ନିର୍ଭର କରେ । କିନ୍ତୁ ଗଣତାନ୍ତ୍ରିକ ବ୍ୟବସ୍ଥାରେ ଜନଗଣ ନିଜ ଇଚ୍ଛାମୁତାବକ ଭୋଟ ଜରିଆରେ ଏକ ସରକାରକୁ ନିର୍ବାଚିତ କରିଥାଆନ୍ତି । ଅସହଯୋଗ ଓ କରଦାନ ବନ୍ଦ ସହିତ ଗଣତାନ୍ତ୍ରିକ ବ୍ୟବସ୍ଥାରେ ସରକାର ପରିବର୍ତ୍ତନ ସମ୍ଭବ ହୋଇଥାଏ । ମୋଟ ଉପରେ କହିବାକୁ ଗଲେ ଗଣତନ୍ତ୍ରକୁ ଜନଗଣଙ୍କ ଦ୍ୱାରା ନିର୍ବାଚିତ ପ୍ରତିନିଧିମୂଳକ ଶାସନ ବ୍ୟବସ୍ଥା ବୋଲି କୁହାଯାଇପାରିବ ।

ଗଣତନ୍ତ୍ରରେ ରାଜନୈତିକ ସମତା ଏକ ମୁଖ୍ୟ ପ୍ରତ୍ୟୟ ଅଟେ । ସାବାଳକ ଭୋଟ ବ୍ୟବସ୍ଥାରେ ଜଣେ ବ୍ୟକ୍ତିର ଗୋଟିଏ ଭୋଟ ଦେବାର ଅଧିକାର ଥାଏ । ଏହାଦ୍ୱାରା ରାଜନୈତିକ ସମତା ପ୍ରତିଷ୍ଠା ହୁଏ । ଗଣତନ୍ତ୍ରର ସଫଳ କାର୍ଯ୍ୟକାରିତା ଦ୍ୱାରା ରାଜନୈତିକ ସ୍ୱାଧୀନତା କାଳକ୍ରମେ ସାମାଜିକ ଓ ଆର୍ଥିକ ସମତା ସୃଷ୍ଟି ଦିଗରେ ସହାୟକ ହୁଏ । ସକଳ ସ୍ତରରେ ସମାନତା ପ୍ରତିଷ୍ଠା ହେଲେ ଜନଗଣଙ୍କର ସମସ୍ୟା ଦୂରୀଭୂତ ହୁଏ । ସୁତରାଂ ଗଣତନ୍ତ୍ରରେ ଏହାକୁ ଲକ୍ଷ୍ୟ ଭାବରେ ନିଆଯାଏ ଓ ଏହି ଲକ୍ଷ୍ୟ ସାଧନ ପାଇଁ ନାନା ଅନୁଷ୍ଠାନିକ ବ୍ୟବସ୍ଥା ସୃଷ୍ଟି କରାଯାଏ ।

ଯେକୌଣସି ଅଧିକାର ସାବ୍ୟସ୍ତ କରିବା ଦିଗରେ ପ୍ରଥମେ ବୈଯ୍କ୍ତିକ ସ୍ତରରେ ପରିବର୍ତ୍ତନ ଆସିବା ଆବଶ୍ୟକ; କିନ୍ତୁ ଯେପର୍ଯ୍ୟନ୍ତ ବ୍ୟକ୍ତି ନିଜକୁ ଅସହାୟ ମଣୁଥାଏ ଓ ଗୋଟିଏ ବ୍ୟବସ୍ଥା ତା'ଠାରୁ ଶକ୍ତିଶାଳୀ ବୋଲି ବିଚାର କରୁଥାଏ ସେପର୍ଯ୍ୟନ୍ତ ତାହାର ଚେତନା ସ୍ତରରେ ସମତାବୋଧ ଆସିପାରେନାହିଁ । ଏଣୁ ଗଣତନ୍ତ୍ରର ସଫଳ ରୂପାୟନ ପାଇଁ ଜନଗଣଙ୍କ ଚେତନା ସ୍ତରରେ ଏକ ପରିବର୍ତ୍ତନ ଆସିବା ଆବଶ୍ୟକ ମନେହୁଏ । ନିରୀଶ୍ୱରବାଦୀ ଦୃଷ୍ଟିଭଙ୍ଗୀର ବିକାଶ ଦ୍ୱାରା ଏହି ଲକ୍ଷ୍ୟ ହାସଲ ହେବା ସମ୍ଭବପର ଜଣାପଡ଼େ । ସୁତରାଂ ନିରୀଶ୍ୱରବାଦର ବିକାଶ ନହେଲେ ଏକ ଗଣତାନ୍ତ୍ରିକ ବ୍ୟବସ୍ଥାର ଔପଚାରିକ ଭୋଟ ଭିତରେ ସୀମିତ ରହିଯିବ ସିନା ନିଜର ଲକ୍ଷ୍ୟ ହାସଲ କରିପାରିବ ନାହିଁ ।

ପଶ୍ଚାତ୍ୟର ବହୁସ୍ଥ ଗଣତାନ୍ତ୍ରିକ ବ୍ୟବସ୍ଥାର ପ୍ରବର୍ତ୍ତକଗଣ ରାଜତନ୍ତ୍ର ବିରୁଦ୍ଧରେ ଚେତନା ଜାଗ୍ରତ କରିବାରେ ବଳିଷ୍ଠ ଭୂମିକା ନେଇଥିଲେ ବି ସେମାନେ ନିରୀଶ୍ୱରବାଦୀ ନଥିବାରୁ ଜନଗଣଙ୍କ ଭିତରେ ଗଣତାନ୍ତ୍ରିକ ଚେତନା ଜାଗ୍ରତ କରିପାରିଲେ ନାହିଁ । ଫ୍ରାନ୍ସରେ ରୁଷୋ ଏକ ଗଣତାନ୍ତ୍ରିକ ବିପ୍ଳବ ପାଇଁ ପ୍ରେରଣା ସୃଷ୍ଟି କରିଥିଲେ । ସେ ଏହାକୁ ଈଶ୍ୱରଙ୍କ ଇଚ୍ଛା ଭାବେ ନେଇଥିଲେ । ଭୋଲ୍‌ଟାୟାର୍ ଈଶ୍ୱରଙ୍କୁ ମଧ୍ୟ ଅବିଶ୍ୱାସ କରୁନଥିଲେ । କେତେକ ମନୀଷୀଙ୍କ ପରି ଏକ

ଆସ୍ତିକତାବାଦୀ ରାଜନୈତିକ ବ୍ୟବସ୍ଥାରୁ ଜନଗଣଙ୍କୁ ମୁକ୍ତ କରିବା ଦିଗରେ ସେମାନେ କେତେକାଂଶରେ ସଫଳ ହୋଇ ଥିଲେ । ପରିଣାମତଃ ରାଜନୈତିକ ପରିବର୍ତ୍ତନର ମଧ୍ୟବର୍ତ୍ତୀ କାଳଟି ଗ୍ରୁଲିଯିବା ପରେ ଜନଗଣ ପୁନଶ୍ଚ ଆସ୍ତିକତାବାଦୀ ବର୍ଗ୍ଗର ସ୍ତରରେ ରହିଗଲେ । ଯେଉଁମାନଙ୍କୁ ସେମାନେ ଭୋଟ ଦେଇ ନିର୍ବାଚିତ କରିଥିଲେ ସେମାନଙ୍କ ପାଖରେ ଜନଗଣ ଅଧସ୍ତନ ହେଲେ । ଲୋକଙ୍କ ଦ୍ୱାରା ସୃଷ୍ଟ ଗଣତାନ୍ତ୍ରିକ ବ୍ୟବସ୍ଥା ଲୋକମାନଙ୍କ ଉପରେ କର୍ତ୍ତୃତ୍ୱ ଜାହିର କଲା ।

ଲୋକମାନଙ୍କର ନିୟନ୍ତ୍ରଣ ଅଭାବରେ ନିର୍ବାଚିତ ପ୍ରତିନିଧି, ବିଶେଷକରି ରାଷ୍ଟ୍ରପତି ଓ ମନ୍ତ୍ରୀଗଣ, ରାଜା ମହାରାଜାଙ୍କ ପରି ନିଜର କର୍ତ୍ତବ୍ୟ ପ୍ରତି ଉଦାସୀନ ରହିଲେ । କେବଳ ନିର୍ଦ୍ଦିଷ୍ଟ ସମୟ ବ୍ୟବଧାନରେ ଥରେ ଭୋଟ ଦେବା ବା ଏପରିକି କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କୁ ବଳପ୍ରୟୋଗ ଦ୍ୱାରା ଭୋଟ ଦେବା ଛଡ଼ା ଲୋକମାନେ ନିଜ ପ୍ରତିନିଧିଙ୍କ ଉପରେ କର୍ତ୍ତୃତ୍ୱ ହରାଇ ବସିଲେ । ଅପର ପକ୍ଷରେ କର ଦ୍ୱାରା ଆଦାୟ ହେଉଥିବା ଜନଗଣଙ୍କର ଅର୍ଥକୁ ନିର୍ବାଚିତ ପ୍ରତିନିଧିଗଣ ନିଜ ଇଚ୍ଛାରେ ଓ ଏପରିକି ନିଜର ସ୍ୱାର୍ଥସାଧନ ଦିଗରେ ଖର୍ଚ୍ଚ କରିବାକୁ ଲାଗିଲେ । ନିଜର ଭୋଟ ଅଧିକାର ଓ ରାଜନୈତିକ ସମତା ସତ୍ତ୍ୱେ ସାଧାରଣ ଜନଗଣ ପ୍ରତିନିଧିଙ୍କ ପାଖରେ ନ୍ୟୂନ ହୋଇ ରହିଲେ । ସମାନତା କେବଳ ନିର୍ବାଚନ ମଞ୍ଚରେ ଏକ ସୋପାନ ହୋଇ ରହିଲା, ଅଥଚ ବାସ୍ତବ କ୍ଷେତ୍ରରେ ପ୍ରତିଫଳିତ ହେଲାନାହିଁ । ଏପରିକି ପ୍ରତିନିଧି ପ୍ରତ୍ୟାହାର, ଜନାଦେଶ ଇତ୍ୟାଦି ଗଣତାନ୍ତ୍ରିକ ଅଙ୍କୁଶଗୁଡ଼ିକ ଲୋକମାନଙ୍କର ଅବସ୍ଥାରେ କୌଣସି ପରିବର୍ତ୍ତନ ଆଣିପାରିଲା ନାହିଁ । ଏହି ବିଫଳତା ଗଣତାନ୍ତ୍ରିକ ବ୍ୟବସ୍ଥାରେ ରହିଥିବା ଆସ୍ତିକତାବାଦୀ ଦୃଷ୍ଟିଭଙ୍ଗୀର ପରିଣାମ କହିଲେ ଅତ୍ୟୁକ୍ତି ହେବନାହିଁ । ଗଣତାନ୍ତ୍ରିକ ବ୍ୟବସ୍ଥାରେ ଭୋଟରମାନଙ୍କ ରାଜନୈତିକ ଅଜ୍ଞତା ଓ ଅଧସ୍ତନ ମନୋଭାବ ଯୋଗୁଁ ରାଜନୈତିକ ଦଳମାନଙ୍କର ବିକାଶ ହେଲା । ଉତ୍ପାଦନକାରୀ ଖାଉଟିଙ୍କ ଭିତରେ ମଧ୍ୟସ୍ଥି ଭଳି ରାଜନୈତିକ ଦଳ ସମୂହ ସାଧାରଣ ଲୋକଙ୍କର ଅଜ୍ଞତା ଯୋଗୁଁ ଭୋଟର ଓ ସରକାର ମଧ୍ୟରେ ମଧ୍ୟସ୍ଥି ଭଳି କାର୍ଯ୍ୟକଲେ ।

ଅଜ୍ଞ ଜନଗଣଙ୍କର ଆଶାଆକାଂକ୍ଷାକୁ ପୂରଣ କରିବା ରାଜନୈତିକ ଦଳମାନଙ୍କର ଉଦ୍ଦେଶ୍ୟ ବୋଲି ସେମାନେ ପ୍ରକାଶ କରିଥାନ୍ତି । ଭିନ୍ନ ଭିନ୍ନ ରାଜନୈତିକ ଦଳ ମଧ୍ୟରେ ନୀତିଗତ ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ । ଗଣତାନ୍ତ୍ରିକ ବ୍ୟବସ୍ଥାରେ ସଂଖ୍ୟାଗରିଷ୍ଠ ରାଜନୈତିକ ଦଳ ଜନଗଣଙ୍କ ଉପରେ ଶାସନ କରିବାର ଅଧିକାର ପାଏ । ଫଳରେ ପ୍ରତ୍ୟେକ ରାଜନୈତିକ ଦଳ ବିଧାନସଭା ସ୍ତରରେ ସଂଖ୍ୟାଗରିଷ୍ଠତା ହାସଲ କରିବାକୁ ପ୍ରୟାସ କରେ । ରାଜନୈତିକ ଦଳ ସମୂହ ନିର୍ବାଚିତ ହୋଇ ବା

ଦଳବଦଳ ମାଧ୍ୟମରେ କିପରି ସଂଖ୍ୟାଗରିଷ୍ଠତା ହାସଲ କରିବେ ସେଥିପାଇଁ ତତ୍ପର ରୁହନ୍ତି । ଫଳରେ କ୍ଷମତା ହାସଲ ପାଇଁ ଦଳ ଦଳ ମଧ୍ୟରେ ପ୍ରତିଯୋଗିତା ଲୋକସେବା ଅପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ ହୋଇଉଠେ । ଦଳୀୟ ଗଣତାନ୍ତ୍ରିକ ବ୍ୟବସ୍ଥାରେ ରାଜନୈତିକ କ୍ଷମତା ମୁଖ୍ୟ ପ୍ରଶ୍ନ ହୋଇଥାଏ, ଯଦ୍ଦ୍ୱାରା ସଂଖ୍ୟାଗରିଷ୍ଠ ବା ସଂଖ୍ୟାଲଘୁ ଜନଗଣଙ୍କର ସେବା ଗୌଣ ହୋଇଯାଏ । ସଂଖ୍ୟାଲଘୁ ଦଳ କ୍ଷମତା ହାସଲ ଠାରୁ ଦୂରରେ ରହିବା ଦ୍ୱାରା ଲୋକଙ୍କର ସେବା କରିପାରେ ନାହିଁ । ସେହିପରି ସଂଖ୍ୟାଗରିଷ୍ଠ ଦଳ ସଂଖ୍ୟାଲଘୁ ଦଳର ସମାଲୋଚନା ଯୋଗୁଁ ଜନଗଣଙ୍କର ଉପକାରରେ ଆସିପାରେ ନାହିଁ । ବସ୍ତୁତଃ ଦଳ ସମୂହ ଲୋକଙ୍କର ବାସ୍ତବ ସମସ୍ୟା ପ୍ରତି ଉଦାସୀନ ରୁହନ୍ତି । ଗଣତାନ୍ତ୍ରିକ ପଦ୍ଧତିରେ ଲୋକମାନେ ରାଜନୈତିକ ଦଳ ଅପେକ୍ଷା ପ୍ରଶାସନିକ ବ୍ୟବସ୍ଥାରୁ ଯାହା ଉପକାର ପାଇଥାଆନ୍ତି ।

ରାଜନୈତିକ ଦଳମାନଙ୍କ ଭିତରେ ପ୍ରଭେଦ ରହିଥିଲେ ବି ଜନଗଣଙ୍କର ସେବା କରିବା ମୁଖ୍ୟ ଅଭିମୁଖ୍ୟ ଅଟେ । ତେଣୁ ପ୍ରଶ୍ନଉଠେ ଦଳମାନେ କ୍ଷମତା ପାଇଁ ପରସ୍ପର ମଧ୍ୟରେ ପ୍ରତିଯୋଗିତା ନକରି ଲୋକଙ୍କର ସେବା କରିବାପାଇଁ ଏକଜୁଟ ହୁଅନ୍ତି ନାହିଁ କାହିଁକି ! ଗଣତନ୍ତ୍ରରେ ଭାବପ୍ରକାଶର ସ୍ୱାଧୀନତା ଥିବାରୁ ସଂସଦରେ ବିଭିନ୍ନ ସଭ୍ୟ ଭିନ୍ନ ଭିନ୍ନ ମତ ପୋଷଣ କରିପାରନ୍ତି । ଗଣତାନ୍ତ୍ରିକ ପ୍ରଣାଳୀରେ କୌଣସି ବିଷୟରେ ନିଷ୍ପତ୍ତି ନେବା ପୂର୍ବରୁ ତାହା ସଂସଦରେ ଆଲୋଚିତ ହୋଇ ସଂଖ୍ୟାଗରିଷ୍ଠ ବ୍ୟକ୍ତିଙ୍କଦ୍ୱାରା ନିଷ୍ପତ୍ତି କରାଯାଏ । ଏହାଦ୍ୱାରା ସ୍ୱାଧୀନ ଓ ନିରପେକ୍ଷ ମତପୋଷଣ କରି ଆଲୋଚନାପୂର୍ବକ ନିଷ୍ପତ୍ତି ଗ୍ରହଣ କରାଯାଏ । ସୁତରାଂ ଲୋକମାନଙ୍କର ସମସ୍ୟାର ସମାଧାନ ଦିଗରେ ଗଣତନ୍ତ୍ର ଏକ ମୁକ୍ତ ମଞ୍ଚ ଯୋଗାଇଥାଏ ।

ମୁକ୍ତ ବିଚାରଦ୍ୱାରା ହିଁ ସଂସଦରେ କୌଣସି ସମସ୍ୟା ଉପରେ ସଦ୍‌ମତ ପ୍ରକାଶ ପାଇଥାଏ । ବିଭିନ୍ନ ନୀତି ମାଧ୍ୟମରେ ଜନଗଣଙ୍କର ସମସ୍ୟାକୁ ସମାଧାନ କରାଯାଏ । ପ୍ରତ୍ୟେକଟି ନୀତି ଲୋକଙ୍କର ସମସ୍ୟାର ସମାଧାନ ଦିଗରେ ଉଦ୍ଦିଷ୍ଟ ଥିବାରୁ ମୂଲ୍ୟବାନ ମନେହୁଏ । ବିଭିନ୍ନ ନୀତିଗୁଡ଼ିକର ମୁଖ୍ୟ ଆଲୋଚନା ଦ୍ୱାରା ସୁସ୍ଥ ନୀତିଟି ଉଦ୍ଭବ ହୁଏ । ଏକ ନିର୍ଦ୍ଦିଷ୍ଟ ନୀତିକୁ ଅପରିହାର୍ଯ୍ୟ ବୋଲି ଗ୍ରହଣ କରିବାଦ୍ୱାରା ଗଣତନ୍ତ୍ର ବଦଳରେ ଏକଛତ୍ରବାଦର ବିକାଶ ହୁଏ । ପ୍ରତ୍ୟେକ ଦଳର ଏକ ଗଣତାନ୍ତ୍ରିକ ଇସ୍ତାହାର ବ୍ୟବସ୍ଥା ଥିବାରୁ ଓ ସଂଖ୍ୟାଗରିଷ୍ଠ ଦଳ ଶାସନ କରୁଥିବାରୁ ଦଳୀୟ ଗଣତାନ୍ତ୍ରିକ ବ୍ୟବସ୍ଥା ବହୁ ସମୟରେ ସଂଖ୍ୟାଗରିଷ୍ଠ ଦଳଦ୍ୱାରା ନିୟନ୍ତ୍ରିତ ହୁଏ । ଏଣୁ ଏହାକୁ ସଂଖ୍ୟାଗରିଷ୍ଠ ଦଳର ଏକଛତ୍ରବାଦ ବୋଲି କୁହାଯାଇପାରିବ ।

ଗଣତାନ୍ତ୍ରିକ ବ୍ୟବସ୍ଥାରେ ସ୍ୱାଧୀନ ଭାବରେ ମତପୋଷଣ କରିବାର ସମସ୍ତ ଅବକାଶ ଥିବାରୁ ବିରୋଧୀ ଦଳ ଏକ ମୁଖ୍ୟ ସ୍ଥାନ ଗ୍ରହଣ କରିଥାଏ । ବିରୋଧୀ ଦଳ କାର୍ଯ୍ୟଦକ୍ଷ, ଗଠନମୂଳକ ଓ ସମ୍ମାନାସ୍ପଦ ହେଲେ ଗଣତନ୍ତ୍ରର ସଫଳତା ମିଳିଥାଏ । ଏହା ସମ୍ଭବ ହୁଏ ଯଦି ସଂସଦର ପ୍ରତ୍ୟେକ ବିଧାୟକଙ୍କୁ ସମାନ ଦୃଷ୍ଟିରେ ବିଚାର କରାଯାଏ । କିନ୍ତୁ ଦଳୀୟ ବ୍ୟବସ୍ଥାରେ ସଂଖ୍ୟାଗରିଷ୍ଠ ଦଳ ଅନେକ ସମୟରେ ନିଜ ସଂଖ୍ୟାଗରିଷ୍ଠତାର ସୁଯୋଗ ନେଇ ସଂଖ୍ୟାଲଘୁ ଦଳକୁ ଦବାଇ ଦିଏ । ତଦ୍ଦ୍ୱାରା ସଂଖ୍ୟାଲଘୁ ଦଳ କୌଣସି ଉଦ୍ଦେଶ୍ୟ ସାଧନ କରିପାରେ ନାହିଁ । ଦଳୀୟ ଗଣତାନ୍ତ୍ରିକ ବ୍ୟବସ୍ଥାରେ ସମସ୍ତ ସମୟରେ ବିରୋଧୀଦଳ କୌଣସି ଉପଯୋଗୀ ଭୂମିକା ନେଇପାରେ ନାହିଁ । ଏକଛତ୍ରବାଦୀ ବ୍ୟବସ୍ଥାରେ ବିରୋଧୀଦଳର ଅସ୍ତିତ୍ୱ ଲୋପପାଏ ଓ ଦଳୀୟ ଗଣତାନ୍ତ୍ରିକ ବ୍ୟବସ୍ଥାରେ ବିରୋଧୀଦଳ ଗୁରୁତ୍ୱହୀନ ହୋଇପଡ଼େ । ସୁତରାଂ ଏକ ଦଳବିହୀନ ବ୍ୟବସ୍ଥାରେ ବିରୋଧ ପ୍ରମୁଖ ଭୂମିକା ନିଏ । ଏହା ସରକାରୀ ନୀତିର ଦୋଷତ୍ରୁଟି ଦେଖାଇବାରେ ସୀମିତ ନରହି ବରଂ ନୀତିକୁ ଗ୍ରହଣ କରାଇବାରେ ଯତ୍ନଶୀଳ ହୁଏ । ଦଳୀୟଗଠନ ବ୍ୟବସ୍ଥାରେ ଏହି ସମ୍ଭାବନା ନଥାଏ । ସୁତରାଂ ବାସ୍ତବ ଗଣତନ୍ତ୍ର ଦଳହୀନ ବ୍ୟବସ୍ଥା ଉପରେ ନିର୍ଭର କରେ । ପ୍ରତ୍ୟେକଟି ନୀତି ଓ ଏହାର ବିରୋଧ ମୁକ୍ତଭାବରେ ବ୍ୟକ୍ତ ହେବା ଉଚିତ ମନେହୁଏ । ନିଜର ମତରେ ଅଟଳ ରହିଥିବା ବ୍ୟକ୍ତି ଗୋଟିଏ ନୀତି ପାଇଁ ଗଣତାନ୍ତ୍ରବାଦୀ ହେବା ଅପେକ୍ଷା ଶିକ୍ଷିତ ହୋଇପାରେ ।

ସଂଖ୍ୟାଗରିଷ୍ଠ ବିଧାୟକଙ୍କ ମତକୁ ଗଣତାନ୍ତ୍ରିକ ବ୍ୟବସ୍ଥାରେ ଗ୍ରହଣ କରାଯାଏ । ମନ୍ତ୍ରିମଣ୍ଡଳର ନିଷ୍ପତ୍ତି ସଂସଦରେ ସ୍ୱୀକୃତ, ପରିବର୍ତ୍ତିତ ଅଥବା ପ୍ରତ୍ୟାହୃତ ହୁଏ । ମନ୍ତ୍ରିମଣ୍ଡଳର ନିଷ୍ପତ୍ତି ସଂସଦରେ ଗ୍ରହଣଯୋଗ୍ୟ ନହେଲେ ମନ୍ତ୍ରୀ ପରିଷଦ ଇସ୍ତଫା ଦେବାପାଇଁ ଧମକ ଦେଇପାରେ । ଏ କ୍ଷେତ୍ରରେ ସରକାର ଗଣତାନ୍ତ୍ରିକ ଦୃଷ୍ଟିଭଙ୍ଗୀ ପ୍ରକାଶ କରିବା ପରିବର୍ତ୍ତେ ଏକଛତ୍ରବାଦୀ ହୋଇଥାଏ । କିନ୍ତୁ ଗଣତନ୍ତ୍ରର ମହତ୍ତ୍ୱ ହେଉଛି ଭିନ୍ନ ମତକୁ ସମ୍ମାନର ସହ ବିଚାର କରିବା । ସେ କ୍ଷେତ୍ରରେ ବିଧାୟକମାନଙ୍କର ଦଳପ୍ରତି ଆନୁଗତ୍ୟ ନରହିବା ଦ୍ୱାରା ସେମାନେ ସ୍ୱାଧୀନ ମତପୋଷଣ ପାଇଁ ସମର୍ଥ ହୋଇଥାଆନ୍ତି । ଏହି ପ୍ରକାରର ଏକ ଗଣତାନ୍ତ୍ରିକ ବ୍ୟବସ୍ଥା ଅଧିକ ସ୍ଥାୟୀ ହେବା ସହିତ ଜନଗଣଙ୍କର ବାସ୍ତବ ସମସ୍ୟାକୁ ସମାଧାନ କରିବା ଦିଗରେ ଅଧିକ ଯତ୍ନଶୀଳ ହୋଇଥାଏ ।

ସାଂପ୍ରତିକ ଗଣତାନ୍ତ୍ରିକ ବ୍ୟବସ୍ଥାର ଆଉ ଏକ ଦୁର୍ବଳତା ହେଉଛି ଏହା ଗୋଟିଏ ରାଷ୍ଟ୍ରରେ ଅସଂଖ୍ୟ ଜନଗଣ ଓ ବିସ୍ତୃତ ସୀମା ଭିତରେ କାର୍ଯ୍ୟକାରୀ ହୁଏ । ସମଗ୍ର ମାନବ-ଜାତିର ଦୃଷ୍ଟିକୋଣରୁ ବିଚାର କଲେ ରାଷ୍ଟ୍ର ସାମ୍ପ୍ରଦାୟିକ ପ୍ରତୀତ

ହୋଇପାରେ । ଏକ ରାଷ୍ଟ୍ରରେ ଲୋକପ୍ରତିନିଧିମାନେ ନିର୍ବାଚନ ମଣ୍ଡଳୀରେ ଆୟତନ ଓ ଲୋକସଂଖ୍ୟା ଦୃଷ୍ଟିରୁ ଲୋକମାନଙ୍କ ସହିତ ପ୍ରତ୍ୟକ୍ଷ ସମ୍ପର୍କ ରଖିପାରନ୍ତି ନାହିଁ । ଫଳରେ ସେମାନେ ଲୋକମାନଙ୍କର ଆଶାଆକାଂକ୍ଷାକୁ ପୂରଣ କରିବା ପାଇଁ ସମର୍ଥ ହୋଇପାରନ୍ତି ନାହିଁ । ବସ୍ତୁତଃ ଏଥିରେ ଶାସନବ୍ୟବସ୍ଥା ଅଧିକ କେନ୍ଦ୍ରୀଭୂତ ଓ ଅମଲାତାନ୍ତ୍ରିକ ହେବା ଦେଖାଯାଏ । କଲମ ଓ ଫାଇଲ୍ ଗୁଡ଼ିକ ଏଥିରେ ମୁଖ୍ୟ ହୋଇଉଠେ ଓ ଜନଗଣ ଅପସରି ଯାଆନ୍ତି । ଏହାଦ୍ୱାରା ଶାସକମାନେ କ୍ଷମତା ଓ ସରକାରୀ ଅର୍ଥକୁ ବ୍ୟକ୍ତିଗତ ସ୍ୱାଚ୍ଛନ୍ଦ୍ୟ ଓ ସ୍ୱାର୍ଥପାଇଁ ଅପବ୍ୟୟ କରନ୍ତି । ବ୍ୟକ୍ତିଗତ ସ୍ତରରେ କେତେକ ମିତବ୍ୟୟୀ ଓ ସାଧୁତାକୁ ଗ୍ରହଣ କରୁଥିଲେ ବି ଏତେ ଲୋକମାନଙ୍କ ସହ ସମ୍ପର୍କ ରକ୍ଷା କରି ସେମାନଙ୍କର ସମସ୍ୟାକୁ ବୁଝିବା ସମ୍ଭବପର ହୁଏନାହିଁ । ଫଳରେ ରାଷ୍ଟ୍ରୀୟ ସ୍ତରରେ ଗଣତାନ୍ତ୍ରିକ ବ୍ୟବସ୍ଥା ଜନଗଣଙ୍କର ସେବା କରିବା ପରିବର୍ତ୍ତେ ଲୋକଙ୍କ ଉପରେ ଶାସନ ଜାହିର କରିଥାଏ ।

ଗଣତନ୍ତ୍ରର ସଫଳ ରୂପାୟନ ପାଇଁ ଦଳହୀନ ବ୍ୟବସ୍ଥା ଯେପରି ଦରକାର, ଏକ ବିକେନ୍ଦ୍ରୀକରଣ ବ୍ୟବସ୍ଥା ମଧ୍ୟ ସେହିପରି ଆବଶ୍ୟକ ମନେହୁଏ । ଗଣତାନ୍ତ୍ରିକ ବିକେନ୍ଦ୍ରୀକରଣ ବ୍ୟବସ୍ଥାରେ କ୍ଷୁଦ୍ର କ୍ଷୁଦ୍ର ଅଞ୍ଚଳ ସୃଷ୍ଟି କରି ଶାସନକୁ ଲୋକାଭିମୁଖୀ କରାଯାଇପାରେ । ଅନ୍ତତଃ ଏକହଜାର ଜନସଂଖ୍ୟା ବିଶିଷ୍ଟ ଓ କୋଡ଼ିଏ କି.ମି. ଅବଧିକୁ ନେଇ ଗୋଟିଏ ଲେଖାଏଁ କେନ୍ଦ୍ର କରାଯାଇପାରେ । ଏଥିରେ ଅଞ୍ଚଳର ଆୟତନ ଅପେକ୍ଷା ଜନସଂଖ୍ୟାର ଆୟତନ ଗୁରୁତ୍ୱପୂର୍ଣ୍ଣ ହୁଏ । ଫଳରେ ପ୍ରଶାସନ ପ୍ରତ୍ୟେକ ବ୍ୟକ୍ତିସହ ସମ୍ପର୍କ ରଖିବା ସମ୍ଭବ ହୁଏ । ବିକେନ୍ଦ୍ରୀକରଣ ବ୍ୟବସ୍ଥାର ଅଭିମୁଖ୍ୟ ହେଉଛି ପ୍ରତ୍ୟକ୍ଷଭାବେ ଜନଗଣଙ୍କ ସହ ସମ୍ପର୍କ ରକ୍ଷା କରିବା ।

ବିକେନ୍ଦ୍ରୀକରଣ ବ୍ୟବସ୍ଥାରେ ଏକ ପରିମିତ ଲୋକସଂଖ୍ୟାକୁ ନେଇ ଏକକ କେନ୍ଦ୍ର ଗଠନ କରାଯାଏ । ପ୍ରତ୍ୟେକ କେନ୍ଦ୍ର ଗୋଟିଏ ପ୍ରତିନିଧିସଭା ସ୍ଥିର କରେ । ଏହି ସଭା ଲୋକମାନଙ୍କର ଆବଶ୍ୟକତା ଓ ପରିବର୍ତ୍ତିତ ସମସ୍ୟାକୁ ସମାଧାନ କରେ । ଏହି କେନ୍ଦ୍ରଗୁଡ଼ିକ ସ୍ତର ପରେ ସ୍ତର ଦେଇ ଏକ ସଂଘୀୟ ବ୍ୟବସ୍ଥା ଗଠନ କରନ୍ତି । ସମାଜର ବୃହତ୍ତର ଆବଶ୍ୟକତା ଯଥା—ଯାତାୟାତ, ଉତ୍ପାଦନର ଅବଣ୍ଟନ ଓ ବିନିମୟ ଏବଂ ଗବେଷଣା ଇତ୍ୟାଦିକୁ ସଂଘୀୟ ବ୍ୟବସ୍ଥା ନିୟନ୍ତ୍ରଣ କରିବା ସମ୍ଭବ ମନେହୁଏ । ଏହି କ୍ଷୁଦ୍ର କେନ୍ଦ୍ରଠାରୁ ସମଗ୍ର ମାନବଜାତି ପର୍ଯ୍ୟନ୍ତ ଏକ ସଂଘୀୟ ବ୍ୟବସ୍ଥା ଗଠିତ କରାଯାଇପାରେ । ପ୍ରାଥମିକ ସ୍ତରରୁ ମନୋନୀତ ହୋଇଥିବା ସଭାପରି ପ୍ରତ୍ୟେକ ସ୍ତରରେ ଏକ ସମିତି ରହିପାରେ । ପ୍ରାଥମିକ କେନ୍ଦ୍ରର ସମିତି ଜନଗଣଙ୍କର ବାସ୍ତବ ସମସ୍ୟା ପ୍ରତି ସଚେତନ ହେବାବେଳେ ବୃହତ୍ତର ସମିତିଗୁଡ଼ିକ ସାଧାରଣ ମାନବିକ ସମସ୍ୟା ପ୍ରତି ସଚେତନ ରହିବା ଆବଶ୍ୟକ ମନେହୁଏ ।

ଏହିପରି ଏକ ବିକେନ୍ଦ୍ରୀଭୂତ ସଙ୍ଘୀୟ ବ୍ୟବସ୍ଥା ଜନମାନସରୁ ଜାତୀୟତା, ସଂଖ୍ୟାଲଘୁ ଦୃଷ୍ଟିଭଙ୍ଗୀ ପରି ସାମ୍ପ୍ରଦାୟିକତାକୁ ବିଲୋପ କରିପାରେ । ଫଳରେ ଯୁଦ୍ଧ, ସାମ୍ପ୍ରଦାୟିକ ବିଦ୍ୱେଷ ଇତ୍ୟାଦି ଦୂରହେବା ସମ୍ଭବ ହୁଏ । ପ୍ରତ୍ୟେକ ବ୍ୟକ୍ତି କୌଣସି ଗୋଟିଏ ଏକକ କେନ୍ଦ୍ରରେ ସଭ୍ୟ ହୋଇଥିବାରୁ ସେ ସାମାଜିକ ନିରାପତ୍ତା ଲାଭ କରିପାରେ । ଏହା ଫଳରେ ପାରିବାରିକ ଅନୁରକ୍ତତାରୁ ବ୍ୟକ୍ତିର କର୍ତ୍ତବ୍ୟବୋଧ ସମ୍ପ୍ରସାରିତ ହୋଇଯାଏ । ବାତ୍ସଲ୍ୟମମତା ଓ ଦାମ୍ପତ୍ୟପ୍ରେମ ବ୍ୟତୀତ ଜାତି, ଗୋଷ୍ଠୀ ପ୍ରତି ବ୍ୟକ୍ତିର ଅନୁରକ୍ତି ସୀମିତ ନରହି ଏହି ବିକେନ୍ଦ୍ରୀକରଣ ବ୍ୟବସ୍ଥାରେ ସମଗ୍ର ମାନବଜାତି ପ୍ରତି ପ୍ରସାରିତ ହୋଇଯାଏ । ଏହି ବ୍ୟବସ୍ଥାରେ ପ୍ରତ୍ୟେକ ବ୍ୟକ୍ତିର ଆବଶ୍ୟକତା ପ୍ରତି ଯେପରି କେନ୍ଦ୍ର ଦାୟୀ ରହେ ସେହିପରି ବ୍ୟକ୍ତିର ଅନୁରକ୍ତି ରାଷ୍ଟ୍ର ବା ନିଜ ସମ୍ପ୍ରଦାୟ ଭିତରେ ସୀମିତ ନରହି ସମଗ୍ର ମାନବ ଜାତି ପ୍ରତି ପ୍ରସାରିତ ହୋଇଯାଏ ।

ପ୍ରାଚୀନ କାଳରେ ବିକେନ୍ଦ୍ରୀକରଣ ବ୍ୟବସ୍ଥାର ପ୍ରବର୍ତ୍ତନ ଥିବା ଦେଖାଯାଏ । ଗ୍ରୀସ୍‌ର ନଗରକେନ୍ଦ୍ର ଓ ଭାରତର ଗ୍ରାମସଭା ଏହି ପ୍ରକାର ବ୍ୟବସ୍ଥାର ସୂଚନା ଦିଏ । କିନ୍ତୁ ତାହା ଏକ ପ୍ରଗତିଶୀଳ ସଙ୍ଘୀୟ ବ୍ୟବସ୍ଥା ନଥିବାରୁ ସେମାନେ ପରସ୍ପର ସହିତ ବିବାଦ ଓ ଯୁଦ୍ଧରେ ସମ୍ପୃକ୍ତ ହେବା ଦେଖାଯାଏ । ଆଧୁନିକ ଯୁଗରେ ଇସ୍ରାଏଲ୍‌ର କିବୁଜ୍, ଚୀନ୍ ଓ ରୁଷିଆର କମ୍ୟୁନ୍ ଓ ଭାରତର ପଞ୍ଚାୟତିରାଜ ବିକେନ୍ଦ୍ରୀକରଣ ବ୍ୟବସ୍ଥାର ଚିତ୍ର ଦେଇଥାଏ । କିନ୍ତୁ ଏସବୁ ନିର୍ଦ୍ଦିଷ୍ଟ ସୀମା ଭିତରେ ଓ ରାଷ୍ଟ୍ରର ନିୟନ୍ତ୍ରଣ ଭିତରେ ରହିଥିବାରୁ ଜାତୀୟତାବାଦୀ ଅପକର୍ଷତାରୁ ମୁକ୍ତ ନୁହନ୍ତି । ରାଷ୍ଟ୍ରସଂଘ ବା ଜାତିସଂଘ ଏକ ଆନ୍ତର୍ଜାତିକ ଅଭିମୁଖ୍ୟ ଗ୍ରହଣ କରୁଥିଲେ ବି ଏହାର ବିକେନ୍ଦ୍ରୀଭୂତ ଏକକ କେନ୍ଦ୍ର ନାହିଁ । ଅବଶ୍ୟ ସାର୍ ଆର୍ଥର୍ ମର୍‌ଗାନ୍, ଆଚାର୍ଯ୍ୟ ବିନୋବା ଭାବେ ଓ ଜୟପ୍ରକାଶ ନାରାୟଣ ଏକ ବିକେନ୍ଦ୍ରୀକରଣ ବ୍ୟବସ୍ଥା ମାଧ୍ୟମରେ ସମଗ୍ର ମାନବ ଜାତି ପାଇଁ ଏକ ସଙ୍ଘୀୟ ବ୍ୟବସ୍ଥାର ପରିକଳ୍ପନା କରିଛନ୍ତି ।

ଗଣତନ୍ତ୍ର, ଦଳହୀନ ବ୍ୟବସ୍ଥା, ବିକେନ୍ଦ୍ରୀକରଣ, ପ୍ରତିନିଧି ପ୍ରତ୍ୟାହାର, ଜନମତ ଇତ୍ୟାଦି ଦ୍ୱାରା ସରକାର ଲୋକମାନଙ୍କର ନିକଟତର ହୋଇପାରେ । କିନ୍ତୁ ବ୍ୟକ୍ତି ସରକାରର ନିୟନ୍ତ୍ରକ ବୋଲି ବିଶ୍ୱାସ ନକରିବା ପର୍ଯ୍ୟନ୍ତ ସରକାରର ଅଙ୍ଗୀକାରତା କେବଳ ଔପଚାରିକତା ଭିତରେ ସୀମିତ ରହିଯାଏ । ବ୍ୟକ୍ତି ଭିତରେ ଅଧସ୍ତନ ମନୋବୃତ୍ତି ରହିଥିବା ପର୍ଯ୍ୟନ୍ତ ସେ ଈଶ୍ୱର ପାଖରେ ସମର୍ପିତ ରହିଲା ପରି ସରକାର ପାଖରେ ମଧ୍ୟ ନ୍ୟୂନ ହୋଇ ରହିଥାଏ । ଫଳରେ ଗଣତନ୍ତ୍ରର ସଫଳତା ସତ୍ତ୍ୱେ ଏହା ଏକଛତ୍ରବାଦୀ ହୋଇପଡ଼େ । ଏକ ଏକଛତ୍ରବାଦୀ ବ୍ୟବସ୍ଥା ଓ ରାଜତନ୍ତ୍ର ଭିତରେ ବିଶେଷ ପାର୍ଥକ୍ୟ ନଥାଏ । କେବଳ ରାଜତନ୍ତ୍ରରେ ପୁରୁଷାନୁକ୍ରମିକ ରାଜବଂଶକୁ ଲୋକମାନେ ଗ୍ରହଣ କରିଥାଆନ୍ତି; କିନ୍ତୁ ଏକଛତ୍ରବାଦୀ ବ୍ୟବସ୍ଥାରେ

ସେମାନେ ଏକ ନୀତିଶୂନ୍ୟ କ୍ଷମତା ଅଧିକାରୀଙ୍କୁ ଗ୍ରହଣ କରିଥାଆନ୍ତି । ମୋଟ୍ ଉପରେ ନିଜକୁ ଅଧସ୍ତନ ମଣୁଥିବା ବ୍ୟକ୍ତିମାନେ ଧର୍ମଯାଜକ, ରାଜା, ମହାରାଜା ଓ ଏକଛତ୍ର-ବାଦୀ ଶାସକଙ୍କର ଉତ୍ପୀଡ଼ନକୁ ମାନିନେଇଥାନ୍ତି ।

ବ୍ୟକ୍ତି ସ୍ୱାଧୀନତାର ଦୃଷ୍ଟିଭଙ୍ଗୀ ନିସ୍ପୃଶ୍ୱରବାଦୀ ରାଜନୀତିକୁ ଏକ ନୂତନ ରୂପରେଖ ଦେଇଥାଏ । ପ୍ରଥମରେ ସାର୍ବଭୌମତ୍ୱକୁ ଏହା ରାଷ୍ଟ୍ରପାଖରୁ ନାଗରିକଙ୍କ ପାଖକୁ ହସ୍ତାନ୍ତର କରିଥାଏ । ଗଣତାନ୍ତ୍ରିକ ବ୍ୟବସ୍ଥାରେ ଜନଗଣଙ୍କର ସାର୍ବ-ଭୌମତ୍ୱକୁ ନିୟମତଃ ସ୍ୱୀକାର କରାଯାଉଥିଲେ ବି ବାସ୍ତବପକ୍ଷେ କ୍ଷମତା ହାସଲ କରିଥିବା ଦଳର ମୁଖ୍ୟମାନେ ଏହା ଉପଭୋଗ କରିଥାଆନ୍ତି । ନିଜର ମନୋନୀତ ପ୍ରତିନିଧିଙ୍କ ପାଖରେ ଜନଗଣ ଅଧସ୍ତନ ହୋଇ ରହିଥାଆନ୍ତି । ନିସ୍ପୃଶ୍ୱରବାଦୀ ବିଶ୍ୱରବିମର୍ଶ ଜନଗଣଙ୍କର ସାର୍ବଭୌମତ୍ୱକୁ ବାସ୍ତବ ଓ ଫଳପ୍ରଦ ଭାବରେ ଗ୍ରହଣ କରେ ।

ଜନଗଣଙ୍କର ସାର୍ବଭୌମତ୍ୱର ପରିଚୟ ସାମାଜିକ ସମତାରୁ ଜଣାପଡ଼େ । "ଗୋଟିଏ ବ୍ୟକ୍ତି ଗୋଟିଏ ଭୋଟ"ପରି ସାବାଳକ ଭୋଟପ୍ରଥା ରାଜନୈତିକ ସ୍ତରରେ ସମତା ଆଣିଥିଲେ ବି ଏହା ସାମାଜିକ ଓ ଅର୍ଥନୈତିକ ସ୍ତରରେ ସମତା ପ୍ରତିଷ୍ଠା କରିବାକୁ ସମର୍ଥ ହୋଇପାରି ନାହିଁ । କାରଣ ଜନଗଣ ସାମାଜିକ ଓ ଅର୍ଥନୈତିକ ସମତା ପ୍ରତିଷ୍ଠା ପାଇଁ ଆଇନଗତ ପଦକ୍ଷେପ ନେବାକୁ ପ୍ରତିନିଧିମାନଙ୍କୁ ବାଧ କରିବା ପାଇଁ ସମର୍ଥ ହୋଇନାହାନ୍ତି । କିନ୍ତୁ ନିସ୍ପୃଶ୍ୱରବାଦୀ ବ୍ୟବସ୍ଥାରେ ପ୍ରତ୍ୟେକ ବ୍ୟକ୍ତି ମୁକ୍ତ ହୋଇଥିବାରୁ ଅର୍ଥନୈତିକ ଓ ସାମାଜିକ ସମତା ହାସଲ ପାଇଁ ଆବଶ୍ୟକୀୟ ବିଧାନ କରିବାକୁ ପ୍ରତିନିଧିମାନଙ୍କୁ ବାଧ କରିପାରିବେ ।

ଜନଗଣ ଓ ସରକାର ମଧ୍ୟରେ କର ଆଦାୟ, ସହଯୋଗ ଓ ଭୋଟ ମଧ୍ୟ-ଦେଇ ସମ୍ପର୍କ ଥାଏ । ନିଜକୁ ଅଧସ୍ତନ ମଣୁଥିବା ବ୍ୟକ୍ତିମାନେ ଏହି ନିୟନ୍ତ୍ରଣକୁ ଆଶାନୁରୂପ ଜାହିର୍ କରିପାରନ୍ତି ନାହିଁ । ଫଳରେ ଲୋକମାନଙ୍କର ସମସ୍ୟା ସରକାରଙ୍କ ଦ୍ୱାରା ଅସମାଧିତ ରହେ । ଭସ୍ମାକ୍ତ ଲୋକମାନେ ନିଜ ସମସ୍ୟାର ସମାଧାନ ପାଇଁ ଈଶ୍ୱରଙ୍କୁ ପ୍ରାର୍ଥନା କରିବା ବ୍ୟତୀତ ଅନ୍ୟପନ୍ଥା ବା ଆଉ କିଛି କରିପାରନ୍ତି ନାହିଁ । ନିସ୍ପୃଶ୍ୱରବାଦ ଏହି ଦୃଷ୍ଟିଭଙ୍ଗୀକୁ ପରିବର୍ତ୍ତନ କରିଥାଏ । ସରକାର ଉପରେ ନିୟନ୍ତ୍ରଣ ଆଣିବାପାଇଁ ଦରକାର ହେଲେ ଏହା ସତ୍ୟାଗ୍ରହର ଅସ୍ତ୍ରସ୍ତ୍ର ନିଏ । କର ନଦେଇ, ଅସହଯୋଗ କରି, ନିର୍ବାଚନରେ ସରକାର ବଦଳାଇ କିମ୍ବା ପ୍ରତ୍ୟକ୍ଷ କାର୍ଯ୍ୟସୂଚୀ ଗ୍ରହଣ କରି ସାମାଜିକ ଓ ଅର୍ଥନୈତିକ ସମତା ଦିଗରେ କାର୍ଯ୍ୟ କରିବାପାଇଁ ଜନଗଣ ପ୍ରତିନିଧିମାନଙ୍କୁ ବାଧ କରିବା ସହିତ ଆବଶ୍ୟକ ହେଲେ ସତ୍ୟାଗ୍ରହ ଜରିଆରେ ଚାପ ପ୍ରୟୋଗ କରିପାରିବେ ।

ଜନଗଣଙ୍କ ଭିତରେ ନିରୀଶ୍ୱରବାଦୀ ଦୃଷ୍ଟିଭଙ୍ଗୀର ବିକାଶ ହୋଇନଥିବାରୁ ଗଣତନ୍ତ୍ରରୁ ଆବଶ୍ୟକ ସଫଳତା ମିଳିପାରିନି ନାହିଁ, ଯାହା ଫଳରେ କି ଡିକ୍ଟେଟରବାଦର ବିକାଶ ହେବା ସମ୍ଭବ ହେଲା । କିନ୍ତୁ ନିରୀଶ୍ୱରବାଦୀ ବିଶ୍ୱର ବିମର୍ଶରେ ପ୍ରତିହିଂସା ବା ଗୁପ୍ତ କାର୍ଯ୍ୟକଳାପକୁ ପ୍ରଶ୍ରୟ ଦିଆଯାଇ ନାହିଁ । ନିରୀଶ୍ୱରବାଦୀ ରାଜନୀତି ଲୋକ-ମାନଙ୍କର ପ୍ରତ୍ୟକ୍ଷ ସମର୍ଥନରେ ଶାସନ ବ୍ୟବସ୍ଥା ପରିଚାଳନା କରୁଥିବାରୁ ଜନଗଣଙ୍କର ସମସ୍ୟାକୁ ସମାଧାନ କରିବା ଦିଗରେ ବ୍ରତୀ ହୋଇପାରିବ ।

ଏ କ୍ଷେତ୍ରରେ ସମାଜର ଅର୍ଥନୈତିକ ସମସ୍ୟା ହେଉଛି ସର୍ବପ୍ରଥମ ।

**ପଞ୍ଚମ ପରିଚ୍ଛେଦ :**

# ନିରୀଶ୍ୱରବାଦୀ ଅର୍ଥନୀତି

ମଣିଷର ବସ୍ତୁଗତ ଚାହିଦାର ପୂରଣ ସମ୍ପର୍କରେ ଅର୍ଥନୀତି ଆଲୋଚନା କରିଥାଏ । ଏହି ଚାହିଦା ଖାଦ୍ୟ ଓ ବାସଗୃହଠାରୁ ଆରମ୍ଭ କରି ଶୀତତାପ ନିୟନ୍ତ୍ରିତ ଗୃହ, ସ୍ୱୟଂଚାଳିତ ଯନ୍ତ୍ରପାତି ଓ ନିଶାଦ୍ରବ୍ୟ ପରି ବିଳାସ ସାମଗ୍ରୀ ହୋଇପାରେ । ବ୍ୟକ୍ତିର ବସ୍ତୁଗତ ଚାହିଦା ସମ୍ମାନ ଓ କ୍ଷମତା ହୋଇପାରେ ବା କଳାତ୍ମକ ଆନନ୍ଦ ପରି ଭିନ୍ନ ଭିନ୍ନ ବସ୍ତୁ ବି ହୋଇପାରେ ।

ବ୍ୟକ୍ତିର ଜୀବନଧାରଣ ପାଇଁ କେତେକ ବସ୍ତୁର ଉପଯୋଗିତା ନିଶ୍ଚିତ ଥାଏ । ସୁତରାଂ ଜୀବନଧାରଣ ପାଇଁ କେତେକ ସର୍ବନିମ୍ନ ଆବଶ୍ୟକତା ପୂରଣ ହେବା ଆବଶ୍ୟକ । ତଥାପି ମଣିଷ ପଶୁ ଭଳି ତାହାର ଆବଶ୍ୟକତାକୁ ପୂରଣ କରେନାହିଁ । ମଣିଷର ଅର୍ଥନୈତିକ ପ୍ରତିଷ୍ଠାକୁ କେତେକ ଆଦର୍ଶ ପ୍ରଭାବିତ କରିଥାଏ । ଉଦ୍ଭ୍ରାନ୍ତ ବ୍ୟକ୍ତିମାନେ ଅଭାବ ଓ ଉତ୍ପୀଡ଼ନକୁ ସହି ନେଇଥାନ୍ତି । ସ୍ୱର୍ଗପ୍ରାପ୍ତି ଆଶାରେ ଅଗଣିତ ମଣିଷ ଅଭାବ ଓ ଦାରିଦ୍ର୍ୟକୁ ବିନା ପ୍ରତିବାଦରେ ଗ୍ରହଣ କରିନିଅନ୍ତି । ତଥାପି ବ୍ୟକ୍ତି ନିଜର ଆତ୍ମସମ୍ମାନ ପ୍ରତିଦାନରେ ସର୍ବଦା ନିଜର ଆବଶ୍ୟକତାକୁ ପୂରଣ କରି ନଥାଏ । ବସ୍ତୁଗତ ବିଳାସକୁ ଉପଭୋଗ କରିବା ଦିଗରେ ବ୍ୟକ୍ତିର ଦୃଷ୍ଟିଭଙ୍ଗୀ ଭିନ୍ନ ହୋଇଥିବାରୁ ଆସ୍ତିକତାବାଦ ଓ ନିରୀଶ୍ୱରବାଦ ମଣିଷର ଅର୍ଥନୈତିକ ସମ୍ବନ୍ଧକୁ ପ୍ରଭାବିତ କରିଥାଏ ।

ଆସ୍ତିକତାବାଦୀ ସଭ୍ୟତାରେ ଧନୀ ଓ ଗରିବ ଭିତରେ ଥିବା ପ୍ରଭେଦକୁ ନୀରବ ଭାବରେ ସହିଯିବାକୁ ହୁଏ । ଆଧୁନିକ ସଭ୍ୟତାରେ ଉନ୍ନତ ପ୍ରଣାଳୀର କୃଷି ଓ ପ୍ରଯୁକ୍ତିବିଦ୍ୟା ଯୋଗୁଁ ଗୋଟିଏ ପଟେ ବଳକା ଖାଦ୍ୟ ଓ ସୌଖୀନ ସାମଗ୍ରୀ ପ୍ରସ୍ତୁତ ହୁଏ ଓ କୃତ୍ରିମ ପ୍ରଜନନ ସାହାଯ୍ୟରେ ଉନ୍ନତ କୃଷି ଓ ପଶୁପାଳନ କରାଯାଏ । ଏହାସତ୍ତ୍ୱେ ଅଗଣିତ ବ୍ୟକ୍ତି ସାମାନ୍ୟ ଖାଦ୍ୟ ଓ ମୁଣ୍ଡ ଗୁଞ୍ଜିବାକୁ ଖଣ୍ଡିଏ ବାସଗୃହ ପାଇପାରୁନାହାନ୍ତି । ଥଳିବାଲାମାନେ ଅଭାବୀ ମଣିଷଙ୍କ ପ୍ରତି ସମୟରେ ବଦାନ୍ୟତା ଦେଖାଇ ଥାଆନ୍ତି । ଆସ୍ତିକତାବାଦୀ ସଭ୍ୟତାରେ ଅଭାବୀ ମଣିଷମାନେ କୃପଣ ବ୍ୟକ୍ତିଙ୍କର ଦୟା ଉପରେ ବଞ୍ଚିରହିଥାଆନ୍ତି ।

କିନ୍ତୁ ନିରୀଶ୍ୱରବାଦୀ ଅର୍ଥନୀତି ଏହାଠାରୁ ପୃଥକ୍ ଅଟେ । ସମସ୍ତ ବ୍ୟକ୍ତି ମୁକ୍ତ ହୋଇଥିବାରୁ ସମସ୍ତେ ସମାନ ସୁବିଧା ସୁଯୋଗ ପାଇ ବଞ୍ଚିବାକୁ ପ୍ରୟାସ କରନ୍ତି । ସମସ୍ତ ବ୍ୟକ୍ତିମାନଙ୍କର ବସ୍ତୁଗତ ଆବଶ୍ୟକତା କ୍ଷେତ୍ରରେ ସମାନତା ରହିବା ନିରୀଶ୍ୱରବାଦୀ ଅର୍ଥନୀତିର ମୁଖ୍ୟ ଉଦ୍ଦେଶ୍ୟ । ମୋଟ ଉପରେ କହିବାକୁ ଗଲେ ଅର୍ଥନୈତିକ ସମତା ପ୍ରତିଷ୍ଠା କରିବା ହେଉଛି ଏହାର ଉଦ୍ଦେଶ୍ୟ ।

ଅର୍ଥନୈତିକ ସମତା ପ୍ରତିଷ୍ଠା କ୍ଷେତ୍ରରେ ମାର୍କସବାଦ ଓ ଗାନ୍ଧୀବାଦ ଦୁଇଟି ପ୍ରୟାସ ମନେହୁଏ । ମାର୍କସୀୟ ପ୍ରଣାଳୀ ସମାଜବାଦ ଓ ଉତ୍ପାଦନ ସାଧନର ସାଧାରଣ ମାଲିକାନା ଉପରେ ଗୁରୁତ୍ୱ ଦେଇଥାଏ । କିନ୍ତୁ ସର୍ବସାଧାରଣ ମାଲିକାନା କହିଲେ କ'ଣ ବୁଝାଏ ?

ସରକାର ସାମାଜିକ ସମ୍ବନ୍ଧର ନିର୍ବାଚିତ ହୋଇଥିବାରୁ ଏହାକୁ ସର୍ବ ସାଧାରଣର ପ୍ରତୀକ ରୂପରେ ନିଆଯାଇପାରେ । ଗୋଟିଏ ରାଷ୍ଟ୍ର କ୍ଷେତ୍ରରେ ରାଷ୍ଟ୍ରୀୟ ସରକାର ଓ ଆନ୍ତର୍ଜାତୀୟ ସ୍ତରରେ ବିଶ୍ୱ ସରକାର ସର୍ବସାଧାରଣ ମାଲିକାନାର ପ୍ରତୀକ ହୋଇପାରେ । ବସ୍ତୁତଃ ମାର୍କସବାଦରେ ଉତ୍ପାଦନ ସାମଗ୍ରୀର ମାଲିକାନା ରାଷ୍ଟ୍ର ହିଁ ଅଟେ । ମାର୍କସୀୟ ଆଦର୍ଶ ପ୍ରତି କମ୍ୟୁନିଷ୍ଟ ପାର୍ଟି ଅଙ୍ଗୀକାରବଦ୍ଧ ରହିଥିବାରୁ ଏହା ରାଜନୈତିକ କ୍ଷମତାକୁ ନିୟନ୍ତ୍ରଣ କରି ଉତ୍ପାଦନ ସାମଗ୍ରୀର ବ୍ୟକ୍ତିଗତ ମାଲିକାନାକୁ ଦୂର କରି ରାଷ୍ଟ୍ରୀୟ ମାଲିକାନା କଥା କହିଥାଏ । ଏତଦ୍‌ବ୍ୟତୀତ ଲୋକମାନଙ୍କର ବସ୍ତୁଗତ ଆବଶ୍ୟକତାକୁ ପୂରଣ କରିବା ପାଇଁ ଉତ୍ପାଦନର ସମବଣ୍ଟନ ଦିଗରେ ଗୁରୁତ୍ୱ ଦେଇଥାଏ । ଏହିପରି ମାର୍କସବାଦ ଅର୍ଥନୈତିକ ସମତା ପ୍ରତିଷ୍ଠା ପାଇଁ ପ୍ରୟାସ କରିଥାଏ ।

ଅର୍ଥନୈତିକ ସମତା ହାସଲ ଦିଗରେ ଗାନ୍ଧୀବାଦ ଏକ ଭିନ୍ନ ପ୍ରଣାଳୀ ପ୍ରୟୋଗ କରେ । ଏହା ନ୍ୟାସ ବ୍ୟବସ୍ଥାକୁ ଗୁରୁତ୍ୱ ଦିଏ । ନ୍ୟାସ ବ୍ୟବସ୍ଥାରେ ଉତ୍ପାଦନ ସାଧନର ବ୍ୟକ୍ତିଗତ ମାଲିକାନା କଥା କୁହାଯାଏ । ଗାନ୍ଧୀବାଦରେ ପ୍ରତ୍ୟେକ ବ୍ୟକ୍ତି ନିଜ ସମ୍ପତ୍ତିର ନ୍ୟାସଧାରୀ ଅଟେ । ସମାଜର ହିତ ପାଇଁ ଜଣେ ନ୍ୟାସଧାରୀ ନିଜର ସମ୍ପତ୍ତି ଦେଇଥାଏ ଓ ଅନ୍ୟମାନଙ୍କ ପରି ଜୀବନ ଧାରଣ କରୁଥାଏ ।

ସଫଳତା ଦୃଷ୍ଟିରୁ ବିଚାର କଲେ ମାର୍କସବାଦ ଓ ଗାନ୍ଧୀବାଦ ଅର୍ଥନୈତିକ ସମତା ପ୍ରତିଷ୍ଠା ଦିଗରେ ଯଥେଷ୍ଟ ଅଗ୍ରଗତି କରିପାରି ନାହାନ୍ତି । ଆରମ୍ଭରେ ସେମାନଙ୍କର ଉଲ୍ଲେଖନୀୟ ସଫଳତା ସତ୍ତ୍ୱେ ସେମାନଙ୍କର ଅଗ୍ରଗତି ସ୍ଥାଣୁ ହୋଇଯିବା ମନେହୁଏ ।

ଗାନ୍ଧୀଜୀଙ୍କ ନ୍ୟାସବାଦ ସ୍ୱରୂପତଃ ନିଗ୍ରଶ୍ୱରବାଦୀ, କାରଣ ଏହା ବ୍ୟକ୍ତି ସ୍ୱାଧୀନତା ଓ ସମ୍ପତ୍ତିର ବ୍ୟକ୍ତିଗତ ମାଲିକାନା ଉପରେ ଗୁରୁତ୍ୱ ଦେଇଥାଏ । ବ୍ୟକ୍ତିଗତ ସ୍ୱାଧୀନତା ଉପରେ ସେ ଗୁରୁତ୍ୱ ପ୍ରଦାନ କରୁଥିବାରୁ ସେ ଏକ କେନ୍ଦ୍ରୀଭୂତ ସରକାରୀ ବ୍ୟବସ୍ଥାର ପକ୍ଷପାତୀ ନଥିଲେ । ଗୋଟିଏ ସଚେତନ ନୈରାଜ୍ୟବାଦର ସେ ପ୍ରଚାରକ ଥିବାରୁ ପ୍ରତ୍ୟେକ ବ୍ୟକ୍ତି ସ୍ୱୟଂଶାସିତ ବୋଲି ସ୍ୱୀକାର କରୁଥିଲେ । ବ୍ୟକ୍ତି ନିଜକୁ ଶୃଙ୍ଖଳିତ କରିବା ଦ୍ୱାରା ସେ କେବେ ବି ନିଜ ପ୍ରତିବେଶୀ ପ୍ରତି ପ୍ରତିବନ୍ଧକ ହୁଏନାହିଁ । ଗାନ୍ଧୀଜୀଙ୍କର ଆଦର୍ଶ ସମାଜ ନୈରାଜ୍ୟବାଦକୁ ପ୍ରାଧାନ୍ୟ ଦେଉଥିବାରୁ ରାଜନୈତିକ କ୍ଷମତାକୁ ସେ ଗ୍ରହଣ କରୁନଥିଲେ । କିନ୍ତୁ ଏହି ଆଦର୍ଶ ଜୀବନକାଳ ଭିତରେ ପୂର୍ଣ୍ଣ ରୂପରେଖ ନେବା ସମ୍ଭବ ନୁହେଁ । ଏ କ୍ଷେତ୍ରରେ ଥୋରଙ୍କ ଯୁଗାନ୍ତକାରୀ ମତ ହେଉଛି—"ଯେଉଁ ସରକାର ଯେତେ କମ୍ ଶାସନ କରେ ତାହା ସେତେ ଆଦର୍ଶ ସରକାର ଅଟେ ।"

ଗାନ୍ଧୀଜୀ ଅର୍ଥନୈତିକ ସମତା ଉପରେ ଯଥେଷ୍ଟ ଗୁରୁତ୍ୱ ଆରୋପ କରୁଥିଲେ । ଅର୍ଥନୈତିକ ସମତା ପାଇଁ କାର୍ଯ୍ୟ କରିବାକୁ ସେ ଅହିଂସ ସ୍ୱାଧୀନତା ବୋଲି କହୁଥିଲେ । ତାଙ୍କ ସମୟରେ ସେ ଭାରତବର୍ଷର ରାଜନୈତିକ ସ୍ୱାଧୀନତା ପାଇଁ ନିଜକୁ ଉତ୍ସର୍ଗ କରିଥିଲେ । ଫଳରେ ତାଙ୍କ ନ୍ୟାସ ବ୍ୟବସ୍ଥାର ବୈପ୍ଳବିକ ଦିଗଟି ଉପରେ ଯଥେଷ୍ଟ ଗୁରୁତ୍ୱ ଆରୋପ କରିପାରି ନଥିଲେ । ଅବଶ୍ୟ ତାଙ୍କର ନିକଟତମ ସହଯୋଗୀ ଯମୁନାଲାଲ ବଜାଜଙ୍କୁ ଏ ଦିଗରେ ପରୀକ୍ଷା କରିବା ପାଇଁ ପ୍ରେରଣା ଦେଇଥିଲେ । ସେ ସତର୍କ କରାଇ ଦେଇଥିଲେ ଯେ ଯଦି ଧନୀ ବ୍ୟକ୍ତିମାନେ ସ୍ୱଇଚ୍ଛାରେ ନିଜର ବଳକା ଧନ ଓ ତା' ଦ୍ୱାରା ଲାଭ କରୁଥିବା କ୍ଷମତା ସମାଜର ସାଧାରଣ ହିତ ଦିଗରେ ବ୍ୟୟ ନ କରନ୍ତି ତେବେ କେବେ ନା କେବେ ଏକ ରକ୍ତାକ୍ତ ବିପ୍ଳବ ଓ ହିଂସାର ପରିବେଶ ନିଶ୍ଚୟ ସୃଷ୍ଟି ହେବ ।

ଗାନ୍ଧୀଜୀଙ୍କ ପରେ ଆଚାର୍ଯ୍ୟ ବିନୋବା ଭାବେ ତାଙ୍କର ଭୂଦାନ ଓ ଗ୍ରାମଦାନ ଆନ୍ଦୋଳନ ମାଧ୍ୟମରେ ଏହି ନ୍ୟାସ ବ୍ୟବସ୍ଥାକୁ ବାସ୍ତବ କ୍ଷେତ୍ରରେ ପ୍ରୟୋଗ କରିଥିଲେ । ଆରମ୍ଭ ସମୟରେ ଏହା ସଫଳତା ହାସଲ କରି ଅନେକଙ୍କର ଦୃଷ୍ଟି ଆକର୍ଷଣ କରିଥିଲା; କିନ୍ତୁ ଧୀରେ ଧୀରେ ଏହା ଶିଥିଳ ହୋଇଗଲା । ଏପରିକି ମାର୍କସବାଦ ତାହାର ବସ୍ତୁବାଦୀ ଆଭିମୁଖ୍ୟ ମଧ୍ୟରେ ଅର୍ଥନୈତିକ ସମତା କ୍ଷେତ୍ରରେ ଯେଉଁ ସଫଳତା ଲାଭ କରିଥିଲା, ବିନୋବାଙ୍କର ଭୂଦାନ ଆନ୍ଦୋଳନ ତା'ର ଅଧା ସଫଳତା ମଧ୍ୟ ହାସଲ କରିପାରିଲା ନାହିଁ । ଆରମ୍ଭରେ ଦେଖା ଦେଇଥିବା ଉତ୍ସାହ ଧୀରେ ଧୀରେ ମ୍ଳାନ ହୋଇଗଲା । ଗାନ୍ଧୀ ଓ ବିନୋବା ଅହିଂସ ପନ୍ଥାରେ ସାମାଜିକ ସମତା ଆଣିବା ପାଇଁ ଧର୍ମୀୟ ପରିଭାଷା ବ୍ୟବହାର କରିଥିଲେ ।

ପରିବର୍ତ୍ତିନର ଧାରାଟି ଧୀରେ ଧୀରେ ଶିଥିଳ ହୋଇଯିବାରୁ କାଳକ୍ରମେ ଲୋକମାନେ ପାରମ୍ପରିକ ବୈଷମ୍ୟକୁ ଗ୍ରହଣ କରିନେଲେ ।

ନ୍ୟାସ ବ୍ୟବସ୍ଥାର ପ୍ରଧାନ ଦୁର୍ବଳତା ହେଉଛି ଏହାର ଅଣରାଜନୈତିକ ଅଭିମୁଖ୍ୟ । ଆଧୁନିକ ଯୁଗରେ ସାମାଜିକ ସମ୍ବନ୍ଧର ପରିସର ଓ ଜଟିଳତା ଏପରି ବୃଦ୍ଧି ପାଇଛି ଯେ ସରକାରୀ ବ୍ୟବସ୍ଥା ଏ କ୍ଷେତ୍ରରେ ଅବଶ୍ୟମ୍ଭାବୀ ହୋଇପଡ଼ୁଛି । ଗୋଟିଏ ସରକାରୀ ବ୍ୟବସ୍ଥାକୁ ବାଦଦେବା ପରିବର୍ତ୍ତେ ବରଂ ସରକାରୀ ବ୍ୟବସ୍ଥା ଭିତରେ ବିକେନ୍ଦ୍ରୀକରଣ ଗଣତାନ୍ତ୍ରିକ ସଚେତନତା ଓ ସରକାର ଉପରେ ଜନଗଣଙ୍କର ନିୟନ୍ତ୍ରଣ ଦ୍ୱାରା କେନ୍ଦ୍ରୀକରଣ ବ୍ୟବସ୍ଥାର ଅହିତକର ପରିଣାମକୁ ବଦଳାଇବା ସମ୍ଭବ ମନେହୁଏ । ବସ୍ତୁତଃ ଭୂଦାନ ଗ୍ରାମଦାନ ଆନ୍ଦୋଳନର ରାଜନୈତିକ ନିରପେକ୍ଷତା ଦ୍ୱାରା ଏହା ଏକ ଆଦର୍ଶଗତ ବ୍ୟବସ୍ଥା ହେଲା ସିନା ବାସ୍ତବ ପକ୍ଷେ ଏହା ଅର୍ଥନୈତିକ ସମତା ପ୍ରତିଷ୍ଠା କରିପାରିଲା ନାହିଁ । ଏହାର ସଫଳତା ପାଇଁ ଜନଗଣଙ୍କୁ ପ୍ରଭାବିତ କରିବା ଛଡ଼ା ଅଧିକ କିଛି କରିପାରିଲା ନାହିଁ । ଏହା ସହିତ ଧର୍ମଗତ ବିଶ୍ୱାସ ଓ ପରିଭାଷା ଭିତରେ ଏହା ବ୍ୟକ୍ତ ହୋଇଥିବାରୁ ଲୋକମାନେ ଆସ୍ତିକତାବାଦୀ ଅଧ୍ୟତ୍ମ ମନୋଭାବ ପୋଷଣ କରି ଅର୍ଥନୈତିକ ବୈଷମ୍ୟ ପ୍ରତି ଉଦାସୀନ ରହି ଏହାର ଲକ୍ଷ୍ୟଠାରୁ ଦୂରେଇ ଗଲେ । ଅର୍ଥନୈତିକ ସମତା ହାସଲ ପାଇଁ ଅଭିନିବେଶ ଯୋଗାଇବା ପରିବର୍ତ୍ତେ ଅର୍ଥନୈତିକ ବୈଷମ୍ୟ ଭିତରେ ଏହା କେବଳ ଏକ ବଦାନ୍ୟ କାର୍ଯ୍ୟ ବୋଲି ସ୍ୱୀକୃତ ହେଲା ।

ପୁନଶ୍ଚ ଏକ ଅଣରାଜନୈତିକ ବ୍ୟବସ୍ଥାର ପ୍ରବର୍ତ୍ତନ ଲୋକମାନଙ୍କ ଉପରେ ନିର୍ଭର କରେ । ଲୋକମାନେ ଯଦି ସରକାର ପାଖରୁ ସହଯୋଗ ଓ କର ପ୍ରଦାନରୁ ନିବୃତ୍ତ ରହିବେ ତେବେ ସରକାରୀ ବ୍ୟବସ୍ଥା ଓ ଅନୁଷ୍ଠାନ ଭୁଶୁଡ଼ି ପଡ଼ିବ । ସରକାରୀ ଆଇନକୁ ମାନି ଓ ଏହାକୁ କର ଦେଇ ସରକାରୀ ବ୍ୟବସ୍ଥାଟି ପ୍ରତି ଉଦାସୀନ ରହିବା ହେଉଛି ବିନାକାର୍ଯ୍ୟରେ ବହୁ ଦରମା ଦେଇ ଏକ ଭୃତ୍ୟ ରଖିବା ସହ ସମାନ । ଧର୍ମୀୟ ପରିଭାଷା ଓ ରାଜନୈତିକ ଉଦାସୀନତା ଯୋଗୁଁ ଅର୍ଥନୈତିକ ସମତା ପାଇଁ ନ୍ୟାସ ବ୍ୟବସ୍ଥା ବିଫଳ ହେଲା ବୋଲି କୁହାଯାଇ-ପାରେ ।

ଅର୍ଥନୈତିକ ସମତା ହାସଲ ଦିଗରେ ନ୍ୟାସ ବ୍ୟବସ୍ଥା ଅପେକ୍ଷା ମାର୍କସ୍‌ବାଦ ଅଧିକ ଉପଯୋଗୀ ବୋଲି ଧାରଣା ସୃଷ୍ଟି କରିଛି । ମାର୍କସ୍‌ବାଦ, ସମାଜବାଦ ପ୍ରତିଷ୍ଠା ଦିଗରେ ଅନେକ କ୍ଷେତ୍ରରୁ ସମର୍ଥନ ଲାଭ କରିଛି ଓ ଆର୍ଥିକ ସମତା ପ୍ରତିଷ୍ଠା ଦିଗରେ ଅନେକ ଆଗୁ ପଦକ୍ଷେପ ନେଇଛି । ମାର୍କସ୍‌ବାଦରେ ଶ୍ରେଣୀ ସଂଘର୍ଷ ପ୍ରଣାଳୀ ଯାହା ଗୁରୁତ୍ୱପୂର୍ଣ୍ଣ ସ୍ଥାନ ନେଇଛି ନ୍ୟାସ ବ୍ୟବସ୍ଥା ପରି ତ୍ରୁଟିପୂର୍ଣ୍ଣ ହୋଇଛି ।

ମାର୍କସ୍‌ଙ୍କ ବିଚାରରେ ଯେକୌଣସି ସମାଜର ଇତିହାସ ହେଉଛି ଏକ ଶ୍ରେଣୀ ସଂଘର୍ଷର ଇତିହାସ ଓ କୌଣସି ସମୟରେ ସେହି ସମୟର ଶ୍ରେଣୀ ସଂଘର୍ଷର ଏକ ପ୍ରତିଫଳନ । କିନ୍ତୁ ସାମ୍ପ୍ରତିକ ଅନୁଭୂତିରେ ଶ୍ରେଣୀସଂଘର୍ଷର ପ୍ରାଧାନ୍ୟ ଦେଖିବାକୁ ମିଳେନାହିଁ । ଯେଉଁଠି କମ୍ୟୁନିଷ୍ଟଦଳ କ୍ଷମତା ହାସଲ କରିଛି ଓ ସମାଜବାଦୀ ସରକାର ଗଠିତ ହୋଇଛି, ଏହା ବହୁଚର୍ଚ୍ଚିତ ଶ୍ରେଣୀ ସଂଘର୍ଷ ଯୋଗୁଁ ଉଦ୍ଭବ ହୋଇନାହିଁ । ପରନ୍ତୁ ଗଣବିପ୍ଳବ ବା ସେନାବାହିନୀର କ୍ଷମତା ହାସଲ ଦ୍ୱାରା ଅଣକମ୍ୟୁନିଷ୍ଟମାନଙ୍କ ସାହାଯ୍ୟରେ ଏହା ସମ୍ଭବପର ହୋଇଛି । ନିକଟରେ ଚିଲିରେ ଓ ଭାରତବର୍ଷର କେରଳରେ ଏକ ଗଣତାନ୍ତ୍ରିକ ନିର୍ବାଚନ ପ୍ରକ୍ରିୟାରେ କମ୍ୟୁନିଷ୍ଟ ପାର୍ଟି କ୍ଷମତାକୁ ଆସିଛି । ମାର୍କସ୍‌ବାଦରେ ଥିବା ଅର୍ଥନୈତିକ ବ୍ୟବସ୍ଥାର ଉନ୍ନତ ସମାଜର ଦଳିତ ଶ୍ରେଣୀଙ୍କ ଭିତରେ ଆଶାସଞ୍ଚାର କରିଛି । ଫଳରେ କମ୍ୟୁନିଷ୍ଟ ପାର୍ଟି ସେମାନଙ୍କର ସମର୍ଥନ ଲାଭ କରି କ୍ଷମତାକୁ ଆସିପାରିଛି ।

କିନ୍ତୁ କମ୍ୟୁନିଷ୍ଟ ସରକାରମାନେ ଉତ୍ପାଦନର ସାଧନ ଉପରେ ବ୍ୟକ୍ତିଗତ ମାଲିକାନାକୁ ଲୋପ କରି ତାହାକୁ ରାଷ୍ଟ୍ରର ନିୟନ୍ତ୍ରଣ ଭିତରେ ରଖିବାପାଇଁ ନିରଙ୍କୁଶ କ୍ଷମତା ଆବଶ୍ୟକ କରନ୍ତି । ଫଳରେ ସମୟେ ସମୟେ କମ୍ୟୁନିଷ୍ଟ ପାର୍ଟିର ଏକଚ୍ଛତ୍ରବାଦ ଓ ସମାଜବାଦୀ ଉଦ୍ୟମ ବିରୁଦ୍ଧରେ ଲୋକମାନେ ପ୍ରତିବାଦ କରନ୍ତି । ବ୍ୟକ୍ତି ସ୍ୱାଧୀନତାକୁ ସଙ୍କୁଚିତ କରୁଥିବା କମ୍ୟୁନିଷ୍ଟ ଶାସନ-ବ୍ୟବସ୍ଥା ବିରୁଦ୍ଧରେ ଜନଗଣ ସ୍ୱରଉତ୍ତୋଳନ କରି ଏହାକୁ ଶାସନଚ୍ୟୁତ କରନ୍ତି । ଭିଏତ୍‌ନାମରେ ଦୀର୍ଘଦିନ ଧରି ସଂଗ୍ରାମ ଲାଗି ରହିବା ଓ ସମଗ୍ର ପୃଥିବୀ ସମାଜବାଦୀ ଓ ଗଣତନ୍ତ୍ରବାଦୀ ଦୁଇଟି ବ୍ୟବସ୍ଥାରେ ଭାଗ ହୋଇଯିବା ଘଟଣାରୁ ଏହା ସୂଚିତ ହୋଇଛି । ମଣିଷର ଇତିହାସ ଏକ ଶ୍ରେଣୀ ସଂଘର୍ଷର ଇତିହାସ ନୁହେଁ । ପରନ୍ତୁ ସମାଜର ଅର୍ଥନୈତିକ ବ୍ୟବସ୍ଥା ପ୍ରତି ଉଦାସୀନ ରହି ଅର୍ଥନୈତିକ ସମତାକୁ ସମର୍ଥନ କରୁଥିବା ଓ ବିରୋଧ କରୁଥିବା ଦୁଇଗୋଷ୍ଠୀ ଭିତରେ ସଂଘର୍ଷ ଲାଗିଥିବା ଦେଖାଯାଏ ।

ଶ୍ରମିକ ସଙ୍ଗଠନମାନଙ୍କର କାର୍ଯ୍ୟକଳାପରୁ ମାନବୀୟ ବ୍ୟାପାରରେ ଶ୍ରେଣୀ ବ୍ୟବସ୍ଥା ଅପେକ୍ଷା ସଚେତନତା ଅଧିକ ଗୁରୁତ୍ୱପୂର୍ଣ୍ଣ ମନେହୁଏ । ଶ୍ରମିକ ସଙ୍ଗଠନଗୁଡ଼ିକ ଧନିକ ଶ୍ରେଣୀର ଶୋଷଣରୁ ଶ୍ରମିକ ଶ୍ରେଣୀର ସ୍ୱାର୍ଥକୁ ରକ୍ଷା କରିବାପାଇଁ ଗଠିତ ହୋଇଛି । ବାସ୍ତବପକ୍ଷେ ଯଦି ଆର୍ଥିକ ସ୍ୱାର୍ଥ ମୁଖ୍ୟ ପ୍ରସଙ୍ଗ ହୋଇଥାଆନ୍ତା, ତେବେ ପ୍ରତ୍ୟେକଟି ଶ୍ରମିକ ସଙ୍ଗଠନ ସୁଦୃଢ଼ ରହିପାରନ୍ତା । କିନ୍ତୁ ଧର୍ମଗତ ବିଶ୍ୱାସ, ଜାତିଗତ ପାର୍ଥକ୍ୟ ଓ ରାଜନୈତିକ ଦଳ ପ୍ରତି ଆନୁଗତ୍ୟ ନେଇ ଶ୍ରମିକ ସଙ୍ଗଠନଗୁଡ଼ିକର ବିଭାଜନ ଦେଖାଯାଏ । ଶ୍ରମଜୀବୀ ବ୍ୟକ୍ତିଗଣ ନିଜର ଶୃଙ୍ଖଳ ବିରୁଦ୍ଧରେ ସଂଘବଦ୍ଧ ସଂଗ୍ରାମ କରିବା ପରିବର୍ତ୍ତେ ଜାତୀୟ ମୁକ୍ତି ପାଇଁ ପରସ୍ପର ବିରୁଦ୍ଧରେ ସଂଗ୍ରାମ କରୁଛନ୍ତି ।

କେତେକ ରାଷ୍ଟ୍ରପରି ଭାରତବର୍ଷ ମଧ୍ୟ ଦୀର୍ଘଦିନ ସାମ୍ରାଜ୍ୟବାଦୀ ଶକ୍ତିଗୁଡ଼ିକ କବଳରେ ରହି ସ୍ୱାଧୀନତା ଲାଭ କରିଛି । ସବୁ ଦେଶରେ ଅବହେଳିତ ଅର୍ଥନୀତି ଯୋଗୁଁ ଅଗଣିତ ମଣିଷ ଦାରିଦ୍ର୍ୟ ଅବସ୍ଥାରେ ଜୀବନଧାରଣ କରୁଛନ୍ତି । ମାର୍କସବାଦ ଗ୍ରହିଲା ଭଳି ଯଦିବା ସେମାନେ ବଳପ୍ରୟୋଗ କରି ବା ହିଂସାତ୍ମକ ପନ୍ଥାରେ ସାମାଜିକ ଅନୁଷ୍ଠାନକୁ ପ୍ରତ୍ୟାଖ୍ୟାନ କରୁନାହାନ୍ତି; ତଥାପି ସେମାନେ ନିର୍ବାଚନ ପରିପ୍ରେକ୍ଷୀରେ କମ୍ୟୁନିଷ୍ଟପାର୍ଟିକୁ ସମର୍ଥନ କରିବା ଅବଶ୍ୟକ । କାରଣ ସର୍ବହରା-ମାନଙ୍କର ଆନ୍ଦୋଳନ କ୍ଷେତ୍ରରେ କମ୍ୟୁନିଷ୍ଟପାର୍ଟି ଅଗ୍ରଭାଗରେ ରହିଆସିଛି । କିନ୍ତୁ ଜନଗଣ ପୁଞ୍ଜିବାଦୀ ବ୍ୟବସ୍ଥାକୁ ସମର୍ଥନ କରୁଥିବା ବ୍ୟକ୍ତିମାନଙ୍କ ସପକ୍ଷରେ ଅଗଣିତ ନିଷ୍ପେଷିତ ଜନଗଣ ଭୋଟ ଦେଇଆସିଛନ୍ତି ।

ବାସ୍ତବପକ୍ଷେ ଯଦି ଦାରିଦ୍ର୍ୟ ଅବସ୍ଥା ଭିତରୁ ବିପ୍ଳବର ସୂତ୍ରପାତ ହେଉଥାଆନ୍ତା, ତେବେ ୧୯୪୪ରୁ ୪୬ ଭିତରେ ବଙ୍ଗରେ ହୋଇଥିବା ଦୁର୍ଭିକ୍ଷ ଅପେକ୍ଷା ଆଉ ଅଧିକ କିଛି ଅନୁକୂଳ ପରିସ୍ଥିତି ରହିବା ସମ୍ଭବ ନୁହେଁ । ସେହି ଦୁର୍ଭିକ୍ଷ ସମୟରେ କଲିକତାର ରାସ୍ତାଘାଟ ଉପରେ ଓ ଖାଦ୍ୟପଦାର୍ଥ ନେଉଥିବା ହୋଟେଲ ବା ଦୋକାନ ସାମନାରେ ହଜାର ହଜାର ମଣିଷ ଖାଇବାକୁ ନପାଇ ଟଳିପଡ଼ୁଥିଲେ । ଗୋଟିଏ ଭୋକିଲା କୁକୁର ଖାଦ୍ୟ ଥିବା କୌଣସି ସ୍ଥାନରୁ କିଛି ଖାଦ୍ୟ ନେଇ ପଳେଇଯିବାକୁ ଚେଷ୍ଟା କରିଥାଏ । କିନ୍ତୁ ଏହି ଭୋକିଲା ଅସହାୟ ମଣିଷମାନେ ଦୋକାନ, ହୋଟେଲ ଇତ୍ୟାଦି କାହିଁକି ଲୁଟ୍‌କରୁ ନଥିଲେ ? ସହରରେ ଥିବା ପୋଲିସ ସଂଖ୍ୟା କେବେହେଲେ ଏହି ଅଗଣିତ ଅସହାୟ ଭୋକିଲା ମଣିଷଙ୍କୁ ବାଧା ଦେଇପାରି ନଥାନ୍ତା । ଏହି ଅସହାୟ ମଣିଷମାନେ ଦୋକାନ ବଜାର ଲୁଟ୍ କରିବା ପରିବର୍ତ୍ତେ ଭୋକରେ ମରିବା ପଶ୍ଚାତରେ ସେମାନଙ୍କର ଦୃଷ୍ଟିଭଙ୍ଗୀ ଦାୟୀ ବୋଲି କୁହାଯାଇପାରେ । ସମ୍ପତ୍ତି ଉପରେ ବ୍ୟକ୍ତିର ଅଧିକାର ଓ ଭାଗ୍ୟବାଦଜନିତ ପାରମ୍ପରିକ ବିଶ୍ୱାସ ତାଙ୍କୁ ସେଥିରୁ ନିବୃତ୍ତ କରୁଥିଲା । ସୁତରାଂ ଏକ ବୈପ୍ଳବାତ୍ମକ ଚେତନାର ବିକାଶ ନହେଲେ ବିପ୍ଳବ ପାଇଁ ଯଥେଷ୍ଟ ଅନୁକୂଳ ପରିବେଶ ଥିଲେ ବି ଏକ ବାସ୍ତବ ବିପ୍ଳବ ଉଦ୍ଭବ ହୁଏନାହିଁ । ଏଣୁ ଘଟଣା ପ୍ରବାହ ଅପେକ୍ଷା ଚେତନାର ବିକାଶ ଅଧିକ ମୂଲ୍ୟବାନ୍ ମନେହୁଏ । ଅଗଣିତ ଅସ୍ପୃଶ୍ୟ ଜନଗଣ ଓ କଳା ମଣିଷମାନେ ସ୍ୱାଧୀନତା ଓ ସମତା ଆଧାରିତ ଚେତନା ଅଭାବରେ ପୁରୁଷାନୁକ୍ରମେ ନିଷ୍ପେଷିତ ଓ ଅତ୍ୟାଚାରିତ ହୋଇ ରହିଛନ୍ତି । ଏଣୁ ବାସ୍ତବପକ୍ଷେ ମଣିଷର ସାମାଜିକ ଅବସ୍ଥା ତା'ର ଚେତନାକୁ ବିକାଶ କରାଇଥାଏ ବୋଲି ମାର୍କସୀୟ ବିଚାରଧାରାରେ ଯାହା ଗ୍ରହଣ କରାଯାଏ ତାହା ସତ୍ୟ ନୁହେଁ । ଅପରପକ୍ଷରେ ମଣିଷର ଚେତନା ବ୍ୟକ୍ତିପାଇଁ ନୂତନ ପରିସ୍ଥିତି ସୃଷ୍ଟି କରିଥାଏ ।

ମାର୍କସ୍, ଏଙ୍ଗେଲସ୍ ଓ ଲେନିନ ସମାଜବାଦୀ ବିପ୍ଳବର କର୍ଣ୍ଣଧାର ଥିଲେ ବି ସେମାନେ ସର୍ବହରା ଶ୍ରେଣୀର ବ୍ୟକ୍ତି ନଥିଲେ । ସେମାନଙ୍କୁ କୌଣସି ଶ୍ରେଣୀର ପର୍ଯ୍ୟାୟଭୁକ୍ତ କରିବା ସମୀଚୀନ ନୁହେଁ । ମାର୍କସ୍‌ବାଦର ମୌଳିକ ନୀତି ଯଥା 'ଚେତନା ବ୍ୟକ୍ତିର ଶ୍ରେଣୀ ଆନୁଗତ୍ୟରୁ ବିକାଶ ଲାଭ କରିଥାଏ' ବୋଲି ଯାହା କୁହାଯାଏ ସତ୍ୟ ନୁହେଁ । ଯଦି ମାର୍କସ୍ ଓ ଲେନିନ୍‌ଙ୍କୁ ଶ୍ରେଣୀ ଚେତନାର ଊର୍ଦ୍ଧ୍ୱରେ ରଖାଯାଏ, ତେବେ ଯେକୌଣସି ବ୍ୟକ୍ତିଙ୍କୁ ମଧ୍ୟ ଶ୍ରେଣୀ ଚେତନାରୁ ମୁକ୍ତ ବୋଲି ନିଆଯାଇପାରେ । ଆଦିକାରଣ ପ୍ରତୀତି ପରି ଏହା ଅବାସ୍ତବ ମନେହୁଏ ।

ଶ୍ରମିକ ସଙ୍ଗଠନଗୁଡ଼ିକ ଅର୍ଥନୈତିକ ସମତା ଆଣିବା ଦିଗରେ ସଫଳ ନହେବାର କାରଣ ସେମାନେ ବାସ୍ତବ ସମସ୍ୟାଟିକୁ ଯଥାର୍ଥ ଭାବରେ ଅନୁଧ୍ୟାନ କରିନାହାନ୍ତି । ବାସ୍ତବପକ୍ଷେ ଦରିଦ୍ର ଲୋକମାନେ ସମାଜରେ ଥିବା ବୈଷମ୍ୟ ବିରୁଦ୍ଧରେ ବିପ୍ଳବ କରନ୍ତି ନାହିଁ ବା ଏହାକୁ ଘୃଣା କରନ୍ତି ନାହିଁ । ପୁଞ୍ଜିପତିଙ୍କ ଦୃଷ୍ଟିଭଙ୍ଗୀ ଅପେକ୍ଷା ସେମାନଙ୍କର ଦୃଷ୍ଟିଭଙ୍ଗୀରେ ମଧ୍ୟ ପାର୍ଥକ୍ୟ ନଥାଏ । ଦରିଦ୍ର ଲୋକମାନେ ଧନୀ ଲୋକମାନଙ୍କୁ ଈର୍ଷା କରନ୍ତି ଓ ନିଜେ ଧନୀ ହେବାକୁ ସ୍ୱପ୍ନ ଦେଖନ୍ତି । ବ୍ୟକ୍ତିଗତ ମାଲିକାନା ବ୍ୟବସ୍ଥାକୁ ଲୋପ କରି ଅର୍ଥନୈତିକ ସମତା ଆଣିବାପାଇଁ ସେମାନେ ଚେଷ୍ଟା କରନ୍ତି ନାହିଁ । ବରଂ ଧନୀଲୋକର ସମ୍ପତ୍ତି ଆଣି ନିଜେ ଧନୀ ହେବାକୁ ଇଚ୍ଛା କରନ୍ତି । ଫଳରେ ଦରିଦ୍ର ଲୋକଙ୍କ ଭିତରେ ଥିବା ପୁଞ୍ଜିପତି ଦୃଷ୍ଟିଭଙ୍ଗୀ ଧନୀ ଲୋକଙ୍କର ସ୍ଥିତି ଅପରିବର୍ତ୍ତିତ ରହିବାରେ ସାହାଯ୍ୟ କରେ । ଏହାଦ୍ୱାରା ସମ୍ପତ୍ତି ଉପରେ ବ୍ୟକ୍ତିଗତ ମାଲିକାନା ଲୋପ ହୁଏନାହିଁ ।

ସାମାଜିକ ସମ୍ବନ୍ଧ କ୍ଷେତ୍ରରେ ଶ୍ରେଣୀସଂଘର୍ଷ ନଥାଏ । ଆସ୍ତିକତାବାଦୀ ସମାଜରେ ନାନା ବୈଷମ୍ୟ ରହିଥାଏ ଓ ପରସ୍ପର ମଧ୍ୟରେ ପ୍ରତିଯୋଗିତା ଲାଗି ରହିଥାଏ । ଶ୍ରମିକ ସଂଗଠନମାନଙ୍କର ଆନ୍ଦୋଳନକୁ ଶ୍ରମିକମାନେ ଅଧିକ ବେତନ ପାଇବା ଆଶାରେ ନିଜର ସ୍ୱାର୍ଥସିଦ୍ଧି ପାଇଁ ସମର୍ଥନ କରିଥାଆନ୍ତି । ସମସ୍ତଙ୍କ ପାଇଁ ଖାଦ୍ୟ ପରିବର୍ତ୍ତେ ନିଜର ବେତନ ବୃଦ୍ଧି ପାଇଁ ସେମାନେ ସମବେତ ଭାବରେ ଆନ୍ଦୋଳନ କରନ୍ତି । ନିଜ ଗୋଷ୍ଠୀର ସ୍ୱାର୍ଥସାଧନ ଅପେକ୍ଷା ସମାଜର ଅର୍ଥନୈତିକ ସମତା ଦିଗରେ ସେମାନଙ୍କର ଆନ୍ଦୋଳନ ଅଭିପ୍ରେତ ହୁଏନାହିଁ । ଫଳରେ ଲେନିନ୍ ଓ ହୋ ଚି ମିନ୍‌ଙ୍କ ପରି ସଚେତନ ନେତୃବୃନ୍ଦ ସାମାଜିକ ପ୍ରଗତି ପାଇଁ ରାଜନୈତିକ ଏକଛତ୍ରବାଦର ଆଶ୍ରୟ ନେଇଛନ୍ତି ।

ଉଭୟ ଗାନ୍ଧୀବାଦ ଓ ମାର୍କସ୍‌ବାଦ ଏକ ଅଣରାଜନୈତିକ ଦୃଷ୍ଟିଭଙ୍ଗୀ ପୋଷଣ କରିବାରୁ ଅର୍ଥନୈତିକ ସମତା ହାସଲ କରିବାରେ ପ୍ରତିବନ୍ଧକର ଦମ୍ଭ୍‌ଖୀନ ହୋଇଛନ୍ତି । 'ନ୍ୟାସବାଦ ବା ଶ୍ରେଣୀସଂଘର୍ଷ ବ୍ୟକ୍ତି ସହ ସରକାରର ସମ୍ପର୍କ ଅପେକ୍ଷା

ବ୍ୟକ୍ତି ବ୍ୟକ୍ତି ଭିତରେ ଥିବା ସମ୍ପର୍କକୁ ଅଧିକ ଗୁରୁତ୍ୱ ଦିଏ। ପରିଣାମତଃ ନ୍ୟାୟ ବ୍ୟବସ୍ଥାରେ ଜଣେ ଧନୀ ବ୍ୟକ୍ତି ନିଜର ବଳକା ଅର୍ଥ ଓ ସୁଖସୁବିଧା ସ୍ୱେଚ୍ଛାକୃତ ଭାବେ ଗରିବ ଲୋକଙ୍କ ହିତ ଦିଗରେ ବ୍ୟୟ କରେ। ମାର୍କସୀୟ ଶ୍ରେଣୀ ସଂଘର୍ଷରେ ଗରିବ ଲୋକ ବଳପ୍ରୟୋଗ କରି ଧନୀବ୍ୟକ୍ତିର ଧନ ଓ ସୁବିଧାକୁ ନେଇଥାଏ। କିନ୍ତୁ ସାମ୍ପ୍ରତିକ ପୃଥିବୀରେ ଅର୍ଥନୈତିକ ସମସ୍ୟାଗୁଡ଼ିକ ଏତେ ଜଟିଳ ମନେହୁଏ ଯେ ସମାଜର ଅର୍ଥନୈତିକ ସମସ୍ୟାକୁ କେବଳ ଦିଆ ନିଆ ଭଳି ସହଜ ପ୍ରଣାଳୀରେ ସମାଧାନ କରିବା ସମ୍ଭବ ନୁହେଁ। ବ୍ୟକ୍ତି ବ୍ୟକ୍ତି ଭିତରେ ରହିଥିବା ଜଟିଳ ସମ୍ପର୍କକୁ ନିୟନ୍ତ୍ରଣ କରିବାପାଇଁ ସମ୍ପ୍ରତି ରାଷ୍ଟ୍ର ଓ ବହୁବିଧ ଅନୁଷ୍ଠାନ ବିକାଶ ଲାଭ କରିଛି। ଅର୍ଥନୈତିକ ସମତା ପ୍ରତିଷ୍ଠା କ୍ଷେତ୍ରରେ ରାଷ୍ଟ୍ରର ଗୁରୁତ୍ୱକୁ ସ୍ୱୀକାର କରିବା ଏକ ବାସ୍ତବବାଦୀ ଦୃଷ୍ଟିଭଙ୍ଗୀ ଅଟେ। ବାସ୍ତବପକ୍ଷେ ନ୍ୟାସବାଦ ଓ ଶ୍ରେଣୀସଂଘର୍ଷ ବ୍ୟବସ୍ଥା ଯେତେ ଅଣରାଜନୈତିକ ଜଣାପଡ଼ୁଥିଲେ ବି ଗାନ୍ଧୀବାଦ ଓ ମାର୍କସ୍‌ବାଦରେ ଅର୍ଥନୈତିକ ବୈଷମ୍ୟକୁ ଦୂର କରିବାପାଇଁ ରାଷ୍ଟ୍ରର ସାର୍ବଭୌମତ୍ୱକୁ ଗ୍ରହଣ କରାଯାଏ। ଗାନ୍ଧୀ ଭାରତର ରାଜନୈତିକ ସ୍ୱାଧୀନତା ମାଧ୍ୟମରେ ସାମ୍ରାଜ୍ୟବାଦୀ ଶକ୍ତି ବିରୁଦ୍ଧରେ ଚେତନା ଜାଗ୍ରତ କରିଥିଲେ। ସେହିପରି ସମାଜବାଦର ପ୍ରତିଷ୍ଠା ପାଇଁ ମାର୍କସ୍‌ବାଦୀମାନେ ରାଜନୈତିକ ଏକଛତ୍ରବାଦକୁ ପ୍ରଶ୍ରୟ ଦେଇଥିଲେ। ବାସ୍ତବପକ୍ଷେ ଏଣୁ ନିରଙ୍କୁଶବାଦୀ ଅର୍ଥନୀତି ଅର୍ଥନୈତିକ ସମସ୍ୟା କ୍ଷେତ୍ରରେ ଏକ ରାଜନୈତିକ ବିଚାରର ସୂତ୍ରପାତ କରିଥାଏ।

ଯେକୌଣସି ସରକାର ଧନୀ-ଦରିଦ୍ର, ଗୋରା-କଳା, ଯୁବକ-ବୃଦ୍ଧ, ନର-ନାରୀ ନିର୍ବିଶେଷରେ ସମସ୍ତଙ୍କ ପାଇଁ ସମାନ ଦୃଷ୍ଟିଭଙ୍ଗୀ ନେଇଥାଏ। ସମସ୍ତ ଜନଗଣ ଟିକସ୍ ଦେଉଥିବାରୁ ଓ ପ୍ରତ୍ୟକ୍ଷ ବା ପରୋକ୍ଷଭାବେ ସରକାରକୁ ସମର୍ଥନ କରୁଥିବାରୁ ସରକାର ସମସ୍ତ ଜନଗଣଙ୍କ ପାଇଁ ଅଙ୍ଗୀକାରବଦ୍ଧ ଥାଏ। ଫଳରେ ସରକାର ପାଖରୁ ଫଳପ୍ରଦ, ଅର୍ଥନୈତିକ ପରିବର୍ତ୍ତନ ଆଶା କରିବା ଯେକୌଣସି ବ୍ୟକ୍ତିର ଅଧିକାର ଅଟେ।

ଗୋଟିଏ ସରକାର କହିଲେ ଏଠାରେ ରାଜନୈତିକ ସେବକବର୍ଗ ଓ କର୍ମଚାରୀବୃନ୍ଦଙ୍କୁ ବୁଝାଏ। ସେମାନେ ଶାସନଭାର ନିର୍ବାହପାଇଁ ରହିଥିବାରୁ ସାଧାରଣ ଜନଗଣଠାରୁ ପୃଥକ୍ ଅଟନ୍ତି। ଶାସକବର୍ଗ ସାଧାରଣ ଲୋକଙ୍କର ପ୍ରତିନିଧିତ୍ୱ କରିଥାନ୍ତି। ଜଣେ ନାଗରିକ ନିଜର କୌଣସି ସୁବିଧା ପାଇଁ ଅନ୍ୟଜଣେ ନାଗରିକଙ୍କୁ ଅନୁରୋଧ କରିବାବେଳେ ସରକାରୀ ଅମଲାତନ୍ତ୍ର ପାଖରେ ଏହା ଦାବି କରିପାରେ। ଜଣେ ନାଗରିକ ଅନ୍ୟର ବନ୍ଧୁ ହୋଇଥିବାବେଳେ ଶାସକବର୍ଗ ଓ ଅମଲାମାନେ ଜନଗଣଙ୍କର ଅଧସ୍ତନ କର୍ମଚାରୀ ଅଟନ୍ତି।

ଅସ୍ତିକତାବାଦୀମାନେ ନିଜର ଅଧସ୍ତନ ଦୃଷ୍ଟିଭଙ୍ଗୀ ଯୋଗୁଁ ସରକାର ଦ୍ୱାରା ଅର୍ଥନୈତିକ ସମସ୍ୟାର ସମାଧାନ କରିବା ଦିଗରେ ସଫଳ ହୁଅନ୍ତି ନାହିଁ । ସେମାନେ ନିଜର ଦାବି ଜାହିର କରିବା ପରିବର୍ତ୍ତେ ସେମାନଙ୍କର ସମସ୍ୟାକୁ ସରକାର ସମାଧାନ କରିଦେଇ ପାରିବ ବୋଲି ବିଶ୍ୱାସ କରନ୍ତି । ସେମାନେ ସରକାରୀ କଳ ଓ ଅମଲାତନ୍ତ୍ରକୁ ନିଜର ପ୍ରଭୁ ବୋଲି ଭାବିଥାଆନ୍ତି । ଅଥଚ ନିରୀଶ୍ୱରବାଦୀମାନେ ଅପର ପକ୍ଷରେ ନିଜର ପ୍ରଭୁତ୍ୱ ବିସ୍ତାର କରି ନିଜର ସମସ୍ୟାକୁ ସମାଧାନ କରନ୍ତି । କାରଣ ସରକାର ଓ ଅମଲାତନ୍ତ୍ରକୁ ନିଜର ପ୍ରଭୁ ବୋଲି ଭାବିବା ପରିବର୍ତ୍ତେ ସେମାନଙ୍କ ଉପରେ ନିଜର ଆଧିପତ୍ୟ ବିସ୍ତାର କରନ୍ତି ।

ନିରୀଶ୍ୱରବାଦୀମାନେ ମୁଖ୍ୟତଃ ଏକ ଗଣତାନ୍ତ୍ରିକ ବ୍ୟବସ୍ଥାକୁ ସମର୍ଥନ କରନ୍ତି ଓ ଯେକୌଣସି ପ୍ରକାରର ଏକଛତ୍ରବାଦକୁ ବିରୋଧ କରିଥାନ୍ତି । ସେମାନେ ନିର୍ବାଚନ ମାଧ୍ୟମରେ ନିଜର ପ୍ରତିନିଧିମାନଙ୍କୁ ମନୋନୀତ କରନ୍ତି ଓ କ୍ଷମତାର ଅପବ୍ୟବହାର କୌଣସି ସମୟରେ କରାଗଲେ ସତ୍ୟାଗ୍ରହ ଦ୍ୱାରା ତାହାକୁ ନିୟନ୍ତ୍ରଣ କରନ୍ତି । ଏହି ନିୟନ୍ତ୍ରଣ ଯୋଗୁଁ ଅର୍ଥନୈତିକ ସମତା ପାଇଁ ସେମାନେ ଆବଶ୍ୟକୀୟ ଆଇନ ପ୍ରବର୍ତ୍ତନ ପାଇଁ ସରକାରକୁ ବାଧ୍ୟ କରନ୍ତି । ଗଣତାନ୍ତ୍ରିକ ବ୍ୟବସ୍ଥାରେ ଆସ୍ତିକତା-ବାଦୀ ବିଶ୍ୱାସ ତିଷ୍ଠି ରହିପାରେ । କିନ୍ତୁ ସ୍ୱାର୍ଥାନ୍ୱେଷୀ ବ୍ୟକ୍ତିମାନେ ଅର୍ଥନୈତିକ ସମତା ହାସଲ ପାଇଁ ପ୍ରଗତିଶୀଳ ଆଇନର ବିରୋଧ କରିଥାଆନ୍ତି । ଏଥିପାଇଁ ଏକ ନିରୀଶ୍ୱରବାଦୀ ଶିକ୍ଷାବ୍ୟବସ୍ଥା ଅବଶ୍ୟକ ମନେହୁଏ । ଜନଗଣଙ୍କ ମଧ୍ୟରେ ନିରୀଶ୍ୱରବାଦୀ ଚେତନାର ବିକାଶ ହେବାଦ୍ୱାରା ଅର୍ଥନୈତିକ ସମତା ଦିଗରେ ଅଗ୍ରସର ହେବା ସମ୍ଭବ ହୁଏ ।

କେତେକାଂଶରେ ଈଶ୍ୱରହୀନ-ବସ୍ତୁବାଦ-ଜନିତ-ଅସ୍ତିକତାବାଦୀ-ଦର୍ଶନ ଓ କମ୍ୟୁନିଷ୍ଟଙ୍କର କ୍ରିୟାଶୀଳତା ଯୋଗୁଁ ବ୍ୟକ୍ତି ସ୍ୱାଧୀନତାର ଭାବନା ନଥାଇ ମଧ୍ୟ ମାର୍କସୀୟ ପ୍ରଣାଳୀରେ ରାଜନୈତିକ ଏକଛତ୍ରବାଦ ମଧ୍ୟ ଦେଇ ଅର୍ଥନୈତିକ ସମତା ଆସିପାରିଛି । କିନ୍ତୁ ସମାଜବାଦୀ ଶକ୍ତିଙ୍କର ଅଗ୍ରଗତିକୁ ଗଣତାନ୍ତ୍ରିକ ଶକ୍ତିମାନେ ପ୍ରତିରୋଧ କରିଛନ୍ତି । ଫଳରେ ଅର୍ଥନୈତିକ ସମତା ସୃଷ୍ଟି କ୍ଷେତ୍ରରେ ମାର୍କସୀୟ ପ୍ରଣାଳୀ କୃତକାର୍ଯ୍ୟ ହୋଇପାରିନାହିଁ । ବଳ ପ୍ରୟୋଗ କରି ଅଣାଯାଉଥିବା ପରିବର୍ତ୍ତନ ଅପେକ୍ଷା ଲୋକମାନଙ୍କର ଚେତନାକୁ ପ୍ରଭାବିତ କରି ଅଣାଯାଉଥିବା ପରିବର୍ତ୍ତନ ଅଧିକ ସ୍ଥାୟୀ ଓ ପ୍ରଗତିଶୀଳ ହୋଇଥାଏ । ସୁତରାଂ ମାର୍କସବାଦ ଅପେକ୍ଷା ନିରୀଶ୍ୱରବାଦ ଅଧିକ ଫଳପ୍ରଦ ମନେହୁଏ ।

ନିରୀଶ୍ୱରବାଦୀ ପନ୍ଥାରେ ଅଣାଯାଉଥିବା ସମତା ଜୀବନର ଅନ୍ୟ ଗୋଟିଏ ଗୁଣାତ୍ମକ ମୂଲ୍ୟକୁ ବିକାଶ କରାଇଥାଏ, ଯାହାକୁ ସମାଜବାଦୀ ବ୍ୟବସ୍ଥା ଗୁରୁତ୍ୱ

ହୁଏନାହିଁ । ବ୍ୟକ୍ତି ମର୍ଯ୍ୟାଦାବୋଧକୁ ସମ୍ମାନ ଦେବା ବ୍ୟକ୍ତିର ଆବଶ୍ୟକୀୟ ଚାହିଦା ପୂରଣ କରିବା ପରି ଗୁରୁତ୍ୱପୂର୍ଣ୍ଣ ମନେହୁଏ । ଜେଲ୍ ଭିତରେ ଥିବା ବନ୍ଦୀମାନେ ନିର୍ଦ୍ଧାରିତ ଖାଦ୍ୟ ଓ ସୁବିଧା ପାଉଥିଲେ ବି ସୁଖ ଅନୁଭବ କରନ୍ତି ନାହିଁ । ଜେଲ୍ ଭିତରେ ସେମାନଙ୍କର ଆବଶ୍ୟକତା ପୂରଣ ହେଉଥିଲେ ବି ନାନା କଟକଣା ତାଙ୍କୁ ସୁଖରେ ରଖିପାରେ ନାହିଁ । ଏଣୁ ଜୀବନର ଆବଶ୍ୟକତା ପୂରଣ ସହ ବ୍ୟକ୍ତି ମର୍ଯ୍ୟାଦାବୋଧ ମଣିଷ ଆବଶ୍ୟକ କରିଥାଏ । ଏପରିକି ଗୋଟିଏ ଅସହାୟ ଭିକାରୀକୁ ଘୃଣା ବା ରାଗରେ ଖାଦ୍ୟ ମୁଠେ ଫିଙ୍ଗିଦେଲେ ହୁଏତ ସେ ତାହା ଗ୍ରହଣ କରେ ନାହିଁ । ବ୍ୟକ୍ତି ପାଇଁ ଖାଦ୍ୟ ଓ ଆତ୍ମମର୍ଯ୍ୟାଦାବୋଧର ଗୁରୁତ୍ୱ ରହିଥାଏ । ଏହି ଉଭୟଙ୍କୁ ହିଁ ନିରୀଶ୍ୱରବାଦୀ ଅର୍ଥନୀତି ଗୁରୁତ୍ୱ ଦିଏ ।

ନିରୀଶ୍ୱରବାଦୀ ଅର୍ଥନୀତିର ଦୁଇଟି ଦିଗ ରହିଛି । ବ୍ୟକ୍ତିଗତ ସ୍ତରରେ ଏହା ବ୍ୟକ୍ତିର ସୁଖସ୍ୱାଚ୍ଛନ୍ଦ ସହ ତାହାର ଆତ୍ମସମ୍ମାନବୋଧକୁ ଗୁରୁତ୍ୱ ଦେଇଥାଏ । ଦ୍ୱିତୀୟରେ ସମଷ୍ଟିଗତ ସ୍ତରରେ ସମସ୍ତଙ୍କ ପାଇଁ ସମାନ ସୁବିଧା ସୁଯୋଗର ବ୍ୟବସ୍ଥା କରିଥାଏ ।

ଜଣଙ୍କର ସାମାଜିକ ପରିସର ଗୋଟିଏ ପରିବାର ଭିତରେ ସୀମିତ ରହିପାରେ କିମ୍ବା ଏହା ରାଷ୍ଟ୍ର ଓ ସମଗ୍ର ମାନବ ଜାତିପ୍ରତି ପ୍ରସାରିତ ହୋଇପାରେ । ଅର୍ଥନୈତିକ ମାନଦଣ୍ଡରୁ ପରିବାର ବ୍ୟକ୍ତି ପାଇଁ ପାରମ୍ପରିକ ଭାବରେ ସର୍ବନିମ୍ନ ଅନୁଷ୍ଠାନ ଅଟେ । ଅଥଚ ଏକ ରାଷ୍ଟ୍ର ନିଜ ଶାସନ ନିୟନ୍ତ୍ରଣରେ ଥିବା ସମଗ୍ର ଜାତି ପ୍ରତି ଅଙ୍ଗୀକାରବଦ୍ଧ ଥାଏ । ମାନବବାଦୀ ଦୃଷ୍ଟିଭଙ୍ଗୀ ପୋଷଣ କରୁଥିବା ନିରୀଶ୍ୱର-ବାଦୀମାନେ ପରିବାର ଓ ରାଷ୍ଟ୍ରର ପରିସର ଭିତରୁ ଯାଇ ସମଗ୍ର ମାନବଜାତି ପାଇଁ ବିଚାର କରିବା ଆବଶ୍ୟକ । ଏହା ହୁଏତ ଅବାସ୍ତବ ବା ଏକ ଅତି ଉଚ୍ଚ ଅଭିଳାଷ ପରି ଜଣାପଡ଼ିପାରେ; କିନ୍ତୁ ଜଣେ ନିରୀଶ୍ୱରବାଦୀ ଯେ ନିଜକୁ ମାନବବାଦୀ ବୋଲି ବିବେଚନା କରେ ତାହା ପକ୍ଷରେ ଏହି ବିଚାରଧାରା ସ୍ୱାଭାବିକ ମନେହୁଏ । ଗୋଟିଏ ସରକାର ନିଜ ଦେଶ ପାଇଁ ଚିନ୍ତା କରିବା ବେଳେ ଜଣେ ନିରୀଶ୍ୱରବାଦୀ ସମଗ୍ର ବିଶ୍ୱ ପରିପ୍ରେକ୍ଷୀରେ ନିଜ ଦେଶର ସମୃଦ୍ଧିକୁ ଅନୁନ୍ନତ ଦେଶର ମଙ୍ଗଳ ପାଇଁ ବିନିଯୋଗ କରିବାକୁ ନିଜ ସରକାର ଉପରେ ପ୍ରଭାବ ପକାଇଥାଏ । ଅର୍ଥନୈତିକ ସମତା ପରିପ୍ରେକ୍ଷୀରେ ଉନ୍ନତିଶୀଳ ଓ ଅନୁନ୍ନତ ଦେଶ ମଧ୍ୟରେ ଥିବା ପ୍ରଭେଦ ଅତ୍ୟନ୍ତ ଅସ୍ପୃହଣୀୟ ମନେହୁଏ । ଅନ୍ୟପକ୍ଷରେ ଗୋଟିଏ ଦେଶ ଓ ଅନ୍ୟ ଦେଶର ବିକାଶରେ ସହାୟକ ହେବାକୁ ଯାଇ ଯଦି ନିଜର ଆର୍ଥିକ ମାନଦଣ୍ଡରେ ଅବନତି ଘଟାଏ ତେବେ ଏହାକୁ ଅବନତି କୁହାନଯାଇ ବରଂ ନୈତିକ ସ୍ତରରେ ଏକ ଅଗ୍ରଗତି କହିବାକୁ ହେବ ।

ଶିଳ୍ପୋନ୍ନତ ସଭ୍ୟତାରେ ସମସ୍ତ ବ୍ୟକ୍ତିଙ୍କୁ ଖାଦ୍ୟ ଯୋଗାଇବା କଷ୍ଟକର ମନେହୁଏ ନାହିଁ । ଆମେରିକା ଭଳି ଦେଶମାନଙ୍କରେ ବଳକା ଖାଦ୍ୟଶସ୍ୟର ମୂଲ୍ୟ ନିର୍ଦ୍ଧାରଣ ସମସ୍ୟା ସୃଷ୍ଟି କରିଥାଏ । ଖାଦ୍ୟଶସ୍ୟର ମୂଲ୍ୟକୁ ସ୍ଥିର ରଖିବା ପାଇଁ ବଳକା ଖାଦ୍ୟକୁ ନଷ୍ଟ କରିବା ପରିବର୍ତ୍ତେ ଏହାକୁ ଅନ୍ୟ ଦେଶରେ ବିତରଣ କରିଦେଲେ ଅନେକ ଲୋକ ଉପକୃତ ହୋଇପାରିବେ । ଦେଶାନ୍ତର ଗମନ କ୍ଷେତ୍ରରେ କୋହଳ ନୀତି ଅବଲମ୍ବନ କରାଗଲେ ଜନସଂଖ୍ୟାର ଚାପ କେତେକ ଦେଶରେ ଅଧିକ ହୁଅନ୍ତା ନାହିଁ । ସୁବିଧାସୁଯୋଗ ଥିବା ଦେଶକୁ ଅନ୍ୟମାନେ ଯାଇପାରିବା ଦ୍ୱାରା ଅଧିକ ଜମି ଚାଷ ହେବା ସହିତ ଜଳସମ୍ପଦର ଯଥାର୍ଥରେ ବିନିଯୋଗ ହୋଇପାରନ୍ତା । ଏହାଦ୍ୱାରା ଅଧିକ ଶସ୍ୟ ଉତ୍ପାଦନ କରାଯାଇ ସମସ୍ତଙ୍କର ଆବଶ୍ୟକତା ପୂରଣ କରାଯାଇ ପାରନ୍ତା । ପ୍ରାକୃତିକ ସମ୍ପଦର ବିନିଯୋଗ କ୍ଷେତ୍ରରେ ରହିଥିବା ପ୍ରତିବନ୍ଧକ ଜନସଂଖ୍ୟାର ବିସ୍ଫୋରଣ ଅପେକ୍ଷା ଅଧିକ ବିପଦସଙ୍କୁଳ ମନେହୁଏ । ଉପଯୁକ୍ତ ସୁବିଧାସୁଯୋଗ ଓ ମାନବିକ ଦକ୍ଷତା ଦ୍ୱାରା ଅନେକ ସମ୍ଭାବନା ସୃଷ୍ଟି ହୋଇପାରନ୍ତା । ନୈତିକତାକୁ ଅର୍ଥନୀତିର ଅଙ୍ଗଭାବରେ ନେଉଥିବା ନିରୀଶ୍ୱରବାଦ ସମସ୍ତଙ୍କ ପାଇଁ ଖାଦ୍ୟଶସ୍ୟର ସୁଯୋଗ ମିଳିପାରିବ ବୋଲି ସ୍ୱୀକାର କରେ ।

ସମସ୍ତଙ୍କୁ ଖାଦ୍ୟଶସ୍ୟ ଯୋଗାଇବା ମଣିଷ ଜାତିର ଏକ ବଡ଼ ଆବଶ୍ୟକତା ହେଲେ ବି ଖାଦ୍ୟ ସହ ମର୍ଯ୍ୟାଦାବୋଧ ବ୍ୟକ୍ତିତ୍ୱର ବିକାଶରେ ସହାୟକ ହୋଇଥାଏ । ସମାଜବାଦୀ ଶାସନ ବ୍ୟବସ୍ଥାରେ ଓ ଉନ୍ନତ ସମାଜରେ ସମସ୍ତଙ୍କ ପାଇଁ ଖାଦ୍ୟର ସୁଯୋଗ ଥାଏ । ପରନ୍ତୁ ଏକ ନିୟନ୍ତ୍ରଣାଧୀନ ଶାସନ ବ୍ୟବସ୍ଥାରେ ଓ ଏକ ଅନୁନ୍ନତ ସମାଜରେ ଜନଗଣଙ୍କୁ ଶାସନ ବ୍ୟବସ୍ଥାରେ ହସ୍ତକ୍ଷେପ କରିବାରୁ ବଞ୍ଚିତ କରିବାଦ୍ୱାରା ସେମାନଙ୍କର ଆଗ୍ରହ କମିଯାଇଥାଏ । ସୁତରାଂ ନିରୀଶ୍ୱରବାଦୀ ଅର୍ଥନୀତି ବ୍ୟକ୍ତିମାନଙ୍କୁ କ୍ଷୁଦ୍ର କ୍ଷୁଦ୍ର ଗୋଷ୍ଠୀରେ ସମ୍ପୃକ୍ତ କରାଇବାଦ୍ୱାରା ସେମାନଙ୍କ ଭିତରେ ବ୍ୟକ୍ତିଗତ ସମ୍ବନ୍ଧ ରହିବା ସମ୍ଭବ ହେବ । ପ୍ରାକୃତିକ ସମ୍ପଦକୁ ଗୋଟିଏ ଗୋଷ୍ଠୀ ସମଭାବରେ ନିଜ ଭିତରେ ବଣ୍ଟନ କରିଥାଏ ଅଥବା ଗୋଷ୍ଠୀଟି ଏହାର ମାଲିକ ହୋଇଥାଏ । ଜଳ ଓ ବିଦ୍ୟୁତ୍‌ସମ୍ପଦ, ଶିକ୍ଷା ଓ ସ୍ୱାସ୍ଥ୍ୟ ସାମଗ୍ରିକ ଭାବରେ ପରିଚାଳନା ହେବାବେଳେ କୃଷିଫାର୍ମ, ବାସଗୃହ ଇତ୍ୟାଦି କ୍ଷେତ୍ରରେ ବ୍ୟକ୍ତିଗତ ଅଧିକାର ରଖାଯାଏ । ଏହିପରି ଗୋଷ୍ଠୀମାନଙ୍କରେ ପ୍ରତ୍ୟେକଟି ବ୍ୟକ୍ତିର ସାମୂହିକ ହିତପ୍ରତି ଦୃଷ୍ଟିଦେଇ ସମସ୍ତଙ୍କର ବସ୍ତୁଗତ ଆବଶ୍ୟକତାକୁ ପୂରଣ ପାଇଁ ଲକ୍ଷ୍ୟ କରାଯାଏ । ଗୋଟିଏ ଗୋଷ୍ଠୀର ବ୍ୟକ୍ତିମାନଙ୍କର ଉଦ୍ୟମରେ ଗୋଷ୍ଠୀହିତ ସାଧିତ ହୁଏ ଓ ଗୋଷ୍ଠୀଗତ ସାମୂହିକ ଜୀବନ ଉନ୍ନତ ହୁଏ ।

ଯେହେତୁ ପ୍ରତ୍ୟେକ ବ୍ୟକ୍ତି ଗୋଟିଏ ଗୋଷ୍ଠୀସହ ସମ୍ପର୍କିତ ହୋଇ ରହେ, ଗୋଟିଏ ଗୋଷ୍ଠୀରେ ଲୋକମାନଙ୍କର ଅବଶ୍ୟକତାକୁ ସମ୍ମାନର ସହ ଦୃଷ୍ଟି

ବଢ଼ିଯାଏ । ଗୋଷ୍ଠୀରୁ ସ୍ତର ପରେ ସ୍ତର ଦେଇ ବିଶ୍ୱସଂଘ ସୃଷ୍ଟି ହୁଏ । ପ୍ରତ୍ୟେକ ବ୍ୟକ୍ତି ନିଜର ରୁଚି ଓ ସାମର୍ଥ୍ୟ ନେଇ ବିକାଶ ଲାଭ କରେ ଓ ଏପରିକି ନିଜ ଗୋଷ୍ଠୀର ଊର୍ଦ୍ଧ୍ୱକୁ ଯାଇ ଏକ ବୃହତ୍ତର ସମାଜ ସହିତ ସମ୍ବନ୍ଧିତ ହୁଏ । ମୂଳ ଗୋଷ୍ଠୀଗୁଡ଼ିକ ବ୍ୟକ୍ତିମାନଙ୍କର ମୌଳିକ ଆବଶ୍ୟକତା ପୂରଣ ସହ ସଂଯୁକ୍ତ ହେବାବେଳେ ସଙ୍ଘୀୟ ବ୍ୟବସ୍ଥାର ଭିତ୍ତରରେ ଗମନାଗମନ ଓ ଉତ୍ପାଦନର ବିନିମୟ ବ୍ୟାପିତ ଗବେଷଣା କ୍ଷେତ୍ରରେ ସୁବିଧାସୁଯୋଗ ଦେଇଥାଏ । ସାମାଜିକ ଚେତନାର ଅଗ୍ରଗତି ସହ ମୂଳ ଗୋଷ୍ଠୀଗୁଡ଼ିକ ନିଜର ପରିଧି ଓ ସୁଯୋଗର ପରିସରକୁ ବୃଦ୍ଧି କରିଥାଆନ୍ତି ।

ସହରୀ ସଭ୍ୟତାରେ ଗଢ଼ିଉଠୁଥିବା ଅବ୍ୟକ୍ତିକ ଗ୍ରବନା ଅନେକ ବ୍ୟକ୍ତିଙ୍କୁ ନିଜର ସର୍ବନିମ୍ନ ଆବଶ୍ୟକତା ପୂରଣ ଛଡ଼ା ଅସହାୟ ଓ କର୍ମକୁଣ୍ଠ କରିଥାଏ । ଏହାଦ୍ୱାରା ମୁଷ୍ଟିମେୟ ଲୋକ ସେମାନଙ୍କୁ ଶୋଷଣ କରି ନିଜର ସ୍ୱେଚ୍ଛାସ୍ୱାଚ୍ଛନ୍ଦ୍ୟକୁ ସୁଦୃଢ଼ କରିଥାଆନ୍ତି । ଅପରପକ୍ଷରେ ଗୋଷ୍ଠୀଜୀବନ ପାରସ୍ପରିକ ସମ୍ପର୍କ ଓ ସହଯୋଗରେ ବିକାଶ କରିବାଦ୍ୱାରା ପ୍ରତ୍ୟେକ ବ୍ୟକ୍ତିର ବିକାଶ ପାଇଁ ଯତ୍ନଶୀଳ ହୋଇଥାଏ ଏବଂ ବ୍ୟକ୍ତିତ୍ୱର ବିକାଶ ଦିଗରେ ସାହାଯ୍ୟ କରିଥାଏ । ଲକ୍ଷ ଲକ୍ଷ ଗୋଷ୍ଠୀ ଭିତରେ ବାସକରୁଥିବା କୋଟି କୋଟି ବ୍ୟକ୍ତିଗଣ କେତୋଟି କଳ-କାରଖାନା ତୁଳନାରେ ବହୁଗୁଣରେ ଅନେକ ଜିନିଷ ଉତ୍ପାଦନ କରିପାରନ୍ତି । ଏହାଦ୍ୱାରା ପ୍ରତ୍ୟେକ ବ୍ୟକ୍ତିର ଆବଶ୍ୟକତା ପୂରଣ ହେବା ସହିତ ବ୍ୟକ୍ତିତ୍ୱର ମଧ୍ୟ ବିକାଶ ହୋଇଥାଏ ।

ବସ୍ତୁତଃ ନାସ୍ତିକବାଦୀ ଅର୍ଥନୀତିରେ ବ୍ୟକ୍ତି ଜାନ୍ତବ ସ୍ତରରୁ ଉନ୍ନୀତ ହୋଇ ସମାଜର ସମସ୍ତଙ୍କ ସହ ସମାନ ହୋଇଥାଏ । ଯେକୌଣସି ପ୍ରକାରର ଶ୍ରେଷ୍ଠବଡ଼ ମତପାର୍ଥକ୍ୟ ବ୍ୟକ୍ତିଗତ ସମ୍ବନ୍ଧ ଯୋଗୁଁ ଅଚିରେ ସମାପନ ହୋଇଥାଏ ।

ନାସ୍ତିକବାଦୀ ଅର୍ଥନୀତି ପ୍ରଯୁକ୍ତିବିଦ୍ୟାର ରୂପରେଖ ମଧ୍ୟ ବଦଳାଇ ଦିଏ । ମୁଷ୍ଟିମେୟ ବ୍ୟକ୍ତିଙ୍କର ଉପକାର ପରିବର୍ତ୍ତେ ଏହା ସମସ୍ତ ମାନବସମାଜର ଉନ୍ନତିରେ ନିୟୋଜିତ ହୋଇଥାଏ ।

ଷଷ୍ଠ ପରିଚ୍ଛେଦ :

# ନିରୀଶ୍ୱରବାଦୀ ପ୍ରଯୁକ୍ତିବିଦ୍ୟା

ସାମାଜିକ ସଙ୍ଗଠନର ବିକାଶ ଓ ଯନ୍ତ୍ରର ବ୍ୟବହାର ବିପ୍ଳବୀକର ଭାବେ ମଣିଷର ସାମର୍ଥ୍ୟକୁ ବୃଦ୍ଧି କଲା । ସାମାଜିକ ସଙ୍ଗଠନର ଅଭ୍ୟୁଦୟରୁ ନୈତିକ ମୂଲ୍ୟବୋଧ ଏବଂ ରାଜନୈତିକ ଓ ଅର୍ଥନୈତିକ ବ୍ୟବସ୍ଥାର ଉଦ୍ଭବ ହେଲା । ଯନ୍ତ୍ରର ବ୍ୟବହାର ଦ୍ୱାରା ଶିଳ୍ପ, କୃଷି, ଯାନ୍ତ୍ରିକ ବିଦ୍ୟା, ଚିକିତ୍ସାଶାସ୍ତ୍ର—ଯାହାସବୁ ପ୍ରଯୁକ୍ତିବିଦ୍ୟାର ଅନ୍ତର୍ଭୁକ୍ତ—ଇତ୍ୟାଦିର ମଧ୍ୟ ବିକାଶ ଘଟିଲା ।

ସାମାଜିକ ଅନୁଷ୍ଠାନମାନଙ୍କର ଗଠନ ପରି ଯନ୍ତ୍ରର ବ୍ୟବହାର ମଣିଷର କଳ୍ପନାରୁ ଉଦ୍ଭବ ବୋଲି କୁହାଯାଇପାରେ । ପଶୁମାନେ ନିଜର ଦାନ୍ତ ଓ ନଖ ସାହାଯ୍ୟରେ ନିଜର ଖାଦ୍ୟ ସଂଗ୍ରହ କରିଥାଆନ୍ତି ବା ମାଟିତଳେ ଗର୍ତ୍ତକରି ରହି-ଥାଆନ୍ତି । କିନ୍ତୁ ଗୋଟିଏ ମଣିଷଶିଶୁ ବାଦାମରୁ ମଞ୍ଜି ବାହାର କରିବା ପାଇଁ ପଥର ବ୍ୟବହାର କରିଥାଏ, ଏକ କାଠି ସାହାଯ୍ୟରେ ମାଟି ଖୋଳିଥାଏ ଓ ଏକ କାଷ୍ଠଦଣ୍ଡ ସାହାଯ୍ୟରେ ଦୂରସ୍ଥାନରେ ପହଞ୍ଚିବାକୁ ଯତ୍ନ କରିଥାଏ । ଗୁମ୍ଫା ଭିତରେ ରହିଥିବା ଜଣେ ସନ୍ନ୍ୟାସୀ ହୁଏତ ସମାଜଠାରୁ ଦୂରରେ ଥାଏ ତଥାପି କେତେକ ଉପକରଣ ପାତ୍ର ଓ ଏପରିକି କେତେକ ହାତ ହତିଆର ଦୈନନ୍ଦିନ ଜୀବନରେ ବ୍ୟବହାର କରିଥାଏ । ଯନ୍ତ୍ରର ବ୍ୟବହାର ମଣିଷ ଜୀବନର ଅଙ୍ଗବିଶେଷ ହୋଇ ରହିଛି । ଏପରିକି ଆଧୁନିକ ଯାନ୍ତ୍ରିକବିଦ୍ୟାର ବିକାଶ ମଣିଷର ସାମର୍ଥ୍ୟକୁ ଅନେକ ବୃଦ୍ଧି କରିପାରିଛି । ଫଳରେ ଚନ୍ଦ୍ରପୃଷ୍ଠକୁ ବୁଲିଯିବା, ସବୁଦିନ ପାଇଁ ନିଜର ଯୁବକତ୍ୱକୁ ରକ୍ଷାକରିବା ଓ ମୃତ୍ୟୁକୁ ଜୟ କରିବା ପାଇଁ ମଣିଷ ଚିନ୍ତା କରିପାରୁଛି ।

ଯାନ୍ତ୍ରିକଶିଳ୍ପରେ ରହିଥିବା ସମ୍ଭାବନା ସାହାଯ୍ୟରେ ମଣିଷର ଜୀବନକୁ ଅଧିକ ନିରାପଦ ଓ ଅଧିକ ସୁଖପ୍ରଦ କରାଯାଇ ପାରିଥାନ୍ତା । କିନ୍ତୁ ବିରାଟକାୟ ଯନ୍ତ୍ରର ବିକାଶ ଦ୍ୱାରା ଜନଗଣଙ୍କ ଭିତରେ ବେକାର ସମସ୍ୟା ଉତ୍କଟ ହେବାରେ ଲାଗିଛି । ଅବଶ୍ୟ କେତେକ ସମାଜବାଦୀ ଏକଛତ୍ରବାଦ ବ୍ୟବସ୍ଥାରେ ଏହାର ବ୍ୟତିକ୍ରମ ଦେଖିବାକୁ ମିଳେ । ଇଉରୋପରେ ଘଟିଥିବା ଶିଳ୍ପ ବିପ୍ଳବ ଓ ସାମ୍ପ୍ରତିକ ଶିଳ୍ପୋନ୍ନତ ଅବସ୍ଥା ଏସିଆ ଓ ଆଫ୍ରିକାର ଅଗଣିତ ଜନଗଣଙ୍କୁ ବେକାର କରିଛି ।

ଆଣବିକ ଅସ୍ତ୍ରର ଉତ୍ପାଦନ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ହାତମୁଠାକୁ ଟାଣି କରିଛି ଓ ଏହା ଅନ୍ୟଦେଶରେ ସ୍ୱାଧୀନତା ଆନ୍ଦୋଳନକୁ ଦବାଇ ଦେବାରେ ସହାୟକ ହୋଇଛି । ସୁତରାଂ ସାମ୍ପ୍ରତିକ ସମୟରେ ହୋଇଥିବା ଯାନ୍ତ୍ରିକ ଶିଳ୍ପର ବିକାଶ ମଣିଷଜାତିର ପ୍ରଗତି ପଥରେ ଅନ୍ତରାୟ ହୋଇଛି । ଆସ୍ତିକତାବାଦୀ ସଭ୍ୟତାର ବିକାଶ ଯୋଗୁଁ ପ୍ରଯୁକ୍ତିବିଦ୍ ମାନେ ନିରପେକ୍ଷ ଓ ସମୟେ ସମୟେ ଅନୈତିକ ହୋଇଛନ୍ତି । ପୁଞ୍ଜିପତି ଓ ସାମ୍ରାଜ୍ୟବାଦୀମାନଙ୍କୁ ପ୍ରଯୁକ୍ତିବିଦ୍ୟା ଓ ନୂତନ ଜ୍ଞାନ-କୌଶଳ ଯୋଗାଇ ଦେଇ ସେମାନେ ବ୍ୟକ୍ତିଗତ ସ୍ୱାର୍ଥ ହାସଲ କରିଛନ୍ତି । ମଣିଷ ଜାତିର ଆଶା ଆକାଂକ୍ଷାକୁ ନଷ୍ଟକରି ସାମ୍ରାଜ୍ୟବାଦୀ ଯୁଦ୍ଧ, ଜାତିଗତ ପାର୍ଥକ୍ୟ ଓ ସାମ୍ପ୍ରଦାୟିକ ଭୁଲ୍‌ବୁଝାମଣା ଇତ୍ୟାଦିକୁ ସେମାନେ ସୃଷ୍ଟି କରିଛନ୍ତି । ନିଜ ପାଖରୁ ଯୋଜନ ଯୋଜନ ଦୂରରେ ଥିବା ଗ୍ରହମାନଙ୍କରେ ଜଳବାୟୁ ଓ ସୀମାରେଖାକୁ ଜାଣିବା ପାଇଁ ସେମାନେ ଆଗ୍ରହୀ ହୋଇଛନ୍ତି ସତ; କିନ୍ତୁ ନିଜ ପଡ଼ୋଶୀର ସୁଖଦୁଃଖରେ ସମଭାଗୀ ହୋଇନାହାନ୍ତି ।

ଏହି ଦୁଃଖଦାୟକ ପରିସ୍ଥିତି ବେଳେ ପ୍ରଯୁକ୍ତିବିଦ୍ୟା ସହିତ ନୈତିକ ଦୃଷ୍ଟିଭଙ୍ଗୀର ସମନ୍ୱୟ କରିବା ନାସ୍ତିକବାଦର ଆଭିମୁଖ୍ୟ ଅଟେ । ନୈତିକ ବିଚାରର ଅଗ୍ରଗତି ଦ୍ୱାରା ପ୍ରଯୁକ୍ତିବିଦ୍ୟାର ବିକାଶ ପୃଷ୍ଠଭୂମିରେ ସାମାଜିକ ପ୍ରଗତି ତ୍ୱରାନ୍ୱିତ ହୋଇପାରିବ ।

ଏକ ବିରାଟ ଯନ୍ତ୍ରର ପ୍ରସ୍ତୁତି ଯାନ୍ତ୍ରିକ କଳାର ଏକ ସଫଳ ଅଗ୍ରଗତିକୁ ସୂଚାଇଥାଏ । ଜଣେ ଶ୍ରମିକ ସାଧାରଣ ହାତ ହତିଆର ସାହାଯ୍ୟରେ ଯେତିକି ଉତ୍ପାଦନ କରିପାରେ ଏକ ବିଶାଳକାୟ ଯନ୍ତ୍ର ସାହାଯ୍ୟରେ ତା'ର ବହୁଗୁଣ ଜିନିଷ ତିଆରି କରିପାରେ । ଯନ୍ତ୍ରଶିଳ୍ପ ମାନଦଣ୍ଡରୁ ଏହା ହୁଏତ ଏକ ସଫଳତା ହୋଇପାରେ କିନ୍ତୁ ସାମାଜିକ ଦୃଷ୍ଟିକୋଣରୁ ବିଚାର କଲେ ସମାଜର ଶତକଡ଼ା ଅନେଶ୍ୱତ ଭାଗ ଲୋକ ଏହାଦ୍ୱାରା କର୍ମଶୂନ୍ୟ ହୋଇପଡ଼ନ୍ତି । ଫଳରେ ଶିଳ୍ପ ପରିଚାଳକଙ୍କର ଦାନ ଉପରେ କିମ୍ବା ଜଣେ ଏକଛତ୍ରବାଦୀ ଶାସକ ଉପରେ ନିର୍ଭର କରନ୍ତି । ସୁତରାଂ ବିଶାଳ ଯନ୍ତ୍ରଗୁଡ଼ିକ ବେକାରି ସୃଷ୍ଟି କରିବା ସହ ପୁଞ୍ଜିବାଦ ବା ସମାଜବାଦୀ ଏକଛତ୍ରବାଦ ସୃଷ୍ଟି କରିଥାଆନ୍ତି । ଏପରିକି ସୁଷମ ବଣ୍ଟନର ବ୍ୟବସ୍ଥା କରାଗଲେ ବି ବୃହଦାକାର ଯନ୍ତ୍ରଗୁଡ଼ିକ କେତେକ ଆନୁଷଙ୍ଗିକ ସମସ୍ୟା ଯଥା ଅବକାଶ ଅବସର ସୁବିଧାସୁଯୋଗ ସୃଷ୍ଟି କରିଥାନ୍ତି । ମୁଷ୍ଟିମେୟ ବ୍ୟକ୍ତିଙ୍କର ପରିଶ୍ରମର ଫଳକୁ ବହୁ ଆଳସ୍ୟ ବ୍ୟକ୍ତି ଉପଭୋଗ କରନ୍ତି ।

ଯଦି ବି କ୍ଲବ ଜୀବନ କିମ୍ବା ସାହିତ୍ୟିକ ଅନୁସନ୍ଧିତ୍ସା ପରି କେତେକ କାର୍ଯ୍ୟ ଆଳସ୍ୟ ବ୍ୟକ୍ତିଙ୍କ ପାଇଁ ସୃଷ୍ଟି କରାଯାଏ ତଥାପି ମଧ୍ୟ ଏହା ସୃଜନାତ୍ମକ ପରିଶ୍ରମଠାରୁ

ପୃଥକ୍ ହେବ । କେତେକାଂଶରେ ଅନ୍ୟ କାର୍ଯ୍ୟଟି ସମାଜ ପାଇଁ ଉପଯୋଗୀ ହେଲେ ମଧ୍ୟ ତଥାପି ସମାଜର ବିଭିନ୍ନ ଶ୍ରେଣୀର ଲୋକମାନଙ୍କ ପାଇଁ ବିଭିନ୍ନ କର୍ମର ବ୍ୟବସ୍ଥା ରହିବ । କର୍ମରେ ପାର୍ଥକ୍ୟ ଯୋଗୁଁ ଶ୍ରମ ବିଭାଜନ ଘଟିବ ।

ଶ୍ରମ ବିଭାଜନ ନିୟମ ଉପରେ ଆଧାରିତ ସାମାଜିକ ସଙ୍ଗଠନଗୁଡ଼ିକ ଏକ ମହୁଫେଣା ସୃଷ୍ଟି କ୍ଷେତ୍ରରେ ମହୁମାଛିମାନଙ୍କର ସହଯୋଗ ଭଳି ସାମାଜିକ ସ୍ତରରେ କାର୍ଯ୍ୟ କରିବ । ରାଣୀ, ପୁଂ ଓ ଶ୍ରମିକ ମହୁମାଛିମାନଙ୍କ ମଧ୍ୟରେ ଗଠନଜନିତ ପ୍ରଭେଦ ରହିଥିଲେ ବି ସେମାନେ ସମ୍ମିଳିତ ଭାବେ ନିଜର କାର୍ଯ୍ୟ ସମ୍ପାଦନ କରିଥାନ୍ତି । କିନ୍ତୁ ମଣିଷମାନଙ୍କ ଭିତରେ କୌଣସି ଗଠନଜନିତ ବୈଷମ୍ୟ ନଥିବାରୁ ସେମାନେ ଏକା ପ୍ରକାରର ହୋଇଥାଆନ୍ତି । ଧର୍ମଗତ ବିଶ୍ୱାସ ବା ରାଜନୈତିକ ଏକଛତ୍ରବାଦ ଦ୍ୱାରା ସେମାନଙ୍କ ଭିତରେ ଶ୍ରମ ବିଭାଜନ ସୃଷ୍ଟି ନକଲେ ଏହା ହୋଇପାରେ ନାହିଁ । ଶ୍ରମ ବିଭାଜନର ଉପଯୋଗିତା ଥିଲେ ବି ଏହା ଅସ୍ଥାୟୀ ଅଟେ ।

ହିନ୍ଦୁ ସମାଜର ଜାତି ବ୍ୟବସ୍ଥା ଶ୍ରମ ବିଭାଜନ କ୍ଷେତ୍ରରେ ଏକ ବିରାଟ ପରୀକ୍ଷା କହିଲେ ଅତ୍ୟୁକ୍ତି ହେବନାହିଁ । କର୍ମଫଳରେ ବିଶ୍ୱାସ ଯୋଗୁଁ ଏହି ବ୍ୟବସ୍ଥା ସୁଦୃଢ଼ ହୋଇଛି । ହିନ୍ଦୁମାନେ ବିଶ୍ୱାସ କରନ୍ତି ଯେ, ଜଣେ କେଉଁ ଜାତିରେ ଜନ୍ମ ହେବ ଓ କେଉଁ କାର୍ଯ୍ୟ କରିବ ଏହା ପୂର୍ବ କର୍ମଫଳ ନେଇ ନିର୍ଦ୍ଧାରିତ ହୋଇଥାଏ । ଏ ଜନ୍ମରେ ଭଲ କାର୍ଯ୍ୟ କରିବା ଦ୍ୱାରା ଜଣେ ପରଜନ୍ମରେ ଉଚ୍ଚଜାତିକୁ ଯାଇ-ପାରିବ । ଧର୍ମଗତ ବିଶ୍ୱାସ ନେଇ ଜାତିଗତ ବ୍ୟବସ୍ଥା ଆସ୍ତେ ଆସ୍ତେ ଅନମନୀୟ ହେବା ସହିତ ପରିଣାମତଃ ସମାଜର କ୍ଷତିସାଧନ କଲା । ଗଣତାନ୍ତ୍ରିକ ବିଚାରର ଆସିବାଦ୍ୱାରା ବ୍ୟକ୍ତିମାନଙ୍କର ରାଜନୈତିକ ଅଧିକାର ଓ ବ୍ୟକ୍ତି ସ୍ୱାଧୀନତାର ବିକାଶ ହେବାରୁ ଜାତିଗତ ଅନମନୀୟ ବ୍ୟବସ୍ଥାରେ ପରିବର୍ତ୍ତନ ପରିଲକ୍ଷିତ ହେଲା । ସମ୍ପ୍ରତି ଜାତିପ୍ରଥା ହିନ୍ଦୁମାନଙ୍କର ସାମାଜିକ ବିକାଶ କ୍ଷେତ୍ରରେ ଅନ୍ତରାୟ ହୋଇ ରହିଛି । ସମଗ୍ର ମଣିଷ ଜାତିର ଐକ୍ୟଧାରାରେ ସେମାନେ ଜାତିଗତ ସଙ୍କୀର୍ଣ୍ଣତା ଯୋଗୁଁ ସାମିଲ ହୋଇପାରୁ ନାହାନ୍ତି । ଫଳରେ ସମତା ପ୍ରତିଷ୍ଠା କ୍ଷେତ୍ରରେ ବା ସାମାଜିକ ସମ୍ପର୍କ ସ୍ଥାପନ କ୍ଷେତ୍ରରେ ଶ୍ରମ ବିଭାଜନ ସହାୟକ ହୁଏନାହିଁ । ସୁତରାଂ ମଣିଷମାନଙ୍କ ଭିତରେ ନିଜକୁ ସ୍ୱାଧୀନ ଓ ସମାନ ମଣୁଥିବା ବ୍ୟକ୍ତିମାନେ ପରସ୍ପର ସହଯୋଗରେ ସାମାଜିକ ସଙ୍ଗଠନର ବିକାଶ କରାଇପାରିବେ । ଫଳରେ ପ୍ରଯୁକ୍ତିବିଦ୍ୟା ଲୋକ-ମାନଙ୍କର ସହଯୋଗ ଉପରେ ନିର୍ଭରଶୀଳ ହେବା ଆବଶ୍ୟକ ।

ଏହି ନୂତନ ପ୍ରଯୁକ୍ତିବିଦ୍ୟାକୁ ନାସ୍ତିକବାଦୀ ପ୍ରଯୁକ୍ତିବିଦ୍ୟା କୁହାଯାଇପାରେ । ନାସ୍ତିକବାଦୀ ପ୍ରଯୁକ୍ତିବିଦ୍ୟା ବିକେନ୍ଦ୍ରୀକରଣ ବ୍ୟବସ୍ଥାକୁ ଗ୍ରହଣ କରିଥାଏ ।

କେତେକ ବଡ଼ ବଡ଼ ଯନ୍ତ୍ରଶିଳ୍ପ ଅପେକ୍ଷା ଏହା କ୍ଷୁଦ୍ରଶିଳ୍ପ ଉପରେ ଗୁରୁତ୍ୱ ଦେଇଥାଏ । ଅବଶ୍ୟ ଖଣିରୁ ଉତ୍ତୋଳନ ଧାତୁବିଜ୍ଞାନ ଇତ୍ୟାଦି କ୍ଷେତ୍ରରେ ବଡ଼ ଯନ୍ତ୍ରର ସାହାଯ୍ୟ ନେବାକୁ ହୁଏ । ବ୍ୟକ୍ତିର ବା ଗୋଟିଏ କ୍ଷୁଦ୍ର ଗୋଷ୍ଠୀର ଆବଶ୍ୟକତା ପୂରଣ ପାଇଁ ଓ ସୁଖପୂର୍ଣ୍ଣ ସହାବସ୍ଥାନ ପାଇଁ କ୍ଷୁଦ୍ରଯନ୍ତ୍ର ସାହାଯ୍ୟରେ ଉତ୍ପାଦନ ଯଥେଷ୍ଟ ହୋଇପାରେ । ଖାଦ୍ୟ, ବାସସ୍ଥାନ, ପୋଷାକ, ସ୍ୱାସ୍ଥ୍ୟ, ଶିକ୍ଷା ଓ ଆମୋଦପ୍ରମୋଦ ପାଇଁ କ୍ଷୁଦ୍ରଯନ୍ତ୍ର ସାହାଯ୍ୟରେ ଉତ୍ପାଦନ ସମ୍ଭବପର ଅଟେ । ଏହା ସହିତ ଆତ୍ମନିର୍ଭରଶୀଳତା ପାଇଁ କ୍ଷୁଦ୍ରଯନ୍ତ୍ର ଓ କୁଟୀରଶିଳ୍ପର ଆବଶ୍ୟକତା ଥାଏ । ଶ୍ରମ ବିଭାଜନ ଦ୍ୱାରା କେତେକ ବ୍ୟକ୍ତିଙ୍କର କୌଣସି କାର୍ଯ୍ୟ ଉପରେ ଥିବା ଏକଚାଟିଆ ଆଧିପତ୍ୟକୁ ଏହାଦ୍ୱାରା ପରିହାର କରାଯାଇପାରେ । ଅପରପକ୍ଷରେ ନୈରାଶ୍ୟବାଦୀ ପ୍ରଯୁକ୍ତିବିଦ୍ୟାରେ ଯେକୌଣସି ବ୍ୟକ୍ତି ଯେକୌଣସି କୌଶଳ ଉପରେ ନିଜର ଦକ୍ଷତା ଆଣିପାରେ । ବ୍ୟକ୍ତିର ସ୍ୱାଧୀନତା ଦ୍ୱାରା ସହଯୋଗର ସମ୍ଭାବନା ଆସିଥାଏ । କାହା ଉପରେ ନିର୍ଭରଶୀଳତା ଦ୍ୱାରା, ତାହା ଉତ୍ପାଦନ ସାଧନର ମାଲିକାନା ହେଉ ବା କୌଣସି ବୃତ୍ତି ଉପରେ ଆଧିପତ୍ୟ ହେଉ ଶୋଷଣ ପାଇଁ ସମ୍ଭାବନା ଥାଏ । ସୁତରାଂ ନୈରାଶ୍ୟବାଦୀ ପ୍ରଯୁକ୍ତିବିଦ୍ୟା କ୍ଷେତ୍ରରେ ଆତ୍ମନିର୍ଭରଶୀଳତା ଓ ବ୍ୟକ୍ତି ସ୍ୱାଧୀନତା ଉପରେ ପ୍ରାଧାନ୍ୟ ଦିଆଯାଏ । ଏହାଦ୍ୱାରା ବେକାରି ସମସ୍ୟା ଓ ଅର୍ଥନୈତିକ ଶୋଷଣକୁ ମଧ୍ୟ ପରିହାର କରାଯାଏ । ଏହା ସହିତ ଉପଯୋଗୀ ପୁଞ୍ଜିବାଦ ଓ ଏକଛତ୍ରବାଦୀ ସମାଜବାଦ ପରିବର୍ତ୍ତେ ଏହା ଗଣତାନ୍ତ୍ରିକ ସହଯୋଗିତାକୁ ପ୍ରାଧାନ୍ୟ ଦିଏ ।

ଏକ ସମାଜବାଦୀ ରାଷ୍ଟ୍ରରେ ବୃହତ୍‌ଉତ୍କାଂକ୍ଷ ଯନ୍ତ୍ର ସାହାଯ୍ୟରେ ହୁଏତ ଉତ୍ପାଦନକୁ ବୃଦ୍ଧି କରାଯାଇ ସମବଣ୍ଟନ କ୍ଷେତ୍ରରେ ଲକ୍ଷ୍ୟ ଦିଆଯାଇପାରେ । କିନ୍ତୁ ଏହି ବ୍ୟବସ୍ଥାରେ ଉତ୍ପାଦନ କରୁଥିବା ସଂସ୍ଥା ଓ ସରକାରୀ କଳ ସାହାଯ୍ୟରେ ସମବଣ୍ଟନ କରୁଥିବା ଅନୁଷ୍ଠାନ ମଧ୍ୟରେ ଯଥେଷ୍ଟ ଦୂରତା ରହିଥାଏ । ଏହି ସରକାରୀ ବ୍ୟବସ୍ଥାରେ ସମବଣ୍ଟନ ପାଇଁ ଏକ ଏକଛତ୍ରବାଦୀ ଶାସନ ବ୍ୟବସ୍ଥା ମୁଣ୍ଡ ଟେକେ । ଏପରିକି ଉତ୍ପାଦନର ସାଧନ ଉପରେ ସରକାରୀ ମାଲିକାନା ଜାହିର କରାଯାଏ । ସରକାର କଳକାରଖାନା ଓ ଉତ୍ପାଦନକୁ ନିୟନ୍ତ୍ରଣ କରୁଥିଲେ ମଧ୍ୟ ଉତ୍ପାଦନ ଓ ବଣ୍ଟନ ଭିତରେ ଦୂରତା ରହିଥାଏ । ଦୁଇଟି କାର୍ଯ୍ୟ ପୃଥକ୍ ହେବାଦ୍ୱାରା ଅଧିକ ଗୁରୁତ୍ୱ ଥିବା ବ୍ୟବସ୍ଥାଟି ଅନ୍ୟ ଉପରେ ପ୍ରଭାବ ବିସ୍ତାର କରିଥାଏ ।

କିନ୍ତୁ ନୈରାଶ୍ୟବାଦୀ ବିକେନ୍ଦ୍ରୀକରଣ ବ୍ୟବସ୍ଥାରେ ଉତ୍ପାଦନ ପ୍ରକ୍ରିୟା ସହିତ ବଣ୍ଟନ ବ୍ୟବସ୍ଥା ସମ୍ମିଳିତ ହୋଇରହିଥାଏ । ବ୍ୟକ୍ତି ଯାହା ଆବଶ୍ୟକ କରେ ତାହା ଉତ୍ପାଦନ କରିଥାଏ । ଏ କ୍ଷେତ୍ରରେ ବ୍ୟକ୍ତିର ଆତ୍ମନିର୍ଭରଶୀଳତା ଓ

ସ୍ୱାଧୀନତା ଅକ୍ଷୁଣ୍ଣ ରହେ । ଅବଶ୍ୟ ମଣିଷ ଏକ ସାମାଜିକ ପ୍ରାଣୀ ହୋଇଥିବାରୁ ଗୋଟିଏ କ୍ଷୁଦ୍ରଗୋଷ୍ଠୀ ଭିତରେ ପାରସ୍ପରିକ ବିଶ୍ୱାସ, ସହଯୋଗ ଓ କେତେକ ଶ୍ରମବିଭାଜନ ରହିବା ସ୍ୱାଭାବିକ ମନେହୁଏ । ମୁଷ୍ଟିମେୟ ବ୍ୟକ୍ତି ଅନ୍ୟମାନଙ୍କ ପାଇଁ ଉତ୍ପାଦନ କରୁଥିବାବେଳେ ଅନ୍ୟମାନେ ଶିକ୍ଷା, ସ୍ୱାସ୍ଥ୍ୟ ଇତ୍ୟାଦି ବୃତ୍ତିରେ ନିୟୋଜିତ ଥାଇପାରନ୍ତି । ଅର୍ଥନୈତିକ ମାନଦଣ୍ଡରୁ ଶେଷୋକ୍ତ ବୃତ୍ତିଗୁଡ଼ିକ ଉତ୍ପାଦନ ସହିତ ସମ୍ପୃକ୍ତ ନହେଲେ ବି ସାମାଜିକ ଜୀବନ ପାଇଁ ଅପରିହାର୍ଯ୍ୟ ହୋଇଥାଏ । ଏହି ବୃତ୍ତିଗତ ବିଭାଜନ କୌଣସି ପ୍ରକାରର ଏକଛତ୍ରବାଦକୁ ପ୍ରଶ୍ରୟ ଦିଏନାହିଁ, ଯେହେତୁ ଏହା ପରସ୍ପରର ବ୍ୟକ୍ତିଗତ ସମ୍ପର୍କରେ ଆସୁଥିବା ଗୋଟିଏ କ୍ଷୁଦ୍ର ଗୋଷ୍ଠୀରେ ସୀମିତ ଥାଏ । ଅନ୍ୟଭାବରେ କହିଲେ ମୂଳ ଗୋଷ୍ଠୀମାନଙ୍କ ସହ ସାମାଜିକୀକରଣ ପ୍ରକ୍ରିୟା ଓ ବିକେନ୍ଦ୍ରୀଭୂତ ରାଜନୈତିକ ବ୍ୟବସ୍ଥା କ୍ଷତିକର ହେବା ପରିବର୍ତ୍ତେ ଯଥେଷ୍ଟ ଆବଶ୍ୟକ ହୋଇଥାଏ । ଏହାଦ୍ୱାରା ଶାସନବ୍ୟବସ୍ଥା ବିକେନ୍ଦ୍ରୀଭୂତ ହେବା ସହିତ ବ୍ୟକ୍ତିମାନଙ୍କର ନିଜସ୍ୱ ଅବବୋଧ ସହଯୋଗ ଓ ନିୟନ୍ତ୍ରଣ ଭିତରେ କାର୍ଯ୍ୟକାରୀ ହୁଏ । କିନ୍ତୁ ଏକ ଏକଛତ୍ରବାଦୀ ଓ କେନ୍ଦ୍ରୀଭୂତ ସମାଜବାଦୀ ଶାସନ ବ୍ୟବସ୍ଥା ଲୋକମାନଙ୍କର ନିୟନ୍ତ୍ରଣ ଭିତରେ ନଥାଏ । ଅବଶ୍ୟ ଏକଛତ୍ରବାଦୀ ସମାଜବାଦ ଓ ବିକେନ୍ଦ୍ରୀଭୂତ ପ୍ରତ୍ୟକ୍ଷ ଗଣତାନ୍ତ୍ରିକ ବ୍ୟବସ୍ଥା ଭିତରେ ଅର୍ଥନୈତିକ ସାମଞ୍ଜସ୍ୟ ଥାଏ । କିନ୍ତୁ ଉଭୟ ବ୍ୟବସ୍ଥାରେ ମଧ୍ୟ ପାର୍ଥକ୍ୟ ରହିଥାଏ । ପ୍ରଥମଟି ବ୍ୟକ୍ତି ସ୍ୱାଧୀନତାକୁ ସଙ୍କୁଚିତ କରି ଏକଛତ୍ରବାଦର ବିକାଶ କରାଉଥିବାବେଳେ ଦ୍ୱିତୀୟଟିରେ ଅର୍ଥନୈତିକ ସମତା ସହ ବ୍ୟକ୍ତି ସ୍ୱାଧୀନତା ସୁରକ୍ଷିତ ରହେ ।

ଅମଲାତାନ୍ତ୍ରିକ ଶାସନ ବ୍ୟବସ୍ଥାରେ ଯେପରି ଫାଇଲ୍ ଉପରେ ଗୁରୁତ୍ୱ ଦିଆଯାଏ ସେହିପରି ପ୍ରଯୁକ୍ତିବିଦ୍ୟା କ୍ଷେତ୍ରରେ ଯନ୍ତ୍ର ଉପରେ ପ୍ରାଧାନ୍ୟ ଦିଆଯାଏ । ସୁତରାଂ ଏ ପ୍ରତ୍ୟେକଟିରେ ବ୍ୟକ୍ତି ଗୌଣ ହୋଇଯାଏ । ଫାଇଲ୍ ଓ ଯନ୍ତ୍ରକୁ କ୍ଷୁଦ୍ରକରି ତାହା ଉପରେ ବ୍ୟକ୍ତିର ନିୟନ୍ତ୍ରଣ ନରହିଲେ ସେଗୁଡ଼ିକ ସାମାଜିକ ସମ୍ପର୍କକୁ ଶୁଷ୍କ ଓ ଅମାନବିକ କରିଥାଏ । ବୃହତ୍‌କାୟ କାରଖାନାମାନଙ୍କରେ ହେଉଥିବା ଶ୍ରମିକ ଆନ୍ଦୋଳନ ଓ ପରିଚାଳକଙ୍କ ତାଲା ବନ୍ଦ ଗୋଟିଏ ପୁଞ୍ଜିବାଦୀ ଅର୍ଥନୈତିକ ବ୍ୟବସ୍ଥାରେ ଦେଖାଯାଏ । ଏହା ଶ୍ରମିକମାନଙ୍କର ସ୍ୱାର୍ଥପ୍ରତି ଉଦାସୀନ ରହେ । ଏତଦ୍‌ବ୍ୟତୀତ ଆଣବିକ ଅସ୍ତ୍ରଶସ୍ତ୍ରର ଉତ୍ପାଦନ ବାୟୁମଣ୍ଡଳ ଓ ଜଳକୁ ପ୍ରଦୂଷଣ କରିଥାଏ । ବଡ଼ ବଡ଼ କଳକାରଖାନାରୁ ବାହାରୁଥିବା ବିଷାକ୍ତ ବାଷ୍ପ ଓ ନିର୍ଗତ ଆବର୍ଜନା ପରିବେଶକୁ ନଷ୍ଟ କରିଥାଏ । ଏଗୁଡ଼ିକ ଲୋକମାନଙ୍କର ସ୍ୱାସ୍ଥ୍ୟ ଓ ନିରାପତ୍ତା ପ୍ରତି ଉଦାସୀନ ରହିଥାନ୍ତି । ଶସ୍ୟ ଉତ୍ପାଦନ କ୍ଷେତ୍ରରେ ବହୁଳ ପ୍ରୟୋଗ ହେଉଥିବା ରାସାୟନିକ ସାରର ବ୍ୟବହାର ଦ୍ୱାରା ଉପଭୋକ୍ତା ଗୋଷ୍ଠୀର ସ୍ୱାସ୍ଥ୍ୟ ଉପରେ ପ୍ରଭାବ ନେଇ ଗୁରୁତ୍ୱ ଦିଆଯାଏ ନାହିଁ । ସେହିପରି କୋଇଲା,

ଖଣିଜ ସମ୍ପଦ ଓ ପେଟ୍ରୋଲ ଆଦିର ଯେପରି ବହୁଳ ବ୍ୟବହାର କରାଯାଇ ଆଗାମୀ ବଂଶଧରମାନଙ୍କ ପ୍ରତି ବିପଦ ସୃଷ୍ଟି କରାଯାଉଛି, ଏକ ବିକେନ୍ଦ୍ରୀଭୂତ ପ୍ରଯୁକ୍ତିବିଦ୍ୟା ଦ୍ୱାରା ଏସବୁ ପ୍ରଭାବକୁ ପରିହାର କରାଯାଇପାରିବ । କେବଳ କ୍ଷୁଦ୍ର ବା କୁଟୀରଶିଳ୍ପ ଦ୍ୱାରା ମଣିଷ ମଣିଷ ଭିତରେ ସମ୍ପର୍କ ଅତୁଟ ରହିବ । ଅଧିକନ୍ତୁ ଏକ ବିକେନ୍ଦ୍ରୀଭୂତ ପ୍ରଯୁକ୍ତିବିଦ୍ୟା ଓ ହସ୍ତଶିଳ୍ପ ଦ୍ୱାରା ଉତ୍ପାଦନର ପରିମାଣ ହ୍ରାସ ହେବନାହିଁ । ଯେପରି ଏକ ସହସ୍ର ବର୍ତ୍ତିର ଅଗ୍ନିଶିଖା ଏକ ଏକଶହ ଶକ୍ତିବିଶିଷ୍ଟ ବଲ୍‌ବର ଆଲୋକଠାରୁ ଉଜ୍ଜ୍ୱଳତର ହେବ ସେହିପରି ଅନେକ କ୍ଷୁଦ୍ର କ୍ଷୁଦ୍ର ଯନ୍ତ୍ରର ଉତ୍ପାଦନ କେତୋଟି ବୃହଦାକାର ଯନ୍ତ୍ରର ଉତ୍ପାଦନଠାରୁ ଅଧିକ ହେବ ।

ଏକ ସୁଖକର ଜୀବନ ପାଇଁ ଆବଶ୍ୟକ ହେଉଥିବା ବସ୍ତୁମାନଙ୍କର ଉତ୍ପାଦନକୁ ବିକେନ୍ଦ୍ରୀକରଣ ଓ ହସ୍ତଶିଳ୍ପ ବ୍ୟବସ୍ଥା ହ୍ରାସ କରିବ ନାହିଁ । ଅପରପକ୍ଷରେ ସମସ୍ତ ବ୍ୟକ୍ତିମାନଙ୍କ ମଧ୍ୟରେ ସୁଖକର ସାମଗ୍ରୀର ସମବଣ୍ଟନ ସମ୍ଭବ ହେବ । ପ୍ରତ୍ୟେକ ବ୍ୟକ୍ତିକୁ ସ୍ୱାଚ୍ଛନ୍ଦ୍ୟ ମିଳିପାରୁଥିଲେ ଏହାର ଉତ୍ପାଦନକୁ ସୀମାହୀନ ଭାବରେ ବୃଦ୍ଧି କରାଯିବାରେ ଅସୁବିଧା ନାହିଁ ।

ଏକ ନିରୀଶ୍ୱରବାଦୀ ଦୃଷ୍ଟିଭଙ୍ଗୀର ବିକାଶ ଦ୍ୱାରା ତଦାଶ୍ରୟୀ ପ୍ରଯୁକ୍ତିବିଦ୍ୟାର ବିକାଶସାଧନ ହୋଇପାରିବ । ଲୋକମାନେ ନିଜକୁ ମୁକ୍ତ ଓ ସମାନ ବୋଲି ଅନୁଭବ କରିବାଦ୍ୱାରା ସମାଜରେ ରହିଥିବା ଧନୀ-ଦରିଦ୍ର, ପ୍ରଭୁ-ଭୃତ୍ୟ, କୁଶଳୀ-ଅକୁଶଳୀ ଓ ବ୍ରାହ୍ମଣ-ଶୂଦ୍ର ପାର୍ଥକ୍ୟକୁ ପରିହାର କରାଯାଇପାରିବ । ଗଠନ ଓ ସାମର୍ଥ୍ୟ ଦୃଷ୍ଟିରୁ ସବୁ ମଣିଷ ସମାନ ଅଟନ୍ତି । ପ୍ରତିଭାବାନ୍ ଓ ବୁଦ୍ଧିମାନ ବ୍ୟକ୍ତିଙ୍କର ସଂଖ୍ୟା ଏତେ ଗୌଣ ଯେ ତାହା ସମତା ଉପରେ ଆଧାରିତ ସାମାଜିକ ସମ୍ବନ୍ଧରେ କୌଣସି ପରିବର୍ତ୍ତନ ସୃଷ୍ଟି କରିବ ନାହିଁ । ଅଲୌକିକତାବାଦୀ ବିଶ୍ୱାସ ଦ୍ୱାରା ଜନଗଣଙ୍କ ଭିତରେ ସୃଷ୍ଟି କରାଯାଇଥିବା ହୀନମନ୍ୟତାକୁ ନିରୀଶ୍ୱରବାଦୀ ଦୃଷ୍ଟିଭଙ୍ଗୀର ବିକାଶ ଦ୍ୱାରା ପରିହାର କରାଯାଇପାରିବ । ଏହା ସହିତ ନିରୀଶ୍ୱରବାଦୀ ଜୀବନଦୃଷ୍ଟି ଜନଗଣଙ୍କୁ ସମାନ ସୁବିଧା ଓ ସୁଯୋଗ ଦେଇ ସେମାନଙ୍କର ପ୍ରତିଭା ଓ ସୌନ୍ଦର୍ଯ୍ୟ-ବୋଧକୁ ବିକାଶ କରାଇବ ।

ସପ୍ତମ ପରିଚ୍ଛେଦ :

# ନିରୀଶ୍ୱରବାଦୀ ସୌନ୍ଦର୍ଯ୍ୟବୋଧ

ମଣିଷର କଳ୍ପନାର ସର୍ବୋତ୍ତମ ମୁକ୍ତ ପରିପ୍ରକାଶ ହେଉଛି ସୌନ୍ଦର୍ଯ୍ୟବୋଧ । ପ୍ରଣାଳୀବଦ୍ଧ ଜ୍ଞାନ ଓ ନୈତିକତାର ଆବଶ୍ୟକତା ଯୋଗୁଁ ଦର୍ଶନ, ଗଣିତଶାସ୍ତ୍ର, ପ୍ରାକୃତିକ ବିଜ୍ଞାନ, ଅର୍ଥନୀତି ଓ ପ୍ରଯୁକ୍ତିବିଦ୍ୟା କ୍ଷେତ୍ରରେ ମଣିଷର କଳ୍ପନା ବ୍ୟାହତ ହୋଇଥାଏ । କିନ୍ତୁ ସୌନ୍ଦର୍ଯ୍ୟବୋଧ କ୍ଷେତ୍ରରେ ମଣିଷର କଳ୍ପନା ସମ୍ପୂର୍ଣ୍ଣ ମୁକ୍ତଥାଇ ଏକ ମନୋହାରୀ ଭୂମିରେ ଲଳିତକଳା ସୃଷ୍ଟି କରିଥାଏ । ଚାରୁକଳାର ମୂଲ୍ୟାୟନରୁ ସୌନ୍ଦର୍ଯ୍ୟର ଭାବନା ଆସିଥାଏ ।

ଆଦର୍ଶ, ଯୋଜନା ଓ ଚିନ୍ତା କ୍ଷେତ୍ରରେ ମଣିଷ କଳ୍ପନାର ଅଭିବ୍ୟକ୍ତି ରହିଥାଏ । କିନ୍ତୁ ଏ କ୍ଷେତ୍ରରେ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଦିଗରେ ଏହା ଉଦ୍ଦିଷ୍ଟ ଥାଏ । ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଅଭାବରେ ସେମାନେ କେବଳ ନିଛକ କଳ୍ପନା ବା ଦିବା-ସ୍ୱପ୍ନରେ ପରିଣତ ହୁଅନ୍ତି ।

ବାସ୍ତବ ଜଗତଠାରୁ କାଳ୍ପନିକ ଜଗତକୁ ପୃଥକ୍ କରିବା ଦ୍ୱାରା ସୌନ୍ଦର୍ଯ୍ୟ-ବୋଧ ଉପଭୋଗ୍ୟ ଓ ସମୟରେ ବିପଜ୍ଜନକ ମଧ୍ୟ ହୋଇଥାଏ ।

ନୈତିକ କର୍ତ୍ତବ୍ୟବୋଧ ଓ ସତ୍ୟବାଦିତା ସହ ସମ୍ବନ୍ଧ ନଥିବା ଯୋଗୁଁ ସୌନ୍ଦର୍ଯ୍ୟବୋଧ କ୍ଷେତ୍ରରେ ବ୍ୟକ୍ତିର କଳ୍ପନା ବେପରୁଆ ଭାବରେ ଯେକୌଣସି ଭୂମିରେ ବିଚରଣ କରି ଆନନ୍ଦ ଅନୁଭବ କରିପାରେ । ଯୋଗୀମାନେ ଯେତେବେଳେ ନିରୋଳାରେ ବସି ଆଧ୍ୟାତ୍ମିକ ଆନନ୍ଦ ଲାଭ ଆଶାରେ ଧ୍ୟାନମଗ୍ନ ହୁଅନ୍ତି ସେତେବେଳେ ସେମାନେ ଅଧିକ ଆନନ୍ଦ ଅନୁଭବ କରନ୍ତି । କବି, କଳାକାର, ଶିଳ୍ପୀ, ସଙ୍ଗୀତଜ୍ଞ ଓ ନର୍ତ୍ତକୀମାନେ ଯୋଗୀମାନଙ୍କ ତୁଳନାରେ ଅଧିକ ସାମାଜିକ ହୋଇଥାନ୍ତି । ସେମାନେ ନିଜର ଆତ୍ମନିଷ୍ଠ ଅନୁଭୂତିକୁ ବସ୍ତୁନିଷ୍ଠ ଅଭିବ୍ୟକ୍ତି ଦେବାରେ ଅନ୍ୟମାନଙ୍କୁ ଆନନ୍ଦ ଦେଇଥାନ୍ତି । ଯାହାର ପରିପ୍ରକାଶ ଯେତେ ଅଧିକ ହୋଇଥାଏ, ତାହା ସେତିକି ଉନ୍ନତ ବୋଲି ବିବେଚିତ ହୁଏ । କିନ୍ତୁ ଏଥିର ଅଭିବ୍ୟକ୍ତି କ୍ଷେତ୍ରରେ କେତେକ ଅନ୍ତର୍ନିହିତ ପ୍ରତିବନ୍ଧକ ଥାଏ । ଆସ୍ତିକତାବାଦୀମାନେ ନୀରବ ଆଧ୍ୟାତ୍ମିକ

ଆନନ୍ଦକୁ ସଙ୍ଗୀତ ଓ ନୃତ୍ୟ ଅପେକ୍ଷା ଉଚ୍ଚତର ମୂଲ୍ୟ ଦେଇଥାନ୍ତି । ଅନନ୍ଦାନୁଭୂତି ବ୍ୟକ୍ତିଗତ ହେବାବେଳେ କଳା ସାମାଜିକ ହୋଇଥାଏ ।

'କଳା ସର୍ବଦା କଳାପାଇଁ' ଏହି ଉକ୍ତି ଠିକ୍ ନୁହେଁ । ଜଣେ ସଙ୍ଗୀତଜ୍ଞ ଗୀତ ଗାଇବାବେଳେ ନିଜେ ଆନନ୍ଦ ଅନୁଭବ କରିବା ସହିତ ଅନ୍ୟମାନଙ୍କୁ ଆନନ୍ଦ ଦେବାପାଇଁ ଉଦ୍ୟମ କରିଥାନ୍ତି । ସେହିପରି ଛବି ଅଙ୍କିବା, କବିତା ଲେଖିବା, ମୂର୍ତ୍ତି ନିର୍ମାଣ କରିବା ଓ ଅଭିନୟ ପ୍ରଦର୍ଶନ କରିବା କ୍ଷେତ୍ରରେ ଅନ୍ୟକୁ ଆନନ୍ଦ ଦେବା ଉଦ୍ଦେଶ୍ୟ ରହିଥାଏ । ଜଣେ କ୍ଷୁଧାର୍ତ୍ତ ବ୍ୟକ୍ତି ଗୋଟିଏ ଗୀତସ୍ୱର ଶୁଣିବାକୁ ବା ଏକ ମନ୍ଦିରର ସୌନ୍ଦର୍ଯ୍ୟ ଦେଖିବାକୁ ରହିବା ଦ୍ୱାରା ତା'ର କ୍ଷୁଧା ଉପଶମ ହୋଇ ନଥାଏ, କିନ୍ତୁ ଏଥିରୁ ମଣିଷର ସୌନ୍ଦର୍ଯ୍ୟ ଉପଭୋଗ କରିବାର ଆକାଂକ୍ଷା ପ୍ରତିଫଳିତ ହୋଇଥାଏ । ସୁତରାଂ କଳାର ସୌନ୍ଦର୍ଯ୍ୟ ବ୍ୟକ୍ତିଗତ ହେବା ପରିବର୍ତ୍ତେ ଅଧିକ ସାର୍ବିକ ହୋଇଥାଏ ।

ଜୀବନର ନିଚ୍ଛକ ବାସ୍ତବତାଠାରୁ ଦୂରେଇଯାଇ ସୌନ୍ଦର୍ଯ୍ୟବୋଧର ଆନନ୍ଦାନୁଭୂତି ଲାଭ କରିବା କ୍ଷେତ୍ରରେ ରହିଥିବା ସ୍ୱାଧୀନତା ସମସ୍ତରେ ବିପଜ୍ଜନକ ପରିଣତି ସୃଷ୍ଟି କରିଥାଏ । ଏହା ଲୋକମାନଙ୍କୁ ବସ୍ତୁଗତ ଉତ୍ପାଦନଠାରୁ ଦୂରେଇ ନେଇଥାଏ । ଏକ ବୈଷମ୍ୟପୂର୍ଣ୍ଣ ସାମାଜିକ ବ୍ୟବସ୍ଥାରେ ଧନୀବ୍ୟକ୍ତିମାନେ ଗରିବ-ମାନଙ୍କର ଶ୍ରମ ଉପରେ ଜୀବନଧାରଣ କରି ଲଳିତ କଳା ଉପଭୋଗରେ ମଜ୍ଜି ରହି ପାରନ୍ତି । କୃଷକର ଶ୍ରମାର୍ଜିତ ଖାଦ୍ୟ ସେମାନେ ଖାଇ ନିଜର ଗୃହକୁ ସୌଖୀନ ବସ୍ତୁ ଓ ଫୁଲରେ ସଜାଇଥାନ୍ତି । ରୋମର ଅଭିଜାତ୍ୟ ଲୋକମାନେ କ୍ରୀଡ଼ାର ଆୟୋଜନ କରି ଯୋଦ୍ଧାମାନଙ୍କୁ ପ୍ରତ୍ୟକ୍ଷ ଯୁଦ୍ଧରେ ବ୍ୟାପୃତ କରାଇ ସେମାନଙ୍କର ମୃତ୍ୟୁକୁ ଉପଭୋଗ କରୁଥିଲେ । ପୁଞ୍ଜିବାଦୀ ଓ ସାମନ୍ତବାଦୀ ସଂସ୍କୃତିରେ ଲଳିତ-କଳାକୁ ଏକ ବୃତ୍ତିରେ ପରିଣତ କରାଯିବା ଦେଖାଯାଏ । କଳାକାରମାନେ ନିଜକୁ ସନ୍ତୁଷ୍ଟ କରିବା ପରିବର୍ତ୍ତେ ଅନ୍ୟମାନଙ୍କୁ ଆନନ୍ଦ ଦେବାପାଇଁ ରହିଥାନ୍ତି । ଜୀବନର ଆବଶ୍ୟକତା ଅପେକ୍ଷା କଳା ଦ୍ୱାରା ସୌନ୍ଦର୍ଯ୍ୟଲାଭ ପ୍ରାଧାନ୍ୟ ନେଇଥାଏ । ମଣିଷର ସୌନ୍ଦର୍ଯ୍ୟବୋଧ ଶେଷରେ ଦୈହିକ ଉପଭୋଗ ସ୍ତରରେ ସୀମିତ ରହିଯାଏ । ସାଧାରଣ ଓ ଅସହାୟ ମଣିଷ ଅନ୍ୟମାନଙ୍କର ବିଳାସରେ ମ୍ରିୟମାଣ ହୋଇଥାଏ ମଣିଷର ବିକାଶକୁ ନ୍ୟୂନ କରି କଳାର ବିକାଶକୁ ପ୍ରାଧାନ୍ୟ ଦିଆଯାଏ । ରୋମୀୟ କଳା, ଫରାସୀ ବିଶ୍ୱବିଦ୍ୟାଳୟ ଓ ମୋଗଲ ବିଳାସର ଅହେତୁକ ଅଗ୍ରଗତି ଶେଷରେ ନିଜେ ନିଜର ବିନାଶ ପାଇଁ ଦାୟୀ ହୋଇଛି ।

ସମତା ଓ ନୈତିକତା ପ୍ରତି ଅଙ୍ଗୀକାର ଥିବା ନାସ୍ତିକତାବାଦ ଅପର ପକ୍ଷରେ ସୌନ୍ଦର୍ଯ୍ୟବୋଧକୁ ଜୀବନ କ୍ଷେତ୍ରରେ ଯଥାର୍ଥ ମୂଲ୍ୟ ପ୍ରଦାନ କରିଥାଏ ।

ମଣିଷର ଖାଦ୍ୟର ସୁବିଧା ପରେ କଳାର ଆବଶ୍ୟକତାକୁ ଗ୍ରହଣ କରାଯାଇପାରେ । ବ୍ୟକ୍ତିମାନଙ୍କ ଭିତରେ ଥିବା କଳାତ୍ମକ ପ୍ରତିଭା କ୍ଷେତ୍ରରେ ପାର୍ଥକ୍ୟ ସୁସ୍ଥ ଜୀବନ ଧାରଣ ପାଇଁ ସମାନ ସୁବିଧା ସୁଯୋଗ କ୍ଷେତ୍ରରେ ଅନ୍ତରାୟ ହୁଏ ନାହିଁ । ଅର୍ଥାତ୍ କଳାତ୍ମକ ପ୍ରତିଭା କ୍ଷେତ୍ରରେ ଥିବା ପାର୍ଥକ୍ୟ ଭିତ୍ତିରେ ସାମାଜିକ ବୈଷମ୍ୟକୁ ସ୍ୱୀକୃତି ଦିଆଯାଇ ପାରିବ ନାହିଁ । କିନ୍ତୁ କେତେକ ସ୍ୱାର୍ଥାନ୍ୱେଷୀ ବ୍ୟକ୍ତି ନିଜର ବିଳାସକୁ ଯଥାର୍ଥ ବୋଲି ଗ୍ରହଣ କରିବାକୁ ଯାଇ କଳାର ଆଶ୍ରୟ ନେଇଥାନ୍ତି ଓ ପରିଣାମତଃ ଅଗଣିତ ଜନତାଙ୍କୁ ନିଜର ଉପଭୋଗ ପାଇଁ ଶରୀର-ଶ୍ରମରେ ନିୟୋଜିତ କରିଥାନ୍ତି । ଏଣୁ ଅର୍ଥନୈତିକ ସମତା କଳାତ୍ମକ ଅଭିବ୍ୟକ୍ତି ଅପେକ୍ଷା ପ୍ରାଧାନ୍ୟ ଲାଭ କରିବା ଉଚିତ ।

ଆମ ବାସ୍ତବ ଜୀବନର କାର୍ଯ୍ୟଠାରୁ ଆମର ଆନନ୍ଦାନୁଭୂତିକୁ ପୃଥକ୍ କରିବା ଉଚିତ ନୁହେଁ । ଜୀବନର କେତେକ ମୁହୂର୍ତ୍ତିକୁ ଅତିଶଯ୍ୟ ଆନନ୍ଦ ଓ ଅନ୍ୟ ମୁହୂର୍ତ୍ତିକୁ ଦାରୁଣ ବିଷାଦ ଭାବରେ ନ ନେଇ ସମଗ୍ର ଜୀବନକୁ ନିରବଚ୍ଛିନ୍ନ ସୁଖାନୁଭୂତି ଭାବରେ ଗ୍ରହଣ କରିବା ଆବଶ୍ୟକ । ବ୍ୟକ୍ତି ନିଜ ଜୀବନର ପ୍ରତ୍ୟେକଟି କାର୍ଯ୍ୟକୁ ସୁନ୍ଦର ଭାବରେ କରିବା ପାଇଁ ଶିକ୍ଷା କରିପାରିବ । ଆମର ପୋଷାକ-ପରିଚ୍ଛଦ, ଆଚାର-ବ୍ୟବହାର, କଥାବାର୍ତ୍ତା, ବାସଗୃହ ଇତ୍ୟାଦି ପ୍ରତ୍ୟେକଟିକୁ ସୁନ୍ଦର କରାଯାଇ ପାରିବ । ଖେଳଠାରୁ କାର୍ଯ୍ୟକୁ ଓ କଳକାରଖାନାଠାରୁ କ୍ଲବକୁ ପୃଥକ୍ କରିବା ଦ୍ୱାରା ଆମର ଜୀବନ ବିଖଣ୍ଡିତ ହେବା ସହିତ ବିଷାଦଗ୍ରସ୍ତ ହୋଇଥାଏ । ତାଜମହଲ ଓ ତାର ଚତୁଃପାର୍ଶ୍ୱରେ ଥିବା ଅପରିଚ୍ଛନ୍ନ ବସ୍ତି, ଜୀବନର କଳାତ୍ମକ ଅଭିବ୍ୟକ୍ତି ପ୍ରକାଶ କରିବା ପରିବର୍ତ୍ତେ ଏକ ସାମନ୍ତବାଦୀ ସଂସ୍କୃତିକୁ ସୂଚାଇଥାଏ । ଅପର ପକ୍ଷରେ ନିରୀଶ୍ୱରବାଦୀ ସୌନ୍ଦର୍ଯ୍ୟବୋଧ ଆମ ଜୀବନର ପ୍ରତ୍ୟେକଟି ମୁହୂର୍ତ୍ତିକୁ ସୁନ୍ଦର କରିଥାଏ ।

ଆସ୍ତିକତାବାଦୀ ପର୍ବପର୍ବାଣି ଓ କ୍ରୀଡ଼ା ଶ୍ରମଠାରୁ କଳାର ପାର୍ଥକ୍ୟକୁ ସୂଚାଇଥାଏ । ପର୍ବପର୍ବାଣିରେ ଜନଗଣ ନିଜର କର୍ମକ୍ଳାନ୍ତ ଜୀବନରୁ ସାମୟିକ ଅବସର ପାଇଥାନ୍ତି । ପର୍ବପର୍ବାଣିରେ କିଛି ନୂତନ ଉତ୍ପାଦନ ପରିବର୍ତ୍ତେ ସେମାନେ ପରିଶ୍ରମ କରି ଯାହା ସଞ୍ଚୟ କରିଥାନ୍ତି ତାହା ବ୍ୟୟ କରନ୍ତି । ସେହିପରି କ୍ରୀଡ଼ାକୁ ମଧ୍ୟ ଏକ ଉତ୍ପାଦନହୀନ ଶ୍ରମ ବୋଲି କୁହାଯାଇପାରେ । ଗୋଟିଏ ପଥର ଚକରେ ଗହମକୁ ଅଟା କରିବାକୁ ଶ୍ରମ କୁହାଯିବା ବେଳେ କ୍ରୀଡ଼ାରେ ହୁଏତ ଏକ ବଡ଼ ପଥରକୁ ଟେକାଯାଉଥିଲେ ବି ଏହା ଶ୍ରମ ପଦବାଚ୍ୟ ନୁହେଁ । ଗୋଟିଏ ଫଳ ବଗିଚାର ଯତ୍ନ ନେବାକୁ ଶ୍ରମ କୁହାଯିବା ବେଳେ ଗୋଲାପ ବଗିଚାର ଯତ୍ନକୁ ଏକ ସୌଖୀନ କାର୍ଯ୍ୟ କୁହାଯିବ । ଅପର ପକ୍ଷରେ ନିରୀଶ୍ୱରବାଦୀ ସୌନ୍ଦର୍ଯ୍ୟବୋଧ ଉତ୍ପାଦନକୁ ଆନନ୍ଦ ଲାଭ ସହିତ ସଂଯୋଜିତ କରିଥାଏ ।

କୌତୁହଳର ବିଷୟ ମଣିଷର ଯୌନ ଆବେଗ କଳାତ୍ମକ ଅଭିବ୍ୟକ୍ତି ଉଦ୍ରେକ କରିଅଛି । ଯୌନ ବାସନାକୁ ବ୍ୟକ୍ତି ଓ ସ୍ଥାନ ଏବଂ ଭାବ ଓ ଅବସ୍ଥା ସହିତ ମିଶାଇ ସୁନ୍ଦର କଳାତ୍ମକ ଅଭିବ୍ୟକ୍ତି ମଧ୍ୟରେ ଚିତ୍ରଣ କରାଯାଇଛି । ଯୌନତୃପ୍ତିର ଆନନ୍ଦକୁ ପ୍ରକାଶ କରିବାକୁ ସଙ୍ଗୀତ, କବିତା, ନୃତ୍ୟ, ଚିତ୍ରକଳା ଓ ଭାସ୍କର୍ଯ୍ୟକୁ ମାଧ୍ୟମ କରାଯାଇଛି । କାବ୍ୟକବିତାରେ ଯୌନସମ୍ପର୍କକୁ ନେଇ ତ୍ୟାଗ ଓ ଗାରିମାର ମହାନ୍ ଆଦର୍ଶ ବ୍ୟକ୍ତ ହୋଇଛି ।

ବଂଶରକ୍ଷା ଓ ସୌନ୍ଦର୍ଯ୍ୟବୋଧଜନିତ ଆକାଂକ୍ଷାକୁ ନେଇ ପ୍ରାଚୀନ ଧର୍ମ ଧାରଣାରେ ଯୌନଇନ୍ଦ୍ରିୟକୁ ପୂଜା, ଉପାସନା ଓ ପ୍ରମୋଦୋତ୍ସବ ସହିତ ମିଶାଇବା ଦୃଷ୍ଟିଗୋଚର ହୁଏ । କିନ୍ତୁ ସଙ୍ଗଠିତ ଧର୍ମମାନଙ୍କରେ ଏକ ଭିନ୍ନ ଜଗତର ପରିକଳ୍ପନା କରାଯାଇ ଯୌନବାସନା ଓ ଅନ୍ୟାନ୍ୟ ଭୌତିକ ଭୋଗବିଳାସକୁ ଅବଜ୍ଞା କରାଯିବା ଦେଖାଯାଏ । ଧର୍ମଗତ ଶୃଙ୍ଖଳା ଭିତରେ ସଂସାର ପ୍ରତି ଏକ ବୈରାଗ୍ୟ ଭାବନା ସୃଷ୍ଟି ହେବାଦ୍ୱାରା ଯୌନସମ୍ପର୍କ କ୍ଷେତ୍ରରେ କଠୋର ନିୟମମାନ ଗ୍ରହଣ କରାଯାଇଛି । କିନ୍ତୁ ମଣିଷ କାମନାର ତୀବ୍ରତା ଯୋଗୁଁ ଏହାକୁ ପୁରା ଦମନ କରି ମଣିଷର ଆଶା ଆକାଂକ୍ଷାକୁ ଭିନ୍ନ ଜଗତ ପ୍ରତି ଆକୃଷ୍ଟ କରିବା ସମ୍ଭବ ହୁଏନାହିଁ । ପୂଜାରାଧନା ପୀଠକୁ ସୁନ୍ଦର ଓ ଆକର୍ଷଣୀୟ କରିବା ଓ ପର୍ବପର୍ବାଣିକୁ ଆନନ୍ଦ ଉଲ୍ଲାସରେ ପାଳନ କରିବା ଦ୍ୱାରା ମଣିଷର ଯୌନବାସନାକୁ ପରିହିତ କରାଯାଇ ପାରିନାହିଁ । ଧର୍ମଗତ ବିଶ୍ୱାସ ପ୍ରତି ସମ୍ମାନବୋଧକୁ ଯେତିକି କଠୋର କରାଯାଇଛି ଯୌନ ଉପଭୋଗ ପାଇଁ ସେତିକି ଗୋପନ ପନ୍ଥା ଗ୍ରହଣ କରାଯାଇଛି । ଜାରକର୍ମ, ଯୌନ ବ୍ୟଭିଚାର ଓ ସମଲିଙ୍ଗୀ ସମ୍ବନ୍ଧକୁ ଧର୍ମଗତ ବା ସାମାଜିକ ସ୍ୱୀକୃତି ଦିଆଯାଇ ନଥିଲେ ବି ସେସବୁ ଆସ୍ତିକତାବାଦୀ ସମାଜରେ ଗୁପ୍ତ ଭାବରେ ରହିଥିବା ଦେଖାଯାଏ ।

ଯୌନ ସମ୍ବନ୍ଧ କ୍ଷେତ୍ରରେ ଧର୍ମବିଶ୍ୱାସ ପ୍ରଭାବର ଦୁଇଟି ତାତ୍ପର୍ଯ୍ୟ ରହିଲା । ପ୍ରଥମତଃ ଏହା ପରିବାରକୁ ଏକ ଦୃଢ଼ ଅନୁଷ୍ଠାନରେ ପରିଣତ କଲା ଓ ଦ୍ୱିତୀୟରେ ଯୌନସମ୍ପର୍କ କ୍ଷେତ୍ରରେ ଗୁପ୍ତତାର ସୂତ୍ରପାତ କରାଇଲା ।

ଅବଶ୍ୟ ପରିବାର ଅର୍ଥନୈତିକ ଓ ସାମାଜିକ ଆବଶ୍ୟକତା ଦୃଷ୍ଟିରୁ ଏକ ଅନୁଷ୍ଠାନ ଭାବରେ ଥିଲା । କିନ୍ତୁ ଧର୍ମବିଶ୍ୱାସ ପରିବାରକୁ ଏକ ପବିତ୍ର ସମ୍ବନ୍ଧ ଭାବେ ସ୍ୱୀକୃତି ଦେଲା । ଏହା ସହିତ ଧର୍ମର ପ୍ରଭାବରୁ ଔପଚାରିକ ପଦ୍ଧତିରେ ବିବାହ ସମ୍ପନ୍ନ ହେଲା, ସମ୍ପତ୍ତିର ଅଧିକାର ସାବ୍ୟସ୍ତ ହେଲା, ଛାଡ଼ପତ୍ର କ୍ଷେତ୍ରରେ ନିୟନ୍ତ୍ରଣ ଆସିଲା ଓ ବିବାହ ବାହାରେ ଯୌନ ସମ୍ପର୍କକୁ ବାରଣ କରାଗଲା । ବ୍ରହ୍ମଚର୍ଯ୍ୟକୁ ପ୍ରଶଂସା କରାଗଲା ଓ ବିବାହ କରିଥିବା ବ୍ୟକ୍ତି ଅପେକ୍ଷା ଜଣେ ବ୍ରହ୍ମଚାରୀଙ୍କୁ ଅଧିକ ସମ୍ମାନ

ଦୃଷ୍ଟିରେ ନିଆଗଲା । ସାଧୁ, ଯୋଗୀ, ସନ୍ନ୍ୟାସିନୀ, ଫକିର, ଧର୍ମଗୁରୁ, ମହନ୍ତ, ମୁଲ୍ଲା ଆଦିଙ୍କର ନିର୍ଦ୍ଦେଶରେ ଧର୍ମ ସଂଗଠନଗୁଡ଼ିକ ପରିଚାଳିତ ହେଲା ଓ ସେମାନଙ୍କର ଆଦେଶ ଯଥେଷ୍ଟ ପ୍ରାଧାନ୍ୟ ଲାଭକଲା ।

ଯୌନସମ୍ପର୍କ କ୍ଷେତ୍ରରେ ଧର୍ମଗତ କାରଣ ଯୋଗୁଁ ନାରୀମାନେ କଠୋର ପରିସ୍ଥିତିର ସମ୍ମୁଖୀନ ହେଲେ । ବିନା ଦଣ୍ଡରେ ଜଣେ ପୁରୁଷ ଯୌନ କାମନାକୁ ଗୁପ୍ତରେ ଚରିତାର୍ଥ କଲାବେଳେ ଜଣେ ନାରୀ ଏଥିରେ ଅନ୍ତଃସତ୍ତ୍ୱା ହେବାରୁ ତାଙ୍କ ପ୍ରତି ସାମାଜିକ କଟାକ୍ଷ ପ୍ରକାଶ ପାଇଲା ଓ ତାଙ୍କୁ ଏହି ଗୁପ୍ତ କାର୍ଯ୍ୟପାଇଁ ପୂର୍ଣ୍ଣ ଦାୟୀ କରାଗଲା । କୁନ୍ତୀ ଓ ମେରୀ ବିବାହ ପୂର୍ବରୁ କର୍ଣ୍ଣ ଓ ଯିଶୁଙ୍କୁ ଯଥାକ୍ରମେ ଜନ୍ମ ଦେବାରୁ ସେମାନଙ୍କ କାର୍ଯ୍ୟକୁ ଗୁପ୍ତ ରଖାଯିବା ସମ୍ଭବ ନଥିଲା । ସୁତରାଂ ଏହି କାର୍ଯ୍ୟକୁ ସ୍ୱୀକୃତି ଦେବା ପାଇଁ କେତେ କାଳ୍ପନିକ ବିଶ୍ୱାସ ଓ ଅଲୌକିକ ଘଟଣାର ଅବତାରଣା କରାଗଲା । ଧର୍ମଗତ ନିରାପତ୍ତା ପରିବର୍ତ୍ତେ ନିଷ୍ଠୁର ସାମାଜିକ ବିଧି ଯୋଗୁଁ ଅଗଣିତ ନାରୀ ନୀରବରେ କେତେ ଯନ୍ତ୍ରଣାରେ ଦଗ୍ଧ ହେଲେ । ପୁରୁଷ ଓ ନାରୀ ଭିତରେ ପାର୍ଥକ୍ୟ ଓ ବହୁବିବାହ ପ୍ରଥା ଦ୍ୱାରା ପୁରୁଷର ସ୍ୱାର୍ଥପରତା ପ୍ରକାଶ ପାଇଲା । ଅନେକ ରାଜା ନାରୀମାନଙ୍କ ପାଇଁ ଅନ୍ତଃପୁର କରି ବହୁ ନାରୀଙ୍କୁ ରଖିବାରେ ଗର୍ବ ଅନୁଭବ କଲେ । ନାରୀମାନଙ୍କୁ ପରଦା ଆଢ଼ୁଆଳ ଭିତରେ ବ୍ୟକ୍ତିଗତ ସମ୍ପତ୍ତି କରି ରଖାଗଲା ।

ନାରୀ ପୁରୁଷ ଭିତରେ ପାତରଅନ୍ତର ନୀତି ଓ ନାରୀମାନଙ୍କ ପ୍ରତି ହୋଇଥିବା ସାମାଜିକ ଅନ୍ୟାୟ ଦୂର କରିବାପାଇଁ ନିରୀଶ୍ୱରବାଦୀ ସୌନ୍ଦର୍ଯ୍ୟବୋଧ ପ୍ରଯୁକ୍ତ କରିଥାଏ । ନାରୀ, ପୁରୁଷର ଏକ ଉପଭୋଗ୍ୟ ବସ୍ତୁ ନୁହଁ । ପୁରୁଷ ପରି ନାରୀ ମଧ୍ୟ ନିଜର ସୌନ୍ଦର୍ଯ୍ୟଗତ ଆନନ୍ଦ ଓ ଯୌନବାସନାକୁ ଚରିତାର୍ଥ କରିବାପାଇଁ ହକ୍‌ଦାର । ବିନା ବିବାହରେ ମାତୃତ୍ୱଲାଭଜନିତ ଅପମାନବୋଧରୁ ନାରୀମାନଙ୍କୁ ସମ୍ପୂର୍ଣ୍ଣ ମୁକ୍ତ କରିବାକୁ ହେଲେ ପାରିବାରିକ ସମ୍ବନ୍ଧ କ୍ଷେତ୍ରରେ ପରିବର୍ତ୍ତନ ଓ ଛଳନାଯୁକ୍ତ ଯୌନକାର୍ଯ୍ୟକୁ ବନ୍ଦ କରାଯିବା ଆବଶ୍ୟକ । ଯେକୌଣସି ପ୍ରକାର ଗୁପ୍ତକାର୍ଯ୍ୟ ଅସାମାଜିକ ଓ ବିଶେଷକରି ଯୌନସମ୍ପର୍କ କ୍ଷେତ୍ରରେ ଏହା ଅଧିକ ଖରାପ ମନେହୁଏ ।

ସାମାଜିକ ସଂଗଠନର ବିକାଶ କ୍ଷେତ୍ରରେ ପରିବାର ହେଉଛି ପ୍ରଥମ ଓ ପ୍ରାଚୀନତମ ଅନୁଷ୍ଠାନ । ପ୍ରଥମରେ ଏହା ପରିବାରର ବ୍ୟକ୍ତିମାନଙ୍କୁ ସାମାଜିକ ଓ ଆର୍ଥିକ ସୁରକ୍ଷା ଯୋଗାଇବା ସହିତ ବୃଦ୍ଧ, ଶିଶୁ ଓ ଅସୁସ୍ଥମାନଙ୍କର ଯତ୍ନ ନେବାରେ ସହାୟକ ହେଲା । ଦ୍ୱିତୀୟରେ ବିବାହ ବନ୍ଧନ ଦ୍ୱାରା ଏହା ବ୍ୟକ୍ତିର ଯୌନ ଆବେଗକୁ ଚରିତାର୍ଥ କରିବାରେ ସାହାଯ୍ୟ କଲା । ଏହି ଉପକାର ସତ୍ତ୍ୱେ ସଭ୍ୟତାର

ବିକାଶ ଓ ଜଟିଳ ସାମାଜିକ ସମ୍ପର୍କ କ୍ଷେତ୍ରରେ ଏହି ସାମାଜିକ ସଙ୍ଗଠନ ଅତି କ୍ଷୁଦ୍ର ମନେହୁଏ । ଏକଦା ସାମାଜିକ ସଙ୍ଗଠନ ପରିପ୍ରେକ୍ଷୀରେ ଯାହା ଏକ ଦରକାରୀ ଅନୁଷ୍ଠାନ ଭାବରେ ଗ୍ରହଣୀୟ ହୋଇଥିଲା ତାହା ପରିବର୍ତ୍ତିତ ସାମାଜିକ ପରିସ୍ଥିତିରେ ମଣିଷର ସୁଖଶାନ୍ତି ପାଇଁ ଯଥେଷ୍ଟ ଉପଯୋଗୀ ହେଲନାହିଁ ।

ପ୍ରାଚୀନ ପାରିବାରିକ ବ୍ୟବସ୍ଥା ଆଧୁନିକ ଯୁଗରେ ଗୋଷ୍ଠୀବାଦ ସୃଷ୍ଟି କଲା ଓ ନାରୀମାନଙ୍କର ସ୍ୱାଧୀନତା ଦମନରେ ସହାୟକ ହେଲା ।

ପାରିବାରିକ ପରମ୍ପରା ଭିତରେ କ'ଣ କରାଯିବା ଉଚିତ ବା କ'ଣ ଉଚିତ ନୁହଁକୁ ନେଇ ପରିବାରର ସଦସ୍ୟମାନଙ୍କ ଭିତରେ ସମ୍ପର୍କ ଦୃଢ଼ ହୋଇଉଠିଲା । ବଂଶାନୁଗତ ବିବାହ ଦ୍ୱାରା ପରିବାରର ଶୁଦ୍ଧତା ଓ ସଂସ୍କୃତି ରକ୍ଷା କରାଯାଏ ବୋଲି ବିଶ୍ୱାସ ଆସିଲା । କିନ୍ତୁ ବଂଶାନୁଗତ ବିବାହ ଦ୍ୱାରା ଗୋଷ୍ଠୀବାଦର ଉଦ୍ରେକ ହେଲା । ଜାତି, ଅଞ୍ଚଳ ଓ ଜାତୀୟତାକୁ ନେଇ ଗୋଷ୍ଠୀବାଦୀ ଦୃଷ୍ଟିଭଙ୍ଗୀ ମଧ୍ୟ ସୃଷ୍ଟି ହେଲା । ନିଜ ଗୋଷ୍ଠୀର ପବିତ୍ରତା ଓ ଅହମିକାରୁ ଆଧୁନିକ ଯୁଗରେ ଯୁଦ୍ଧ ଓ ବିଭେଦ ଉଦ୍ଭବ ହୋଇଛି । ନାଜିମାନଙ୍କର ନିଜକୁ ଆର୍ଯ୍ୟ ବୋଲି ଦମ୍ଭୋକ୍ତି ଓ ନିଜ ରକ୍ତର ପବିତ୍ରତା ନେଇ ଅହମିକା, ମହମ୍ମଦ ଅଲ୍ଲୀ ଜିନ୍ନାଙ୍କର ଧର୍ମଭିତ୍ତିକ ଦୁଇ ରାଷ୍ଟ୍ରର ବିଚାର ଏବଂ ଆଫ୍ରିକା, ଏସିଆ ଓ ଅଷ୍ଟ୍ରେଲିଆରେ ଗୋରା ଲୋକମାନଙ୍କର କଳା ଲୋକମାନଙ୍କ ଉପରେ ଆଧିପତ୍ୟ ସଭ୍ୟତାର ଅବକ୍ଷୟ ପାଇଁ ସହାୟକ ହେବା ସହିତ ଯୁଦ୍ଧ ଓ ରକ୍ତପାତଜନିତ ବିଭୀଷିକା ସୃଷ୍ଟି କରିଛି ।

ପାରିବାରିକ ଜୀବନରେ ବିବାହ ପରମ୍ପରା ଏକ ପ୍ରମୁଖ ସ୍ଥାନ ଗ୍ରହଣ କଲା ଓ ନାରୀମାନଙ୍କୁ ବିଶେଷତଃ ଯୌନସମ୍ପର୍କ କ୍ଷେତ୍ରରେ କମ୍ ସ୍ୱାଧୀନତା ପ୍ରଦାନ କଲା । ସମସ୍ତ ଜନସଂଖ୍ୟାର ଅଧା ନାରୀଜାତି ହେଲେ ବି ପାରିବାରିକ ଆନୁଗତ୍ୟ ସେମାନଙ୍କର ସ୍ୱାଧୀନତାକୁ ସଙ୍କୁଚିତ କରିରଖିଲା । ଝାନ୍ସୀ ରାଣୀ ଲକ୍ଷ୍ମୀବାଈ ବା ଜନ୍ ଅଫ୍ ଆର୍କଙ୍କୁ ବ୍ୟତିକ୍ରମ ବୋଲି ଗ୍ରହଣ କରାଗଲେ ବି ତାହାହିଁ ନାରୀ-ମାନଙ୍କର ପ୍ରତିଭାର ପ୍ରମାଣ ଦେଇଥାଏ । ପୁରୁଷମାନେ ଯଥେଷ୍ଟ ସୁବିଧାସୁଯୋଗ ପାଇବାବେଳେ ନାରୀମାନେ ପରଦା ଭିତରେ ସୀମାବଦ୍ଧ ହୋଇରହିଲେ ।

ଆଧୁନିକ ଯୁଗରେ ରାଷ୍ଟ୍ର ସାମାଜିକ ପ୍ରଗତି ଓ ଅର୍ଥନୈତିକ ନିରାପତ୍ତାକୁ ମୁଖ୍ୟ ସ୍ଥାନ ଦେବାରୁ ପରିବାରର ଗୁରୁତ୍ୱ ଅନେକାଂଶ କମିଗଲା । ନାରୀ ମୁକ୍ତି ଆନ୍ଦୋଳନ ପରଦାପ୍ରଥାକୁ ପ୍ରତ୍ୟାଖ୍ୟାନ କରିବା ସହିତ ପ୍ରତ୍ୟେକ ସ୍ତରରେ ପୁରୁଷମାନଙ୍କ ସହିତ ସମାନ ଅଧିକାର ଦାବି କଲା । ସୁତରାଂ ଅତୀତରେ ପାରିବାରିକ ଜୀବନର ଯେଉଁ ମହତ୍ତ୍ୱ ଥିଲା ତାହା ସାମ୍ପ୍ରତିକ ପରିସ୍ଥିତିରେ ନ୍ୟୂନ ହୋଇଗଲା । ଏହା କେବଳ ସନ୍ତାନସନ୍ତତିଙ୍କ ପ୍ରତି ସ୍ନେହ ଓ ଦାମ୍ପତ୍ୟପ୍ରେମର ପ୍ରତୀକ ହୋଇ-ରହିଛି । ଜଣେ ପୁରୁଷ, ଜଣେ ନାରୀ ଓ ତାଙ୍କର ପିଲାମାନେ ଏକତ୍ର ବାସ କରିବାରେ

ପ୍ରତିବନ୍ଧକ ନାହିଁ । କିନ୍ତୁ ଏହାଦ୍ୱାରା ସେମାନେ କୌଣସି ପରମ୍ପରାକୁ ମାନ୍ୟତା ଦେଇ ନୁହେଁ ବରଂ ସ୍ୱାଧୀନ ମନୋଭାବ ପୋଷଣ କରି ଏକତ୍ର ବାସ କରିଥାନ୍ତି । ଅବଶ୍ୟ ଯେଉଁମାନେ ପୁରୁଷ ପ୍ରାଧାନ୍ୟତାରେ ଅଭ୍ୟସ୍ତ ସେମାନଙ୍କୁ ନାରୀମାନଙ୍କର ଯୌନ ସ୍ୱାଧୀନତା ଗର୍ହିତ ମନେ ହୋଇପାରେ । ତଥାପି ଯେପରି ଗଣତନ୍ତ୍ର ରାଜତନ୍ତ୍ରର ମୃତ୍ୟୁଘଣ୍ଟି ବଜାଇଲା ସେହିପରି ନାରୀମାନଙ୍କର ଯୌନ ସ୍ୱାଧୀନତା ପୁରୁଷ ପ୍ରାଧାନ୍ୟତାକୁ ଦୂର କରି ନାରୀ, ପୁରୁଷ ନିର୍ବିଶେଷରେ ସମସ୍ତଙ୍କର ସମାନ ଅଧିକାରକୁ ସାବ୍ୟସ୍ତ କରିପାରିବ ।

ପ୍ରାଥମିକ ଅବସ୍ଥାରେ ମିଶ୍ରିତ ବିବାହ, ପାରମ୍ପରିକ ବିବାହ ପରିପ୍ରେକ୍ଷୀରେ ଏକ ମଧ୍ୟବର୍ତ୍ତୀ ସୋପାନ ଭାବରେ ପ୍ରତୀୟମାନ ହେବ । ପାରମ୍ପରିକ ବିବାହର ସୀମିତତା ଓ ସ୍ୱୀକୃତିର ପରିସରରୁ ବାହାରକୁ ଯାଇ ମିଶ୍ରିତ ବିବାହ ଏକ ବୃହତ୍ତର ପରିବେଶରେ ନରନାରୀଙ୍କ ଭିତରେ ସମ୍ବନ୍ଧ ସ୍ଥାପନ କରିପାରିବ । ଜାତି, ଧର୍ମ, ବର୍ଣ୍ଣ ଓ ଜାତୀୟତା ନିର୍ବିଶେଷରେ ଦୁଇଜଣ ବ୍ୟକ୍ତିଙ୍କ ଭିତରେ ବୈବାହିକ ସମ୍ବନ୍ଧ ସ୍ଥାପନ ହେବାଦ୍ୱାରା ମାନବ ସମାଜର ଐକ୍ୟ ପାଇଁ କ୍ଷେତ୍ର ପ୍ରସ୍ତୁତ ହୋଇପାରିବ । ଅବଶ୍ୟ ଏକ ବିବାହସମ୍ବନ୍ଧ ଯୌନସମ୍ଭୋଗ ବ୍ୟତୀତ ନରନାରୀଙ୍କ ଭିତରେ ଏକ ଭାବଗତ ସମ୍ପର୍କ ସ୍ଥାପନ କରିଥାଏ । ଯେପରି ବିନା ବିବାହରେ ମାତୃତ୍ୱ ଜଣେ ନାରୀଙ୍କ ପାଇଁ ଅସମ୍ମାନଜନକ ହୋଇଥାଏ । ମାନବ ସମାଜରେ କଳା ଲୋକମାନେ ନିଜ ଚମଡ଼ାର ରଙ୍ଗ ଯୋଗୁଁ ଯେପରି ପୃଥକ୍ ହୋଇପଡ଼ନ୍ତି ଜଣେ ମହିଳା ସେପରି ବିନା ବିବାହରେ ମାତୃତ୍ୱ ପାଇଁ ବାଛବିଚାରର ସମ୍ମୁଖୀନ ହୋଇଥାନ୍ତି ।

ବ୍ୟକ୍ତି ନିଜର ଯୌନସମ୍ବନ୍ଧ ସ୍ଥାପନ କ୍ଷେତ୍ରରେ ସ୍ୱାଧୀନତା ଲାଭ କରିବାଦ୍ୱାରା କଳାମାନଙ୍କର ପାର୍ଥକ୍ୟ ଓ ମାତୃତ୍ୱ ପରି ଅସମ୍ମାନଜନକ ଘଟଣାକୁ ଦୂର କରିପାରିବ । ଏହା ବ୍ୟାପକ ହେବାଦ୍ୱାରା ବର୍ଣ୍ଣଜନିତ ପାର୍ଥକ୍ୟ ଲୋପପାଇବା ସହିତ ବିବାହବନ୍ଧନ ଦ୍ୱାରା ମାତୃତ୍ୱପ୍ରାପ୍ତ ବିଚାରର ମଧ୍ୟ ପରିବର୍ତ୍ତନ ହେବ । ନାରୀ, ପୁରୁଷ ସହିତ ସମାନ ହେବ ଓ ଏକ ବିବାହ ବନ୍ଧନରେ ଆବଦ୍ଧ ନରହି ସନ୍ତାନର ମା' ଭାବରେ ସ୍ୱୀକୃତ ହେବ । ଯେତେବେଳେ ରାଷ୍ଟ୍ର ସାମାଜିକ ନିରାପତ୍ତାର ସମସ୍ତ ଦାୟିତ୍ୱ ବହନ କରିବ ସେତେବେଳେ ନାରୀମାନଙ୍କର ସବୁ ସ୍ତରରେ ସମାନତା ପ୍ରତିଷ୍ଠା ହେବା ସହିତ ଯୌନ ସମ୍ପର୍କ ସ୍ଥାପନ କ୍ଷେତ୍ରରେ ସ୍ୱାଧୀନତାର ଉପକାରିତା ଅନୁଭୂତ ହେବ ।

ଆଧୁନିକ ଯୁଗରେ ଯୌନସମ୍ବନ୍ଧ ସ୍ଥାପନ କ୍ଷେତ୍ରରେ ସ୍ୱାଧୀନତାର କେତେକ ଉପକାର ରହିବା ଦେଖାଯାଏ । ଅନ୍ତତଃ ଜାତି, ବର୍ଣ୍ଣ, ଦେଶ, ଅଞ୍ଚଳମାନଙ୍କ

ଭିତରେ ଥିବା ବିଭେଦଜନିତ ପ୍ରାଚୀର ଏହାଦ୍ୱାରା ଭାଙ୍ଗିଯିବ । ଏହା ସମଗ୍ର ମାନବଜାତି ଭିତରେ ଏକତ୍ୱ ସ୍ଥାପନ କରିପାରିବ । ଏହାର ବ୍ୟାପକତା ଯେତିକି ଅଧିକ ହେବ ନୃବଂଶ ମଧ୍ୟରେ ପାର୍ଥକ୍ୟ ସେତିକି ଦୂର ହୋଇପାରିବ । ଏକ ବ୍ୟାପକ ପରିସରରେ ଭିନ୍ନ ଭିନ୍ନ ବ୍ୟକ୍ତିଙ୍କ ଭିତରେ ସମ୍ବନ୍ଧ ଯେତିକି ଅଧିକରୁ ଅଧିକ ସ୍ଥାପିତ ହୋଇ ଏକ ମାନବଜାତିର ପ୍ରତିଷ୍ଠାକୁ ଲକ୍ଷ୍ୟ ଭାବରେ ଗ୍ରହଣ କରାଯିବ, ପୃଥିବୀରୁ ଯୁଦ୍ଧ, ଦ୍ୱନ୍ଦ୍ୱ ଓ ହିଂସାର ବାତାବରଣ ସେତିକି ଦୂରହେବ ।

ଗୋଟିଏ ବଂଶ ଭିତରେ ବିବାହବନ୍ଧନ ଦ୍ୱାରା ଆଗାମୀ ବଂଶଧରମାନଙ୍କର ପ୍ରତିଷେଧକ ଶକ୍ତି ଓ ମାନସିକ ସାମର୍ଥ୍ୟରେ ହ୍ରାସ ହୋଇଥାଏ । ଗୋଟିଏ ବଂଶ ବା ଜାତି ଯେତିକି ଶୁଦ୍ଧ ବୋଲି ଦାବି କରେ ସେମାନେ ସେତିକି ଦୁର୍ବଳ ଓ ସେମାନଙ୍କର ରୋଗ ପ୍ରତିଷେଧକ ସାମର୍ଥ୍ୟ ସେତିକି କମ୍ ଅଟେ । ପାହାଡ଼, ପର୍ବତ ଭିତରେ ରହୁଥିବା ଆଦିବାସୀ ଓ କେରଳରେ ରହୁଥିବା ଜଡ଼ମାନେ ଏହି ଅବକ୍ଷୟର ପ୍ରକୃଷ୍ଟ ଉଦାହରଣ । ଅପରପକ୍ଷରେ ଏକ ବୃହତ୍ତର ପରିସରରେ ଆନ୍ତର୍ଜାତି ବିବାହ ଦ୍ୱାରା ଜୀବନୀଶକ୍ତି ଓ କର୍ମଠତାର ବୃଦ୍ଧି ହୋଇଥାଏ ।

ପାରିବାରିକ ଆନୁଗତ୍ୟ ଦ୍ୱାରା ନାରୀକୁ ପୁରୁଷର ଅଧୀନ ହୋଇ ସନ୍ତାନ ଧାରଣ କରିବାକୁ ବାଧ୍ୟ କରାଯାଏ । ଜନ୍ମନିରୋଧ ବ୍ୟବସ୍ଥାର ଅଭାବରେ ବା ନାରୀର ସ୍ୱାସ୍ଥ୍ୟହାନି ହେବାର ଆଶଙ୍କା ନଥିଲେ ନାରୀ ସନ୍ତାନ ଧାରଣ କରିବାରୁ ମୁକ୍ତ ହୋଇପାରେ ନାହିଁ । ପ୍ରାଚୀନ କାଳରେ ଜନସଂଖ୍ୟା ବୃଦ୍ଧିର ଆବଶ୍ୟକତା ଯଥେଷ୍ଟ ଥିବାରୁ ବିବାହ ଅବଶ୍ୟମ୍ଭାବୀ ହୋଇଥିଲା । ସମ୍ପ୍ରତି ଜନବିସ୍ଫୋରଣ ଯୁଗରେ ବିବାହର ଅପକାରିତା ଅନୁଭୂତ ହୁଏ । ସୁତରାଂ ବିବାହ ଅନୁଷ୍ଠାନକୁ ଗ୍ରହଣ ନକରିବାଦ୍ୱାରା ଜଣେ ନାରୀ ସନ୍ତାନଧାରଣ କରିବା ବା ନକରିବା କ୍ଷେତ୍ରରେ ସ୍ୱାଧୀନ ହୁଅନ୍ତି । ସନ୍ତାନଧାରଣ କରିବା ତାଙ୍କ ସ୍ୱାର୍ଥର ପରିପନ୍ଥୀ ମନେହେଲେ ତାଙ୍କୁ ସନ୍ତାନଧାରଣ କରିବାପାଇଁ ତାଙ୍କର ସ୍ୱାମୀ ବାଧ୍ୟ କରିପାରିବେ ନାହିଁ । ସୁତରାଂ ବିବାହ ବ୍ୟବସ୍ଥାକୁ ପରିହତ କରିବାଦ୍ୱାରା ବୁଦ୍ଧିସମ୍ମତ ପନ୍ଥାରେ ଜନବିସ୍ଫୋରଣକୁ ସୀମିତ କରାଯାଇପାରିବ ।

ସହଜରେ ବିବାହବିଚ୍ଛେଦ ହେବା ସମ୍ଭବ ନହେଲେ ବିବାହଦ୍ୱାରା ନରନାରୀ ପରସ୍ପର ପ୍ରତି ସ୍ନେହ, ପ୍ରେମ ପ୍ରକାଶ କରିବାରେ ବାଧ୍ୟ ହୋଇଥାନ୍ତି । କିନ୍ତୁ ସ୍ୱାଧୀନତା ଦ୍ୱାରା ବ୍ୟକ୍ତି ନିଜର ସହଯୋଗୀକୁ ବାଛିବା ଫଳରେ ଅନ୍ୟ ପ୍ରତି ବାଧ୍ୟବାଧକତାରେ ପ୍ରେମଭାବ ପ୍ରକାଶ କରେନାହିଁ । ଯେପରି ବ୍ୟକ୍ତିଗତ ସମ୍ପତ୍ତିର ମାଲିକାନା ଦ୍ୱାରା ସ୍ୱାର୍ଥପର ମନୋଭାବ ଆସିଥାଏ, ସେହିପରି ବିବାହ-ଦ୍ୱାରା ବ୍ୟକ୍ତି ନିଜର ପତି ବା ପତ୍ନୀ ଉପରେ ଅଧିକାର ସାବ୍ୟସ୍ତ କରୁଥିବାରୁ

ସାମାଜିକ ସମ୍ବନ୍ଧ କ୍ଷେତ୍ରରେ ଅନ୍ୟମାନଙ୍କ ପ୍ରତି ବିଦ୍ୱେଷଭାବ ପ୍ରକାଶ କରିଥାଏ । ଅପରପକ୍ଷରେ ଯୌନ ସ୍ୱାଧୀନତା ଦ୍ୱାରା ନିଜର ସହଯୋଗୀଙ୍କୁ ସ୍ଥିର କରାଯାଇପାରୁଥିବାରୁ ଯୌନସମ୍ପର୍କ ମର୍ଯ୍ୟାଦାଯୁକ୍ତ ହୋଇଥାଏ ।

ବିବାହ ବାହାରେ ମାତୃତ୍ୱକୁ ଯେଉଁ ଘୃଣା ଦୃଷ୍ଟିରେ ଦେଖାଯାଉଥିଲା ଓ ଯେଉଁ ବ୍ୟବସ୍ଥା ଏପର୍ଯ୍ୟନ୍ତ ନାରୀମାନଙ୍କ ଉପରେ ଅତ୍ୟାଚାର କରିଆସିଥିଲା ଯୌନ ସ୍ୱାଧୀନତା ନାରୀମାନଙ୍କୁ ସେହି ଅବସ୍ଥାରୁ ମୁକ୍ତ କରିଥାଏ । ପିଲାମାନଙ୍କର ଯତ୍ନ ଓ ବାତ୍ସଲ୍ୟଶିକ୍ଷା ପ୍ରକାଶରେ ପିତୃତ୍ୱର ମହତ୍ତ୍ୱ କମିବା ସହିତ ମାତୃତ୍ୱର ମହତ୍ତ୍ୱ ବୃଦ୍ଧି ପାଇଥାଏ । ବ୍ରହ୍ମଚର୍ଯ୍ୟ ଏକ ବ୍ୟକ୍ତିଗତ ଅଭିରୁଚି; ସ୍ୱାସ୍ଥ୍ୟ ପାଇଁ ଅନଶନର ଯେତିକି ଉପଯୋଗିତା ରହିଛି, ବ୍ରହ୍ମଚର୍ଯ୍ୟର ମୂଲ୍ୟ ତା'ଠାରୁ ଅଧିକ ନୁହେଁ ।

ଯୌନ ସ୍ୱାଧୀନତା ହେତୁ ଓ ଏ କ୍ଷେତ୍ରରେ ଗୁପ୍ତତାର ପରିହାର ଦ୍ୱାରା ସୌନ୍ଦର୍ଯ୍ୟବୋଧର ବିକାଶସାଧନ ହୋଇଥାଏ । ଯେପରି ଭୋକ ମେଣ୍ଟାଇବା ପାଇଁ ଖାଦ୍ୟର ଆବଶ୍ୟକତା ରହିଛି ସେପରି ପ୍ରଜନନ ପାଇଁ ଯୌନସମ୍ପର୍କର ଗୁରୁତ୍ୱ ରହିଛି । କିନ୍ତୁ ଯୌନସମ୍ପର୍କ କ୍ଷେତ୍ରରେ ରହିଥିବା ଗୁପ୍ତତା ଯୋଗୁଁ ଏହାକୁ କେନ୍ଦ୍ରକରି ଅଯଥା କୌତୂହଳ ଓ ବିକୃତ ଆଗ୍ରହ ସୃଷ୍ଟି ହୋଇଥାଏ । ଜୀବନର ପ୍ରତ୍ୟେକ ଘଟଣାକୁ ଯୌନସମ୍ପର୍କ ସହିତ ଅଯଥା ସଂଯୋଜିତ କରାଯାଏ। ଏଥିରେ ଗୁରୁତ୍ୱ ଯୋଗୁଁ ବନ୍ଧୁତା, ନୈତିକ ସମ୍ମାନବୋଧ, ଭୟ ଓ ଅଭାବରୁ ମୁକ୍ତ ହେବାର ମନୋଭାବ ବାଧାପ୍ରାପ୍ତ ହୁଏ ।

କିନ୍ତୁ ଯୌନସମ୍ବନ୍ଧକୁ ମୁକ୍ତ କରିବାଦ୍ୱାରା ଲୋକମାନେ ଏଥିରେ ଅଯଥା ଆଗ୍ରହ ନଦେଖାଇ ବରଂ ମହତ୍ତର ବ୍ୟାପାର ପ୍ରତି ଆକୃଷ୍ଟ ହୋଇଥାନ୍ତି । ଆକାଶର ନୀଳିମା, ଝରଣାର ମର୍ମର, ସେବା ଓ ତ୍ୟାଗର ମହତ୍ତ୍ୱ ଓ ନୈତିକ ପରାକାଷ୍ଠା ଶିଳ୍ପୀର ଦୃଷ୍ଟିକୁ ଯୌନବ୍ୟାପାର ଅପେକ୍ଷା ଅଧିକ ଆକୃଷ୍ଟ କରିବା ଦରକାର । ନାସ୍ତିକବାଦ ସୌନ୍ଦର୍ଯ୍ୟବୋଧ ଦିଗରେ ମଣିଷର ଅଭିବ୍ୟକ୍ତିକୁ ଅସ୍ୱୀକାର କରେନାହିଁ । କିନ୍ତୁ ଏହା ସ୍ୱାର୍ଥପର ଆଗ୍ରହଠାରୁ ସାମାଜିକ ଶ୍ରେୟ ଦିଗରେ ମଣିଷର ଦୃଷ୍ଟିଭଙ୍ଗୀକୁ ପରିବର୍ତ୍ତିତ କରିଥାଏ । ଯାହା ଅନ୍ୟକୁ ଆନନ୍ଦ ପ୍ରଦାନ କରେ ତାହା ହିଁ ସୁନ୍ଦର ମନେହୁଏ ।

**ଅଷ୍ଟମ ପରିଚ୍ଛେଦ :**

# ନିରୀଶ୍ୱରବାଦୀ ଜୀବନଧାରା

ନିରୀଶ୍ୱରବାଦର ମୌଳିକ ଅଭିମୁଖ୍ୟ ହେଉଛି ବ୍ୟକ୍ତି ସ୍ୱାଧୀନତା । ଏହି ସ୍ୱାଧୀନତା ଦ୍ୱାରା ବ୍ୟକ୍ତି ଭିତରେ ଥିବା ବହୁ ସମ୍ଭାବନା ତା'ର କଳ୍ପନା, ପ୍ରଚେଷ୍ଟା ଓ ସାମର୍ଥ୍ୟ ଭିତର ଦେଇ ପ୍ରକାଶ ଲାଭ କରିଥାଏ । ଅର୍ଥାତ୍ ମୁକ୍ତ ଓ ସ୍ୱାଧୀନ ବ୍ୟକ୍ତିବିଶେଷ ନିଜର କର୍ମନିପୁଣତାର ପରିଚୟ ଦେବା ସହିତ ପରିସ୍ଥିତି ଉପରେ ନିଜର ନିୟନ୍ତ୍ରଣ ଜାହିର କରିଥାନ୍ତି । କିନ୍ତୁ ଆସ୍ତିକତାବାଦୀ ଜୀବନଧାରାରେ ବ୍ୟକ୍ତି ଭିତରର ସମ୍ଭାବନାକୁ ପ୍ରଶମିତ କରି ରଖାଯାଏ । ଈଶ୍ୱରଙ୍କୁ ପ୍ରାର୍ଥନା ଦ୍ୱାରା ବା ସରକାରଙ୍କୁ ଅନୁନୟ କରିବାରେ ବ୍ୟକ୍ତି ନିଜକୁ ନ୍ୟୁନ ମନେ କରିଥାଏ । ମୋଟ ଉପରେ ନିରୀଶ୍ୱରବାଦୀ ସର୍ବଦା ନିଜର ସାମର୍ଥ୍ୟକୁ ଜାହିର କରିବା ବେଳେ ଆସ୍ତିକତାବାଦୀ ପରିସ୍ଥିତି ପାଖରେ ନିଜକୁ ସମର୍ପଣ କରିଥାଏ । ନିରୀଶ୍ୱରବାଦୀ ନିଜର ବିଫଳତା ଅନୁଭବ କରେ ନାହିଁ ବରଂ ପ୍ରତ୍ୟେକଟି ଉଦ୍ୟମକୁ ପୁନଃଷ୍ଚ କିପରି ଅଧିକ ସଫଳତାର ସହିତ ବିନିଯୋଗ କରିହେବ ସେଥିପାଇଁ ସଚେଷ୍ଟ ହୁଏ ।

ନିରୀଶ୍ୱରବାଦୀମାନଙ୍କର ବିଶ୍ୱାସ, କଳ୍ପନା ଓ ଆଦର୍ଶ ଅବଶ୍ୟ ଥାଏ । କିନ୍ତୁ ସେମାନଙ୍କର ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ବିଶ୍ୱାସ ଓ ସତ୍ୟ ଭିତରେ ପାର୍ଥକ୍ୟ ଆଣିଥାଏ । ଏହାଦ୍ୱାରା ଜୀବନର ଆଭିମୁଖ୍ୟରେ ପରିବର୍ତ୍ତନ ଆସିଥାଏ । ଆସ୍ତିକତାବାଦୀମାନେ ମୃତ୍ୟୁ ପରେ ମୋକ୍ଷପ୍ରାପ୍ତ ହେବାକୁ କଳ୍ପନା କରିବା ବେଳେ ନିରୀଶ୍ୱରବାଦୀମାନେ ଜୀବନକୁ ସରସ ସୁନ୍ଦର କରିବାରେ ପ୍ରୟାସୀ ହୋଇଥାନ୍ତି । ପ୍ରଯୁକ୍ତିବିଦ୍ୟାର ବିନିଯୋଗ ଦ୍ୱାରା ନିରୀଶ୍ୱରବାଦୀମାନେ ପବନ, ଜଳ ଓ ମୃତ୍ତିକାକୁ ମିଶାଇ ମଣିଷର ସ୍ପୃହାକୁ ପୂରଣ କରିବାରେ ବ୍ରତୀ ହୋଇଥାନ୍ତି । ମଣିଷ ପରି ପ୍ରାକୃତିକ ଦୁର୍ବିପାକକୁ

ନିୟନ୍ତ୍ରଣ କରିବା, ରୋଗ ପ୍ରତିଷେଧକ ବାହାରକରିବା ଓ ମୃତ୍ୟୁ ଉପରେ ବିଜୟ ହାସଲ କରିବାକୁ ସେମାନେ ପ୍ରୟାସ କରିଥାନ୍ତି । ଜନବିସ୍ଫୋରଣ, ପରିବେଶ ପ୍ରଦୂଷଣ ଓ ପ୍ରାକୃତିକ ସମ୍ପଦର ଅବକ୍ଷୟ ପରି କୃତ୍ରିମ ସମସ୍ୟାଗୁଡ଼ିକର ବାସ୍ତବ ସମାଧାନ ପାଇଁ ବିକେନ୍ଦ୍ରୀକରଣ ପନ୍ଥାରେ ଉଦ୍ୟମ କରିଥାନ୍ତି ।

ନିରୀଶ୍ୱରବାଦୀମାନେ ନିର୍ଭୟରେ ପରିସ୍ଥିତିର ସମ୍ମୁଖୀନ ହୋଇଥାନ୍ତି । "ଏହା କାହିଁକି ଏପରି ହୋଇଛି" ଅପେକ୍ଷା ଏହି ପରିସ୍ଥିତିରେ "କ'ଣ କରାଯିବ" ତାଙ୍କୁ ଅଧିକ ଆନ୍ଦୋଳିତ କରିଥାଏ । ସାମାଜିକ ସମସ୍ୟାଗୁଡ଼ିକର ଯଥୋଚିତ ବିଶ୍ଳେଷଣ କରି ସେଗୁଡ଼ିକର ସମାଧାନ ବାହାରକରିବାକୁ ସେମାନେ ସର୍ବଦା ନୂଆ ନୂଆ ଉଦ୍ୟମ କରିଥାନ୍ତି । ଇତିହାସର ପୁନରାବୃତ୍ତି ସେମାନଙ୍କ ପାଖରେ ହୋଇ-ନଥାଏ ।

ନିରୀଶ୍ୱରବାଦୀଙ୍କର ପାର୍ଥିବ ଆଭିମୁଖ୍ୟ ଆତ୍ମତୃପ୍ତି ଭିତରେ ସଙ୍କୁଚିତ ହୋଇ ରହେନାହିଁ । ରାଜା ଓ ପୁଞ୍ଜିପତିମାନେ ଶାନ୍ତି ଓ ସାନ୍ତ୍ୱନା ପାଇଁ ଆଧ୍ୟାତ୍ମିକ ପନ୍ଥାକୁ ପଳାୟନ କରିଥାନ୍ତି । ଅପରପକ୍ଷରେ ନିରୀଶ୍ୱରବାଦର ପାର୍ଥିବ ଆଭିମୁଖ୍ୟ ସାମାଜିକ ସଚେତନତା ବୃଦ୍ଧି ଦିଗରେ ସହାୟକ ହୋଇଥାଏ । ନିରୀଶ୍ୱରବାଦୀମାନେ ଅତି ନିଷ୍ଠାର ସହ ସାଧୁତା ଓ ସମାନତା ପରି ଆଦର୍ଶ ଦିଗରେ ବ୍ରତୀ ହୋଇଥାନ୍ତି ଓ ସାମାଜିକ କର୍ତ୍ତବ୍ୟ ପ୍ରତି ଅଙ୍ଗୀକାର ରହିଥାନ୍ତି । ଯେକୌଣସି କ୍ଷେତ୍ରରେ ଅନ୍ୟାୟ ଓ ବୈଷମ୍ୟକୁ ଦୂରକରିବା ପାଇଁ ସେମାନେ ସଂକଳ୍ପ କରନ୍ତି । ପରିଣାମତଃ ନିରୀଶ୍ୱରବାଦୀ ବ୍ୟବସ୍ଥାରେ ଦାରିଦ୍ର୍ୟ, ହିଂସା ଓ ବୈଷମ୍ୟକୁ ସ୍ଥାନ ଦିଆଯାଏ ନାହିଁ । ନିରୀଶ୍ୱରବାଦୀ ଜୀବନ ଧାରାରେ ସଂଖ୍ୟାବହୁଳ ଓ ସଂଖ୍ୟାଲଘୁ ପରି କୌଣସି ଗୋଷ୍ଠୀର ସ୍ଥାନ ନଥାଏ । ଜାତି, ବର୍ଣ୍ଣ, ଭାଷା, ଜାତୀୟତା, ସଂସ୍କୃତି, ଅର୍ଥନୈତିକ ସୁଯୋଗ ବା ରାଜନୈତିକ ଦଳ ବା ସେପରି କିଛି ପରିଚୟ ନେଇ ନିଜକୁ ସଂଖ୍ୟାଲଘୁ ବୋଲି ବିଚାର କରୁଥିବା କୌଣସି ଗୋଷ୍ଠୀ ରହିବାର ଅବକାଶ ନଥାଏ । କାରଣ ନିରୀଶ୍ୱରବାଦ ଏକ ମାନବଜାତି ଲକ୍ଷ୍ୟ ପୋଷଣ କରି ସମସ୍ତଙ୍କୁ ମିଶାଇଥାଏ । ପ୍ରତ୍ୟେକ ବ୍ୟକ୍ତି ନିଜକୁ ମୁକ୍ତ ଅନୁଭବ କରେ ଓ ଅନ୍ୟମାନଙ୍କ ସହ ସମାନଭାବରେ ବଞ୍ଚିବାର ସୁଯୋଗ ପାଇଥାଏ । ସୁତରାଂ କେହି କୌଣସି ଦଳ ବା ଗୋଷ୍ଠୀରେ ଆଶ୍ରୟ ନେଇ ପରିଚିତ ହେବାର ଆବଶ୍ୟକତା ନଥାଏ ।

ଅହିଂସକତାବାଦୀମାନେ ମଧ୍ୟ ଗୋଟିଏ 'ମାନବ ଜାତିର' କଥା କହିଥାନ୍ତି । କିନ୍ତୁ ସେମାନେ ବ୍ୟକ୍ତି ସ୍ୱାଧୀନତାକୁ ସ୍ୱୀକୃତି ନଦେବା ଫଳରେ ମାନବ ସମାଜରେ

ସମତା ପ୍ରତିଷ୍ଠା କରିପାରନ୍ତି ନାହିଁ । ଏହି ସ୍ୱାଧୀନତାକୁ ଗ୍ରହଣ କରିବାର ବିଗ୍ଭର ଭିତରେ ଆସ୍ତିକତାବାଦ ଓ ନିରୀଶ୍ୱରବାଦ ମଧ୍ୟରେ ପାର୍ଥକ୍ୟ ନିହିତ ଥାଏ । ସୁତରାଂ ଆସ୍ତିକତାବାଦ ଏକ ମାନବ ଜାତି ପ୍ରତିଷ୍ଠାର ଲକ୍ଷ୍ୟରେ ବିଫଳ ହେବାବେଳେ ନିରୀଶ୍ୱରବାଦ ଏଥିରେ ସଫଳ ହୋଇଥାଏ ।

ସବୁ ମଣିଷଙ୍କୁ ଏକାଠି କରିବାର ଉଦ୍ୟମ ଭିତରେ କ'ଣ କରଣୀୟ ଓ କ'ଣ ନୁହଁ ପ୍ରତିବନ୍ଧକ ସୃଷ୍ଟି କରିପାରେ । ଆମର ପୋଷାକ, ଖାଦ୍ୟ, କାର୍ଯ୍ୟଧାରା, ଅବସର ଇତ୍ୟାଦି ଜୀବନର ବିଭିନ୍ନ ଘଟଣାରେ କ'ଣ କରାଯିବ ଓ କ'ଣ କରାଯିବ ନାହିଁ ଜନିତ ବିଭିନ୍ନ ନିୟମରାଜି ଲୋକମାନଙ୍କ ଭିତରେ ବିଭେଦ ବା ଦ୍ୱନ୍ଦ୍ୱ ସୃଷ୍ଟି କରିପାରେ । ଆସ୍ତିକତାବାଦ ପରମ୍ପରା, ବିଶ୍ୱାସ, ଈଶ୍ୱରଙ୍କ ନିର୍ଦ୍ଦେଶ ଇତ୍ୟାଦିକୁ ଆଧାର ଭାବରେ ନେଇ ଏହି ପ୍ରଭେଦକୁ ଅନୁମୋଦନ କରିଥାଏ । କିନ୍ତୁ ନିରୀଶ୍ୱରବାଦୀମାନେ ବାସ୍ତବବାଦୀ ଦୃଷ୍ଟିକୋଣ ପୋଷଣ କରିଥାନ୍ତି । ସାଧାରଣ ବିଗ୍ଭର ଓ ସହମତରୁ କ'ଣ କରାଯିବା ଉଚିତ ଓ କ'ଣ ଉଚିତ ନୁହଁ ଉଦ୍ଭବ ହୋଇ ସମୟରେ ଏକ ଗତାନୁଗତିକ କାର୍ଯ୍ୟରେ ପରିଣତ ହୁଏ ବୋଲି ସେମାନେ ଗ୍ରହଣ କରିଥାନ୍ତି । ନିରୀଶ୍ୱରବାଦୀମାନଙ୍କ ମତରେ ଲୋକମାନଙ୍କର ଆବଶ୍ୟକତାନୁଯାୟୀ ସେଥିରେ ପରିବର୍ତ୍ତନ ଆସିଥାଏ । ନୈତିକତା, ନାଗରିକ ଶୃଙ୍ଖଳା ଓ ଅଭ୍ୟାସ, ସାମାଜିକ ସ୍ୱାଚ୍ଛନ୍ଦ୍ୟ ଓ ସମତା ପାଇଁ ଉଦ୍ଦିଷ୍ଟ ଥାଏ । ଯେଉଁ ଆଦର୍ଶ ଗୋଷ୍ଠୀବାଦ, ଗୁପ୍ତତା ବା ଅଶାନ୍ତିକୁ ପ୍ରଶ୍ରୟ ଦିଏ ତାହାକୁ ପରିହାର କରାଯିବା ଆବଶ୍ୟକ ବୋଲି ସେମାନେ ଗ୍ରହଣ କରନ୍ତି । ଯାହା ଜୀବନରେ ଶାନ୍ତି ଦେବା ସହିତ ପ୍ରଗତିଶୀଳ ଓ ସାମାଜିକତା ଦିଗରେ ଅଭିପ୍ରେତ ହୁଏ ସେହି ଆଦର୍ଶକୁ ତା' ସ୍ଥାନରେ ଗ୍ରହଣ କରାଯିବା ବାଞ୍ଛନୀୟ ଅଟେ । କୌଣସି ନୈତିକ ନିୟମକୁ ଅଲଙ୍ଘନୀୟ ବୋଲି ଭାବିବା ଠିକ୍ ନୁହେଁ । ବରଂ ପ୍ରତ୍ୟେକଟି ନିୟମକୁ କଥା ଓ କାର୍ଯ୍ୟ ଭିତରେ ସମନ୍ୱୟ ରକ୍ଷା କରୁଥିବା ଏକ ସାମାଜିକ କର୍ତ୍ତବ୍ୟ ଭାବରେ ଗ୍ରହଣ କରାଯିବା ଆବଶ୍ୟକ ।

ବ୍ୟକ୍ତି ଯେକୌଣସି ସଭ୍ୟତାର ମୂଳ ଉତ୍ସ ଅଟେ । ନିଜର ସ୍ୱାଚ୍ଛନ୍ଦ୍ୟ ବା ସଙ୍ଘ ସୃଷ୍ଟି ପାଇଁ ସେ ବ୍ୟବସ୍ଥା ଓ ଅନୁଷ୍ଠାନ ଆବଶ୍ୟକ କରେ । 'ସରକାର' ଆଧୁନିକ ସମାଜରେ ମଣିଷର ସବୁଠାରୁ ବୃହତ୍ତମ ଅନୁଷ୍ଠାନ । ସୁତରାଂ ନିରୀଶ୍ୱରବାଦୀମାନେ ଏ ଦୃଷ୍ଟିରୁ ରାଜନୈତିକ ବ୍ୟବସ୍ଥାର ପକ୍ଷପାତୀ । ସେମାନେ ସେମାନଙ୍କର ସେବା ପାଇଁ ସରକାର ଗଠନ କରି ତାହାର ନିୟନ୍ତ୍ରଣ କରିଥାନ୍ତି । ସରକାର ଜନଗଣଙ୍କ ଉପରେ କର୍ତ୍ତୃତ୍ୱ ସ୍ଥାପନ କରିବା ପରିବର୍ତ୍ତେ ଲୋକମାନେ ସରକାରକୁ ନିୟନ୍ତ୍ରଣ କରି ତାହାକୁ ନିଜର ଆଜ୍ଞାରେ ପରିଗ୍ଭଳିତ କରିଥାନ୍ତି । ସୁତରାଂ ଜନଗଣ ହିଁ ହେଉଛନ୍ତି ସରକାରର ପ୍ରଭୁ ।

ବସ୍ତୁତଃ ନିରୀଶ୍ୱରବାଦୀ ଜୀବନଧାରା କର୍ମନିପୁଣତାରେ ପରିପୂର୍ଣ୍ଣ ମନେହୁଏ । ବୈଜ୍ଞାନିକ ବିଶ୍ଳେଷଣ, ପ୍ରଯୁକ୍ତିବିଦ୍ୟାର ବିକାଶ ଓ ପୃଥିବୀର ଶକ୍ତି ସମୂହର ନିୟନ୍ତ୍ରଣ ଦ୍ୱାରା ମଣିଷ ଜାତିର ସୁଖସ୍ୱାଚ୍ଛନ୍ଦ୍ୟ ବୃଦ୍ଧି ପାଇଁ ଏହା ପ୍ରୟାସ କରିଥାଏ । ଏହାର ଲକ୍ଷ୍ୟ ସମତା, ଏହାର ପ୍ରଣାଳୀ ମୁକ୍ତତା, ଏହାର ପନ୍ଥା ରାଜନୈତିକ କାର୍ଯ୍ୟସୂଚୀ ଓ ଏହାର ଅନ୍ତର୍ନିହିତ ଶକ୍ତି ବ୍ୟକ୍ତିର ନୈତିକ ସ୍ୱାଧୀନତା ଅଟେ ।

# ଉପକ୍ରମଣିକା—୧

କେ. ଜି. ମଶ୍ରୁୱାଲା

ଗୋପରାଜୁ ରାମଚନ୍ଦ୍ର ରାଓ—ଯେ ତାଙ୍କର ଡାକ ନାମ ଗୋରା ଭାବରେ ତାଙ୍କର ଚକ୍ର ମଣ୍ଡଳରେ ପରିଚିତ । ଆନ୍ଧ୍ରପ୍ରଦେଶର ଜଣେ ନିସ୍ବାପର ସମାଜସେବୀ ଅଟନ୍ତି । ହରିଜନମାନଙ୍କ ସମସ୍ୟା ସହିତ ସେ ନିଜକୁ ଯେପରି ସଂଶ୍ଳିଷ୍ଟ କରାଇ ପାରିଛନ୍ତି ତାହା ଖୁବ କମ୍ କରିପାରିବେ । ଜାତିଗତ ମାନଦଣ୍ଡରେ ସେ ଏକ କୁଳୀନ ଏକାନ୍ନବର୍ତ୍ତୀ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରି ଏକ ରକ୍ଷଣଶୀଳ ପରିବେଶରେ ବଢ଼ିଥିଲେ । ପରିବାରରେ ତାଙ୍କର ବୃଦ୍ଧ ପିତାମାତା, ଭାଇ ଭଉଣୀ, ତାଙ୍କର ପତ୍ନୀ ଓ ପିଲାମାନେ ରହିଛନ୍ତି । ଗୋରା ସ୍ବଚ୍ଛଳ ନଥିଲେ ଏବଂ ତାଙ୍କର ନାସ୍ତିକ୍ୟବାଦୀ ଦୃଷ୍ଟିଭଙ୍ଗୀ ଯୋଗୁଁ ତାଙ୍କର ଆର୍ଥିକ ସ୍ଥିତି ଅତ୍ୟନ୍ତ ଖରାପ ହେବାକୁ ଲାଗିଲା । ତାଙ୍କର ଏହି ଦୃଷ୍ଟିକୋଣ ଭିତରେ ସେ ଈଶ୍ୱର ଓ ହିନ୍ଦୁଧର୍ମର କର୍ମବାଦକୁ ଗ୍ରହଣ କରୁନଥିବା ଯୋଗୁଁ ତାଙ୍କୁ ତାଙ୍କର ଅଧ୍ୟାପନା ବୃତ୍ତିକୁ ମଧ୍ୟ ହରାଇବାକୁ ପଡ଼ିଥିଲା । ଏହାପରେ ସେ ପୁଣି ନିଜର ଝିଅକୁ ଅଣପାରମ୍ପରିକ ଭାବରେ ଜଣେ ହରିଜନ ଯୁବକଙ୍କ ସହିତ ବିବାହ କରାଇଲେ । ଫଳରେ ତାଙ୍କୁ ତାଙ୍କର ବ୍ରାହ୍ମଣ ସାଙ୍ଗସାଥୀ, ସମ୍ପର୍କୀୟ ଓ ସବର୍ଣ୍ଣ ହିନ୍ଦୁ ଲୋକମାନଙ୍କଠାରୁ ସାମାଜିକ ବାସନ୍ଦର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଏପରିକି ଗୋରାଙ୍କର ନିଜ ପିତାମାତା, ଭଉଣୀଗଣ ଓ ସ୍ତ୍ରୀଙ୍କର ସମ୍ପର୍କୀୟମାନେ ତାଙ୍କର ଏହି କାର୍ଯ୍ୟ ଓ ସଂସ୍କାରପ୍ରୟାସୀ ମନୋଭାବକୁ ପସନ୍ଦ ନକରି ତାଙ୍କ ସହ ସମ୍ପର୍କ ଛିନ୍ନ କରିଥିଲେ । କିନ୍ତୁ ଗୋରା ସେମାନଙ୍କର ଦୁର୍ବଳତାକୁ ହୃଦୟଙ୍ଗମ କରି ସେମାନଙ୍କ ପ୍ରତି କୌଣସି ଅସୂୟା ଭାବ ରଖିନଥିଲେ ବରଂ ସେମାନଙ୍କୁ ଭଲ ପାଉଥିଲେ । ସେ ତାଙ୍କର ସ୍ତ୍ରୀ ଓ ପିଲାମାନେ ବିନା ପ୍ରତିବାଦରେ ଧୈର୍ଯ୍ୟର ସହ ସମସ୍ତ ସାମାଜିକ କଟକଣାର ସମ୍ମୁଖୀନ ହୋଇଥିଲେ । ଏହାଦ୍ୱାରା ସମୟକ୍ରମେ କେତେକ ତାଙ୍କ ସହ ମିଶି ଯାଇଥିଲେ ଯଦିବା ସମସ୍ତେ ତାଙ୍କର ବିଶ୍ବାସକୁ ପୂର୍ଣ୍ଣ ଭାବରେ ଗ୍ରହଣ କରିବା ସମ୍ଭବ ହୋଇନାହିଁ ।

ଗୋରା ଗାନ୍ଧୀଜୀଙ୍କର ଦର୍ଶନ ଓ ରଚନାତ୍ମକ କାର୍ଯ୍ୟକ୍ରମକୁ ଗ୍ରହଣ କରିଥିଲେ ବି ଗୋଟିଏ କ୍ଷେତ୍ରରେ ତାଙ୍କର ଗାନ୍ଧୀଜୀଙ୍କ ସହ ମତପାର୍ଥକ୍ୟ ରହିଥିଲା । ଗାନ୍ଧୀଜୀଙ୍କର ଈଶ୍ୱରବିଶ୍ବାସକୁ ସେ ଗ୍ରହଣ କରୁନଥିଲେ । ସେ ଯେ ଏହା ଗ୍ରହଣ କରୁନଥିଲେ ତା' ନୁହଁ, ଏପରିକି ସେ ଏହାର ବିପରୀତ ବିଶ୍ବାସର ପ୍ରଚାର ପାଇଁ

ଅନେକ ଆନ୍ତରିକ ଶ୍ରଦ୍ଧା ଦେଖାଇଛନ୍ତି । ଏହା ଫଳରେ ଗାନ୍ଧୀବାଦୀମାନଙ୍କ ଗହଣରେ ମଧ୍ୟ ଗୋରା ସମ୍ପୂର୍ଣ୍ଣରୂପେ ଗ୍ରହଣଯୋଗ୍ୟ ହୋଇପାରି ନାହାନ୍ତି ।

୧୯୩୦ରେ ଗୋରା ଗାନ୍ଧୀଜୀଙ୍କ ସହ ଯୋଗାଯୋଗ ରଖିବାକୁ ଉଦ୍ୟମ କରିଥିଲେ । କିନ୍ତୁ ନାସ୍ତିକବାଦ ମାଧ୍ୟମରେ ସେ ଗାନ୍ଧୀଜୀଙ୍କ ସହ ସମ୍ପର୍କ ରଖିବାକୁ ଚାହିଁଥିଲେ । ଗାନ୍ଧୀଜୀ ପ୍ରଥମେ ଏହି ବିଚାରଧାରାକୁ ପସନ୍ଦ କରିନଥିଲେ ଓ ଗୋରାଙ୍କୁ ସହଜ ଉତ୍ତର ଦେଇନଥିଲେ । ବହୁଦିନ ପର୍ଯ୍ୟନ୍ତ ଗୋରାଙ୍କ ସହ ସାକ୍ଷାତକାର ପାଇଁ ସେ ଆଗ୍ରହୀ ହୋଇନଥିଲେ । ଯଦିବା ଗୋରା ନିଜକୁ ନାସ୍ତିକବାଦୀ ବୋଲି କହୁଥିଲେ ତଥାପି ସେ ଥିଲେ ଯୁବକ ଓ ଜଣେ ନିଷ୍ଠାପର କର୍ମୀ । ସେ ପ୍ରତିଭାର ପୂଜାରୀ ଥିଲେ ଓ ଗାନ୍ଧୀଜୀଙ୍କ ପ୍ରତି ତାଙ୍କର ଗଭୀର ସମ୍ମାନବୋଧ ରହିଥିଲା । ଯଦିଓ ସେ ଈଶ୍ୱରବିଶ୍ୱାସୀ ଥାନ୍ତେ ତେବେ ସମ୍ଭବତଃ ଏହା କୁହାଯାଇପାରନ୍ତା ଯେ ସେ ଈଶ୍ୱରଙ୍କ ପରେ ଗାନ୍ଧୀଜୀଙ୍କୁ ସବୁଠାରୁ ଅଧିକ ସମ୍ମାନ ଦେଖାଇଥାନ୍ତେ । ଯେହେତୁ ଗୋରା ଈଶ୍ୱରବିଶ୍ୱାସୀ ନଥିଲେ, ତେଣୁ ଏହା କ'ଣ କୁହାଯାଇପାରିବ ଯେ ସେ ଗାନ୍ଧୀଜୀଙ୍କୁ ସବୁଠାରୁ ଅଧିକ ସମ୍ମାନ ଦେଉଥିଲେ ଓ ଗାନ୍ଧୀଜୀଙ୍କ ପାଇଁ ତାଙ୍କ ହୃଦୟରେ ଦେଇଥିବା ସ୍ଥାନ ଆଉ କେହି ଅଧିକାର କରିପାରି ନାହାନ୍ତି ? ସମ୍ଭବତଃ ଏହା ନୁହେଁ । ଯଦିବା ଗୋରା ଈଶ୍ୱରଙ୍କୁ ଗ୍ରହଣ କରୁନଥିଲେ ତଥାପି ଜଣେ ଆସ୍ତିକ ଈଶ୍ୱରଙ୍କୁ ହୃଦୟରେ ଦେଇଥିବା ସ୍ଥାନ ପରି ଗୋରା ବ୍ୟକ୍ତିର ସ୍ୱାଧୀନ ସଙ୍କଳ୍ପ ଓ ସାମାଜିକ ଜୀବନରେ ନୈତିକ ମୂଲ୍ୟବୋଧକୁ ହୃଦୟରେ ସବୁଠାରୁ ଶ୍ରେଷ୍ଠ ଆସନ ଦେଇଛନ୍ତି । ସଂସାରର ସବୁକିଛିକୁ ସେ ପରିହାର କରିପାରନ୍ତି ଏପରିକି ଗାନ୍ଧୀଜୀଙ୍କୁ ମଧ୍ୟ ସେ ଅସ୍ୱୀକାର କରିପାରିବେ କିନ୍ତୁ ସ୍ୱାଧୀନ ସଙ୍କଳ୍ପ ଓ ନୈତିକ ମୂଲ୍ୟବୋଧକୁ ସେ ପରିହାର କରିବା ସମ୍ଭବ ନୁହେଁ । ଜଣେ ପ୍ରତିଭାର ପୂଜାରୀ ଭାବରେ ଗାନ୍ଧୀଜୀଙ୍କ ପ୍ରତି ତାଙ୍କର ସମ୍ମାନବୋଧକୁ ସେ ସମୟର ଯେକୌଣସି ଯୁବକଙ୍କ ସହ ତୁଳନା କରାଯାଇ ପାରିବ ଯେଉଁମାନେ ନିଜର ଧର୍ମାଦର୍ଶ ପରେ ଗାନ୍ଧୀଜୀଙ୍କୁହିଁ ସବୁଠାରୁ ଅଧିକ ସମ୍ମାନ ଦେଖାଉଥିଲେ ।

ଗାନ୍ଧୀଜୀଙ୍କ ପାଖରୁ କୌଣସି ଉତ୍ସାହ ନପାଇ ମଧ୍ୟ ଗୋରା ଗାନ୍ଧୀଜୀଙ୍କର ନିକଟତର ହେବାର ଉଦ୍ୟମକୁ ପରିହାର କରିନଥିଲେ । ଦୀର୍ଘ ଚଉଦବର୍ଷର ପ୍ରତୀକ୍ଷା ପରେ ସେ ନଭେମ୍ବର ୧୯୪୪ରେ ଗାନ୍ଧୀଜୀଙ୍କ ସହ ପ୍ରତ୍ୟକ୍ଷ ସମ୍ପର୍କରେ ଆସିପାରିଥିଲେ । ଜାନୁଆରି ୧୯୪୮ରେ ଗାନ୍ଧୀଜୀଙ୍କର ଦେହାନ୍ତ ଯୋଗୁଁ ଏହି କ୍ଷୁଦ୍ର ପୁସ୍ତିକାଟି ଗାନ୍ଧୀଜୀ ଓ ଗୋରାଙ୍କ ଭିତରେ ହୋଇଥିବା ଏହି ଚାରିବର୍ଷ ଭିତରେ କଥୋପକଥନ ଓ ପତ୍ରାଳାପକୁ ନେଇ ରଚିତ । କିନ୍ତୁ ଏହା କ୍ଷୁଦ୍ର ହେଲେ ବି ଏଥିରେ ସନ୍ନିବେଶିତ ଉଭୟଙ୍କର ବିଚାରଧାରା ଓ ଦୃଷ୍ଟିଭଙ୍ଗୀ ଯଥେଷ୍ଟ

ମୂଲ୍ୟବାନ୍ । ଏହି ସୀମିତ ସମୟର ସମ୍ପର୍କ ଭିତରେ ସେମାନଙ୍କର ଦୃଷ୍ଟିଭଙ୍ଗୀରେ ଯେଉଁ ପରିବର୍ତ୍ତନର ସୂତ୍ରପାତ ହୋଇଥିଲା ସେ ଦୃଷ୍ଟିରୁ ପୁସ୍ତକର ବିଷୟବସ୍ତୁ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ଜଣେ ଅପରିଚିତ ଓ ଏପରିକି ନିଜ ବିଶ୍ୱାସର ପରିପନ୍ଥୀ ହୋଇ ବି ଏହି ଚାରିବର୍ଷର ସମ୍ବନ୍ଧ ଭିତରେ ଗାନ୍ଧୀଜୀ ଗୋରାଙ୍କୁ ନିଜ ପରିବାରର ସଭ୍ୟ ଭଳି ଆପଣାର କରି ନେଇଥିଲେ । ସେହିପରି ଗୋରା ଗାନ୍ଧୀଜୀଙ୍କୁ ଜଣେ ଜାତୀୟ ନେତା ଅପେକ୍ଷା ବ୍ୟକ୍ତିଗତ ସମ୍ବନ୍ଧ ଭିତରେ ତାଙ୍କର ନିକଟତର ହେବା ସହିତ ତାଙ୍କର ପ୍ରଗତିଶୀଳ ନୈତିକ ବିଚାରାଦର୍ଶ ପ୍ରତି ଆକୃଷ୍ଟ ହୋଇ ତାଙ୍କୁ ନିଜର ଜଣେ ପଥ-ପ୍ରଦର୍ଶକ ଗୁରୁ ଭାବରେ ଗ୍ରହଣ କରିଥିଲେ । କଟ୍ଟର ଧର୍ମପ୍ରଚାରକର ନିଷ୍ଠାପରି ନିଜର ବିଚାରାଦର୍ଶରେ ଗାନ୍ଧୀଜୀଙ୍କୁ ପରିବର୍ତ୍ତନ କରିବାର ପ୍ରଚେଷ୍ଟା ଗୋରାଙ୍କର ରହିଥିଲା । ଗାନ୍ଧୀଜୀଙ୍କ ପାଖରେ ନିଜକୁ ପୁତ୍ରପ୍ରତିମ ମନେକରୁଥିବା ଓ ତାଙ୍କର ଜଣେ ନିଷ୍ଠାପର ଅନୁଗାମୀ ଭାବରେ ତାଙ୍କ ପ୍ରତି ଗଭୀର ସମ୍ମାନ ରଖିଥିବା ସତ୍ତ୍ୱେ ଗୋରା ଗାନ୍ଧୀଜୀଙ୍କୁ ନିରୀଶ୍ୱରବାଦୀ ଭାବରେ ପରିବର୍ତ୍ତନ କରିବାର ଆକାଂକ୍ଷା ପୋଷଣ କରିଥିଲେ । ଜଣଙ୍କୁ ନିଜର ପିତୃପ୍ରତିମ ଓ ଗୁରୁ ଭାବରେ ଗ୍ରହଣ କରି ମଧ୍ୟ ତାଙ୍କୁ ନିଜର ଆଦର୍ଶରେ ରୂପାନ୍ତରିତ କରିବାରେ ଗୋରାଙ୍କର ଉଦ୍ୟମ ଯଥାର୍ଥରେ ଉଲ୍ଲେଖନୀୟ । ଏ ପ୍ରକାରର ଘଟଣା ଇତିହାସରେ ବିରଳ ହେଲେ ବି ଏହା ଯେ ଅସାଧାରଣ, ଏହା ନିଶ୍ଚିତ ଭାବରେ କୁହାଯାଇପାରେ ।

ଆସ୍ତିକତା ଓ ନିରୀଶ୍ୱରବାଦ ଉପରେ ଗାନ୍ଧୀ ଓ ଗୋରାଙ୍କ ଭିତରେ ହୋଇଥିବା ଆଲୋଚନା ପୁସ୍ତକର ମୁଖ୍ୟ ଭାଗ ମଣ୍ଡନ କରିଛି । ଏହି ପ୍ରସଙ୍ଗ ଉପରେ ଏହି ପୁସ୍ତକରେ ଏକ ନିଜସ୍ୱ ଉପକ୍ରମଣିକା ଲେଖି ଦେବାକୁ ଗୋରା ମୋତେ ଅନୁରୋଧ କରିଥିଲେ । କିନ୍ତୁ ମୋର ମୁଖବନ୍ଧକୁ ପାଠ କରିବା ପୂର୍ବରୁ ପ୍ରଥମେ ଗୋରାଙ୍କର ମୂଳ ପୁସ୍ତକଟି ପଢ଼ିବା ଆବଶ୍ୟକ ବୋଲି ମୁଁ ମନେକରୁଛି ।

( ୨ )

ପାଠକମାନେ ଦେଖିବାକୁ ପାଇଥିବେ ଯେ ଗାନ୍ଧୀଜୀ ଓ ଗୋରାଙ୍କର ପ୍ରଥମ ସାକ୍ଷାତରେ ଗୋରା ଯଦିବା ନିଜକୁ ଜଣେ ନିରୀଶ୍ୱରବାଦୀ ଭାବରେ ପରିଚୟ ଦେବାକୁ ଆଗ୍ରହ ଦେଖାଇଛନ୍ତି ତଥାପି ଗାନ୍ଧୀଜୀ ତାଙ୍କୁ ଜଣେ ନିଷ୍ଠାପର ଓ ଦାୟିତ୍ୱବାନ୍ ବ୍ୟକ୍ତି ଭାବରେ ବିଚାର କରିଛନ୍ତି । ବରଂ ଗାନ୍ଧୀଜୀଙ୍କ ମାନଦଣ୍ଡରେ ଗୋରା ହେଉଛନ୍ତି ଜଣେ ଈଶ୍ୱରପ୍ରାଣ ବ୍ୟକ୍ତି । ଅବଶ୍ୟ ଗୋରା ନିଜକୁ କେବଳ ଜଣେ ନାସ୍ତିକ ନକହି ବରଂ ନାସ୍ତିକତା ଓ ନିରୀଶ୍ୱରବାଦ ଭିତରେ ଏକ ପାର୍ଥକ୍ୟ ଦେଖାଇଛନ୍ତି ।

ଅବଶ୍ୟ ନାସ୍ତିକ ଓ ନିରୀଶ୍ୱରବାଦ ଭିତରେ ଗୋରା ଦେଖାଇଥିବା ପାର୍ଥକ୍ୟ ଜଟିଳ ଓ ପରସ୍ପର ବିରୋଧୀ ମନେ ହୋଇପାରେ । ଗୋରା ଏହି ବିରୋଧାଭାଷକୁ ଦୂର କରିବାକୁ ଯାଇ କହିଛନ୍ତି ଯେ, ନାସ୍ତିକତା ନାକାରାତ୍ମକ, ଯେହେତୁ ଏହାଦ୍ୱାରା କେବଳ ଈଶ୍ୱରଙ୍କର ଅସ୍ତିତ୍ୱକୁ ଅସ୍ୱୀକାର କରାଯାଏ । ବରଂ ନିରୀଶ୍ୱରବାଦ ସାକାରାତ୍ମକ ଯେହେତୁ ଏହାର ତାତ୍ପର୍ଯ୍ୟ ହେଉଛି ଆତ୍ମବିଶ୍ୱାସ ଓ ସ୍ୱାଧୀନ ସଙ୍କଳ୍ପ । ମୋ ବିଚାରରେ ନିରୀଶ୍ୱରବାଦର ଏହି ପାରିଭାଷିକ ଅର୍ଥ ଗୋରାଙ୍କର ଏକ ସ୍ୱକୀୟ ସଂଜ୍ଞା ଯାହାଙ୍କ ସାଧାରଣ ଅର୍ଥ ଦୃଷ୍ଟିରୁ ପୃଥକ୍ ।

ସାଧାରଣତଃ ଯେଉଁମାନେ 'ଈଶ୍ୱର' ଓ ତତ୍‌ସମ୍ପର୍କୀୟ ଆଲୋଚନା କରିଥାନ୍ତି ସେମାନଙ୍କୁ ରହସ୍ୟବାଦୀ ବୋଲି କୁହାଯାଇଥାଏ । କାରଣ ଏ ପ୍ରତ୍ୟୟଟିର ଅର୍ଥ ରହସ୍ୟପୂର୍ଣ୍ଣ ମନେହୁଏ । ବିଜ୍ଞାନ କ୍ଷେତ୍ରରେ ଯେଉଁସବୁ ଶବ୍ଦାବଳୀ ବ୍ୟବହାର କରାଯାଏ ସେସବୁର ନିର୍ଦ୍ଦିଷ୍ଟ ସଂଜ୍ଞା ବା ଅର୍ଥ ଦେବା ସମ୍ଭବ ହୋଇଥାଏ; କିନ୍ତୁ ଈଶ୍ୱର ପ୍ରତ୍ୟୟର ସେପରି ନିର୍ଦ୍ଦିଷ୍ଟ ଅର୍ଥ ଦେବା ସମ୍ଭବ ହୁଏନାହିଁ ।

'ଈଶ୍ୱର' କହିଲେ ଗାନ୍ଧୀଜୀ ଠିକ୍ କ'ଣ ବୁଝନ୍ତି ତାହା ଜାଣିବାପାଇଁ ଗୋରା ପତ୍ର ମାଧ୍ୟମରେ ତାଙ୍କ ସହିତ ଯୋଗାଯୋଗ ସ୍ଥାପନ କରିଥିଲେ । ଗାନ୍ଧୀଜୀ ଉତ୍ତରରେ "ଈଶ୍ୱର ମଣିଷର ଅବବୋଧର ଊର୍ଦ୍ଧ୍ୱରେ" ବୋଲି ଲେଖିଥିଲେ । ଗାନ୍ଧୀଜୀଙ୍କର ଏହି ଉତ୍ତର ଉପନିଷଦର ନେତି ନେତି ବ୍ୟାଖ୍ୟା ସହିତ ପ୍ରାୟ ସମାନ । ଉପନିଷଦରେ ଈଶ୍ୱରଙ୍କୁ 'ଯତୋବାଚୋ ନିବର୍ତ୍ତନ୍ତେ ଅପ୍ରାପ୍ୟ ମନସା ସହ' (ଯାହାକୁ ଭାଷା ବା ବୁଦ୍ଧିରେ ବୁଝାଇ ହେବନାହିଁ) ବୋଲି କୁହାଯାଇଛି । ଏଥିରୁ ଜଣେ ଏହି ସିଦ୍ଧାନ୍ତରେ ପହଞ୍ଚିବ ଯେ ଯଦିଓ ଈଶ୍ୱର ମଣିଷ ବୁଦ୍ଧିର ବହିର୍ଭୂତ ବିଷୟ ତେବେ ଈଶ୍ୱରଙ୍କ ପ୍ରସଙ୍ଗରେ ଏତେ ସାହିତ୍ୟ ସୃଷ୍ଟି ହୋଇ-ନଥାନ୍ତା । ଏ କ୍ଷେତ୍ରରେ ଜଣେ ଦ୍ରଷ୍ଟା ହୁଏତ ଏତିକି କେବଳ ସ୍ୱୀକାର କରିଥାନ୍ତେ, "ମୁଁ କିଛି ସତ୍ତାକୁ ଅନୁଭବ କରିପାରୁଛି କିନ୍ତୁ ତାହାର ସ୍ୱରୂପ କ'ଣ ତାହା କହିବାକୁ ସକ୍ଷମ ନୁହଁ । ମୁଁ ଏହାକୁ ଈଶ୍ୱର ବୋଲି କହୁଛି । ମୁଁ ଅନୁଭବ କରୁଛି ଯେ ମୁଁ ଏହାଠାରୁ ଅଭିନ୍ନ; କିନ୍ତୁ ଏହା ବିଷୟରେ ଆଉ କିଛି ବର୍ଣ୍ଣନା ଦେବା ମୋ ପକ୍ଷରେ ସମ୍ଭବପର ନୁହେଁ ।" କିନ୍ତୁ ବାସ୍ତବ ପକ୍ଷରେ ଦ୍ରଷ୍ଟା ବା ଲେଖକମାନେ ତାହା କରି-ନାହାନ୍ତି । ଏହି ସ୍ୱୀକାରୋକ୍ତି ସତ୍ତ୍ୱେ ଈଶ୍ୱରଙ୍କୁ କେତେ କେତେ ବୋଧଗମ୍ୟ ଓ ଅସ୍ତିସୂଚକ ବ୍ୟାଖ୍ୟା ଦିଆଯାଇଛି । ଈଶ୍ୱରଙ୍କୁ ସଚ୍ଚିଦାନନ୍ଦ, ସତ୍ୟ-ଶିବ-ସୁନ୍ଦର, ପ୍ରେମମୟ, ପିତା, ମାତା, ନିର୍ଣ୍ଣାୟକ, ଫଳପ୍ରଦାତା, ଅମର, ଅଜର, ସନାତନ, ଅନନ୍ତ, କରୁଣାମୟ, ଜ୍ଞାନଶକ୍ତି, କର୍ମ ଓ ସବୁର ପରମ ଇତ୍ୟାଦି ବୋଲି ବର୍ଣ୍ଣନା କରାଯାଇଛି । ଧର୍ମଗୁରୁମାନେ ଈଶ୍ୱରଙ୍କର କୌଣସି କୌଣସି ଐଶ୍ୱର୍ଯ୍ୟକୁ ଅନ୍ୟାନ୍ୟ ଗୁଣ ତୁଳନାରେ ବିଶେଷ ମହିମାମୟ କରି ଦେଖାଇବାକୁ ଚେଷ୍ଟା କରିଛନ୍ତି ।

ପରିଣାମତଃ ଅବୋଧଗମ୍ୟ ଓ ଅସୀମ ଈଶ୍ୱର ମଣିଷର ବୋଧଶକ୍ତି ଭିତରେ ସୀମିତ ହେବା ସହିତ ଭିନ୍ନ ଭିନ୍ନ ଭାବରେ ଗ୍ରହଣଯୋଗ୍ୟ ହୋଇଛନ୍ତି । ସୁତରାଂ ଧର୍ମଗୁରୁମାନଙ୍କର ବ୍ୟାଖ୍ୟାକୁ ନେଇ ଈଶ୍ୱରଙ୍କ ପ୍ରସଙ୍ଗରେ ବହୁବିଧ ସିଦ୍ଧାନ୍ତମାନ ଗଢ଼ି ଉଠିବା ସହିତ ଈଶ୍ୱର ଓ ଜୀବ ଏବଂ ଈଶ୍ୱର ଓ ସୃଷ୍ଟି ଭିତରେ ଥିବା ସମ୍ବନ୍ଧ ଉପରେ ନାନା ମତବାଦମାନ ସୃଷ୍ଟି ହୋଇଛି । ଏହା ଫଳରେ କେତେ କେତେ ଗୋଷ୍ଠୀ, ଶ୍ରେଣୀ ଓ ସମ୍ପ୍ରଦାୟ ସୃଷ୍ଟି ହେବା ସହିତ ସେମାନଙ୍କ ମାନଦଣ୍ଡରେ ଜୀବନ ଓ ଜଗତର ମୂଲ୍ୟ ନେଇ କେତେ କେତେ ସିଦ୍ଧାନ୍ତର ଉଦ୍ଭବ ହୋଇଛି ।

ଗୋରାଙ୍କ ସହିତ ମୁଁ ଏକମତ ଯେ ଧର୍ମସମ୍ପ୍ରଦାୟଗୁଡ଼ିକ ମଣିଷ ସମାଜରେ ସଦ୍ଭାବ ଆଣିବାକୁ ଅସମର୍ଥ ହେବା ତାହା ଧର୍ମର ଉଦ୍ଦେଶ୍ୟ ବୋଲି ଧରି ନିଆଯାଏ । କିନ୍ତୁ ପ୍ରଶ୍ନ ହେଉଛି ଧର୍ମରୁ ଏହି ସାମ୍ପ୍ରଦାୟିକ ଗ୍ରୁପର ବିଲୋପ କିପରି ସମ୍ଭବ ? କୌଣସି ମହାନ୍ ଧର୍ମର ପ୍ରବର୍ତ୍ତକ କେବେ ଗୋଟିଏ ସାମ୍ପ୍ରଦାୟିକ ଗୋଷ୍ଠୀ ସୃଷ୍ଟି କରି ତାହାରି ଭିତରେ ଆବଦ୍ଧ ରହିବାକୁ ଆକାଂକ୍ଷା ଘୋଷଣା କରିନଥିବେ । ସମଗ୍ର ମାନବସମାଜ ପାଇଁ ତାଙ୍କର ବାଣୀ ଉଦ୍ଦିଷ୍ଟ ବୋଲି ସେ ଗ୍ରହଣ କରିବେ । କିନ୍ତୁ ଏହା ଏକ ବିଡ଼ମ୍ବନା ଯେ ସମୟାନୁକ୍ରମେ ପ୍ରତ୍ୟେକଙ୍କର ବାଣୀକୁ ନେଇ ଗୋଟିଏ ଗୋଟିଏ ସମ୍ପ୍ରଦାୟ ବା କେତେକ ଗୋଷ୍ଠୀ ସୃଷ୍ଟି ହୋଇଛି ।

ନିରୀଶ୍ୱରବାଦ ହେଉଛି ଏହି ସାମ୍ପ୍ରଦାୟିକ ଭାବଧାରା ବିରୁଦ୍ଧରେ ଏକ ପ୍ରତିକ୍ରିୟା ମାତ୍ର । କିନ୍ତୁ ଏହା ମଧ୍ୟ ଏକ ନିର୍ଦ୍ଦିଷ୍ଟ ଶ୍ରେଣୀ ଭିତରେ ଆବଦ୍ଧ । ଅନ୍ୟ ଗୋଷ୍ଠୀଗୁଡ଼ିକର ଭଲମନ୍ଦ ଦିଗପରି ନିରୀଶ୍ୱରବାଦର ଉତ୍କର୍ଷ ବା ଅପକର୍ଷ ଦିଗ ବି ରହିବା ସମ୍ଭବ । ଏହି ଗ୍ରୁପର ପରିବର୍ତ୍ତନ ସାମ୍ପ୍ରଦାୟିକ ବିଗ୍ରହର କ୍ଷେତ୍ରରେ ମଧ୍ୟ ସମୟରେ ହୋଇଥାଏ । ଗୋଟିଏ ଗ୍ରୁପ ପରିବର୍ତ୍ତେ ଆଉ ଏକ ନୂତନ ଗ୍ରୁପ ଆବିଷ୍କାର କରାଯାଏ । କିନ୍ତୁ ଏକ ଗ୍ରୁପବିହୀନ ସର୍ବଜନାଦୃତ ଧର୍ମ ସୃଷ୍ଟି କରିବା ଅଦ୍ୟାବଧି ସମ୍ଭବପର ହୋଇନାହିଁ । ସମ୍ଭବତଃ ବର୍ତ୍ତମାନ ସୁଦ୍ଧା ଆମର ମାନସିକ ସ୍ତର ଏଥିପାଇଁ ଯଥେଷ୍ଟ ପକ୍ୱ ନୁହେଁ । ଯଦି ବାସ୍ତବରେ ଆମେମାନେ ବିଜ୍ଞ ତେବେ ଆମେ ଏହିପରି ଏକ ବିଗ୍ରହର ବିମର୍ଶ ସୃଷ୍ଟି କରିବା ଯାହାକି ସମସ୍ତଙ୍କ ପାଇଁ ଗ୍ରହଣ-ଯୋଗ୍ୟ ହୋଇପାରିବ । ସେଥିପାଇଁ ଈଶ୍ୱର ବା ଆତ୍ମା ଇତ୍ୟାଦି ବିଷୟରେ କୌଣସି ବୋଧଗମ୍ୟ ଭାଷାରେ ବର୍ଣ୍ଣନା ନଦେବା ପ୍ରଥମେ ଆବଶ୍ୟକ । କାରଣ ଏହି ବର୍ଣ୍ଣନାକୁ ଭିତ୍ତିକରି ସାମ୍ପ୍ରଦାୟିକ ଶ୍ରେଣୀଗୁଡ଼ିକର ହିଁ ଉଦ୍ଭବ ହୋଇଛି ।

ବର୍ତ୍ତମାନ ନିରୀଶ୍ୱରବାଦ ବିଷୟରେ ବିଚାର କରାଯାଉ । ଈଶ୍ୱର ସଙ୍କାନ୍ତୀୟ ବର୍ଣ୍ଣନା ଓ ତହିଁରୁ ସୃଷ୍ଟ ସାମ୍ପ୍ରଦାୟିକ ଶ୍ରେଣୀଗୁଡ଼ିକର ବିଗ୍ରହ ବିମର୍ଶ ଭିତରେ ରହିଥିବା ବିରୋଧାଭାସକୁ ଜଣେ ହେତୁବାଦୀ ବା ବୈଜ୍ଞାନିକ (ବା ଯେ ନିଜକୁ ଏହି

ପ୍ରକାର ସ୍ୱତନ୍ତ୍ର) ଲକ୍ଷ୍ୟ କରନ୍ତି । କୌଣସି 'ପରମ ସତ୍ତ୍ୱ'—ଯାହା ବିଷୟରେ କେତେ ଦ୍ରଷ୍ଟା ଏତେ ନିର୍ଭରଯୋଗ୍ୟ ଭାବରେ କହିଥାନ୍ତି—ତାହା କେଉଁଠାରେ ହେଲେ ସେ ଅନୁଭବ କରିପାରନ୍ତି ନାହିଁ । ସେ ପ୍ରତ୍ୟେକଟି ବସ୍ତୁ ଓ ଶକ୍ତିର ସୂକ୍ଷ୍ମାତିସୂକ୍ଷ୍ମ ବିଶ୍ଳେଷଣ କରି ମଧ୍ୟ କୌଣସି କ୍ଷେତ୍ରରେ ଈଶ୍ୱରଙ୍କର ଅସ୍ତିତ୍ୱକୁ ଦେଖିପାରନ୍ତି ନାହିଁ । ପ୍ରତ୍ୟେକ ବସ୍ତୁର ଗୁଣ ସକଳକୁ ବସ୍ତୁଠାରୁ ପୃଥକ୍ କରି ଦେଖିବା ଭିତରେ ବସ୍ତୁର ଗୁଣ ସମୂହ ଛଡ଼ା ଏହା ଭିତରେ ଅନ୍ୟ କିଛି ସତ୍ତ୍ୱର ଅସ୍ତିତ୍ୱ ରହିଥିବା ଦେଖାଯାଏ ନାହିଁ । ସୁତରାଂ ଆମର ଜ୍ଞେୟ ପରିଧିଟି ଭିତରେ ଈଶ୍ୱରଙ୍କର କିଛି ସତ୍ତ୍ୱା ରହିଥିବା ସମ୍ଭବ ମନେହୁଏ ନାହିଁ । ବସ୍ତୁତଃ ଏକ ଅନୁଶୀଳନାତ୍ମକ ଚିନ୍ତନ ଭିତରେ ଈଶ୍ୱର ବିଷୟରେ କୌଣସି ଦ୍ରଷ୍ଟାଙ୍କର ବ୍ୟକ୍ତିଗତ ବିଶ୍ୱାସ ବା ଅନୁଭୂତି ପ୍ରମାଣସିଦ୍ଧ ଭାବରେ ଗ୍ରହଣଯୋଗ୍ୟ ହେବା ସମ୍ଭବ ହୁଏ ନାହିଁ । ଏହା ଏକ ମାନସିକ ଭ୍ରମ ବା ସ୍ଖଳ ବିଶେଷରେ ଏ ସଦାଜାଗ୍ରତ ବିଶ୍ୱର ଏକ ଉଦ୍ଦେଶ୍ୟମୂଳକ ଉଦ୍ଭାବନ ବୋଲି ସେ ଗ୍ରହଣ କରନ୍ତି । ସେ ନିଜକୁ ଜଣେ ନିରୀଶ୍ୱରବାଦୀ ବୋଲି କହିବା ଶ୍ରେୟସ୍କର ବିଚାର କରନ୍ତି । ଈଶ୍ୱର ଯେ ମଣିଷ ମନର ଏକ କଳ୍ପନା ଓ ଭ୍ରାନ୍ତି ମାତ୍ର ଓ ତାଙ୍କର ଅସ୍ତିତ୍ୱ ନେଇ କୌଣସି ତଥ୍ୟ ବା ପ୍ରମାଣ ନାହିଁ ଏହି ବିଚାର ଜନମାନସରେ ସୃଷ୍ଟି ହୋଇପାରିଲେ ଈଶ୍ୱର ପ୍ରତୀତିକୁ ନେଇ ସୃଷ୍ଟି ହୋଇଥିବା ଜଟିଳ ପ୍ରହେଳିକାଗୁଡ଼ିକ ଦୂର ହୋଇପାରିବ । କେବଳ ସେତିକି ନୁହେଁ; ଏହି ବିଶ୍ୱାସକୁ ଭିତ୍ତି କରି ସୃଷ୍ଟି ହୋଇଥିବା ସମସ୍ତ ଧର୍ମଗତ ଓ ସାମାଜିକ ଦ୍ୱନ୍ଦ୍ୱ, ଚିନ୍ତାଶୂନ୍ୟ ଓ ଜୀବନବିରୋଧୀ ପରମ୍ପରା ଓ ସାମାଜିକ କର୍ତ୍ତବ୍ୟବୋଧ ପ୍ରତି ଉଦାସୀନତା ଇତ୍ୟାଦିକୁ ମଧ୍ୟ ଦୂର କରାଯାଇ ପାରିବ । ଜଣେ ନିରୀଶ୍ୱରବାଦୀର ଜୀବନାଦର୍ଶ ଓ ବାର୍ତ୍ତା ହେବ "ଈଶ୍ୱରଙ୍କୁ ଭୁଲିଯାଅ । ଏହି ବିଶ୍ୱକୁ ସୃଷ୍ଟି କରିଥିବା, ଜଗତକୁ ଆତଯାତ କରୁଥିବା ଓ ଏହି ସଂସାରରେ ମଣିଷ ସମାଜର ଭାଗ୍ୟକୁ ନିୟନ୍ତ୍ରଣ କରି ମଣିଷକୁ ଏକ ସତରଞ୍ଜି ପାଲି ଭିତରେ କ୍ରୀଡ଼ନକ ପରି ଖେଳାଉଥିବା ଏପରି କେହି ସର୍ବଶକ୍ତିମାନ ଅଲୌକିକ ଈଶ୍ୱର ନାହାନ୍ତି । ଏହି ବିଶ୍ୱାସର ଜାଲ ଭିତରୁ ମୁକ୍ତ ହେଲେ ତୁମେ ଅନୁଭବ କରିବ ଯେ ତୁମେ ହେଉଛ ଜଣେ ସ୍ୱାଧୀନ ବ୍ୟକ୍ତି ଓ ତୁମେ ହିଁ ତୁମ ଜୀବନର ନିୟାମକ । ସମସ୍ତ ଧର୍ମଗତ ପରମ୍ପରା, ସାମାଜିକ ବିଧି-ବିଧାନ ଓ ନୈତିକ ମୂଲ୍ୟବୋଧ ହିଁ ତୁମ ମୋ ପରି ମଣିଷମାନଙ୍କ ଉତ୍କୃଷ୍ଟ ବା ନିକୃଷ୍ଟ ବିଚାର ଭିତରୁ ସୃଷ୍ଟ ।"

ମୁଁ ଭାବୁଛି ଜଣେ ଆସ୍ତିକ ଓ ଗୋରା ଏକ ନାଆର ପଥିକ । ନିଜର ମାନସିକ ସୀମିତତା ଯୋଗୁଁ ଜଣେ ଆସ୍ତିକ ଈଶ୍ୱରଙ୍କୁ ଅମୂର୍ତ୍ତ (abstract) ଭାବରେ ନନେଇ ଏକ ମୂର୍ତ୍ତ (concrete) ପ୍ରତୀତି ଭାବରେ ଗ୍ରହଣ କରିଥାଏ । ଈଶ୍ୱରଙ୍କୁ ମଣିଷ ଅବଧାରଣାର ବହିର୍ଭୂତ ବୋଲି କହି ମଧ୍ୟ ଗାନ୍ଧୀଜୀ 'ଈଶ୍ୱର ସତ୍ୟ' ବୋଲି

କହି ଈଶ୍ୱରଙ୍କୁ ଏକ ସୀମିତ ଓ ବୋଧଗମ୍ୟ ବର୍ଣ୍ଣନା ଭିତରେ ବୁଝିବାକୁ ଚେଷ୍ଟା କରିଛନ୍ତି । ଅବଶ୍ୟ ପରେ ଏହି ଅଭିବ୍ୟକ୍ତିକୁ ପରିବର୍ତ୍ତନ କରି ସେ 'ସତ୍ୟ ହିଁ ଈଶ୍ୱର' କହିବା ଅଧିକ ଯୁକ୍ତିସଙ୍ଗତ ବୋଲି ବିଚାର କରିଛନ୍ତି । ଏହି ପରିବର୍ତ୍ତିତ ଅଭିବ୍ୟକ୍ତିଟି ନିରୀଶ୍ୱରବାଦୀ ଓ ସଂଶୟବାଦୀମାନଙ୍କୁ ହୁଏତ ଭଲ ଲାଗିପାରେ । ତାଙ୍କର ସର୍ବଧର୍ମ ସମନ୍ୱୟ ବିଚାର ପରିପ୍ରେକ୍ଷୀରେ ସେ ସେମାନଙ୍କୁ ଯଥୋଚିତ ଭାବରେ ଗ୍ରହଣ କରିନେବା ଏହାଦ୍ୱାରା ବି ସମ୍ଭବ ହୋଇଛି । ଯେତେବେଳେ ପର୍ଯ୍ୟନ୍ତ ଜଣେ ନିରୀଶ୍ୱରବାଦୀ ସତ୍ୟକୁ ଏକ ସର୍ବୋତ୍ତମ ଲକ୍ଷ୍ୟ ଭାବରେ ଗ୍ରହଣ କରିବେ ସେ ପର୍ଯ୍ୟନ୍ତ ଗାନ୍ଧୀଜୀଙ୍କର ସର୍ବଧର୍ମ ସମନ୍ୱୟ ଭିତରେ ମଧ୍ୟ ସମାନ ସ୍ଥାନ ଅଧିକାର କରିପାରିବେ । ଅବଶ୍ୟ 'ଈଶ୍ୱର ସତ୍ୟ' ବା 'ସତ୍ୟ ହିଁ ଈଶ୍ୱର' ଯେ ପ୍ରକାର କହିଲେ ମଧ୍ୟ 'ସତ୍ୟ'କୁ ଏହାର ଅଧିକ ବୋଧଗମ୍ୟତା ପାଇଁ ଗ୍ରହଣ କରାଯାଏ । ସେହିପରି ଈଶ୍ୱରଙ୍କୁ ପ୍ରେମମୟ ବା ଆନନ୍ଦମୟ ଇତ୍ୟାଦି ବୋଲି ବି କେହି କହିପାରନ୍ତି । ସତ୍ୟ, ପ୍ରେମ, ଆନନ୍ଦ, ପବିତ୍ରତା ଇତ୍ୟାଦି ପ୍ରତ୍ୟୟ ଉପରେ ଭାବିବା ସମୟରେ ଏଗୁଡ଼ିକର ଏକ ସାଧାରଣ ଓ ନିର୍ଦ୍ଦିଷ୍ଟ ଅର୍ଥ ଥିବା ସହିତ ଏକ ମୂର୍ତ୍ତି ପରିକଳ୍ପନା ମନ ଭିତରେ ଯେପରି ସ୍ଥାନ ପାଏ, ଈଶ୍ୱରଙ୍କୁ ଓଁ, ଅଲ୍ଲା, ଜେହୋଭା ବା ସେହିପରି କୌଣସି ସମଅର୍ଥବୋଧକ ଶବ୍ଦ ଭାବରେ ଗ୍ରହଣ କରିବା ଦ୍ୱାରା ଏପରି ନିର୍ଦ୍ଦିଷ୍ଟ ଧାରଣା ଆସିପାରେ ନାହିଁ । ପରବର୍ତ୍ତୀ ଶବ୍ଦଗୁଡ଼ିକରୁ କୌଣସି ନିର୍ଦ୍ଦିଷ୍ଟ ଧାରଣା ସୃଷ୍ଟି ନହୋଇ ବରଂ ସେସବୁ କୌଣସି ଅବର୍ଣ୍ଣନୀୟ, ମହାନ୍, ଶକ୍ତିମାନ୍ ଓ ଅଲୌକିକ ଶକ୍ତିକୁ ବୁଝାଇବା ପରି ମନେହୁଏ ।

ଈଶ୍ୱରଙ୍କୁ ଏକ ସଗୁଣ ବା ନିର୍ଗୁଣ ସତ୍ତା ଭାବରେ ଗ୍ରହଣ କରିବାର ଅବବୋଧ ସହିତ ସନ୍ତୁଷ୍ଟ ନହୋଇ ଗୋରା ମୂଳ ସତ୍ୟଟିକୁ ବୁଝାଇବାକୁ ଯାଇ ନିରୀଶ୍ୱର (Atheos) ପ୍ରତ୍ୟୟ ବ୍ୟବହାର କରିବାକୁ ଅଧିକ ଯୁକ୍ତିସଙ୍ଗତ ମନେ କରିଛନ୍ତି । ନିରୀଶ୍ୱର ଶବ୍ଦଟିର ତାତ୍ପର୍ଯ୍ୟ ସହଜରେ ବୋଧଗମ୍ୟ ହୋଇପାରୁଥିବାରୁ ଓ ଏହା ସହିତ କୌଣସି ରହସ୍ୟବାଦ ସଂଶ୍ଳିଷ୍ଟ ହୋଇ ନଥିବା ଯୋଗୁଁ ଗୋରା ଏହି ଶବ୍ଦଟିକୁ ବ୍ୟବହାର କରିଛନ୍ତି ।

କିନ୍ତୁ ଏହା ମଧ୍ୟ ତ୍ରୁଟିଶୂନ୍ୟ ବୋଲି କୁହାଯାଇ ପାରିବ ନାହିଁ । ଗାନ୍ଧୀଜୀଙ୍କ ସହ ପ୍ରଥମ ସାକ୍ଷାତରେ ଗୋରା ଏହି ଶବ୍ଦର ନାକାରାତ୍ମକ ଆକାର ସତ୍ତ୍ୱେ ଏହାର ସାକାରାତ୍ମକ ବିଷୟ ବୁଝାଇବାକୁ ଚେଷ୍ଟା କରିଛନ୍ତି । କେବଳ ନାସ୍ତିକତା ଏହି ଶବ୍ଦର ଅର୍ଥ ନୁହେଁ ବୋଲି ସେ ଗାନ୍ଧୀଜୀଙ୍କୁ କହିଛନ୍ତି । ଶବ୍ଦଟିର ଆକାରଗତ ଅର୍ଥ ପରିବର୍ତ୍ତେ ସେ ଏହାର ଏକ ପୁନର୍ନିର୍ମିତ ସଂଜ୍ଞା ଦେବାକୁ ଯାଇ କହିଛନ୍ତି, "ନିରୀଶ୍ୱରବାଦ ହେଉଛି ଆତ୍ମବିଶ୍ୱାସ ଓ ସ୍ୱାଧୀନ ସଂକଳ୍ପ ।" ବସ୍ତୁତଃ ତାଙ୍କର ସଂଜ୍ଞା ଭିତରେ 'ନିରୀଶ୍ୱର' ବ୍ୟକ୍ତି ଭିତରେ ଆତ୍ମବିଶ୍ୱାସ ଓ ସ୍ୱାଧୀନ ଚିନ୍ତାକୁ ବୁଝାଇବାକୁ

ଉର୍ଦ୍ଧିଷ୍ଟ ହେବାବେଳେ ଈଶ୍ୱର ବ୍ୟକ୍ତିର ଅସହାୟତା ଓ ଆତ୍ମପ୍ରତ୍ୟୟହୀନତାକୁ ବୁଝାଇଥାଏ ।

ଏହି ପରିପ୍ରେକ୍ଷୀରେ ପ୍ରଥମ ପ୍ରଶ୍ନ ହେଉଛି—ସମସ୍ତ ନିରୀଶ୍ୱରବାଦୀମାନେ 'ନିରୀଶ୍ୱର' ପ୍ରତ୍ୟୟର ଏହି ଅର୍ଥ ସହିତ ସହମତ ହେବେ କି ? ମୋର ଆଶଙ୍କା ହୁଏ ଈଶ୍ୱରଙ୍କର ବର୍ଣ୍ଣନା ଭିତରେ ଯେପରି ବହୁମତ ରହିଛି ସେହିପରି ନିରୀଶ୍ୱରର ଏହି ସାକାରାତ୍ମକ ବର୍ଣ୍ଣନା କ୍ଷେତ୍ରରେ ମଧ୍ୟ ବହୁବିଧ ମତପାର୍ଥକ୍ୟ ରହିବା ସମ୍ଭବ ।

ଏପରିକି ଜଣେ ଆସ୍ତିକ ଈଶ୍ୱର ଶବ୍ଦ କ୍ଷେତ୍ରରେ ଏହି ବର୍ଣ୍ଣନା ମଧ୍ୟ ଦେଇ-ପାରେ । ବ୍ୟକ୍ତି ଭିତରେ ଆତ୍ମବିଶ୍ୱାସ ଓ ସ୍ୱାଧୀନ ସଂକଳ୍ପକୁ ସେ ଈଶ୍ୱର କହିପାରନ୍ତି ବା ଈଶ୍ୱରଙ୍କୁ ଏକ ଆତ୍ମଶକ୍ତି ଭାବରେ ବୁଝାଇବାକୁ ଯାଇ ଈଶ୍ୱର ଶବ୍ଦର ତାତ୍ପର୍ଯ୍ୟ ବ୍ୟକ୍ତି ଭିତରେ ଆତ୍ମବିଶ୍ୱାସ ଓ ସ୍ୱାଧୀନ ଚିନ୍ତା ବୋଲି ଧରିପାରନ୍ତି । ନିର୍ଭରଶୀଳତା, ଅସହାୟତା ଇତ୍ୟାଦିକୁ ସେ ବସ୍ତୁବାଦ ଭାବରେ ନେଇ ସେ ଏହାକୁ ନିରୀଶ୍ୱର ସହିତ ସଶ୍ଳିଷ୍ଟ କରିପାରନ୍ତି । ଏହି ଶବ୍ଦଗତ ପାର୍ଥକ୍ୟ ଠିକ୍ ଉପନିଷଦରେ ରହିଥିବା ତର୍କ ଜଗତର ସୃଷ୍ଟି ସତ୍ ନା ଅସତ୍ କେଉଁଥିରୁ ଉଦ୍ଭବ—ସହିତ ଯେ ସମାନ ତାହା କୁହାଯାଇପାରେ ।

ମୁଁ ଗୋରଙ୍କୁ ଏହି ପ୍ରଶ୍ନ ପଚାରିଥିଲି —"ଆପଣ ସ୍ୱାଧୀନ ସଂକଳ୍ପ କହିଲେ ଠିକ୍ କ'ଣ ବୁଝନ୍ତି ? କୌଣସି ଧର୍ମଗତ ପ୍ରତିବନ୍ଧକ ବା ବିଶ୍ୱାସର ବଶବର୍ତ୍ତୀ ନହୋଇ ସ୍ୱାଧୀନ ଭାବରେ କାର୍ଯ୍ୟ କରିବା ସ୍ୱାଧୀନ ସଂକଳ୍ପର ତାତ୍ପର୍ଯ୍ୟ ବୋଲି ଆପଣ ଗ୍ରହଣ କରିବେ କି ?"

ଗୋରା ଉତ୍ତରରେ କହିଥିଲେ, "ସ୍ୱାଧୀନ ସଂକଳ୍ପ ଧର୍ମଗତ ବିଶ୍ୱାସ ବା ପ୍ରଭାବରୁ ମୁକ୍ତ ରହି ମୁକ୍ତ ଭାବରେ କାର୍ଯ୍ୟ କରିବାଠାରୁ ଆହୁରି ଅନେକ କିଛି ବୁଝାଇଥାଏ । ମଣିଷର ଭାବଗତ ଆବେଗ ସ୍ତରରେ ଯେପରି ଭଲପାଇବା ବା ଘୃଣା କରିବା ଏକକ ଥିବା ଦେଖାଯାଏ ସେହିପରି ନିଜକୁ ମୁକ୍ତ ବା ଅଧସ୍ତନ ବୋଲି ବିଚାର କରିବା ପ୍ରତ୍ୟେକଙ୍କ ଭିତରେ ରହିଥାଏ ।

ସ୍ୱାଧୀନ ସଂକଳ୍ପ ଦ୍ୱାରା ମଣିଷ ଅନୁଭବ କରେ ଯେ, ସେ ଚିନ୍ତା କରିବା, ନିଜର ଭାବ ପ୍ରକାଶ କରିବା ଓ କର୍ମ କରିବା କ୍ଷେତ୍ରରେ ମୁକ୍ତ ଅଟେ; ଅଥଚ ନିଜକୁ ଅଧସ୍ତନ ବୋଲି ଭାବିବା ଦ୍ୱାରା ସେ ବିଚାର କରେ ଯେ ସେ ଯାହା କିଛି ଭାବୁଛି, କହୁଛି ବା କରୁଛି ସେ ସବୁରେ ସେ ନିୟନ୍ତ୍ରିତ । ଆସ୍ତିକତାବାଦ ବ୍ୟକ୍ତିକୁ ଅଧସ୍ତନ କରି ରଖିଥାଏ; କାରଣ ଏହି ଦୃଷ୍ଟିଭଙ୍ଗୀ ବ୍ୟକ୍ତିକୁ କୌଣସି ପରମସତ୍ତା ପାଖରେ ନ୍ୟୂନ କରି ଏକ ଅଦୃଷ୍ଟ ହାତରେ ତା'ର ଜୀବନ କ୍ରୀଡ଼ନକ ତୁଲ୍ୟ ବୋଲି ଗ୍ରହଣ

କରିଥାଏ । ଅପରପକ୍ଷରେ ନିରୀଶ୍ୱରବାଦ ବ୍ୟକ୍ତିର ସ୍ୱାଧୀନତାକୁ ସ୍ୱୀକାର କରି ବ୍ୟକ୍ତି ଭିତରେ ସ୍ୱାଧୀନ ସଂକଳ୍ପର ପରିପ୍ରକାଶକୁ ହିଁ ଗ୍ରହଣ କରିଥାଏ ।"

ଗୋଗ୍ ନିରୀଶ୍ୱରବାଦର ଯେଉଁ ତାତ୍ପର୍ଯ୍ୟ ଦେଖାଉଛନ୍ତି ତାହାକୁ ଜଣେ ଆସ୍ତିକତାବାଦ ସପକ୍ଷରେ ଦର୍ଶାଇ ଅଧସ୍ତନ ବା ପରାଧୀନ ମନୋଭାବକୁ ନିରୀଶ୍ୱର-ବାଦ ସହ ସଂଶ୍ଳିଷ୍ଟ କରିପାରନ୍ତି । ଏହି ପରିପ୍ରେକ୍ଷୀରେ ଛାନ୍ଦୋଗ୍ୟ ଉପନିଷଦର ଶ୍ଳୋକକୁ ଉଦ୍ଧାର କରାଯାଇପାରେ—

ଯ ଆତ୍ମା ଅପହତ ପାପ୍ମା ବିଜରୋ ବିମୃତ୍ୟୁଃ ବିଶୋକୋ ଅବିଜିଘତ୍ସୋ ଅପିପାସଃ ସତ୍ୟକାମଃ, ସତ୍ୟସଂକଳ୍ପଃ ସ ଅନ୍ୱେଷ୍ଟବ୍ୟଃ, ସ ବିଜିଜ୍ଞାସିତବ୍ୟଃ, ସ ସର୍ବାଂଶ୍ଚ ଲୋକାନ୍ ଆପ୍ନୋତି, ସର୍ବାଂଶ୍ଚ କାମାନ୍, ଯସ୍ ତମ୍ ଆତ୍ମାନମ୍ ଅନୁବିଦ୍ୟ ବିଜାନାତି ଇତି ହ ପ୍ରଜାପତିର୍ ଉବାଚ (୮-୭-୧)

ଯେଉଁ ଆତ୍ମା ମନ୍ଦ, ଜରା, ମୃତ୍ୟୁ, ଦୁଃଖ, ଶୋକର ଊର୍ଦ୍ଧ୍ୱ ଓ ସକଳ କାମନା ବାସନାରୁ ବହିର୍ଭୂତ ସେହି ଆତ୍ମାକୁ ସନ୍ଧାନ କରିବା ଉଚିତ । ଏହି ଆତ୍ମାକୁ ବୁଝିବା ପାଇଁ ଜଣଙ୍କର ଲକ୍ଷ୍ୟ ରହିବା ଉଚିତ । ଯେ ଏହି ଆତ୍ମାକୁ ଅବବୋଧ କରି ଏହାର ସ୍ୱରୂପକୁ ବୁଝିବାକୁ ସମର୍ଥ ସେ ସମସ୍ତ ଲୋକ ଓ ନିଜର ସକଳ କାମନାକୁ ନିୟନ୍ତ୍ରଣ କରିବା ସମ୍ଭବ ।

ବସ୍ତୁତଃ ଗୋଗ୍ ସ୍ୱାଧୀନ ଚିନ୍ତା, ସଂକଳ୍ପ ବା ମନୋଭାବର ସୃଷ୍ଟି ପାଇଁ ଯେପରି ନିରୀଶ୍ୱରବାଦ ଗ୍ରହିଁଛନ୍ତି ଜଣେ ଠିକ୍ ସେହି କାରଣରୁ ଅର୍ଥାତ୍ ସ୍ୱାଧୀନ ସଂକଳ୍ପର ବିକାଶ ପାଇଁ ଈଶ୍ୱର ବିଶ୍ୱାସ ଆଶା କରିବା ବି ସମ୍ଭବ ମନେହୁଏ ।

ଯେଉଁମାନେ ଈଶ୍ୱର ବା ନିରୀଶ୍ୱର ବିଷୟରେ ଆଲୋଚନା କରନ୍ତି ସେମାନେ ଦୁଇପ୍ରକାରର ଭୁଲ ଭିତରକୁ ଖସିଯିବା ମନେହୁଏ । ପ୍ରଥମରେ ଜଣେ ନିଜର ସ୍ୱରୂପ ବିଷୟରେ ନଜାଣି ଈଶ୍ୱରଙ୍କର ଅସ୍ତିତ୍ୱ ବା ଅସ୍ତିତ୍ୱହୀନତା ବିଷୟରେ ଆଲୋଚନା କରିଥାନ୍ତି । ସୁତରାଂ ଏହି ପ୍ରଚେଷ୍ଟା ଅବାସ୍ତବ ମନେହୁଏ । ଜଣେ ନିଜର ଅସଲ ସ୍ୱରୂପକୁ ବୁଝିବା, ଜାଣିବା ବା ଅନୁଭବ ନକରିବା ପର୍ଯ୍ୟନ୍ତ ଈଶ୍ୱର ସମ୍ବନ୍ଧରେ ତାଙ୍କର ଚିନ୍ତନ ନିରର୍ଥକ ମନେହୁଏ । କୌଣସି ପରମାଣୁର ମୌଳିକ ଗଠନ ପ୍ରଣାଳୀ ବିଷୟରେ କିଛି ନଜାଣି ଜଣେ ଏକ ଆଣବିକ ବୋମାର ଯାନ୍ତ୍ରିକ ଗଠନ ବା କାର୍ଯ୍ୟକାରିତା ବିଷୟରେ ଜାଣିବା ସମ୍ଭବପର ହୋଇପାରେ; କିନ୍ତୁ ଜଣେ ଆତ୍ମା ବିଷୟରେ ନଜାଣି ଈଶ୍ୱରଙ୍କୁ ବୁଝିବା ସମ୍ଭବପର ନୁହେଁ ।

ମୁଁ ପ୍ରଥମେ ଗୋଗ୍‌ଙ୍କୁ ଏହି ପ୍ରଶ୍ନ ପଚାରିଥିଲି, "ଜୀବନର ଚରମ ପରିଣାମ କ'ଣ ବୋଲି ଭାବୁଛନ୍ତି ?"

ଗୋର୍ ଉତ୍ତରରେ କହିଲେ, "ମୁଁ ଯାହା ବିଷୟରେ ସବୁଠାରୁ ନିଃସନ୍ଦେହ ତାହା ହେଉଛି ମୋର ଅସ୍ତିତ୍ୱ । ମୃତ୍ୟୁ ଦ୍ୱାରା ମୋର ଅସ୍ତିତ୍ୱର ବିଲୋପ ହେବ ବୋଲି ମୁଁ ଭାବୁଛି; କାରଣ ମୃତ୍ୟୁପରେ ମୋର କୌଣସି ସ୍ଥିତି ନେଇ ମୁଁ ଜାଣିବାର ଅବକାଶ ନାହିଁ । ଅବଶ୍ୟ ନିଦ୍ରାବସ୍ଥାରେ ମୁଁ ମୋର ଅସ୍ତିତ୍ୱ ନେଇ ସଚେତନ ରହିପାରୁନି, ଯଦିବା ନିଦ୍ରାଭଙ୍ଗ ପରେ ମୁଁ ମୋର ଅସ୍ତିତ୍ୱ ନେଇ ପୁନର୍ବାର ସଚେତନ ହୋଇପାରୁଛି । କିନ୍ତୁ ମୃତ୍ୟୁ ନିଦ୍ରାବସ୍ଥାଠାରୁ ସମ୍ପୂର୍ଣ୍ଣ ଭିନ୍ନ ।"

"ମୁଁ ବଞ୍ଚି ରହିବାକୁ ଭଲପାଏ । ସୁତରାଂ ମୋ ପାଇଁ ପରମ ସତ୍ୟ ହେଉଛି ମୃତ୍ୟୁକୁ ପରାହତ କରି ବଞ୍ଚିପାରିବା । ମୃତ୍ୟୁ ଅପରିହାର୍ଯ୍ୟ ନୁହେଁ । ଯେତେବେଳେ ଆଦିଜୀବକ (Protoplasom) ସଂଶ୍ଲେଷଣ ହେବା ସମ୍ଭବ ହେବ ସେତେବେଳେ ଆମେ ଯେ କେବଳ ଜରା ଓ ବ୍ୟାଧିକୁ ନିୟନ୍ତ୍ରଣ କରିପାରିବୁ ତା' ନୁହଁ, ମୃତ୍ୟୁକୁ ମଧ୍ୟ ନିୟନ୍ତ୍ରଣ କରିବା ସମ୍ଭବ ହେବ ।"

ମୋଟାମୋଟି କହିଲେ ଗୋର୍‌ଙ୍କ ପାଇଁ ଜୀବର ପରମ ସାରବସ୍ତୁ ହେଉଛି ଅବିରତ ଭାବରେ ବଞ୍ଚି ରହିବାପାଇଁ ସଂକଳ୍ପ ଓ ପ୍ରଚେଷ୍ଟା (ଏଠାରେ 'ଆତ୍ମା' ଶବ୍ଦ ପ୍ରୟୋଗ ନକରି ଜୀବ ବୋଲି ଲେଖିବା ଅଧିକ ସମୀଚୀନ) । ଏଠାରେ ଉପନିଷଦ ଓ ଗୋର୍‌ଙ୍କ ବିଚାର ଭିତରେ ଥିବା ପାର୍ଥକ୍ୟ ପ୍ରଣିଧାନଯୋଗ୍ୟ । ଉପନିଷଦ ମତରେ ଜୀବ ହେଉଛି ଜରା ଓ ମୃତ୍ୟୁରହିତ । ଗୋର୍‌ଙ୍କ ମତରେ ଯଦିବା ଏହା ଜୀବ ପକ୍ଷରେ ଅଦ୍ୟାବଧି ସମ୍ଭବ ହୋଇପାରିନି ତଥାପି ଏହାହିଁ ହେଉଛି ଜୀବର ଲକ୍ଷ୍ୟ । ଗୋର୍ ଏହା ସମ୍ଭବ ହୋଇନଥିବା କହିବାବେଳେ ସେ କେବଳ ଶରୀର ପରିପ୍ରେକ୍ଷୀରେ ହିଁ ଏହା ଚିନ୍ତା କରୁଥିବା ମନେହୁଏ । ଅମରତ୍ୱ ପାଇଁ ଅଭୀପ୍ସା ଓ ଏହା ସମ୍ଭବ ବୋଲି ପରିକଳ୍ପନାକୁ ଏକ ପ୍ରକଳ୍ପ ଭାବରେ ଗୋର୍ ଗ୍ରହଣ କରିବେ । ବର୍ତ୍ତମାନ ଏହା ଏକ ପ୍ରମାଣସିଦ୍ଧ ଘଟଣା ଯେ ଆଦିଜୀବକ (ଯଦି କୌଣସି ବାହ୍ୟିକ ଶକ୍ତିଦ୍ୱାରା ନଷ୍ଟ ନହୋଇଥାଏ) ହେଉଛି କେତେକ ବସ୍ତୁରୁ ସୃଷ୍ଟ ଏକ ଅବିନଶ୍ୱର ଜୈବିକ ଉପାଦାନ । ଆଦିଜୀବକ ଭିତରେ ଯେଉଁ ଜୈବିକ ଅମରତ୍ୱର ଲକ୍ଷଣ ଦେଖାଯାଏ, ତାହା କିପରି ଜୀବକୋଷମାନଙ୍କୁ ନେଇ ଗଠିତ, ସମଗ୍ର ଶରୀର ପ୍ରତି ପ୍ରସାରିତ ହୋଇପାରିବ ତାହା ଚିନ୍ତା କରିବା ଉଚିତ । ଯଦିଓ ଗୋଟିଏ ଜୀବକୋଷ ପାଖରେ ଏହି ଅମରତ୍ୱ ସମ୍ଭବ, କେତେକଙ୍କ କ୍ଷେତ୍ରରେ ଏହା ବାସ୍ତବରେ ସମ୍ଭବ ନହେଲେ ମଧ୍ୟ ଅନ୍ୟ କ୍ଷେତ୍ରରେ ଏହାର ବାସ୍ତବ ସମ୍ଭାବନାକୁ ଅସ୍ୱୀକାର କରାଯାଇନପାରେ । ବସ୍ତୁତଃ ଗୋର୍‌ଙ୍କ ମତରେ କ୍ଷୁଦ୍ର ଆଦିଜୀବକ ହେଉଛି ମୃତ୍ୟୁରହିତ ଜୀବର ଏକ ପ୍ରତିଭୂ ମାତ୍ର । ଗୋର୍‌ଙ୍କର ବିଚାର ଏତିକିରେ ସୀମିତ ଥିବା ମନେହୁଏ । ଅଙ୍ଗାର, ଉଦ୍‌ଜାନ, ଅମ୍ଳଜାନ, ଯବକ୍ଷାରଜାନ ଇତ୍ୟାଦି ଭିତରେ କିପରି ରାସାୟନିକ ଓ ଯୌଗିକ

ପ୍ରକ୍ରିୟାମାନ ସଙ୍ଗଠିତ ହୋଇ ତାହା ପରିଶେଷରେ ଜଟିଳ ଜୀବକୋଷ ଭିତରେ ବନ୍ଧି ରହିବାକୁ, ବୃଦ୍ଧିପ୍ରାପ୍ତ ହେବାକୁ ଓ ନିଜର ସଂଖ୍ୟାକୁ ବୃଦ୍ଧି କରିବାକୁ ଇଚ୍ଛା ଓ ସାମର୍ଥ୍ୟ ସୃଷ୍ଟି କରେ, ତାହା ବିଷୟରେ ରୋଗ ଅନୁସନ୍ଧାନ କରିନାହାନ୍ତି । ବସ୍ତୁତଃ ମୋର ମତରେ ଯେଉଁ ପର୍ଯ୍ୟନ୍ତ ଜୀବର ସ୍ୱରୂପ ନେଇ ଆମର ଜ୍ଞାନ ଯଥାର୍ଥ ନୁହଁ, ସେ ପର୍ଯ୍ୟନ୍ତ ଈଶ୍ୱରଙ୍କ ସ୍ୱରୂପ ଓ ଏପରିକି ତାଙ୍କର ଅସ୍ତିତ୍ୱ ନେଇ ଆମର ଧାରଣା ନିଶ୍ଚିତ ହୋଇପାରିବ ନାହିଁ । ଭାରତୀୟ ଦର୍ଶନ ପରିପ୍ରେକ୍ଷୀରେ ସାଂଖ୍ୟ, ଜୈନ ଓ ବୌଦ୍ଧ ସିଷ୍ଟମ (system) ମାନଙ୍କରେ ଆତ୍ମାର ସ୍ୱରୂପ ନେଇ ଭିନ୍ନ ଭିନ୍ନ ସିଦ୍ଧାନ୍ତମାନ ଦେଖିବାକୁ ମିଳିଥାଏ । ସେହି ଦାର୍ଶନିକ ସିଷ୍ଟମ ସକଳ ଈଶ୍ୱରଙ୍କ ଅସ୍ତିତ୍ୱକୁ ସନ୍ଦେହ ବା ଅସ୍ୱୀକାର କରନ୍ତି ଓ ସେ ନେଇ କୌଣସି ବିତର୍କ ଭିତରକୁ ପଶନ୍ତି ନାହିଁ । ସୁତରାଂ ଆତ୍ମାର ସ୍ୱରୂପ ନେଇ ଜଣଙ୍କର ଅବବୋଧ ନିର୍ଦ୍ଦିଷ୍ଟ ହୋଇପାରିଲେ ଈଶ୍ୱର ପ୍ରତୀତି ନେଇ ତାଙ୍କର ବିଶ୍ୱାସଧାରାରେ ଆନୁଷଙ୍ଗିକ ପରିବର୍ତ୍ତନ ଘଟିଥାଏ । ଏଣୁ ଏହା କୁହାଯାଇପାରିବ ଯେ ଈଶ୍ୱରଙ୍କର ସ୍ୱରୂପ ନେଇ ନିଜର ପ୍ରତ୍ୟୟକୁ ସ୍ପଷ୍ଟ କରିବା ପୂର୍ବରୁ ନିଜର ଅସ୍ତିତ୍ୱ ବିଷୟରେ ପ୍ରଥମେ ସଚେତନ ହେବା ଆବଶ୍ୟକ ।

କିନ୍ତୁ ଏହା ସହଜ ନୁହେଁ । ଏସବୁକୁ ଯେ କେବଳ ବିଶ୍ୱାସ ଉପରେ ଗ୍ରହଣ କରାଯିବ ତା' ମଧ୍ୟ ନୁହେଁ । ଜଣେ ଯଦିଓ ଯଦିଓ ଅନ୍ୟର ମତାମତକୁ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହନ୍ତି ତା'ହେଲେ ସେ ନିଜେ ଜୀବନର ଅନ୍ୱେଷଣ କରିବା ଆବଶ୍ୟକ । ନିଜେ ଏକ ସ୍ଥିର ସିଦ୍ଧାନ୍ତରେ ଉପନୀତ ହେବା ପର୍ଯ୍ୟନ୍ତ ସେ ସଂକଳ୍ପବଦ୍ଧ ଭାବରେ ସକଳ ସମ୍ଭାବନାକୁ ପରୀକ୍ଷା କରି ଦେଖିବା ଉଚିତ । ଧୈର୍ଯ୍ୟର ସହ ଯଦିଓ ଏଥିପାଇଁ ଜଣେ ନିଜର ସମୟ ଦେବା ସମ୍ଭବପର ନୁହେଁ, ତା'ହେଲେ ବିଜ୍ଞାନର ବହୁ କ୍ଷେତ୍ରରେ ସେ ଯେପରି ଅନ୍ୟମାନଙ୍କର ସିଦ୍ଧାନ୍ତ ସକଳକୁ ଗ୍ରହଣ କରି ନେଇଥାଏ, ଏ କ୍ଷେତ୍ରରେ ମଧ୍ୟ ସେହିପରି ଅନ୍ୟର ଅନ୍ୱେଷଣର ଫଳାଫଳକୁ ଗ୍ରହଣ କରିନେବା ଦରକାର । ଆମେ ଆମର ରୋଗର ନିଦାନ ବିଷୟରେ ବିଶେଷଜ୍ଞ ଡାକ୍ତରଙ୍କର ମତାମତକୁ ନିର୍ଭରଯୋଗ୍ୟ ବୋଲି ଗ୍ରହଣ କରିଥାଉ, ଆମର ଅଧିକାର ଓ ଦାୟିତ୍ୱ ନେଇ ଅଭିଜ୍ଞ ଆଇନଜ୍ଞଙ୍କର ମତାମତକୁ ନିଃସନ୍ଦେହରେ ଗ୍ରହଣ କରୁ; କୌଣସି ଯନ୍ତ୍ର ବା ଉପକ୍ରମ ବିଷୟରେ ଜଣେ ବିଶେଷଜ୍ଞ କାରିଗରଙ୍କର ମତକୁ ନିର୍ଭୁଲ୍ ବୋଲି ଧରିଥାଉ ଓ ବିଜ୍ଞାନର ସିଦ୍ଧାନ୍ତଗୁଡ଼ିକ ପାଇଁ ପ୍ରବୀଣ ପ୍ରାଧ୍ୟାପକମାନଙ୍କର ବିଚାରକୁ ଯୁକ୍ତିଶୂନ୍ୟ ଭାବରେ ଗ୍ରହଣ କରିବା ଦେଖାଯାଏ । ପଦାର୍ଥବିଦ୍ୟାର ପୁସ୍ତକରୁ ଆଲୋକର ଗତି ଏକ ସେକେଣ୍ଡକୁ ୧୮୬୦୦୦ ମାଇଲ୍ ବୋଲି ଆମେ ଗ୍ରହଣ କରିଥାଉ । କିନ୍ତୁ ଏହି ସଂଚାରର ସତ୍ୟାସତ୍ୟ ନେଇ ଆମେ କେବେ ପରୀକ୍ଷା କରିବାରେ ବ୍ରତୀ ହେଉ କି ? ସେକେଣ୍ଡରେ ଆଲୋକର ଗତି ୧୮୬୦୦୦ ମାଇଲ୍

ଭାବରେ ମୋଟାମୋଟି ଭାବରେ ଗ୍ରହଣ କରିଥାଉ ହୁଏତ ଏହାର ଗତି ଏହି ସଂଖ୍ୟାରୁ ସାମାନ୍ୟ ଅଧିକ କିଛି ହୋଇପାରେ ବା ଏହି ସଂଖ୍ୟାର ନିଶ୍ଚିତତା ନେଇ ସନ୍ଦେହ ମଧ୍ୟ ପ୍ରକାଶ ପାଇପାରେ । କିନ୍ତୁ ଆମ ପରି ଜଣେ ସାଧାରଣ ବ୍ୟକ୍ତି ଏହି ସଂଖ୍ୟାର ନିର୍ଭୁଲତା ନେଇ ପ୍ରଶ୍ନ ଉଠାଇବାର ଆବଶ୍ୟକତା ନଥାଏ । ଆମେ ଏହି ହିସାବକୁ ଗ୍ରହଣ କରି ନେଇଥାଉ ଓ ବୈଜ୍ଞାନିକ ସିଦ୍ଧାନ୍ତ ଦ୍ୱାରା-ପରେ ଯଦିଓ ଏହି ସଂଖ୍ୟାରେ କୌଣସି ପରିବର୍ତ୍ତନ ହୁଏ ତେବେ ସେ ନେଇ ଆମର ଆନନ୍ଦିତ ବା ବିମର୍ଷ ହେବାର କାରଣ ନଥାଏ । କାରଣ ଆମର ଅନୁମାନ ଭିତରେ ଆଲୋକର ଏହି ତତ୍ତ୍ୱକୁ ବୁଝି ୮୬୦୦୦ ମାଇଲ ଓ ୯୬୦୦୦ ମାଇଲ୍ ଭିତରେ ରହିଥିବା ପାର୍ଥକ୍ୟକୁ ଅବବୋଧ କରିବା ସମ୍ଭବପର ନୁହଁ । ସେହିପରି ପୋଟାସିଅମ୍ ସାଇନାଇଡ୍ ଯେ ମଣିଷ ପାଇଁ ଏକ ଚରମ ବିଷାକ୍ତ ବସ୍ତୁ ଆମେ ପ୍ରବୀଣ ଡାକ୍ତରଙ୍କର ଏହି ମତକୁ ଶବ୍ଦ ପ୍ରମାଣ ଭିତ୍ତିରେ ଗ୍ରହଣ କରିଥାଉ । ଏହାର ସତ୍ୟତାକୁ ଆମେ କେତେଜଣ ପ୍ରମାଣ ସହ ଗ୍ରହଣ କରିଛୁ ? ଆମେ ଏହାକୁ ପ୍ରମାଣ କରିନଥିଲେ ମଧ୍ୟ ଏହିସବୁ ତଥ୍ୟକୁ କ'ଣ ବିଶ୍ୱାସ ଉପରେ ଗ୍ରହଣ କରିଥାଉ ? ଏହା ନିଶ୍ଚିତ ଭାବରେ ନୁହେଁ । କାରଣ ବିଜ୍ଞାନର ଏହି ସିଦ୍ଧାନ୍ତଗୁଡ଼ିକର ସତ୍ୟତାକୁ ଆମେ ଚାହିଁଲେ ବାସ୍ତବରେ ପରୀକ୍ଷା କରି ପ୍ରମାଣ କରିପାରିବୁ । ସେହିପରି ଈଶ୍ୱର ଓ ଆତ୍ମା ସମ୍ବନ୍ଧୀୟ ସିଦ୍ଧାନ୍ତଗୁଡ଼ିକୁ ଆମେ ପ୍ରମାଣସିଦ୍ଧ ଭାବରେ ଜାଣିପାରିବୁ ଯଦି ଆମେ ଏ ନେଇ ଅଭିନିବିଷ୍ଟ ଭାବରେ ଅନ୍ୱେଷଣ କରୁ । ଯଦି ଏଥିପାଇଁ ଆମର ପ୍ରଚେଷ୍ଟା ବା ଅନୁସନ୍ଧିତ୍ସା ନରହେ ତେବେ କାହାକୁ ଦୋଷଯୁକ୍ତ କରିଯିବ ? ଗୀତାର ବାଣୀ ଏହି ପରିପ୍ରେକ୍ଷୀରେ ପ୍ରଣିଧାନଯୋଗ୍ୟ—

ଧ୍ୟାନେନାତ୍ମନି ପଶ୍ୟନ୍ତି କେଚିଦାତ୍ମାନମାତ୍ମନା
ଅନ୍ୟ ସାଂଖ୍ୟେନ ଯୋଗେନ କର୍ମଯୋଗେନ ଚାପରେ ।
ଅନ୍ୟେ ତ୍ୱେବ ମଜାନନ୍ତଃ ଶ୍ରୁତ୍ୱାଽନ୍ୟେଭ୍ୟ ଉପାସତେ
ତେଽପି ଚାତିତରନ୍ତ୍ୟେବ ମୃତ୍ୟୁଂ ଶ୍ରୁତିପରାୟଣାଃ ।

(୧୩-୨୪, ୨୫)

କେହି କେହି ନିଜ ଭିତରେ ଧ୍ୟାନସ୍ଥ ହୋଇ ଆତ୍ମାକୁ ନିଜ ଦେହ ଭିତରେ ଦେଖନ୍ତି । କେହି କେହି ସାଂଖ୍ୟଯୋଗଦ୍ୱାରା ବା କର୍ମଯୋଗଦ୍ୱାରା ନିଜର ଆତ୍ମଦର୍ଶନ କରିଥାନ୍ତି । କେହି କେହି ଏହି ଯୋଗମାର୍ଗରେ ଆତ୍ମାକୁ ସାକ୍ଷାତ କରିବାର ଉପାୟ ନଜାଣିପାରି ଅନ୍ୟମାନଙ୍କଠାରୁ ଯାହା ଶୁଣନ୍ତି ତାହା ବିଶ୍ୱାସ କରନ୍ତି । ସେମାନେ ଏପରି ବିଶ୍ୱାସ କରିବାଦ୍ୱାରା ମଧ୍ୟ ମୃତ୍ୟୁକୁ ଜୟ କରନ୍ତି ।

ଜୀବର ସ୍ୱରୂପ ନେଇ ବିଜ୍ଞର ସ୍ଥିର ନହେବା ପର୍ଯ୍ୟନ୍ତ ମୃତ୍ୟୁପରେ ଜୀବର ଅବସ୍ଥା ନେଇ ସନ୍ଦେହ ରହିବା ଓ ଏ ନେଇ ବିଜ୍ଞର କେବଳ ଏକ କଳ୍ପନା ବୋଲି ପ୍ରତୀତ ହେବା ସ୍ୱାଭାବିକ ମନେହୁଏ ।

କିନ୍ତୁ ଆମେ ନିଜର ସ୍ୱରୂପ ବିଷୟରେ ସ୍ଥିର ହେବା ପୂର୍ବରୁ ଈଶ୍ୱର, ମୃତ୍ୟୁ ଓ କର୍ମଫଳ ବିଷୟରେ ସିଦ୍ଧାନ୍ତମାନ ନେଇଯାଉ । କିନ୍ତୁ ଏହା ଠିକ୍ ନୁହେ । ଶ୍ରୀରମଣ ମହର୍ଷି ଯେକୌଣସି ଦାର୍ଶନିକ ଅନ୍ୱେଷଣର ଆରମ୍ଭରେ ଯଥାର୍ଥରେ ଏହି ପ୍ରଶ୍ନ କରୁଥିଲେ । 'ମୋର ସ୍ୱରୂପ କ'ଣ ?' 'ମୁଁ କିଏ ?'— ଏହା ସ୍ଥିର ନହେବା ପର୍ଯ୍ୟନ୍ତ ତାତ୍ତ୍ୱିକ ଆଲୋଚନା ସକଳ କେବଳ ଅନୁମାନ ବା ପ୍ରକଳ୍ପ କହିଲେ ଅତ୍ୟୁକ୍ତି ହେବନାହିଁ । ଯେଉଁମାନେ ପୁନର୍ଜନ୍ମକୁ ଗ୍ରହଣ କରନ୍ତି ବା ଈଶ୍ୱରଙ୍କ ଶେଷ ବିଚାର ଦିନରେ ଆତ୍ମାମାନେ ତାଙ୍କର ସମାଧିରୁ ସଶରୀରେ ଜାଗ୍ରତ ହେବା ବିଶ୍ୱାସ କରନ୍ତି, କିମ୍ବା ଯେଉଁମାନେ ଗୋଷ୍ଠଙ୍କ ପରି ଏସବୁ କଥାକୁ ନିଃସନ୍ଦେହରେ ଅସ୍ୱୀକାର କରନ୍ତି ଉଭୟଙ୍କର ବିଚାର ବିମର୍ଶକୁ କେବଳ କଳ୍ପନା ବା ପ୍ରକଳ୍ପ ଭାବରେ ଗ୍ରହଣ କରିହେବ, କାରଣ ଆତ୍ମାର ସ୍ୱରୂପ ନେଇ ନିର୍ଦ୍ଦିଷ୍ଟ ଧାରଣା ଉପରେ ଏହିସବୁ ବିଚାର ନିର୍ଭର କରିଥାଏ । ଅଥଚ ଆତ୍ମା ସମ୍ବନ୍ଧରେ ନିଜର ସିଦ୍ଧାନ୍ତକୁ ପ୍ରମାଣ କରିବାର କୌଣସି ଭିତ୍ତି ସେମାନେ ଯୋଗାଇ ପାରନ୍ତି ନାହିଁ ।

( ମୁଁ ଥରେ ଗୋଷ୍ଠଙ୍କୁ ଏହା ପ୍ରଶ୍ନ କରିଥିଲି—"ଆପଣ ଯେହେତୁ କର୍ମବାଦକୁ ସମାଲୋଚନା କରୁଛନ୍ତି ମୁଁ ଭାବୁଛି ଆପଣ ସମ୍ଭବତଃ ପୁନର୍ଜନ୍ମରେ ବିଶ୍ୱାସ କରିବେ ନାହିଁ । ଏହା ଠିକ୍ ନୁହେଁ କି ? ସେ ଉତ୍ତର ଦେଇଥିଲେ, "ମୁଁ ପୁନର୍ଜନ୍ମରେ ବିଶ୍ୱାସ କରେନାହିଁ । ଏକ ଅବିନଶ୍ୱର ଆତ୍ମା ଯାହାକି ପୁନର୍ଜନ୍ମରେ ବିଶ୍ୱାସ କରିବାପାଇଁ ଆବଶ୍ୟକ, ଈଶ୍ୱରଙ୍କ ପରି ଏକ ମିଥ୍ୟା ପ୍ରକଳ୍ପ କହିଲେ ଅତ୍ୟୁକ୍ତି ହେବନାହିଁ । )

ଏହି କ୍ଷେତ୍ରରେ ଆମର ଦ୍ୱିତୀୟ ତ୍ରୁଟିଟି ହେଉଛି ଆତ୍ମାର ଅସଲ ସ୍ୱରୂପ ନେଇ ଆମର ସୀମିତ ଅବବୋଧ ସତ୍ତ୍ୱେ ଓ ଏପରିକି ଏହାର ଅନୁଭୂତି ଲାଭ କରିବାର ସମ୍ଭାବନା ରହିଥିଲେ ବି—ଏହାକୁ ଏକ ଜ୍ଞାତବ୍ୟ ପରିଭାଷା ଭିତରେ ବର୍ଣ୍ଣନା କରିବା ପାଇଁ ଉଦ୍ୟମ କରିବା । ଆତ୍ମା ବା ଈଶ୍ୱର ଯେ ଅବର୍ଣ୍ଣନୀୟ ତାହା ନୁହଁ; ଆମର କେତେକ ବାସ୍ତବ ଅନୁଭୂତିକୁ ମଧ୍ୟ ବର୍ଣ୍ଣନା କରିବା ସମ୍ଭବପର ନୁହଁ । ଆମେ ମିଠାର ସ୍ୱାଦ କ'ଣ ଜାଣିଥିଲେ ବି 'ମିଠା'ର ଏକ ସଂଜ୍ଞା ଦେବା ସମ୍ଭବପର ନୁହେଁ, ଯଦିବା ଆମେ ମିଠାବସ୍ତୁମାନଙ୍କର ଏକ ତାଲିକା ଦେଇପାରିବା । ସେହିପରି ରାଗ ବା ପ୍ରେମ କ'ଣ ଆମେ ଜାଣୁ ଓ ଆମେ ରାଗ ଓ ପ୍ରେମ ଅବସ୍ଥାକୁ ବିଭିନ୍ନ ଭାବରେ ଏକ ବର୍ଣ୍ଣନା ଭିତରେ ବା ଛବି ମଧ୍ୟ ଦେଇ ପ୍ରକାଶ କରିପାରିବା; କିନ୍ତୁ ଏହିସବୁ ମାନସିକ ଆବେଗର ଯଥାର୍ଥ ସଂଜ୍ଞା ପ୍ରକାଶ କରିବା ସମ୍ଭବପର ନୁହେଁ । ମିଠାବସ୍ତୁମାନଙ୍କର ଏକ ତାଲିକା ଦେବା ବା ପ୍ରେମ ବା ରାଗ ଆଦି ଭାବାବେଗ-ଗୁଡ଼ିକୁ ଛବି ମାଧ୍ୟମରେ ବର୍ଣ୍ଣନା ଦେବା ସମ୍ଭବ, ଯେହେତୁ ସେସବୁକୁ ଆମେ ଆମର

ମନ ଭିତରେ ଅବବୋଧ କରିଥାଉ । କିନ୍ତୁ ଆତ୍ମା ଓ ସେହେତୁ ଈଶ୍ୱର ଆମର ମାନସିକ ଅବବୋଧର ବହିର୍ଭୂତ ଅଟନ୍ତି । ଏସବୁକୁ ଚିନ୍ତାରୁ ସୃଷ୍ଟ ଓ ମନର ଅଗ୍ରଭାଗରେ ଥିବା ସତ୍ୟ ବୋଲି ଗ୍ରହଣ ନକରି ବରଂ ମନର ପଶ୍ଚାତରେ ଥିବା ମୂଳ ଉତ୍ସ ଭାବରେ ଗ୍ରହଣ କରିବା ଆବଶ୍ୟକ ।

ତଥାପି ଦାର୍ଶନିକ, ଦ୍ରଷ୍ଟା ଓ ଭକ୍ତଗଣ ଈଶ୍ୱରଙ୍କୁ ବର୍ଣ୍ଣନା କରିବା, ବିଶ୍ଳେଷଣ କରିବା, ପର୍ଯ୍ୟାଲୋଚନା କରିବା, କେତେକ ନିର୍ଦ୍ଦିଷ୍ଟ ବିଭୂତି ବା ଗୁଣ ଭିତରେ ସୀମିତ ରଖିବା, ନିର୍ଦ୍ଦିଷ୍ଟ ନାମ, ଗୁଣ ଓ ରୂପ ଭିତରେ ତାଙ୍କୁ ବ୍ୟାଖ୍ୟା କରିବା, ତାଙ୍କ ପାଇଁ ଦେଉଳ, ମନ୍ଦିର ତୋଳିବା, ତାଙ୍କୁ କେତେକ ଜ୍ୟୋତିଃ-ବୈଜ୍ଞାନିକ ବସ୍ତୁ ବା ପ୍ରାକୃତିକ ଘଟଣା ସହିତ ସାମିଲ କରିବା, ବା କେତେକ ଐତିହାସିକ ବା ପୌରାଣିକ ବ୍ୟକ୍ତିମାନଙ୍କ ସହ ସମାନ କରିବା ଦେଖାଯାଏ । କେହି ଏହି ସରଳ ଓ ନିଷ୍କପଟ ଉକ୍ତି ଯଥା, "ମୁଁ ଅଛି, ଈଶ୍ୱର ଅଛନ୍ତି, ମୁଁ ଈଶ୍ୱରଙ୍କଠାରୁ ଅଭିନ୍ନ ନୁହେଁ" ଗ୍ରହଣ କରନ୍ତି ନାହିଁ । କେହି ଭାବନ୍ତି ନାହିଁ ଯେ, "ମୁଁ କ୍ଷୁଦ୍ରାଦପି କ୍ଷୁଦ୍ର ବସ୍ତୁ ବିଷୟରେ ସଠିକ ବର୍ଣ୍ଣନା ଦେଇପାରେ; କିନ୍ତୁ ଈଶ୍ୱର ବା ମୋର ଆତ୍ମା ବିଷୟରେ କହିବା ସମ୍ଭବ ନୁହେଁ; ଈଶ୍ୱରଙ୍କର ଲକ୍ଷ୍ୟ, ଇଚ୍ଛା ବା କାର୍ଯ୍ୟ—ଯଦି ବି ସେସବୁ କିଛି ଥାଏ—ବିଷୟରେ ବର୍ଣ୍ଣନା ଦେବା ମୋର ଧୃଷ୍ଟତା ମାତ୍ର" ।

ଏହି କଥାକୁ ଆଉ ଏକ ମାନଦଣ୍ଡରୁ ବିଚାର କରାଯାଉ । ପ୍ରତ୍ୟେକ ବୋଧଗମ୍ୟ ଗୁଣର ଏକ ଲକ୍ଷଣ ହେଉଛି ଆମେ ଏହା ବିଷୟରେ ଭାବିବା ସମୟରେ ଏହାର ବିପରୀତ ଗୁଣକୁ ମଧ୍ୟ ଅବବୋଧ କରିଥାଉ । ଆମର ଚିନ୍ତା ଭିତରେ ଆମେ କୌଣସି ଗୁଣ ଓ ତା'ର ବିପରୀତ ଲକ୍ଷଣକୁ ଯୁଗ୍ମ ଭାବରେ ବିଚାର କରିଥାଉ, ଯଥା ସତ୍ୟ-ମିଥ୍ୟା; ଜ୍ଞାନ-ଅଜ୍ଞାନ; ସୁଖ-ଦୁଃଖ; ପ୍ରେମ-ଘୃଣା; ବିରାଟ-କ୍ଷୁଦ୍ର; ସୁନ୍ଦର-ଅସୁନ୍ଦର; ଭଲ-ମନ୍ଦ; ସବଳ-ଦୁର୍ବଳ; ପୂର୍ଣ୍ଣ-ଶୂନ୍ୟ; ସୁର-ଅସୁର ଇତ୍ୟାଦି ଇତ୍ୟାଦି ।

କିନ୍ତୁ ଏକ ଅବର୍ଣ୍ଣନୀୟ ସତ୍ତା କ୍ଷେତ୍ରରେ କୌଣସି ବୋଧଗମ୍ୟ ବିପରୀତ ବ୍ୟାଖ୍ୟା ସମ୍ଭବପର ନୁହେଁ । ସୁତରାଂ ଯଦି ଈଶ୍ୱରଙ୍କୁ ଏକ ସଗୁଣ ସତ୍ତା (ପବିତ୍ର, ମହାନ୍ ଓ ମଙ୍ଗଳମୟ ଇତ୍ୟାଦି) ବୋଲି ପରିକଳ୍ପନା କରାଯାଏ ତେବେ ଏହାର ବିପରୀତ ଗୁଣ ସମୂହକୁ ସଇତାନ ପ୍ରତି ଆରୋପ କରାଯିବ । କିନ୍ତୁ ଯେତେବେଳେ ଈଶ୍ୱରଙ୍କୁ ଅଚିନ୍ତନୀୟ ଅଥଚ ସତ୍ୟ ବୋଲି ଅବବୋଧ କରାଯାଏ ସେତେବେଳେ ଏହାର ବିପରୀତ ବ୍ୟାଖ୍ୟା ରହିବା ସମ୍ଭବ ନୁହେଁ । ସେ କ୍ଷେତ୍ରରେ ଏକ ବିପରୀତ ଗୁଣ ଆରୋପ କରିବା ମଧ୍ୟ ସମଭାବରେ ଅଚିନ୍ତନୀୟ ମନେହୁଏ । ଈଶ୍ୱରଙ୍କର ବୋଧଗମ୍ୟ ବର୍ଣ୍ଣନା ଯେପରି ଅଚିନ୍ତନୀୟ ସେହିପରି ଅସତ, ଅନୀଶ୍ୱର ବା

ନିରୀଶ୍ୱର ମଧ୍ୟ ଅଚିନ୍ତନୀୟ ଅଟେ । ସଗୁଣ ଈଶ୍ୱରଙ୍କର ପରିକଳ୍ପନା ପରି ଅନୀଶ୍ୱର ବା ଗୋରାଙ୍କର ନିରୀଶ୍ୱରର ଅବବୋଧ ଯଥାର୍ଥ ବା ତ୍ରୁଟିପୂର୍ଣ୍ଣ ହୋଇପାରେ । ମୁଁ ଯାହା ପୂର୍ବରୁ କହିଛି ଈଶ୍ୱର ବା ନିରୀଶ୍ୱର ପ୍ରତ୍ୟେକ କ୍ଷେତ୍ରରେ ସ୍ୱାଧୀନ ସଂକଳ୍ପ (ଆତ୍ମଶକ୍ତି)ର କଥା କୁହାଯାଇପାରେ ।

ଏହି କାରଣ ଯୋଗୁଁ ଅଦ୍ୱୈତ ବେଦାନ୍ତରେ ସତ୍, ଚିତ ଓ ଆନନ୍ଦର ଯେଉଁ ବର୍ଣ୍ଣନା ଦିଆଯାଇଛି ତାହା ସାକାରାତ୍ମକ ବୋଧ ହେଉଥିଲେ ବି ତାହା ପ୍ରକାରାନ୍ତରେ ଦୁଇଟି ନାକାରାତ୍ମକ ଧାରଣାର ସମଷ୍ଟି ବୋଲି କୁହାଯିବ । ଏଥିରେ ବ୍ରହ୍ମଙ୍କୁ ସତ୍, ଚିତ ଓ ଆନନ୍ଦ ବୋଲି କୁହାଯାଇଛି କାରଣ ଏହା ଅସତ୍ (ଯାହାର ଅସ୍ତିତ୍ୱ ନାହିଁ), ଅଚିତ (ଅଜ୍ଞତା) ଓ ଆନନ୍ଦ (ଦୁଃଖ ବା କ୍ଲେଶ) ନୁହନ୍ତି । ଏଥିରୁ ଏହା ବୁଝିବା ଉଚିତ ନୁହେଁ ଯେ ଚେତନା ଓ ଆନନ୍ଦ କହିଲେ ଆମେ ଯାହା ଧାରଣା କରୁ ବ୍ରହ୍ମ ହେଉଛନ୍ତି ଏପରି ଏକ ସ୍ଥିତିପୂର୍ଣ୍ଣ ଅବସ୍ଥା ଯେଉଁଥିରେ କି ଏହି ଗୁଣସମୂହ ରହିଛି ।

ଗୋରା ନିଜର ନିରୀଶ୍ୱରବାଦୀ ଦୃଷ୍ଟିଭଙ୍ଗୀରୁ ତାଙ୍କର ମାନସିକ ସାମର୍ଥ୍ୟ ଓ ଜନସେବା କ୍ଷେତ୍ରରେ ସଫଳତା ହାସଲ କରିଛନ୍ତି ବୋଲି ସ୍ୱୀକାର କରିଛନ୍ତି । ନିଜର କାର୍ଯ୍ୟକ୍ରମ ଭିତରେ ସମାଜର ସଚେତନ ଓ ଅଜ୍ଞ ଲୋକମାନଙ୍କୁ ସମାଜର ପ୍ରଚଳିତ ନୈତିକ, ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ମନ୍ଦ ବ୍ୟବସ୍ଥା ବିରୁଦ୍ଧରେ ସଚେତନ କରିବାରେ ଈଶ୍ୱରଙ୍କ ନାମ ଅପେକ୍ଷା ନିରୀଶ୍ୱରବାଦ ପନ୍ଥା ଅଧିକ ଫଳପ୍ରଦ ବୋଲି ଗୋରା ସ୍ୱୀକାର କରିଛନ୍ତି ।

ଗାନ୍ଧୀଜୀ ଅପରପକ୍ଷରେ ତାଙ୍କର ଗଭୀର ଈଶ୍ୱରବିଶ୍ୱାସ ଯୋଗୁଁ ନିଜର କାର୍ଯ୍ୟସୂଚୀ ଗ୍ରହଣ କରିବା ଓ ସଫଳତା ହାସଲ କରିବା ଆମେ ଜାଣୁ । ଗାନ୍ଧୀଜୀ ଏହା ମଧ୍ୟ କହିଛନ୍ତି ଯେ ଈଶ୍ୱରଙ୍କଠାରେ ଏକ ଜୀବନ୍ତ ବିଶ୍ୱାସ ବ୍ୟତୀତ ସତ୍ୟାଗ୍ରହର ସାମଗ୍ରିକ ପ୍ରୟୋଗ ସମ୍ଭବପର ନୁହେଁ । ଆଧୁନିକ ଜନମାନସରେ 'ଈଶ୍ୱର' ପ୍ରତୀତି ନେଇ ସନ୍ଦେହ ରହିଥିବାରୁ ସେ 'ଈଶ୍ୱର' ସ୍ଥାନରେ 'ସତ୍ୟ' ବ୍ୟବହାର କରିଥିଲେ । ହେଲେ ସେ ସତ୍ୟ କୁହନ୍ତୁ ବା ଈଶ୍ୱର କୁହନ୍ତୁ ସେ ନିଜର ଭକ୍ତି ଭାବକୁ ପରିହାର କରି ନଥିଲେ । ଏପରିକି ତାଙ୍କ ଜୀବନର ସଫଳତା ତାଙ୍କର ଈଶ୍ୱର ବିଶ୍ୱାସ ଓ ପ୍ରାର୍ଥନାରୁ ଯେ ସମ୍ଭବ ହୋଇଛି ଏହା ସମ୍ଭବତଃ କୁହାଯାଇପାରେ ।

ଈଶ୍ୱରଙ୍କୁ ବିଶ୍ୱାସ କରୁଥିବା ଓ ସେହି ବିଶ୍ୱାସରୁ ନିଜର ଧର୍ମ ଓ ଧର୍ମଗତ କୁସଂସ୍କାରକୁ ଧରି ରଖିଥିବା ବ୍ୟକ୍ତିସକଳ ବହୁ ସମୟରେ ଅନେକ ସାମାଜିକ ମନ୍ଦ ବ୍ୟବସ୍ଥା ଓ ବହୁ ଅନୈତିକ କାର୍ଯ୍ୟରେ ଲିପ୍ତ ଥାଇ ତାହାକୁ ପ୍ରସାର କରୁଥିବାର

ଦୃଷ୍ଟାନ୍ତ ଦେଖାଯାଏ । ସେହି ବ୍ୟକ୍ତିମାନେ ସମାଜରେ ଯୁଦ୍ଧ, ଶରଣ୍ଡତ୍ୟା, ଦାସତ୍ୱ, ଜୁଆ, ମଦ, ଲମ୍ପଟ୍ୟ ଇତ୍ୟାଦି ସୃଷ୍ଟି କରିବା ବା ଏସବୁ ପ୍ରସାର କରିବାରେ ଲାଗିଥାନ୍ତି । ସମାଜରେ ଅଗଣିତ ବ୍ୟକ୍ତି ଈଶ୍ୱରଙ୍କୁ ବିଶ୍ୱାସ କରନ୍ତି, ତାଙ୍କୁ ନିୟମିତ ପ୍ରାର୍ଥନା ଓ ପୂଜା କରନ୍ତି ଓ ତାଙ୍କର ନାମ ସର୍ବଦା ଜପ କରନ୍ତି । ସେହିମାନଙ୍କ ମଧ୍ୟରୁ ଅଧିକାଂଶଙ୍କ ପାଖରେ କୌଣସି ସଚ୍ଚୋଟତା ନଥାଏ ଓ ସେମାନଙ୍କ ଜୀବନରେ ସ୍ୱାର୍ଥପରତା ଓ ହିଂସ୍ର ସ୍ୱଭାବ ପୂରି ରହିଥାଏ । ଏପରିକି ଏପରି କୌଣସି ମନ୍ଦ କାର୍ଯ୍ୟ ନାହିଁ ଯାହାକି ସେମାନଙ୍କ ଦ୍ୱାରା କରାଯାଇ ପାରିବ ନାହିଁ ।

ଅପରପକ୍ଷରେ ନିରୀଶ୍ୱରବାଦୀମାନେ (ସମ୍ଭବତଃ ଜୈନ ଓ ବୌଦ୍ଧମାନେ ବି ନିରୀଶ୍ୱରବାଦ ସହିତ ସଂଯୁକ୍ତ ହେବାକୁ ଚାହିଁବେ) ରହିଛନ୍ତି ଯେଉଁମାନେ ଈଶ୍ୱରଙ୍କୁ ଅସ୍ୱୀକାର କରନ୍ତି; କିନ୍ତୁ ଏକ ମହାନ୍ ଓ ନୀତିପୂର୍ଣ୍ଣ ଜୀବନ ବଞ୍ଚିବାକୁ ପ୍ରୟାସ କରନ୍ତି; ସେମାନେ ଏକ ତ୍ୟାଗପୂତ ଜୀବନ ବଞ୍ଚନ୍ତି ଓ ଅନ୍ୟର ସେବାରେ ନିଜକୁ ଉତ୍ସର୍ଗ କରିଥାନ୍ତି । ସେମାନେ ଯେତେବେଳେ ଜନଗଣଙ୍କ ଭିତରେ କାର୍ଯ୍ୟ କରନ୍ତି ଲୋକମାନେ ସେମାନେ ଆସ୍ତିକ ବା ନିରୀଶ୍ୱରବାଦୀ ଏହା ବିଚାରକୁ ନିଅନ୍ତି ନାହିଁ ବରଂ ସେମାନଙ୍କର ନିଷ୍ଠା, ନୈତିକ ଚରିତ୍ର, ସେବା ଓ ତ୍ୟାଗ ମନୋଭାବକୁ ଦେଖି ତାଙ୍କର ନେତୃତ୍ୱ ଓ ଉପଦେଶକୁ ଗ୍ରହଣ କରନ୍ତି । ଜବାହରଲାଲ ନେହେରୁ ଜଣେ ଆସ୍ତିକ ନୁହନ୍ତି ବା ନିଜର କୌଣସି ବକ୍ତୃତାରେ ସେ ଈଶ୍ୱର ବା ଆତ୍ମା ବିଷୟରେ କେଉଁଠି ଉଲ୍ଲେଖ କରିନାହାନ୍ତି; ତଥାପି ତାଙ୍କଠାରୁ କେହି ଅଧିକ ଜନପ୍ରିୟ ନୁହନ୍ତି । ଅପରପକ୍ଷରେ ସର୍ଦ୍ଦାର ପଟେଲ ଜଣେ ଆସ୍ତିକ ଓ ହିନ୍ଦୁ ସମୟରେ ଈଶ୍ୱରଙ୍କ ପ୍ରସଙ୍ଗରେ କହିଥାନ୍ତି ଓ ସେ ମଧ୍ୟ ସମଭାବରେ ଜଣେ ଜନପ୍ରିୟ ନେତା ଅଟନ୍ତି ।

ସୁତରାଂ ଗୋରା ବିଶ୍ୱାସ କରିପାରନ୍ତି ଯେ ତାଙ୍କର ନିରୀଶ୍ୱରବାଦରେ ଦୃଢ଼-ବିଶ୍ୱାସ ଓ ଏହି ଆଦର୍ଶ ପ୍ରତି ନିବେଦନ ଯୋଗୁଁ ସେ ଜନଗଣଙ୍କ ଭିତରେ କାର୍ଯ୍ୟ କରିବାରେ ଅଧିକ ସମର୍ଥ ହୋଇଛନ୍ତି । କିନ୍ତୁ ଏହା ଏକ ଭ୍ରମାତ୍ମକ ଧାରଣା ବୋଲି ମୁଁ ଭାବୁଛି । ଲୋକମାନେ ଗୋରାଙ୍କୁ ଗ୍ରହଣ କରିବାର କାରଣ ହେଉଛି ସେମାନେ ତାଙ୍କର କଥା ଅପେକ୍ଷା ତାଙ୍କର ଭିତରକୁ ଅଧିକ ଦେଖନ୍ତି । ସେମାନେ ଗୋରାଙ୍କର ଧର୍ମଗତ ବିଶ୍ୱାସ ଉପରେ ଗୁରୁତ୍ୱ ଦିଅନ୍ତି ନାହିଁ ବରଂ ତାଙ୍କର ମହାନତା, ସତ୍ ସ୍ୱଭାବ ସାଧାରଣ ନିକ୍ଷେପିତ ମଣିଷ ପ୍ରତି ସମ୍ବେଦନଶୀଳ ମନୋଭାବ, ସେମାନଙ୍କ ସୁଖ ଦୁଃଖରେ ସମଭାଗୀ ହେଉଥିବା ଓ ତାଙ୍କ ପାଇଁ କଷ୍ଟବରଣ କରୁଥିବା ଜଣେ ବ୍ୟକ୍ତିଙ୍କୁ ଦେଖି ତାଙ୍କୁ ଜଣେ ଈଶ୍ୱରୀୟ ସ୍ୱଭାବ ବିଶିଷ୍ଟ ବ୍ୟକ୍ତି ଭାବରେ ଗ୍ରହଣ କରନ୍ତି । ଗୋରା ଯଥାର୍ଥରେ ହେଉଛନ୍ତି ଜଣେ ଧାର୍ମିକ ବା ଈଶ୍ୱରୀୟ ଗୁଣ-ସମ୍ପନ୍ନ ବ୍ୟକ୍ତି । କିନ୍ତୁ ଗୋରା ତାଙ୍କର ଆଦର୍ଶ ଓ କର୍ମସୂଚୀ ପାଇଁ ନିରୀଶ୍ୱର ବା ନାସ୍ତିକତାକୁ ଗ୍ରହଣ କରୁଛନ୍ତି ।

ଗୋରା ଏହା କରିପାରନ୍ତି । ଏହା ହେଉଛି ତାଙ୍କ ଜୀବନର ଏକ ବୌଦ୍ଧିକ ଆଭିମୁଖ୍ୟ । ଏହା କିନ୍ତୁ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ନୁହେଁ । କିନ୍ତୁ ଯାହା ବାସ୍ତବରେ ଗୁରୁତ୍ୱପୂର୍ଣ୍ଣ ତାହା ହେଉଛି ନିଜର ବିଶ୍ୱାସ, ଆଦର୍ଶ ଓ ମୂଲ୍ୟବୋଧ ପାଇଁ ନିଜକୁ ଉତ୍ସର୍ଗୀକୃତ ଭାବରେ ସମର୍ପି ଦେଇ ଯେକୌଣସି ତ୍ୟାଗ ସ୍ୱୀକାର କରିବା ତଥା ସାମାଜିକ ଓ ବ୍ୟକ୍ତିଗତ ଜୀବନରେ ଉଚ୍ଚ ନୈତିକ ଆଦର୍ଶକୁ ଗ୍ରହଣ କରିବା । ଅବଶ୍ୟ ଯଦି ନୈତିକ ଆଦର୍ଶର ଆଭିମୁଖ୍ୟକୁ ନିର୍ଣ୍ଣୟ କରିହୋଇଯାଇପାରିବ ତେବେ ନିଜର ଅସୁବିଧା, ଅହମିକା ବା ଅସ୍ମିତାର ଦ୍ୱାହି ଦେଇ ଗୋରା କେବେ ବି ଏଥିରୁ ଦୂରେଇ ଯିବେନାହିଁ । ସାମାଜିକ ପରମ୍ପରା ଯାହା ହେଲେ ବି ଓ ନିଜର ସମ୍ପର୍କୀୟମାନଙ୍କର ଆଦର ବା ଘୃଣାସତ୍ତ୍ୱେ ଗୋରା ସମାଜର ନୈତିକ ଆଦର୍ଶକୁ ନିଷ୍ଠାର ସହ ଗ୍ରହଣ କରିବେ; ସୁତରାଂ ମୋ ବିଚାରରେ ଗୋରାଙ୍କ ଭିତରେ ରହିଥିବା ଏହି ନିଷ୍ଠା, ଯାହାକୁ ଏକ ଧର୍ମୀୟ ଦୃଷ୍ଟିଭଙ୍ଗୀ ବୋଲି ଆମେ ଅଭିହିତ କରିପାରିବା, ତାହାହେଉଛି ଯଥାର୍ଥରେ ତାଙ୍କର ସଫଳତାର ମୂଳଭିତ୍ତି ।

ସମୟର ଆବର୍ତ୍ତନ ଭିତରେ ମଣିଷର ଚିନ୍ତା ଓ ଅନୁଭୂତିର ବିକାଶ ସହ ଗୋରାଙ୍କର ନିରୀଶ୍ୱରବାଦୀ ବିଚାର ବିମର୍ଶ ହୁଏତ ପରିବର୍ତ୍ତନ ହୋଇପାରେ ବା ଅଧିକ ସୁଦୃଢ଼ ହୋଇପାରେ । ସୁତରାଂ କ'ଣ ହେବ ତାହା ବହୁବିଧ କାରଣ ଉପରେ ନିର୍ଭର କରେ । କିନ୍ତୁ ଗୋରା ଯେପର୍ଯ୍ୟନ୍ତ ଏକ ଦରଦୀ ହୃଦୟ ରଖିଛନ୍ତି, ବ୍ୟକ୍ତିଗତ ଓ ସାମାଜିକ ଜୀବନରେ ଉଚ୍ଚ ନୈତିକ ମୂଲ୍ୟବୋଧରେ ବିଶ୍ୱାସ କରନ୍ତି, ସତ୍‌ସାହସ ଓ ସେବା ମନୋଭାବକୁ ଉତ୍ସର୍ଗୀକୃତ ଭାବରେ ଗ୍ରହଣ କରନ୍ତି ସେ ପର୍ଯ୍ୟନ୍ତ ଈଶ୍ୱରଙ୍କ ଭକ୍ତ ତାଲିକାରେ ଗୋରାଙ୍କର ନାମ ସ୍ଥାନ ପାଇବ । ତାଙ୍କ ପାଇଁ 'ଈଶ୍ୱର' ନିରୀଶ୍ୱରରେ ପରିଣତ ହୋଇଯିବେ ।

ପ୍ରଥମ ପରିଚ୍ଛେଦ :

# ସ୍ପଷ୍ଟୀକରଣ

ଗାନ୍ଧୀଜୀ ଏକ ପୂର୍ଣ୍ଣାଙ୍ଗ ଜୀବନ ବଞ୍ଚିଥିଲେ । ନିଜ ଜୀବନର ଦୀର୍ଘ ଅନୁଭୂତିରୁ ସେ ବହୁ ପ୍ରସଙ୍ଗ ଉପରେ ତାତ୍ତ୍ୱିକ ଓ ବ୍ୟାବହାରିକ ବିଚାରମାନ ଦେଇ ଯାଇଛନ୍ତି । କିନ୍ତୁ ନିରୀଶ୍ୱରବାଦ ଉପରେ ତାଙ୍କର ବିସ୍ତୃତ ବିମର୍ଶ ଯଥେଷ୍ଟ ନୁହେଁ; କାରଣ ସମ୍ଭବତଃ କୌଣସି ଏକାନ୍ତ ନିରୀଶ୍ୱରବାଦୀ ତାଙ୍କର ଅତ୍ୟନ୍ତ ସମୀପବର୍ତ୍ତୀ ହୋଇ-ପାରିନଥିଲେ ।

ମୁଁ ଜଣେ ନିରୀଶ୍ୱରବାଦୀ ଭାବରେ ତାଙ୍କର ନିକଟ ସମ୍ପର୍କରେ ଚାରିବର୍ଷ ଆସିଥିଲି । ଏହି ସମ୍ପର୍କ ଭିତରେ ମୁଁ ତାଙ୍କ ସହ ନିରୀଶ୍ୱରବାଦ ଉପରେ ବହୁବାର ଆଲୋଚନା କରିବାର ସୁଯୋଗରୁ ଏ କ୍ଷେତ୍ରରେ ତାଙ୍କର ଅଭିମତ ଜାଣିବାର ଅବକାଶ ପାଇଛି ।

ଆମ ଭିତରେ ଏହା ବିଷୟରେ ଯେଉଁ ଆଲୋଚନା ହୋଇଥିଲା ତା'ର ଉଦ୍ଦେଶ୍ୟ ଥିଲା ନିରୀଶ୍ୱରବାଦୀ ଜୀବନଦର୍ଶନ ପ୍ରତି ପରସ୍ପରର ଆଭିମୁଖ୍ୟ ବିଷୟରେ ଅବଗତ ହେବା; କିନ୍ତୁ ସେହି କଥୋପକଥନକୁ ପ୍ରକାଶ କରିବା ଏହାର ଉଦ୍ଦେଶ୍ୟ ନଥିଲା । ଫେବୃଆରି ୧୯୪୮ରେ ସେବାଗ୍ରାମରେ ଦିନରିକ ପ୍ରତ୍ୟହ ଅଧଘଣ୍ଟା ଧରି ମୋ ସହିତ ନିରୀଶ୍ୱରବାଦ ଉପରେ ଆଲୋଚନା କରିବାକୁ ସେ ସ୍ଥିର କରିଥିଲେ । ନିରୀଶ୍ୱରବାଦୀ ଜୀବନଦୃଷ୍ଟି ଉପରେ ଆମମାନଙ୍କର ବିସ୍ତୃତ ବିମର୍ଶକୁ ଏକ ସ୍ପଷ୍ଟ ରୂପରେଖ ଦେବା ଏହି ଆଲୋଚନାର ଉଦ୍ଦେଶ୍ୟ ଥିଲା । ଯଦିଓ ଏହି ସୁଯୋଗ ମିଳିଥାନ୍ତା, ତେବେ ହୁଏତ ଏହି ପୁସ୍ତକରେ ସନ୍ନିବେଶିତ ଥିବା ତାଙ୍କର ଚିନ୍ତା ଓ ମୋର ଅଭିମତ ଛଡ଼ା ଅନେକ କିଛି ଆମ ଉଭୟଙ୍କର ସମ୍ମତିରେ ପ୍ରକାଶ ପାଇଥାନ୍ତା । କିନ୍ତୁ ଦୁଃଖର କଥା ଜାନୁଆରି ୧୯୪୮ରେ ତାଙ୍କର ଦେହାନ୍ତ ହେଲା ।

ତାଙ୍କର ହତ୍ୟାପରେ ଗାନ୍ଧୀଜୀଙ୍କର ନିରୀଶ୍ୱରବାଦ ଉପରେ ବିସ୍ତୃତ ବିମର୍ଶକୁ ପ୍ରକାଶ କରିବା ନେଇ ମୁଁ ଦ୍ୱନ୍ଦ୍ୱରେ ଥିଲି । ଯେହେତୁ ସେ ନାହାନ୍ତି ସେ କ୍ଷେତ୍ରରେ ତାଙ୍କର ମୋ ସହିତ ଆଲୋଚନା ସମ୍ବନ୍ଧରେ ବକ୍ତବ୍ୟକୁ ପ୍ରକାଶ କରିବା ଉଚିତ

ହେବ କି ନାହିଁ ମୁଁ ଚିନ୍ତାରେ ପଡ଼ିଥିଲି । ମୁଁ ତାଙ୍କର ଯେଉଁ ବକ୍ତବ୍ୟ ଏଠାରେ ଦେଇଛି ତାକୁ ପ୍ରମାଣ କରିବାର ନିର୍ଭରଯୋଗ୍ୟ ଭିତ୍ତି ମୋ ପାଖରେ ନାହିଁ । ଅବଶ୍ୟ ତାଙ୍କ ସହ ଆଲୋଚନା ପରେ ମୁଁ ମୋର ଅନେକ ବନ୍ଧୁମାନଙ୍କୁ ତାଙ୍କ ସହ କରିଥିବା ଆଲୋଚନା ଓ ତାଙ୍କର ବକ୍ତବ୍ୟ ବିଷୟରେ କହିଛି । ତାଙ୍କର ବକ୍ତବ୍ୟ-ଗୁଡ଼ିକ ମୋର ସ୍ମୃତିପଟ୍ଟରେ ଅଲିଭା ରହିଛି ଓ ତାକୁ ପାଥେୟ କରି ମୁଁ ସେହି ଆଲୋଚନାକୁ ପ୍ରକାଶ କରିବାକୁ ଯାଉଛି । ଅନ୍ତତଃ ଏହି ବିଷୟଟି ଉପରେ ସେ ଦେଇଥିବା ଅଭିମତଗୁଡ଼ିକ ବିସ୍ମୃତିର ଗର୍ଭରେ ନଷ୍ଟ ନହେବା ପାଇଁ ମୁଁ ବିଶ୍ବାସ ସହ ତାହା ଏଠାରେ ପ୍ରକାଶ କରୁଛି ।

ଗାନ୍ଧୀଜୀ ମୋ ପାଖକୁ ଲେଖିଥିବା ଗୋଟିଏ ପତ୍ର ବ୍ୟତୀତ ମୁଁ ଆମର ଆଲୋଚନା ସମୟରେ ତାଙ୍କର ବକ୍ତବ୍ୟଗୁଡ଼ିକୁ ମୋର ସ୍ମୃତିରୁ ଦେଉଛି । ତାଙ୍କ ସହ କଥୋପକଥନ ଇଂରାଜୀରେ ହେଉଥିଲା ଓ ତାଙ୍କର ବକ୍ତବ୍ୟଗୁଡ଼ିକ ମୋର ହୃଦୟକୁ ଏପରି ସ୍ପର୍ଶ କରିଥିଲା ଯା'ର ସ୍ମୃତି ସବୁଦିନ ପାଇଁ ମୋ ଭିତରେ ଅମ୍ଳାନ ହୋଇରହିଛି ।

ଦ୍ୱିତୀୟ ପରିଚ୍ଛେଦ :

# ପତ୍ର ମାଧ୍ୟମରେ ସମ୍ପର୍କ

ଗାନ୍ଧୀଜୀଙ୍କ ସହ ମୋର ଯୋଗାଯୋଗ 'ପତ୍ର ମାଧ୍ୟମରେ ପ୍ରଥମେ ୧୯୩୦ ମସିହାରେ ସ୍ଥାପିତ ହୋଇଥିଲା । ମୁଁ ସେବାଗ୍ରାମ ଠିକଣାରେ ତାଙ୍କୁ ଦୁଇଟି ବାକ୍ୟ ବିଶିଷ୍ଟ ଏକ କ୍ଷୁଦ୍ରପତ୍ର ଲେଖିଥିଲି :

"ଆପଣ 'ଈଶ୍ୱର' ଶବ୍ଦ ବହୁ ସମୟରେ ବ୍ୟବହାର କରୁଛନ୍ତି । 'ଈଶ୍ୱର' କହିଲେ ଆପଣ କ'ଣ ବୁଝନ୍ତି ଓ ଆପଣଙ୍କର ଜୀବନର କର୍ମସୂଚୀ ସହିତ ତାହା କିପରି ସଂଶ୍ଳିଷ୍ଟ ଦୟାକରି ଜଣାଇବେ କି ?"

ଏହି ପତ୍ରର ଉତ୍ତରରେ ସେ "ଈଶ୍ୱର ମଣିଷ ଅବଧାରଣାର ଊର୍ଦ୍ଧ୍ୱରେ" ବୋଲି ଗୋଟିଏ ବାକ୍ୟ ଲେଖିଥିଲେ ।

ତାଙ୍କର ଏହି ଉତ୍ତର ମୋତେ ସନ୍ତୁଷ୍ଟ କରିପାରିନଥିଲା । ଯାହାଙ୍କ ପ୍ରସଙ୍ଗରେ ଜଣେ କହୁଛନ୍ତି ତାହା କିପରି ମଣିଷ ଅବଧାରଣାର ବହିର୍ଭୂତ ହୋଇପାରିବ ! ସେହି ସମୟରେ ଯେହେତୁ ଲବଣ ସତ୍ୟାଗ୍ରହ ଆରମ୍ଭ ହେଲା ମୁଁ ତାଙ୍କ ସହ ଏ ପ୍ରସଙ୍ଗରେ ଅଧିକ ଆଲୋଚନା କରିପାରିଲି ନାହିଁ ।

୧୯୪୦ ପର୍ଯ୍ୟନ୍ତ ମୁଁ ଜଣେ କଲେଜ ଅଧ୍ୟାପକ ଥିଲି । ନିରୀଶ୍ୱରବାଦ ଉପରେ ମୋର ବକ୍ତବ୍ୟ ପାଇଁ ମୋ ଉପରେ କର୍ତ୍ତୃପକ୍ଷ କେତେକ କଟକଣା ଜାରି କରିବାରୁ ମୁଁ ଚାକିରିରୁ ଇସ୍ତଫା ଦେଲି । ଏହାପରେ ମୁଁ ସମାଜ ସେବାରେ ନିଜକୁ ନିୟୋଜିତ କରି ଗ୍ରାମମାନଙ୍କୁ ଯାଇ ପ୍ରୌଢ଼ଶିକ୍ଷା ଓ ଅସ୍ପୃଶ୍ୟତା ନିବାରଣ ପାଇଁ କାର୍ଯ୍ୟ କଲି । ନିରୀଶ୍ୱରବାଦୀ ଜୀବନଦୃଷ୍ଟି ଏଥିପାଇଁ ମୋତେ ଅନୁପ୍ରେରଣା ଯୋଗାଇଥିଲା ।

ଗ୍ରାମମାନଙ୍କରେ ଗୋଟିଏ ବର୍ଷ କାର୍ଯ୍ୟ କରିବା ପରେ ସେପ୍ଟେମ୍ବର ୧୯୪୧ରେ ମୋର ଅନୁଭୂତିକୁ ନେଇ ମୁଁ ଗାନ୍ଧୀଜୀଙ୍କୁ ସେବାଗ୍ରାମ ଠିକଣାରେ ପତ୍ର ଲେଖିଲି ।

ନିରୀଶ୍ୱରବାଦୀ ଦୃଷ୍ଟିଭଙ୍ଗୀ ନେଇ ମୁଁ ଗତ ଏକବର୍ଷ ଧରି ଅସ୍ପୃଶ୍ୟତା ନିବାରଣ ପାଇଁ କାର୍ଯ୍ୟ କରୁଛି । ଏହି ଜୀବନ ଦୃଷ୍ଟିରେ ବିଶ୍ୱାସୀ ଥିବା ମୋର

କେତେକ ସହକର୍ମୀ ବନ୍ଧୁ ମୋତେ ଏଥିରେ ସହଯୋଗ ଦେଇଛନ୍ତି । ଆମେ କୌଣସି ପ୍ରକାର ସାମ୍ପ୍ରଦାୟିକ ମନୋଭାବ ନନେଇ ଏହି କାର୍ଯ୍ୟକ୍ରମରେ ବ୍ରତୀ ହୋଇଛୁ । ହିନ୍ଦୁ, ମୁସଲମାନ ବା ଖ୍ରୀଷ୍ଟିଆନ ଏ ପ୍ରକାର କୌଣସି ସାମ୍ପ୍ରଦାୟିକ ଗ୍ରୁପ ନରଖି ଆମେ ମଣିଷକୁ ମଣିଷ ଭାବରେ ଗ୍ରହଣ କରି ଓ ସମସ୍ତଙ୍କୁ ମାନବିକତାର ସ୍ରୋତରେ ସଂପୃକ୍ତ କରାଇ ଅସ୍ପୃଶ୍ୟତାକୁ ଦୂର କରିବାକୁ ଚେଷ୍ଟା କରୁଛୁ ।

ଏଥିପାଇଁ ସାର୍ବଜନୀନ ସଂକ୍ରାନ୍ତିଭୋଜନକୁ ଆମେ ଆମର କାର୍ଯ୍ୟକ୍ରମ ଭିତରେ ମଝିରେ ସ୍ଥାନ ଦେଇଛୁ । ଏହି ସଂକ୍ରାନ୍ତିଭୋଜନ ସମସ୍ତଙ୍କ ପାଇଁ ଉନ୍ମୁକ୍ତ ଥାଏ ଓ ଆଖପାଖର ଗ୍ରାମବାସୀ ପରିଶ୍ରମ ଏବଂ ସାମାନ୍ୟ ଖର୍ଚ୍ଚରେ ଏଥିରେ ଯୋଗ ଦେଇଥାନ୍ତି । ସବୁ ଶ୍ରେଣୀର ଓ ଜାତିର ଲୋକ ଓ ତଥାକଥିତ ଅସ୍ପୃଶ୍ୟ ଲୋକମାନେ ମଧ୍ୟ ଏଥିରେ ଯୋଗ ଦେଇଥାନ୍ତି ।

ଗ୍ରାମୀଣ ରକ୍ଷଣଶୀଳ ପରିବେଶରେ ଆନ୍ତର୍ଜାତି ସଂକ୍ରାନ୍ତିଭୋଜନର ଆୟୋଜନ ସହଜ ବ୍ୟାପାର ହୋଇନଥାଏ । ତଥାପି ଆମେ ସଫଳ ହୋଇଛୁ । ଏହି ସଫଳତା ପଶ୍ଚାତରେ ଆମର ନାସ୍ତିକ୍ୟବାଦୀ ଦୃଷ୍ଟିକୋଣ ରହିଛି ଯାହା ଏକ ସାର୍ବଜନୀନ ମନୋଭାବ ଉଦ୍ରେକ କରାଇବାରେ ସାହାଯ୍ୟ କରୁଛି । ଏକ ସାର୍ବଜନୀନ ଦୃଷ୍ଟିଭଙ୍ଗୀ ଯୋଗୁଁ ଆମେ ସକଳ ପ୍ରକାର ସାମ୍ପ୍ରଦାୟିକ ଓ ଅସ୍ପୃଶ୍ୟ ମନୋଭାବକୁ ଦୂର କରିବାରେ ସମର୍ଥ ହୋଇପାରୁଛୁ ।

ଗୋଟିଏ ବର୍ଷର କାର୍ଯ୍ୟକ୍ରମର ସଫଳ ଅନୁଭୂତିରୁ ଏହି ପନ୍ଥାରେ ଅଗ୍ରସର ହେବାକୁ ଆମକୁ ପ୍ରେରଣା ମିଳୁଛି । ଆପଣଙ୍କର ପ୍ରଜ୍ଞା ଓ ଅନୁଭୂତିବହୁଳ ଜୀବନ ପ୍ରତି ଆମର ଗଭୀର ସମ୍ମାନବୋଧ ହେତୁ ଏହି ପନ୍ଥାରେ ଯିବା ପୂର୍ବରୁ ଆପଣଙ୍କର ବିଜ୍ଞ ପରାମର୍ଶ ଆମେ କାମନା କରୁଛୁ । ନାସ୍ତିକ୍ୟବାଦୀ ଜୀବନଦର୍ଶନକୁ ନେଇ ଏହି ସମାଜ ସେବାରେ ଅଗ୍ରଗତି ହେବା ପଶ୍ଚାତରେ ଯଦି କିଛି ତ୍ରୁଟିବିଚ୍ୟୁତି ଥିବା ଆପଣ ଅନୁଭବ କରନ୍ତି ସେ ନେଇ ଆମକୁ ସଚେତନ କରାଇବା ପାଇଁ ମୁଁ ଅନୁରୋଧ କରୁଛି । ଆପଣଙ୍କର ବିଜ୍ଞ ପରାମର୍ଶ ଓ ଉପଦେଶ ପାଇଲେ ଆମେ ଆବଶ୍ୟକ ହେଲେ ଆମର ଆଭିମୁଖ୍ୟ ଓ କାର୍ଯ୍ୟକ୍ରମରେ ପରିବର୍ତ୍ତନ କରିବାକୁ ପ୍ରସ୍ତୁତ ଅଛୁ । ଆପଣ ଆଗ୍ରହ ପ୍ରକାଶ କଲେ ମୁଁ ସେବାଗ୍ରାମ ଯାଇ ଆପଣଙ୍କ ସହିତ ଏ ବିଷୟରେ ଆଲୋଚନା କରିବାକୁ ପ୍ରସ୍ତୁତ ଅଛି ।

ଏହି ପତ୍ରର ଉତ୍ତରରେ ଗାନ୍ଧୀଜି ଏହା ଲେଖିଥିଲେ—

ସେବାଗ୍ରାମ
୧୧ । ୯ । ୪୧

ପ୍ରିୟ ବନ୍ଧୁ,

ନିରୀଶ୍ୱରବାଦ ହେଉଛି ଆତ୍ମାକୁ ଅସ୍ୱୀକାର କରିବା । ଏହି ଜୀବନଦର୍ଶନର ପ୍ରଚାର କରାଇବାରେ କେହି ସଫଳ ହୋଇନାହାନ୍ତି । ଆପଣମାନଙ୍କର କାର୍ଯ୍ୟକ୍ରମର ସଫଳତା ଆପଣମାନଙ୍କର ନିସ୍ୱାପର ଚେଷ୍ଟା ଯୋଗୁଁ ସମ୍ଭବ ହୋଇଛି । ମୁଁ ଦୁଃଖିତ ଯେ ମୋର ସମୟାଭାବ ଯୋଗୁଁ ଆପଣଙ୍କ ସହ ଆଲୋଚନା କରିବାକୁ ଆପଣଙ୍କୁ ଏଠାକୁ ନିମନ୍ତ୍ରଣ କରିପାରୁନାହିଁ ।

ଆପଣଙ୍କର
ଏମ୍. କେ. ଗାନ୍ଧୀ

ଗାନ୍ଧୀଜୀ ଜାତୀୟ ଜୀବନରେ ଏକ ପ୍ରମୁଖ ଭୂମିକା ନେଇଥିବାରୁ ମୁଁ ଓ ମୋର ସହଯୋଗୀ ବନ୍ଧୁଗଣ ତାଙ୍କ ସହ ଯୋଗାଯୋଗ ରଖି ଆମ ଲକ୍ଷ୍ୟରେ ଅଗ୍ରସର ହେବାକୁ ଆଗ୍ରହୀ ଥିଲୁ । କିନ୍ତୁ ତାଙ୍କର ଉଲ୍ଲିଖିତ ପତ୍ରରୁ ଏହି ସୁଯୋଗ ମିଳିଲା ନାହିଁ ।

ଏହା ସହିତ ନିରୀଶ୍ୱରବାଦ ଉପରେ ତାଙ୍କର ରହିଥିବା ଧାରଣା ତାଙ୍କ ପତ୍ରରୁ ମୁଁ ଜାଣିଲି । ଆତ୍ମାର ଅସ୍ୱୀକାର ନହୋଇ ବରଂ ଅପରପକ୍ଷରେ ଆତ୍ମ-ବିଶ୍ୱାସ ଉପରେ ଏହି ଜୀବନଦର୍ଶନ ସମ୍ପୂର୍ଣ୍ଣ ଆଧାରିତ ବୋଲି ମୁଁ ଧରିଥିଲି । ଅବଶ୍ୟ ଏ ବିଷୟରେ ରହିଥିବା ଭୁଲ୍‌ଧାରଣାକୁ ନେଇ ଯୁକ୍ତି କରିବା ପରିବର୍ତ୍ତେ ଏହାର ଯଥାର୍ଥ ଅର୍ଥ ଓ ଅଭିମୁଖ୍ୟକୁ ପ୍ରକାଶ କରିବା ଏହାର ପୃଷ୍ଠପୋଷକଙ୍କର ଲକ୍ଷ୍ୟ ହେବା ଉଚିତ । ସୁତରାଂ ଆମେ ଆମ ପନ୍ଥାରେ ସମାଜସେବା କାର୍ଯ୍ୟକ୍ରମରେ ଅଗ୍ରସର ହେବାକୁ ଠିକ୍ କଲୁ । ଆମେ ଭାବିଲୁ ଯେ ଯଦିଓ ଆମେ ନିସ୍ୱାପର ଭାବରେ ସାମାଜିକ ଲକ୍ଷ୍ୟ ହାସଲ ପାଇଁ ଅଗ୍ରସର ହେବୁ, ତେବେ ଆମେ ନିଶ୍ଚୟ ଭବିଷ୍ୟତରେ ଗାନ୍ଧୀଜୀଙ୍କର ଦୃଷ୍ଟି ଆକର୍ଷଣ କରିବୁ; କାରଣ ଆମର ବିଶ୍ୱାସ ଥିଲା ଯେ ସେ ନିସ୍ୱାପର କାର୍ଯ୍ୟକୁ ସର୍ବଦା ସମ୍ମାନ କରିଥାନ୍ତି ।

ସୁଖର କଥା ଏହି ସୁଯୋଗ ଶୀଘ୍ର ଆସିଥିଲା ।

ତୃତୀୟ ପରିଚ୍ଛେଦ :

# ମୁଁ ସେବାଗ୍ରାମ ଗଲି

୧୯୪୨ରେ ଭାରତଛାଡ଼ ଆନ୍ଦୋଳନ ଆରମ୍ଭ ହେଲା । ମୁଁ ଓ ମୋର ସହକର୍ମୀ ବନ୍ଧୁଗଣ ୧୯୪୪ ପର୍ଯ୍ୟନ୍ତ ବହୁ ସମୟରେ କାରାବରଣ କରିଥିଲୁ । ଆମ ସହିତ ଶ୍ରୀ ଡ. ରାମସ୍ୱାମୀ ନାମକ ଜଣେ ଯୁବକ ବନ୍ଧୁ ଥିଲେ ଯେ କି ୧୯୪୨ରେ ଆମର କାର୍ଯ୍ୟକ୍ରମ ସହିତ ସଂଶ୍ଳିଷ୍ଟ ହେବା ପୂର୍ବରୁ ସେବାଗ୍ରାମରେ ରହିଥିଲେ । ୧୯୪୪ରେ ଗାନ୍ଧୀଜୀ ବନ୍ଦୀରୁ ଖଲାସ ହେବାପରେ ଶ୍ରୀ ରାମସ୍ୱାମୀ ପୁନର୍ବାର ଗାନ୍ଧୀଜୀଙ୍କ ପାଖକୁ ସେବାଗ୍ରାମ ଚାଲିଗଲେ । ସେ ପ୍ରସଙ୍ଗକ୍ରମେ ଆମର କାର୍ଯ୍ୟସୂଚୀ ବିଷୟରେ—ଯାହା ସହିତ ସେ ବି ଘନିଷ୍ଠ ଭାବରେ ସଂପୃକ୍ତ ଥିଲେ—ଗାନ୍ଧୀଜୀଙ୍କୁ ଅବଗତ କରାଇଲେ । ମୁରୁନର ଗ୍ରାମରେ ଆମ୍ଭେମାନେ କପରି ନବୀଶ୍ୱର ପନ୍ଥାରେ ଅସ୍ପୃଶ୍ୟତା ଦୂରୀକରଣ ପାଇଁ କାର୍ଯ୍ୟ କରୁଛୁ ତାହା ତାଙ୍କୁ କହିଥିଲେ ।

ରାମସ୍ୱାମୀଙ୍କର ଗାନ୍ଧୀଜୀଙ୍କ ସହିତ ଯେଉଁ ଆଲୋଚନା ହୋଇଥିଲା ତାକୁ ଗାନ୍ଧୀଜୀଙ୍କର ବ୍ୟକ୍ତିଗତ ସହକାରୀ ଶ୍ରୀ ପ୍ୟାରେଲାଲ ଲେଖିଥିଲେ ଓ ତାଙ୍କ ଲେଖାରୁ ଏଠାରେ ତାହା ଉଲ୍ଲେଖ କରାଗଲା—

## ଈଶ୍ୱର ଓ ରଚନାତ୍ମକ କାର୍ଯ୍ୟକ୍ରମରେ ବିଶ୍ୱାସ :

ଗାନ୍ଧୀଜୀ ରାଷ୍ଟ୍ର ସମ୍ମୁଖରେ ଯେଉଁ ରଚନାତ୍ମକ କାର୍ଯ୍ୟକ୍ରମର ଯୋଜନା ରଖିଥିଲେ ତାହା କିଛି ନୂଆ କଥା ନଥିଲା । ତାଙ୍କର ୧୫ ଦଫା କାର୍ଯ୍ୟକ୍ରମକୁ ସାମଗ୍ରିକ ଭାବରେ ସଫଳ କାର୍ଯ୍ୟକାରୀ କରିବା ଅର୍ଥ ଥିଲା ଭାରତର ସ୍ୱାଧୀନତା ଲାଭ କରିବା । ଗାନ୍ଧୀଜୀ ବହୁବାର ଏହା ବ୍ୟକ୍ତ କରୁଥିଲେ ଯେ ସେ ଜଣେ ରାଜନୀତିଜ୍ଞ ନୁହଁନ୍ତି । ସେ ମୁଖ୍ୟତଃ ଜଣେ ଧର୍ମପ୍ରାଣ ବ୍ୟକ୍ତି ଯାହାଙ୍କର ଉଦ୍ଦେଶ୍ୟ ହେଲା ସମାଜ-ସଂସ୍କାର କରିବା । ନିଜର ଏହି ଅଭିମୁଖ୍ୟ ଭିତରେ ସେ କିନ୍ତୁ ରାଜନୈତିକ ଘଟଣା ପ୍ରବାହ ସହିତ ସମୟରେ ସଂଶ୍ଳିଷ୍ଟ ହୋଇଯାଉଛନ୍ତି । କିନ୍ତୁ ତାଙ୍କ ମତରେ ଯେଉଁ ରାଜନୈତିକ କାର୍ଯ୍ୟକଲାପ ଧର୍ମ ବା ସମାଜସଂସ୍କାରରୁ ବିଚ୍ଛିନ୍ନ ତାହା ତାଙ୍କ ପାଇଁ ସମ୍ପୂର୍ଣ୍ଣ ଅର୍ଥଶୂନ୍ୟ ।

ଗାନ୍ଧୀଜୀଙ୍କର ପନ୍ଦର ଦଫା କାର୍ଯ୍ୟକ୍ରମର ଅଭିମୁଖ୍ୟ ଥିଲା ଗ୍ରାମମାନଙ୍କର ପୁନର୍ଗଠନ କରି ଏକ ଅହିଂସ ସମାଜ ଗଠନ କରିବା । ସାମ୍ପ୍ରଦାୟିକ ମନୋଭାବ ଓ ଅସ୍ପୃଶ୍ୟତା ପରି ବ୍ୟାଧିକୁ ଦୂର କରି ଭାରତର ସାତ ଲକ୍ଷ ଗ୍ରାମକୁ ପୁନର୍ଗଠନ କରିବା ତାଙ୍କ ରଚନାତ୍ମକ କାର୍ଯ୍ୟକ୍ରମର ଲକ୍ଷ୍ୟ ଥିଲା । ସେ ବିଶ୍ୱାସ କରୁଥିଲେ ଯେ ଶିକ୍ଷା ଓ ସ୍ୱାସ୍ଥ୍ୟସେବାର ବିକାଶ ଘଟାଇ ଗ୍ରାମଗୁଡ଼ିକୁ ସ୍ୱାବଲମ୍ବନଶୀଳ କରି ଗଢ଼ି ପାରିଲେ ଭାରତର ପରାଧୀନତା ଅପସରି ଯାଇପାରିବ । କିନ୍ତୁ ଏହି ଲକ୍ଷ୍ୟ ହାସଲ କରିବା ଏକ ଦୁରୂହ କାର୍ଯ୍ୟ । ସେ ଦୁଃଖପ୍ରକାଶ କରୁଥିଲେ ଯେ ଅଧିକାଂଶ କର୍ମୀ ଗ୍ରାମମାନଙ୍କରେ ଶ୍ରମ ଦେଇ କାର୍ଯ୍ୟ କରିବା କ୍ଷେତ୍ରରେ ଆନ୍ତରିକତା ନଦେଖାଇ ବରଂ ରାଜନୈତିକ ସଭାସମିତି ଇତ୍ୟାଦି କାର୍ଯ୍ୟରେ ଅଧିକ ଆଗ୍ରହ ଦେଖାଉଛନ୍ତି । ରଚନାତ୍ମକ କର୍ମୀମାନେ ଏ କ୍ଷେତ୍ରରେ ସମ୍ମୁଖୀନ ହେଉଥିବା ପ୍ରତିବନ୍ଧକ ପାଇଁ ଗାନ୍ଧୀଜୀ ଜଣେ ଯୁବକ ସ୍ନାତକ ଶ୍ରୀ ଭି. ରାମସ୍ୱାମୀଙ୍କ ସହ କରିଥିବା ଆଲୋଚନା ଏଠାରେ ପ୍ରଣିଧାନଯୋଗ୍ୟ ।

ରାମସ୍ୱାମୀ ଗାନ୍ଧୀଜୀଙ୍କୁ ପୂର୍ବଦିନ ସାକ୍ଷାତ କରି ତାଙ୍କ କାର୍ଯ୍ୟକ୍ରମର ଏକ ବିବରଣୀ ପ୍ରଦାନ କରିବା ସହିତ ଗାନ୍ଧୀଜୀଙ୍କର ପରାମର୍ଶ ନେଉଥିଲେ । ସେ ଗାନ୍ଧୀଜୀଙ୍କୁ କହିଥିଲେ ଯେ ସେ ଏକ ସାର୍ବଜନୀନ ଦୃଷ୍ଟିଭଙ୍ଗୀ ପୋଷଣ କରନ୍ତି କିନ୍ତୁ କୌଣସି ଈଶ୍ୱରଙ୍କୁ ବିଶ୍ୱାସ କରନ୍ତିନାହିଁ । ଗାନ୍ଧୀଜୀ ତାଙ୍କ ବିବରଣୀ ଦେଖି ଆନନ୍ଦିତ ହୋଇଥିଲେ ଓ କହିଥିଲେ ଯେ ଗ୍ରାମମାନଙ୍କର ପୁନର୍ଗଠନ ଏକ ଗୁରୁତର କାର୍ଯ୍ୟ କିନ୍ତୁ ଯଦିଓ ଆମେ ଅଧ ଡଜନ ନିଷ୍ଠାପର ଓ ଉତ୍ସର୍ଗୀକୃତ କର୍ମୀଙ୍କୁ ପାଇବା ଆମେ ଏହି ଦୁରୂହ କାର୍ଯ୍ୟକୁ ଠିକ୍ ସମୟରେ ସମାଧାନ କରିପାରିବା । ଏ କ୍ଷେତ୍ରରେ ସମୟରେ ସଚ୍ଚୁକାର୍ଯ୍ୟ ହେବା ଅତି ଗୁରୁତ୍ୱପୂର୍ଣ୍ଣ । ଅବଶ୍ୟ କୌଣସି କାର୍ଯ୍ୟକୁ ଠିକ୍ ଭାବରେ ଆରମ୍ଭ କରାଗଲେ ଏହା ନିଶ୍ଚିତ ଭାବରେ ଲକ୍ଷ୍ୟ ହାସଲ ଦିଗରେ ଆଗେଇ ଯିବ । ଗାନ୍ଧୀଜୀ ତାଙ୍କୁ ବୁକର ଟି. ଓ୍ୱାଶିଙ୍ଗଟନଙ୍କ ଉଦାହରଣ ଦେଇ କହିଥିଲେ ଯେ ଆମର ଲକ୍ଷ୍ୟ ହାସଲ ଦିଗରେ ଆମକୁ ତାଙ୍କ (ଓ୍ୱାଶିଙ୍ଗଟନଙ୍କ) ଅପେକ୍ଷା ଆହୁରି ଭଲ କର୍ମୀ ସୃଷ୍ଟି କରିବାକୁ ହେବ ।

ଗାନ୍ଧୀଜୀ ତାଙ୍କୁ ପରାମର୍ଶ ଦେଇ କହିଲେ, "ତୁମର ନିଷ୍ଠା ଓ ଆନ୍ତରିକତା ସହିତ ତୁମର ଜୀବନରେ ଈଶ୍ୱର ବିଶ୍ୱାସ ରହିଲେ ତୁମେ ତୁମ ଲକ୍ଷ୍ୟରେ ପହଞ୍ଚି ପାରିବ । ଏହାଦ୍ୱାରା ତୁମର ଜୀବନରୁ ସମସ୍ତ ଅବସାଦ ଦୂର ହୋଇପାରିବ । ଏକ ସାର୍ବଜନୀନ ଦୃଷ୍ଟିକୋଣ ସର୍ବାଦୌ ଆବଶ୍ୟକ କିନ୍ତୁ ଏହା ଈଶ୍ୱରଙ୍କର ପରିପୂରକ ହୋଇପାରିବ ନାହିଁ । ଈଶ୍ୱରଙ୍କର ଅସ୍ତିତ୍ୱକୁ ଅସ୍ୱୀକାର କରିହେବ ନାହିଁ । କିନ୍ତୁ ଆମେ ଆମର ସୀମିତ ମାନସିକ ଅବବୋଧ ଓ ପରିବେଶ ଯୋଗୁଁ ଈଶ୍ୱରଙ୍କୁ ଏକ ସାପେକ୍ଷିକ ପ୍ରତ୍ୟୟ ଭାବରେ ଅବଧାରଣା କରିଥାଉ । ଉଦାହରଣ ସ୍ୱରୂପ ତୁମେ

ଯେତେବେଳେ ବାଇବେଲ ପଢ଼ିଥାଅ ତୁମେ ଭାବ ଯେ ହିବ୍ରୁମାନଙ୍କର ଈଶ୍ୱର ଯୀଶୁଖ୍ରୀଷ୍ଟଙ୍କର ଈଶ୍ୱର ପ୍ରଭୃତିଠାରୁ ପୃଥକ୍। ସମ୍ଭବତଃ ଈଶ୍ୱରଙ୍କ ପ୍ରତି ତୁମର ବିମୁଖତାର କାରଣ ହେଉଛି ଯେଉଁମାନେ ଈଶ୍ୱରଙ୍କର ଅସ୍ତିତ୍ୱ ନେଇ ପ୍ରଚାର କରୁଛନ୍ତି ସେମାନଙ୍କର ବାସ୍ତବ ଜୀବନ ଈଶ୍ୱର-ପ୍ରଦତ୍ତ-ବାଣୀ ଉପରେ ପ୍ରତିଷ୍ଠିତ ନୁହେଁ।"

ଗାନ୍ଧୀଜୀ ପୁଣି କହିଲେ, "ଈଶ୍ୱରଙ୍କ ଉପରେ ତୁମର ବିଶ୍ୱାସ ନରହିଲେ ଜୀବନରେ କୌଣସି ପ୍ରତିବନ୍ଧକ ବା ନୈରାଶ୍ୟର ସମ୍ମୁଖୀନ ହେଲେ ତୁମେ ହତାଶ ହୋଇପଡ଼ିବ। ଯେଉଁ କାର୍ଯ୍ୟକ୍ରମକୁ ତୁମେ ଗ୍ରହଣ କରିଛ ସମୟରେ ତାହା ପ୍ରତି ତୁମର ବିମୁଖତା ଆସିବ। ତୁମେ ହୁଏତ ଡଃ. ଆମ୍ବେଦକରଙ୍କ କହିବା ପରି ଅନୁଭବ କରିବ ଯେ ତୁମକୁ ଦିଆଯାଉଥିବା ଉଚ୍ଚ କର୍ମସ୍ଥାନକୁ ଗ୍ରହଣ ନକରି ସମାଜସେବାରେ ନିଜକୁ ବ୍ରତୀ କରାଇବା ତୁମର ଭୁଲ ହୋଇଛି। ମୋର ତୁମକୁ ପରାମର୍ଶ ଯେ ଏହି ଆଶ୍ରମରେ ଈଶ୍ୱର ଅନୁଭୂତି ନପାଇବା ପର୍ଯ୍ୟନ୍ତ ତୁମେ ଏହା ଛାଡ଼ି ଯାଇପାରିବ ନାହିଁ। ମୋ ଜୀବନରେ ଅନେକ ବିଫଳତା ସତ୍ତ୍ୱେ ମୁଁ ସତ୍ୟର ଅନୁସନ୍ଧାନୀ ଓ ମୋର ଏଠିକାର ସହଯୋଗୀବୃନ୍ଦ ମଧ୍ୟ ମୋ ବିଚାରଧାରାରେ ପଥିକ। ଯେଉଁ ଆଦର୍ଶ ଓ ଶକ୍ତିକୁ ନେଇ ଏହି ଆଶ୍ରମ ରହିଛି ଓ ଏହାର ଅନ୍ତେଃବାସୀ-ବୃନ୍ଦ ଏଠାରେ କାର୍ଯ୍ୟ କରୁଛନ୍ତି ତାହା ତୁମକୁ ଈଶ୍ୱରଙ୍କୁ ସ୍ୱୀକାର କରିବାରେ ସାହାଯ୍ୟ କରିବ ବୋଲି ମୁଁ ଭାବୁଛି। ମୋର ବିଶ୍ୱାସ ତୁମେ ଯେପରି ସତ୍ୟକୁ ସ୍ୱୀକାର କରୁଛ ସେହିପରି ଈଶ୍ୱରଙ୍କୁ ମଧ୍ୟ ସ୍ୱୀକାର କରିବ।"

ଏହାଶୁଣି ରାମସ୍ୱାମୀ ଉତ୍ତରଦେଲେ, "ମୋ ବିଚାରରେ ସତ୍ୟ ଓ ମିଥ୍ୟା ପରସ୍ପରର ବିପରୀତ ଓ ପ୍ରତିକୂଳ।"

ଗାନ୍ଧୀଜୀ କହିବାକୁ ଲାଗିଲେ, "ଦ୍ରଷ୍ଟାମାନେ ଈଶ୍ୱରଙ୍କୁ ଅବର୍ଣ୍ଣନୀୟ ଭାବରେ ନେତି ନେତି ବୋଲି କହିଛନ୍ତି। ଆମେ ଯାହା କିଛି ସତ୍ୟ ବୋଲି ଅନୁଭବ କରୁ ତାହା ହେଉଛି ଏକ ପରମ ସତ୍ୟର ଅଂଶବିଶେଷ। ଜୀବନରେ ସାମଗ୍ରିକ ଭାବରେ ସକଳ ସତ୍ୟ ବା ପରମ ସତ୍ୟର ଅନୁଭୂତି ମିଳି ନପାରେ। ପାଶ୍ଚାତ୍ୟ ଶିକ୍ଷାଲାଭ କରିଥିବା ବହୁ ଯୁବକଙ୍କ ପରି ତୁମର ଏକ ବିଶ୍ଳେଷଣାତ୍ମକ ମନ ରହିଛି। କିନ୍ତୁ ଏପରି କେତେକ କଥା ରହିଛି ଯାହାକୁ ବୁଦ୍ଧିର ସୀମା ଭିତରେ ବିଶ୍ଳେଷଣ କରିହେବ ନାହିଁ। ମୋର ବୁଦ୍ଧିର ପର୍ଯ୍ୟାୟ ଭିତରେ ମୁଁ ଈଶ୍ୱରଙ୍କୁ ଯେପରି ବିଶ୍ଳେଷଣ କରେ ତାହା ମୋତେ ସନ୍ତୋଷଜନକ ବୋଧହୁଏ ନାହିଁ। ସୁତରାଂ ମୁଁ ତାଙ୍କୁ ମୋର ବୁଦ୍ଧିର ସୀମା ଭିତରେ ବୁଝିବାକୁ ଚେଷ୍ଟା କରେ ନାହିଁ। ଏକ ଆପେକ୍ଷିକ ସତ୍ୟଠାରୁ ଏକ ପରମ ସତ୍ୟକୁ ଅନୁଭବ କରିବାକୁ ମୁଁ ପ୍ରଯତ୍ନ କରିଥାଏ ଓ ଏହାଦ୍ୱାରା ମାନସିକ ଶକ୍ତି ଲାଭ କରିଥାଏ।"

ରାମସ୍ୱାମୀ—ମୁଁ 'ହରିଜନ' ଓ 'ୟଙ୍ଗ ଇଣ୍ଡିଆ'ରେ ଆପଣଙ୍କର ଲେଖାଗୁଡ଼ିକୁ ମନୋଯୋଗ ସହକାରେ ଅଧ୍ୟୟନ କରିଛି । ଆପଣଙ୍କର ଜୀବନଦୃଷ୍ଟି ମୋତେ ବହୁତ ଆକର୍ଷଣ କରିଛି । ଆପଣଙ୍କ ଲେଖାରେ ବ୍ୟକ୍ତିଗତ ସଙ୍କଳ୍ପକୁ ଆପଣ ଗୁରୁତ୍ୱ ଦେଇଥାନ୍ତି । କିନ୍ତୁ ଈଶ୍ୱରବିଶ୍ୱାସ ଦ୍ୱାରା ବ୍ୟକ୍ତିଗତ ସ୍ୱାଧୀନତା ବା ସଙ୍କଳ୍ପ ଅପେକ୍ଷା ଏକପ୍ରକାରର ଭାଗ୍ୟବାଦ ବା କାରଣତନ୍ତ୍ରବାଦକୁ ପ୍ରାଧାନ୍ୟ ଦିଆଯାଏ । ଭାଗ୍ୟବାଦକୁ ଗ୍ରହଣ କରିବାଦ୍ୱାରା ବ୍ୟକ୍ତିଗତ ସଙ୍କଳ୍ପ ବା ବ୍ୟକ୍ତିର ସ୍ୱତନ୍ତ୍ରତାକୁ ବାଦ୍ ଦେବାକୁ ହୋଇଥାଏ ।

ଗାନ୍ଧୀଜୀ—ବ୍ୟକ୍ତିର ସ୍ୱାତନ୍ତ୍ର୍ୟ ଭଳି ଏପରି କିଛି ରହିଛି କି ? ବରଂ ଆମେ ହେଉଛେ ଅଦୃଷ୍ଟ ହାତରେ କ୍ରୀଡ଼ନକ ସଦୃଶ ।

ରାମସ୍ୱାମୀ—ଈଶ୍ୱର ଓ ମଣିଷ ବା ଈଶ୍ୱର ଓ ସତ୍ୟ ଭିତରେ ସମ୍ପର୍କ କ'ଣ ?

ଗାନ୍ଧୀଜୀ—ମୁଁ ଈଶ୍ୱରଙ୍କୁ ସତ୍ୟ ବୋଲି ବିଶ୍ୱାସ କରୁଥିଲି, କିନ୍ତୁ ସେଥିରେ ମୁଁ ସନ୍ତୁଷ୍ଟ ନହୋଇ ପରେ ଗ୍ରହଣ କଲି ଯେ ସତ୍ୟ ହେଉଛି ଈଶ୍ୱର । ମୁଁ ଈଶ୍ୱର ଓ ତାଙ୍କ ନିୟମ ଭିତରେ କୌଣସି ପାର୍ଥକ୍ୟ ଦେଖେନାହିଁ । ଈଶ୍ୱରଙ୍କର ନିୟମ ଜାଣିବାକୁ ମଣିଷକୁ ଅନ୍ତରର ସହ ପ୍ରାର୍ଥନା କରି ତାଙ୍କ ସହ ନିଜକୁ ଏକୀଭୂତ କରିବାକୁ ହେବ । ଏହି ନିୟମକୁ ଜଣେ ନିଜର ମାନଦଣ୍ଡରେ ବିଶ୍ଳେଷଣ କରିପାରେ । ମଣିଷ ଓ ଈଶ୍ୱରଙ୍କ ସମ୍ବନ୍ଧ ବିଷୟରେ ମୁଁ ଏତିକି କହିବି ଯେ ମଣିଷ ତା'ର ଦୁଇହାତ ଯୋଗୁଁ ମଣିଷ ପଦବାଚ୍ୟ ନୁହେଁ, ବରଂ ତା' ଭିତରେ ଈଶ୍ୱର ଅଭିବ୍ୟକ୍ତ ପାଇଁ ସେ ହେଉଛି ମଣିଷ ।

ରାମସ୍ୱାମୀ—ଯେତେବେଳେ ମୋର ଈଶ୍ୱର ପ୍ରତୀତ ସ୍ପଷ୍ଟ ନୁହେଁ ସେତେବେଳେ ଆପଣଙ୍କର ବକ୍ତବ୍ୟ 'ମଣିଷ ଈଶ୍ୱରଙ୍କର ଅସ୍ତିତ୍ୱର ପରିପ୍ରକାଶ ମାତ୍ର' କଥାଟି ମୋତେ ଅଧିକ ଅସ୍ପଷ୍ଟ ବୋଧ ହେଉଛି ।

ଗାନ୍ଧୀଜୀ—କିନ୍ତୁ ତାହାହିଁ ହେଉଛି ଯଥାର୍ଥ ଈଶ୍ୱର ପ୍ରତୀତ । ଯେତେବେଳପର୍ଯ୍ୟନ୍ତ ଆମର ଶରୀରକୁ ଆମେ ଈଶ୍ୱରଙ୍କର ଅଭିବ୍ୟକ୍ତି ଭାବରେ ଗ୍ରହଣ ନକରିଛେ ଆମେ ମଣିଷ ପଦବାଚ୍ୟ ନୋହୁଁ । ସତ୍ୟକୁ ଈଶ୍ୱର ବୋଲି ଗ୍ରହଣ କରିବା କ୍ଷେତ୍ରରେ କେଉଁଠି ଅସ୍ପଷ୍ଟତା ରହୁଛି ? ତୁମେ ଏହା ନିଶ୍ଚୟ ଗ୍ରହଣ କରିବ ଯେ ଆମେ ଅସତ୍ୟର ଅଭିବ୍ୟକ୍ତି ନୋହୁଁ ବରଂ ଆମେ ହେଉଛେ ସତ୍ୟର ପରିପ୍ରକାଶ ।

କିଛି ସମୟ ନୀରବ ରହି ଗାନ୍ଧୀଜୀ କହିଲେ, "ଜଣେ ଏକ ଆଦର୍ଶ ଜୀବନ ବିତାଇବାକୁ ଚାହିଁଲେ ସେ ବହୁ ସମୟରେ ନାନା ପ୍ରତିବନ୍ଧକର ସମ୍ମୁଖୀନ ହେବ ଓ ଏପରିକି ଏହି ପ୍ରତିବନ୍ଧକ ସମୟରେ ଅଲଙ୍ଘନୀୟ ମନେହେବ । ଏହି ପରିସ୍ଥିତିରେ

ଜଣଙ୍କର ଈଶ୍ୱରବିଶ୍ୱାସ ଯାହା ସତ୍ୟ ଉପରେ ଆଧାରିତ—ରହିଥିଲେ ସେ ଅମୃତଫଳ ଲାଭ କରିପାରିବ । ଅନ୍ୟର ଦୁଃଖ ଦେଖି ତୁମର ଦରଦୀ ପ୍ରାଣରେ ସେହି ଦୁଃଖକୁ ଅନୁଭବ କରିବା ହେଉଛି ଏକ ଈଶ୍ୱରୀୟ ଗୁଣ । ତୁମେ ହୁଏତ ନିଜକୁ ନିରୀଶ୍ୱରବାଦୀ କହିପାର, କିନ୍ତୁ ଯେପର୍ଯ୍ୟନ୍ତ ତୁମ ଭିତରେ ମଣିଷ ପ୍ରତି ଏହି ଦରଦ ରହିଛି ତୁମେ ବାସ୍ତବରେ ଈଶ୍ୱରଙ୍କୁ ଗ୍ରହଣ କରୁଛ । ଏହି ପରିପ୍ରେକ୍ଷୀରେ ନାସ୍ତିକ ବ୍ରାଡ୍‌ଲଫ୍‌ଙ୍କର କଥା ମୋର ମନେପଡ଼ୁଛି । ତାଙ୍କର ଅନ୍ତ୍ୟେଷ୍ଟିକ୍ରିୟାରେ ପାଦ୍ରୀମାନେ ଯୋଗଦେଇ କହିଥିଲେ ଯେ ସେମାନେ ନିରୀଶ୍ୱରବାଦୀ ବ୍ରାଡ୍‌ଲଫ୍‌ଙ୍କ ପ୍ରତି ସେମାନଙ୍କର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛନ୍ତି; କାରଣ ବ୍ରାଡ୍‌ଲଫ୍ କର୍ତ୍ତବ୍ୟରେ ଈଶ୍ୱରଙ୍କ କାର୍ଯ୍ୟ କରିଯାଇଛନ୍ତି ।''

''ତୁମେ ଯଦିଓ ଈଶ୍ୱର ଓ ସତ୍ୟ ଉପରେ ପୂର୍ଣ୍ଣ ବିଶ୍ୱାସ ରଖି ତୁମର କର୍ମସ୍ଥଳୀକୁ ଯାଅ, ମୋର ବିଶ୍ୱାସ, ତୁମର କାର୍ଯ୍ୟ ନିଶ୍ଚୟ ସୁରୁଖୁରୁରେ ଚାଲିବ । ଈଶ୍ୱରଙ୍କୁ ନପାଇବା ପର୍ଯ୍ୟନ୍ତ ତୁମେ ତୁମ କାର୍ଯ୍ୟରେ ଅସନ୍ତୁଷ୍ଟ ରହିପାର; କିନ୍ତୁ ମୋର ବିଶ୍ୱାସ ତୁମେ ଈଶ୍ୱରଙ୍କୁ ଲାଭ କରିବ ।''

ନିଜର ନିଷ୍ଠାପର କର୍ମ ଓ ଶ୍ରମ ଭିତରେ ଈଶ୍ୱରଙ୍କୁ କିପରି ଲାଭ କରାଯାଇ-ପାରିବ ଏହି ଉଦ୍ଦେଶ୍ୟ ରଖି ରାମସ୍ୱାମୀ ଆଶ୍ରମରେ କିଛିଦିନ ରହିବାକୁ ମନସ୍ଥ କଲେ ।

ରାମସ୍ୱାମୀ ନିରୀଶ୍ୱରବାଦୀ ବର୍ଗର ଦୃଷ୍ଟି ବିଷୟରେ ଗାନ୍ଧୀଜୀଙ୍କୁ ଅବଗତ କରାଇଥିବା ଉପରୋକ୍ତ ଆଲୋଚନାରୁ ପ୍ରତୀତ ହେଉଛି । ସାଧାରଣତଃ ନାସ୍ତିକତା ପ୍ରତି ସାଧାରଣରେ ଯେଉଁ ଧାରଣା ଥାଏ ଯେ ଏହା ମହାନତା ଓ ମହତ୍ ଲକ୍ଷ୍ୟର ପରିପନ୍ଥୀ, ଗାନ୍ଧୀଜୀ ମଧ୍ୟ ସେହି ଧାରଣା ପୋଷଣ କରିଛନ୍ତି । 'ଅନ୍ୟର ଦୁଃଖ ଦେଖି ନିଜେ କଷ୍ଟ ଅନୁଭବ କରିବା ହେଉଛି ଏକ ଈଶ୍ୱରୀୟ ଗୁଣ' ଗାନ୍ଧୀଜୀଙ୍କର ଏହି ମନ୍ତବ୍ୟରୁ ଏହା ସ୍ପଷ୍ଟ ହେଉଛି ଯେ ଈଶ୍ୱର ବିଶ୍ୱାସରୁ ମଣିଷ ପ୍ରତି ଦରଦୀ ଭାବ ଆସିଥାଏ, ଅର୍ଥାତ୍ ଯେଉଁମାନେ ନିରୀଶ୍ୱରବାଦୀ ସେମାନେ ମାନବ ଦରଦୀ ହେବା ସମ୍ଭବ ନୁହେଁ । ନିରୀଶ୍ୱରବାଦକୁ ଏହି ମର୍ମରେ ବୁଝାଯାଉଛି ଓ ଗାନ୍ଧୀଜୀଙ୍କୁ ଯେତେବେଳେ ରାମସ୍ୱାମୀ ଏହି ଜୀବନଦୃଷ୍ଟି ବିଷୟରେ କହିଛନ୍ତି ଏହାହିଁ ତାଙ୍କର ସ୍ୱାଭାବିକ ପ୍ରତିକ୍ରିୟା ହୋଇଛି ।

ରାମସ୍ୱାମୀ ଗାନ୍ଧୀଜୀଙ୍କ ସହ ଆଲୋଚନା ପ୍ରସଙ୍ଗରେ ମୋ ସହିତ ତାଙ୍କର ସମ୍ପର୍କ ବିଷୟ ନେଇ ତାଙ୍କୁ ଅବଗତ କରାଇଥିଲେ । ସୁତରାଂ ଗାନ୍ଧୀଜୀ ମୋତେ ଜାଣିବା ପାଇଁ ସେବାଗ୍ରାମକୁ ଡକାଇଥିଲେ ଓ ମୁଁ ନଭେମ୍ବର ୧୯୪୪ରେ ସେଠାରେ ପହଞ୍ଚିଲି ।

ଚତୁର୍ଥ ପରିଚ୍ଛେଦ :

# ମୋର ଗାନ୍ଧୀଜୀଙ୍କ ସହ ପ୍ରଥମ ଆଲୋଚନା

ମୁଁ ସେବାଗ୍ରାମରେ ପହଞ୍ଚିଲା ପରେ ରାମସ୍ୱାମୀ ଯେ କି ଗାନ୍ଧୀଜୀଙ୍କ ସହିତ ସେଠାରେ ରହୁଥିଲେ ମୋତେ ସ୍ୱାଗତ ଜଣାଇ ଗାନ୍ଧୀଜୀଙ୍କ ସଚିବ ପ୍ୟାରେଲାଲ ଓ ଅନ୍ୟାନ୍ୟ ଆଶ୍ରମବାସୀଗଣଙ୍କ ସହ ପରିଚୟ କରାଇଦେଲେ । ରାମସ୍ୱାମୀ ଗାନ୍ଧୀଜୀଙ୍କ ସହିତ ନିରୀଶ୍ୱରବାଦ ଉପରେ ହୋଇଥିବା ତାଙ୍କର କଥୋପକଥନ ବିଷୟରେ ମଧ୍ୟ ମୋତେ ଜଣାଇଲେ (ଯାହା କି ପୂର୍ବ ଆଲୋଚନାରେ କରାଯାଇଛି) ଓ ଗାନ୍ଧୀଜି ମୋ ସହିତ ସାକ୍ଷାତ୍ କରିବାକୁ ଆଗ୍ରହୀ ଥିବା ବିଷୟ କହିଲେ ।

ସେହି ସମୟରେ ବହୁ ସଂସ୍ଥାର ପ୍ରତିନିଧିମାନେ ତାଙ୍କ ସହିତ ସାକ୍ଷାତ୍ କରିବାପାଇଁ ରହିଥିବାରୁ ଗାନ୍ଧୀଜୀ ବହୁତ ବ୍ୟସ୍ତ ରହିଥିଲେ । ସୁତରାଂ ଗାନ୍ଧୀଜୀଙ୍କ ସହ ଆଲୋଚନା କରିବାପାଇଁ ସାକ୍ଷାତ୍‌ର ଦୁଇଦିନ ପୂର୍ବରୁ ତାଙ୍କର ସାନ୍ଧ୍ୟଭ୍ରମଣ ସମୟରେ ହେବାକୁ ସ୍ଥିର ହୋଇଥାଏ ।

ନିର୍ଦ୍ଦିଷ୍ଟ ହୋଇଥିବା ଦିନ ଯଥାସମୟରେ ମୁଁ ତାଙ୍କର ପ୍ରକୋଷ୍ଠ ସମ୍ମୁଖରେ ଅପେକ୍ଷା କରିଥାଏ । ଗାନ୍ଧୀଜୀ ଠିକ୍ ୫.୩୦ରେ ତାଙ୍କର ସାନ୍ଧ୍ୟଭ୍ରମଣ ପାଇଁ ବାହାରିଲେ । ମୋତେ ତାଙ୍କ ସହିତ ପରିଚୟ କରିଦିଆଗଲା । ସେ ମୋତେ ସ୍ୱାଗତ ଜଣାଇ ହସିକରି କହିଲେ, "ଜଣେ ନାସ୍ତିକଙ୍କ ସହିତ ମୁଁ କ'ଣ ଆଳାପ କରିବ ?"

ତାଙ୍କର ଏହି ବକ୍ତବ୍ୟରେ ଆମେ ଉଭୟେ ହସିଲୁ ଓ ମୁଁ ଉତ୍ତର ଦେଲି, "ବାପୁଜୀ, ମୁଁ ନାସ୍ତିକ ନୁହେଁ, ମୁଁ ଜଣେ ନିରୀଶ୍ୱରବାଦୀ ।" ଏହାପରେ ଚାଲି ଚାଲି ଆମେ ଆଲୋଚନା ଆରମ୍ଭ କଲୁ ।

ଗାନ୍ଧୀଜୀ—ଆପଣ ନାସ୍ତିକତା ଓ ନିରୀଶ୍ୱରବାଦ ଭିତରେ କିପରି ପାର୍ଥକ୍ୟ ଦର୍ଶାଉଛନ୍ତି ?

ମୁଁ—ନାସ୍ତିକତା ହେଉଛି ଏକ ନାକାରାତ୍ମକ ପ୍ରତ୍ୟୟ କିନ୍ତୁ ନିରୀଶ୍ୱରବାଦ ସାକାରାତ୍ମକ । ଅବଶ୍ୟ ନିରୀଶ୍ୱରବାଦ ବସ୍ତୁରଧାରାର ଭିତ୍ତି ଉପରେ ନାସ୍ତିକତାର ପ୍ରତିଷ୍ଠା ହୋଇଥାଏ ।

ଗାନ୍ଧୀଜୀ—ଆପଣ ନିରୀଶ୍ୱରବାଦକୁ ସାକାରାତ୍ମକ ଭାବରେ ଗ୍ରହଣ କରୁଛନ୍ତି ?

ମୁଁ—ହଁ, ନିରୀଶ୍ୱରବାଦ ଅସ୍ତିସୂଚକ ଓ ଏହାର ତାତ୍ପର୍ଯ୍ୟ ହେଉଛି ଆତ୍ମବିଶ୍ୱାସ ଓ ସ୍ୱାଧୀନ ସଙ୍କଳ୍ପ । ଶାବ୍ଦିକ ଆକାର ଦୃଷ୍ଟିରୁ ଏହା ନାକାରାତ୍ମକ ମନେହେଲେ ହେଁ ତାତ୍ପର୍ଯ୍ୟ ଦୃଷ୍ଟିରୁ ଏହା ସାକାରାତ୍ମକ । ଯେପରି 'ଅସହଯୋଗ', 'ଅହିଂସା' ଇତ୍ୟାଦି ଶବ୍ଦଗୁଡ଼ିକ ଆକାରଗତ ଅର୍ଥ ଦୃଷ୍ଟିରୁ ନାସ୍ତିସୂଚକ ବା ନାକାରାତ୍ମକ ବୋଧ ହେଲେହେଁ ତାତ୍ପର୍ଯ୍ୟ ଦୃଷ୍ଟିରୁ ହେଉଛନ୍ତି ଅସ୍ତିସୂଚକ ବା ସାକାରାତ୍ମକ । ସମୟରେ କୌଣସି ଅପ୍ରଚଳିତ ଅର୍ଥ ବ୍ୟକ୍ତ କରିବାପାଇଁ ଆକାରଗତ ଦୃଷ୍ଟିରୁ ଆମେ ନାକାରାତ୍ମକ ଶବ୍ଦ ବ୍ୟବହାର କରିଥାଉ ଯାହାକି ଦ୍ୱିବିଧ ନାସ୍ତିସୂଚକ ଭାବରେ ଏକ ଅସ୍ତିସୂଚକ ଅର୍ଥ ଦେଇଥାଏ । ଯେପରି ସ୍ଥଳବିଶେଷରେ ସାହସ ପାଇଁ ଆମେ ନିର୍ଭୀକତା କହିଥାଉଁ ।

ଗାନ୍ଧୀଜୀ—ଆପଣ କ'ଣ ଶବ୍ଦ ଓ ପରିଭାଷା ବିଷୟରେ କହୁଛନ୍ତି ?

ମୁଁ—ବାସ୍ତବ ଜୀବନଧାରଣ କ୍ଷେତ୍ରରେ ନିରୀଶ୍ୱରବାଦର ଏକ ଯଥାର୍ଥ ତାତ୍ପର୍ଯ୍ୟ ମଧ୍ୟ ରହିଛି । ଈଶ୍ୱର ବିଶ୍ୱାସ ହେଉଛି ଏକ ଦିବ୍ୟ ବା ଅଦୃଷ୍ଟ ଇଚ୍ଛା ପାଖରେ ଅଧସ୍ତନ ବା ନ୍ୟୂନ ହୋଇ ରହିବା । ହିନ୍ଦୁ ବିଶ୍ୱର ବିମର୍ଶରେ ମଣିଷର ଜୀବନକୁ କର୍ମ ବା ଭାଗ୍ୟ ନିୟନ୍ତ୍ରଣ କରିଥାଏ । ବସ୍ତୁତଃ ଈଶ୍ୱର ବିଶ୍ୱାସର ପରିଣାମ ହେଉଛି ଜୀବନକୁ ନ୍ୟୂନବୋଧ କରିବା । ଅପରପକ୍ଷରେ ନିରୀଶ୍ୱରବାଦ ବ୍ୟକ୍ତିର ସ୍ୱାଧୀନତା ଓ ସ୍ୱାତନ୍ତ୍ର୍ୟକୁ ସ୍ୱୀକାର କରିଥାଏ । ସୁତରାଂ ଆସ୍ତିକତା ଓ ନାସ୍ତିକତା ଦୁଇଟି ପୃଥକ୍ ଜୀବନ ଦୃଷ୍ଟିର ପରିଚାୟକ—ପ୍ରଥମଟି ଜୀବନକୁ ସଙ୍କୁଚିତ ଓ ନ୍ୟୂନ କରିବାବେଳେ ଦ୍ୱିତୀୟଟି ଜୀବନର ସ୍ୱାଧୀନତା ଓ ସ୍ୱତନ୍ତ୍ରତାକୁ ବ୍ୟକ୍ତ କରିଥାଏ ।

ଗାନ୍ଧୀଜୀ—ଏହି ଯୁକ୍ତି କେବଳ ତାତ୍ତ୍ୱିକ । ମୁଁ ବୁଦ୍ଧିଜୀବୀ ନୁହେଁ । ଆପଣ କୌଣସି ବିଶ୍ୱବିଦ୍ୟାଳୟର ଅଧ୍ୟାପକଙ୍କ ସହ ଏହା ଆଲୋଚନା କରନ୍ତୁ ।

ଗାନ୍ଧୀଜୀଙ୍କର ଏହି ବକ୍ତବ୍ୟ ଫଳରେ ମୁଁ ସଙ୍କୁଚିତ ହେଲି । ମୁଁ ଅନୁଭବ କଲି ଯେ ଗାନ୍ଧୀଜୀ ଜଣେ ବାସ୍ତବବାଦୀ । ସୁତରାଂ ମୁଁ ନିଜକୁ ସଂଯତ କରି କହିଲି :

ମୁଁ—ନିରୀଶ୍ୱରବାଦର ଯଦିଓ କେବଳ ଖାଲି ତାତ୍ତ୍ୱିକ ଭିତ୍ତି ରହିଥାନ୍ତା ମୁଁ ତେବେ ଏହା ଉପରେ ଏତେ ଗୁରୁତ୍ୱ ଦେଉନଥାନ୍ତି ବା ଆପଣଙ୍କର ସମୟ ନଷ୍ଟ କରିନଥାନ୍ତି । ବରଂ ଏହି ଆଦର୍ଶର ଭିତ୍ତି ଉପରେ ଆମେ ବାସ୍ତବ କାର୍ଯ୍ୟସୂଚୀ ଗ୍ରହଣ କରୁଥିବାରୁ ଏହା ତାତ୍ପର୍ଯ୍ୟପୂର୍ଣ୍ଣ ।

ଗାନ୍ଧୀଜୀ—ହଁ, ସେ ବିଷୟରେ ମୁଁ ଶୁଣି ଆପଣଙ୍କୁ ପଚାରୁଛି । ଆପଣ ଗ୍ରାମବାସୀଙ୍କ ଭିତରେ କ'ଣ ସବୁ କରୁଛନ୍ତି ?

ମୁଁ—ଆମେ ପ୍ରତି ପୂର୍ଣ୍ଣିମା ରାତିରେ ସାର୍ବଜନୀନ ସଂଭ୍ରଭୋଜନ ଆୟୋଜନ କରିଥାଉ । ଆମେ ପୂର୍ଣ୍ଣିମା ରାତିକୁ ଏଥିପାଇଁ ସ୍ଥିର କରିଥାଉ । କାରଣ ଆମେ ପର୍ଯ୍ୟାପ୍ତ ଚନ୍ଦ୍ରାଲୋକ ପାଇବା ଯଦ୍ଦ୍ବାରା ଅଲୋକ ବାବଦରେ ଆମକୁ ବିଶେଷ ଖର୍ଚ୍ଚ କରିବାକୁ ପଡ଼ିବ ନାହିଁ । ଏକଅଣା (ବର୍ତ୍ତମାନ ମୂଲ୍ୟରେ ୬ ପଇସା) ଦେଇ ଜଣେ ଏଥିରେ ଯୋଗଦେଇପାରିବେ ଓ ଏହା ସବୁ ଶ୍ରେଣୀର ଲୋକଙ୍କ ପାଇଁ ଉନ୍ମୁକ୍ତ ରଖାଯାଇଥାଏ । ଅବଶ୍ୟ ଗ୍ରାମରେ ଗୋଟିଏ ଅଣାରେ ଏହା ଆୟୋଜନ କରିବାରେ କୌଣସି ଅସୁବିଧା ହୋଇନଥାଏ, ଯେହେତୁ ଆମେ ସାଧାରଣ ଖାଦ୍ୟ ପ୍ରସ୍ତୁତ କରିଥାଉ ଓ ଗ୍ରାମର ଲୋକଙ୍କ ପାଖରୁ ଜାଳେଣି, ପରିବା ଓ ମଇଁଷି କ୍ଷୀର ବେଳବେ ମାଗଣାରେ ସଂଗ୍ରହ ହୋଇଯାଏ । ଏହି ସଂଭ୍ରଭୋଜନରେ ସବୁ ଶ୍ରେଣୀର ଲୋକମାନେ ଏକାଠି ବସି ଖାଇବା ଉପରେ କେବଳ ଗୁରୁତ୍ବ ଦିଆଯାଇ-ଥାଏ । ପ୍ରତ୍ୟେକ ଥର ଆମେ ସ୍ଥାନ ପରିବର୍ତ୍ତନ କରିଥାଉ ଓ ବିଶେଷକରି ଆମେ ହରିଜନ ବସ୍ତି କିମ୍ବା କୌଣସି ବନ୍ଧୁଙ୍କର ଗୃହରେ ଏହା ଆୟୋଜନ କରିଥାଉ । ପ୍ରତ୍ୟେକଥର ପ୍ରାୟ ୪୦।୫୦ ଜଣ ଭିନ୍ନ ଭିନ୍ନ ଜାତିର ବ୍ୟକ୍ତି ଏଥିରେ ଅଂଶ ଗ୍ରହଣ କରିଥାନ୍ତି । ସବୁବେଳେ ଆମେ ଜଣେ ଆୟୋଜନକାରୀ ଠିକ୍‌କରି ଚାନ୍ଦା ପୂର୍ବରୁ ତାଙ୍କୁ ଆମର ଚାନ୍ଦା ଦେଇଥାନ୍ତି ଓ ସେ ଆୟୋଜନ ଦାୟିତ୍ବ ନେଇଥାନ୍ତି । ଯଦି ସଂଭ୍ରଭୋଜନରୁ କୌଣସି ମାସରେ କିଛି ଅର୍ଥ ବଳେ ତେବେ ତାହା ଆସନ୍ତା ମାସ ପାଇଁ ସଞ୍ଚିତ ହୋଇ ରୁହେ ।

ସାମାଜିକ ଉତ୍ସବ ବା ବିବାହୋତ୍ସବରେ ସବୁ ଜାତିର ଲୋକମାନେ ଏକାଠି ବସି ଖାଇବାର ବ୍ୟବସ୍ଥା ନଥିଲେ ଆମ ଭିତରୁ କେତେକ ସେ ସବୁରେ ଯୋଗଦିଅନ୍ତି ନାହିଁ । ଏହି ସଂଭ୍ରଭୋଜନ ବ୍ୟତୀତ ଆମେ ହରିଜନ ଓ ଗ୍ରାମର ନିରକ୍ଷର ଲୋକଙ୍କ ପାଇଁ ପ୍ରୌଢ଼ଶିକ୍ଷା କାର୍ଯ୍ୟକ୍ରମ ମଧ୍ୟ ଗ୍ରହଣ କରିଛୁ । ଏହି କାର୍ଯ୍ୟ-କ୍ରମରେ ସମ୍ବାଦପତ୍ର ପଢ଼ିବା, ମାନଚିତ୍ରରୁ ବିଭିନ୍ନ ଜାଗାର ଅବସ୍ଥିତି ବିଷୟରେ ଜ୍ଞାନଲାଭ କରିବା ଓ ବିଭିନ୍ନ ସମସ୍ୟା ବିଷୟରେ ବିଶ୍ଳେଷଣ କରିବା ଇତ୍ୟାଦି ହୋଇଥାଏ । ପ୍ରତ୍ୟେକ ସ୍ଥାନରେ ଆମେ ଏକ ସାର୍ବଜନୀନ ଦୃଷ୍ଟିଭଙ୍ଗୀର ବିକାଶ ଘଟାଇବା ପାଇଁ ସଚେତନତା ସୃଷ୍ଟି କରିଥାଉ । ଗାଁଗହଳର ପରିବେଶରେ ସବୁ ଜାତିର ଲୋକଙ୍କ ଭିତରେ ବିଶେଷକରି ହରିଜନମାନଙ୍କ ସହିତ ସାମାଜିକ ମିଶ୍ରଣ ଓ ଚଳଣି ଆଦୌ ସହଜସାଧ୍ୟ ହୋଇନାହିଁ ।

ଗାନ୍ଧୀଜୀ—ହଁ, ମୁଁ ତାହା ଜାଣିଛି । ହେଲେ ଆପଣ ନାସ୍ତିକବାଦୀ ଦୃଷ୍ଟିଭଙ୍ଗୀ ବ୍ୟତୀତ ଏହି କାର୍ଯ୍ୟକ୍ରମ ମଧ୍ୟ ଗ୍ରହଣ କରିପାରିବେ ।

ମୁଁ—ମୁଁ ଅନୁଭୂତିରୁ ଜାଣିଛି ଯେ ଏକ ସାର୍ବଜନୀନ ଦୃଷ୍ଟିଭଙ୍ଗୀର ବିକାଶ ପାଇଁ ନାସ୍ତିକବାଦୀ ପନ୍ଥା ଅଧିକ ଅନୁକୂଳ । ନାସ୍ତିକବାଦୀ ଜୀବନଦୃଷ୍ଟି ଗ୍ରହଣ

କଲେ ମଣିଷ ମଣିଷ ଭିତରେ ଥିବା ଜାତିଗତ ଓ ସମ୍ପ୍ରଦାୟଗତ ପ୍ରତିବନ୍ଧକଙ୍କୁ ଅଚିରେ ଦୂର କରିଦେବ । ଏହାଦ୍ୱାରା କେହି ନିଜକୁ ହିନ୍ଦୁ, ମୁସଲମାନ ବା ଖ୍ରୀଷ୍ଟିଆନ ବିଚାର ନକରି ଜଣେ ମଣିଷ ଭାବରେ ନିଜକୁ ବିଚାର କରିବ ଓ ସମସ୍ତଙ୍କୁ ମଧ୍ୟ ମଣିଷ ଦୃଷ୍ଟିରେ ଦେଖିବ । ଏତଦ୍‌ବ୍ୟତୀତ ଏହି ଦୃଷ୍ଟିକୋଣ ପ୍ରତ୍ୟେକ ବ୍ୟକ୍ତିଙ୍କୁ ସ୍ୱାବଲମ୍ବୀ କରିବାକୁ ପ୍ରେରଣା ଦେବ ଓ ସେ କୌଣସି ଅଦୃଷ୍ଟ ବା ଭାଗ୍ୟର ହାତରେ କ୍ରୀଡ଼ନକ ବୋଲି ବିଚାର କରିବ ନାହିଁ । ଅଧିକନ୍ତୁ ସ୍ୱାଧୀନଚିନ୍ତା ଓ ଆତ୍ମମର୍ଯ୍ୟାଦା-ବୋଧ ମନୋଭାବ ନେଇ ସଚେତନତା ସୃଷ୍ଟି କରିବା ଫଳରେ ହରିଜନ ଓ ଦଳିତ ଶ୍ରେଣୀର ଲୋକମାନଙ୍କ ଭିତରୁ ସାମାଜିକ ନ୍ୟୂନବୋଧକୁ ଦୂର କରାଯାଇ-ପାରିବ । ନିଜର କର୍ମଫଳରୁ ଯେ ସେମାନେ ପତିତ ଓ ଦଳିତ ହୋଇଛନ୍ତି ଯୁଗ ଯୁଗ ଧରି, ତାଙ୍କ ଭିତରେ ସୃଷ୍ଟି କରାଯାଇଥିବା ଏହି ମନସ୍ତାତ୍ତ୍ୱିକ ଧାରଣାକୁ ଦୂର କରିବା ମଧ୍ୟ ସମ୍ଭବ ହେବ । ବସ୍ତୁତଃ ସାମାଜିକ ଲକ୍ଷ୍ୟ ହାସଲ କ୍ଷେତ୍ରରେ ନିରୀଶ୍ୱରବାଦୀ ଜୀବନଦୃଷ୍ଟି ଅଧିକ ଅନୁକୂଳ ହେବା ମୁଁ ବିଶ୍ୱାସ କରୁଛି । ବୌଦ୍ଧିକ ମାନଦଣ୍ଡରୁ ମଧ୍ୟ ବିଚାର କଲେ ସମାଜରେ ନୈତିକ ସଂହତି ରକ୍ଷା କରିବାକୁ ମଣିଷ ହିଁ ଈଶ୍ୱର ଧାରଣା ସୃଷ୍ଟି କରିଛି । ଅବଶ୍ୟ ଈଶ୍ୱର ଧାରଣା ସତବା ଅସତ୍ୟ ତଥାପି ଏହାଦ୍ୱାରା ସମୟରେ ସମାଜରେ କିଛି ଉପକାର ହୋଇଛି । କିନ୍ତୁ ସବୁ ଅସତ୍ୟ ପରି ଏହା ମଧ୍ୟ ସମାଜର କ୍ଷତିସାଧନ କରିଛି । ପ୍ରକୃତିର ରହସ୍ୟକୁ ଜାଣିବା ପାଇଁ ମଣିଷ ମନର ଅନୁସନ୍ଧିତ୍ସା ଏହାଦ୍ୱାରା ନଷ୍ଟ ହୋଇଛି । ସବୁକଥା ଈଶ୍ୱରଙ୍କ ଦ୍ୱାରା ହୋଇଛି, ଏହି ବିଶ୍ୱାସ ପ୍ରାକୃତିକ ଘଟଣାବଳୀର ବୈଜ୍ଞାନିକଭିତ୍ତି ଜାଣିବାରେ ଅନ୍ତରାୟ ହୋଇଛି । ତା' ସହିତ ସମାଜର ଅନେକ ମନ୍ଦ ଓ ହାନିକର ବ୍ୟବସ୍ଥା କାଳକ୍ରମେ ଈଶ୍ୱର ପ୍ରୀତି ଓ ଆନୁଷଙ୍ଗିକ ମୂଲ୍ୟବୋଧରୁ ସୃଷ୍ଟି ହୋଇଛି । ସୁତରାଂ ମୁଁ ନିରୀଶ୍ୱରବାଦକୁ ଜୀବନର ଶ୍ରେୟ ଭାବରେ ଗ୍ରହଣ କରି ସାମାଜିକ ଲକ୍ଷ୍ୟ ହାସଲ ପାଇଁ ଏହି ପନ୍ଥାକୁ ପ୍ରୟୋଗ କରୁଛି ।

ବାପୁଜୀ ମୋର ବକ୍ତବ୍ୟ ଧୈର୍ଯ୍ୟର ସହ ଶୁଣି ଶେଷରେ ଦୃଢ଼ ଭାବରେ କହିଲେ, "ନିରୀଶ୍ୱରବାଦର ପ୍ରସାର ହେଉଥିବାରୁ ମୁଁ ଅନଶନ କରିବି ।"

ମୁଁ—ମୁଁ ସଙ୍ଗେ ସଙ୍ଗେ ଉତ୍ତର ଦେଲି ଯେ, ଆପଣଙ୍କର ଅନଶନ ବିରୁଦ୍ଧରେ ତା' ହେଲେ ମୁଁ ବି ଅନଶନ କରିବି ।

ଗାନ୍ଧୀଜୀ—ଆପଣ ଅନଶନ କରିବେ ? (ଗାନ୍ଧୀଜୀ ସ୍ଥିର ହୋଇ ମୋର ମୁହଁକୁ ଚାହିଁରହିଲେ)

ମୁଁ—ହଁ ବାପୁଜୀ, ହେଲେ ଆପଣ କାହିଁକି ଅନଶନ କରିବେ ? ନିରୀଶ୍ୱର-ବାଦର ବିଚାର ବିମର୍ଶରେ ଭୁଲ କେଉଁଠି ଦୟାକରି ମୋତେ କୁହନ୍ତୁ, ମୁଁ ନିଜର ଭାବଧାରାକୁ ପରିବର୍ତ୍ତନ କରିବି ।

ଗାନ୍ଧୀଜି—ମୁଁ ଦେଖୁଛି ଆପଣଙ୍କର ଏହି ବିଚାରଧାରାରେ ବିଶ୍ୱାସ ଯଥେଷ୍ଟ ଦୃଢ଼ (ଗାନ୍ଧୀଜି ଧୀର ସ୍ୱରରେ କହିଲେ) ।

ମୁଁ ମୁଣ୍ଡ ନୁଆଁଇ ସମ୍ମତି ଜଣାଇଲି ।

ଗାନ୍ଧୀଜି—ସମ୍ପ୍ରତି ଲୋକମାନଙ୍କର ଆଚରଣ ନିରୀଶ୍ୱରବାଦର ପ୍ରଚାର ପାଇଁ ସାହାଯ୍ୟ କରୁଛି (ଗାନ୍ଧୀଜି ଗମ୍ଭୀର ଭାବରେ କହିଲେ) ।

ଏହା ଭିତରେ ଚାଲିକରି ଆଲୋଚନା କରିବାରେ ୬୦ ମିନିଟ୍ ହୋଇ ଯାଇଥାଏ । ଗାନ୍ଧୀଜି ଚିନ୍ତିତ ଭାବରେ ମୋତେ ଚାହିଁଲେ ଓ ଆମେ କଥା ବନ୍ଦ କଲୁ ।

ଶ୍ରୀ ପ୍ୟାରେଲାଲ ଆମ ପଛେ ପଛେ ଚାଲି ଅନ୍ୟ ସହିତ କଥା ହେଉଥିଲେ । ସେ ଗାନ୍ଧୀଜିଙ୍କ ପାଖକୁ ଆସି କହିଲେ ଯେ ସେ ତାଙ୍କୁ (ଗାନ୍ଧୀଜି) ଏକାନ୍ତରେ କଥା ହେବାକୁ ଚାହାନ୍ତି । ସୁତରାଂ ଯେଉଁମାନେ ଆମ ସହିତ ଚାଲିକରି ଆସୁଥିଲେ ସେମାନେ ପଛକୁ ଘୁଞ୍ଚିଗଲେ । ମୁଁ ଗାନ୍ଧୀଜିଙ୍କୁ ପ୍ରଣାମ ଜଣାଇ ପଛକୁ ଅପସରି ଆସିଲା ସମୟରେ ସେ ମୋତେ ହସରୋଳ ଭିତରେ କହିଲେ, "ଆପଣ ରହିପାରନ୍ତି । ଆପଣ ଯେହେତୁ ହିନ୍ଦୀ ଜାଣନ୍ତି ନାହିଁ, ଆମର ଏକାନ୍ତ ଆଲୋଚନା ବାଧାପ୍ରାପ୍ତ ହେବନାହିଁ ।" ଗାନ୍ଧୀଜି ଏହା ମଜାକରି କହିବା ପଶ୍ଚାତରେ ବୋଧହୁଏ ମୁଁ ହିନ୍ଦୀ ଶିକ୍ଷା କରିବା ସେ ଚାହୁଁଥିଲେ ।

ମୁଁ ବିନମ୍ର ଭାବରେ ବାପୁଜୀଙ୍କ ପାଖରୁ ବିଦାୟ ନେଲି । ସେ ହସିକରି କହିଲେ ଯେ, ଖୁବ୍ ଶୀଘ୍ର ମୋ ସହିତ ଆଉଥରେ ଆଲୋଚନା କରିବା ପାଇଁ ସେ ସମୟ ଧାର୍ଯ୍ୟ କରିବେ । ମୁଁ ମୋର କୋଠରିକୁ ଚାଲିଆସିବା ପରେ ଏହି ଆଲୋଚନା ଉପରେ ଚିନ୍ତା କଲି । ମୋର ମନରେ ଦୁଇଟି କଥା ଉଠିଲା ।

ପ୍ରଥମତଃ ଗାନ୍ଧୀଜି ଅତ୍ୟନ୍ତ ବାସ୍ତବବାଦୀ । ଯେକୌଣସି ସିଦ୍ଧାନ୍ତ ବା ଆଦର୍ଶ-ଟିକୁ ତା'ର ବ୍ୟବହାରିକ ମୂଲ୍ୟ ଦୃଷ୍ଟିରୁ ସେ ବିବେଚନା କରିଥାନ୍ତି । କୌଣସି ବିଚାରଧାରା ନେଇ ମତପାର୍ଥକ୍ୟକୁ ଦୂର କରିବାକୁ ହେଲେ ଏହାର ବାସ୍ତବ ଉପଯୋଗିତା ଦେଖିବା ଆବଶ୍ୟକ ।

ଦ୍ୱିତୀୟରେ ନିରୀଶ୍ୱରବାଦୀ ବିଚାର ବିରୁଦ୍ଧରେ ସାଧାରଣଙ୍କ ଭଳି ଗାନ୍ଧୀଜିଙ୍କର ମଧ୍ୟ କୁସଂସ୍କାର ରହିଥିବା ମୁଁ ଅନୁଭବ କଲି । ଅବଶ୍ୟ ନିଜର ଭାବଧାରାକୁ ସେ ଅତ୍ୟନ୍ତ ସୌଜନ୍ୟତାର ସହ ବ୍ୟକ୍ତ କରିଥିଲେ । ସେ ପ୍ରସଙ୍ଗକ୍ରମେ କହିଥିଲେ ଯେ ଲୋକମାନଙ୍କର ଆଚରଣ ହିଁ ନିରୀଶ୍ୱରବାଦର ପ୍ରଚାର ପାଇଁ ସାହାଯ୍ୟ କରୁଛି । ପରିଣାମତଃ ସେ ଭାବୁଥିଲେ ଈଶ୍ୱରବିଶ୍ୱାସୀ ଲୋକମାନଙ୍କର ମନ୍ଦ ଆଚରଣ ଯୋଗୁଁ ଏହି ଭାବଧାରାର ବିକାଶ ହେଉଛି; ସୁତରାଂ ଈଶ୍ୱରବିଶ୍ୱାସୀ ବ୍ୟକ୍ତିବିଶେଷ ଯଦିଓ

ଉଚ୍ଚ ନୈତିକମାନର ଅଧିକାରୀ ହେବେ ତେବେ ନିରୀଶ୍ୱରବାଦ ଅର୍ଥହୀନ ହୋଇ-ପଡ଼ିବ । କିନ୍ତୁ ମୁଁ ଅନ୍ୟପ୍ରକାର କଥା ଭାବୁଥିଲି । ମୋ ବିଚାରରେ ଆସ୍ତିକ ଦୃଷ୍ଟିଭଙ୍ଗୀ ସ୍ୱରୂପତଃ ଦୋଷଯୁକ୍ତ ହୋଇଥିବାରୁ ଏହା ସାମାଜିକ ସମ୍ବନ୍ଧକୁ କଳୁଷିତ କରିଥାଏ । ଆସ୍ତିକ ବ୍ୟକ୍ତିବିଶେଷଙ୍କର ମନ୍ଦ ଆଚରଣ ସେମାନଙ୍କର ମାନସିକ ଚପଳତା ବା ପରିସ୍ଥିତିର ତାଡ଼ନା ଯୋଗୁଁ ନୁହେଁ, ବରଂ ଗୋଟିଏ ପ୍ରକାର ଜୀବନଦୃଷ୍ଟିର ଏହା ହେଉଛି ସମ୍ଭାବ୍ୟ ପରିଣାମ । ସୁତରାଂ ଆସ୍ତିକ ବ୍ୟକ୍ତିବିଶେଷଙ୍କର ଅନୈତିକ ଆଚରଣ ଯୋଗୁଁ ନୁହେଁ ବରଂ ଏକ ଉନ୍ନତ ଜୀବନଦୃଷ୍ଟିର ବିକାଶ ପାଇଁ ନିରୀଶ୍ୱରବାଦ ଆବଶ୍ୟକ । ଏହି ଜୀବନଦୃଷ୍ଟିକୁ ଗ୍ରହଣ ନକଲେ ଲୋକଚରିତ୍ର ଉନ୍ନତ ହେବା ସମ୍ଭବ ନୁହେଁ । ନାସ୍ତିକତା ଓ ଆସ୍ତିକତା ପ୍ରତ୍ୟେକଟି ନିଜ ମାନଦଣ୍ଡରେ ସାକାରାତ୍ମକ ଯଦିବା ଉଭୟ ଦୁଇଟି ପୃଥକ୍ ଜୀବନଦର୍ଶନ ଉପରେ ଆଧାରିତ ।

ପରବର୍ତ୍ତୀ ଆଲୋଚନାରେ ବାପୁଙ୍କୁ ଏହା ସୂଚନା ଦେବାକୁ ମୁଁ ମନସ୍ଥ କଲି ।

**ପଞ୍ଚମ ପରିଚ୍ଛେଦ :**

# ମୋର ଦ୍ୱିତୀୟ ଆଲୋଚନା

ଦିନଦିନ ପରେ ଶ୍ରୀ ପ୍ୟାରେଲାଲ ମୋତେ ଖବର ଦେଲେ ଯେ ମୁଁ ବାପୁଜୀଙ୍କୁ ସେହିଦିନ ସନ୍ଧ୍ୟା ୪ଟାରେ ଅଧଘଣ୍ଟାଏ ପାଇଁ ସାକ୍ଷାତ କରିବାକୁ ସେ ଚାହିଁଛନ୍ତି ।

ମୁଁ ବାପୁଜୀଙ୍କର ସମୟାନୁବର୍ତ୍ତିତା ବିଷୟରେ ଜାଣେ । ଏଣୁ ମୋ ଘଣ୍ଟାରେ ଠିକ୍ ଚାରିଟାରେ ମୁଁ ତାଙ୍କର ପ୍ରକୋଷ୍ଠ ଭିତରକୁ ପ୍ରବେଶ କଲି । ସେ ସେତେବେଳକୁ ଜଣେ ଆଗନ୍ତୁକଙ୍କ ସହ କଥାବାର୍ତ୍ତା ଶେଷ କରିଥିଲେ । ମୁଁ ପ୍ରବେଶ କରିବା ମାତ୍ରେ ମୋତେ ଚାହିଁ ସେ ତାଙ୍କର ଘଣ୍ଟାକୁ ଦେଖି ହସିକରି କହିଲେ, "ଆପଣ ଅଧ ମିନିଟିଏ ଆଗରୁ ଆସିଛନ୍ତି" ।

ମୁଁ ଏଥିପାଇଁ ଦୁଃଖପ୍ରକାଶ କରି ମୋ ଘଣ୍ଟାରେ ଚାରିଟା ବାଜିଥିବା ଦର୍ଶାଇ ପଛକୁ ଫେରିବାକୁ ଉଦ୍ୟତ ହେଲି ।

"ନା ନା, ଠିକ୍ ଅଛି ଆସନ୍ତୁ" ବୋଲି ଗାନ୍ଧୀଜୀ କହିଲେ । "ଘଣ୍ଟାମାନଙ୍କ ଭିତରେ ପାର୍ଥକ୍ୟ ରହିବ, କିନ୍ତୁ ଆମ ଭିତରେ ନୁହେଁ" ବୋଲି ହସିକରି ମନ୍ତବ୍ୟ ଦେଲେ ।

ଏହାପରେ ମୋତେ ବସିବାକୁ ନିର୍ଦ୍ଦେଶ କଲେ । ମୁଁ କିଛି କହିବା ପୂର୍ବରୁ ସେ ମୋତେ ଏକାଥରକେ ଅନେକଗୁଡ଼ିଏ ପ୍ରଶ୍ନ ପଚାରିଲେ । ପ୍ରତ୍ୟେକ ପ୍ରଶ୍ନର ଉତ୍ତର ମାତ୍ର କେତୋଟି ଶବ୍ଦରେ କହିବା ଆବଶ୍ୟକ ପଡ଼ୁଥିଲା । ସେହି ଅଧଘଣ୍ଟାଏ ଭିତରେ ମୋର ଯେପରି ମନେହୁଏ ମୋତେ ସେ ପ୍ରାୟ ଶହେଟି ପ୍ରଶ୍ନ ପଚାରିଥିବେ । ପ୍ରଶ୍ନଗୁଡ଼ିକ ମୋର ଦୈନନ୍ଦିନ କାର୍ଯ୍ୟସୂଚୀର ବିସ୍ତୃତ ବିବରଣୀ, ମୋର ଅଭ୍ୟାସ, ମୋର କାର୍ଯ୍ୟକ୍ରମ ପ୍ରତି ଲୋକମାନଙ୍କର ପ୍ରତିକ୍ରିୟା ଇତ୍ୟାଦି ବିଷୟରେ ଉଦ୍ଦିଷ୍ଟ ଥିଲା । ମୋର ଆବଶ୍ୟକତା, ପ୍ରତିବନ୍ଧକ ଓ ସେସବୁର ସମ୍ମୁଖୀନ ହେବାକୁ କ'ଣ ସବୁ ଦରକାର ତାହା ପଚାରିଲେ । ଏହା ସହିତ ମୋ ପାରିବାରିକ ଜୀବନ, ବାପା, ମା', ଭାଇ, ଭଉଣୀ ଓ ସମ୍ପର୍କୀୟମାନଙ୍କ ସହିତ ମୋର ସମ୍ବନ୍ଧ ବିଷୟରେ ବି ସବୁ ଜାଣିବାକୁ ଚାହିଁଲେ । ଏହା ସହିତ ମୋର ସ୍ତ୍ରୀ, ପିଲାମାନେ ଓ

ସେମାନଙ୍କର ଶିକ୍ଷା ଓ ସ୍ୱାସ୍ଥ୍ୟ ସମ୍ପର୍କରେ ମଧ୍ୟ ଅନେକ ପ୍ରଶ୍ନ ପଚାରିଲେ । କଥା ମଝିରେ "ବୁଝିଲୁ, ମୋତେ ଏହା ବିଷୟରେ କୁହନ୍ତୁ..." ବୋଲି ସେ କହୁଥିଲେ ।

ତାଙ୍କ ସହ ଅଧଘଣ୍ଟାଏ ଆଲୋଚନାରୁ ମୁଁ ହୃଦ୍‌ବୋଧ କଲି ଯେ ବାପୁଜୀ କର୍ମୀମାନଙ୍କର ସମାଜସେବା କ୍ଷେତ୍ରରେ ବାସ୍ତବ ପ୍ରତିବନ୍ଧକ ଓ ଅସୁବିଧା ବିଷୟରେ ଜାଣିବାକୁ ଯେପରି ଆଗ୍ରହୀ ଥିଲେ, ସେମାନଙ୍କର ବ୍ୟକ୍ତିଗତ ଜୀବନ ସମ୍ପର୍କରେ ମଧ୍ୟ ଜାଣିବାକୁ ସେପରି ଆନ୍ତରିକତା ଦେଖାଉଥିଲେ ।

ଶେଷଆଡ଼କୁ ମୁଁ ଆଶ୍ରମରେ କେତେଦିନ ରହିପାରିବି କି ନାହିଁ ସେ ଜାଣିବାକୁ ଚାହିଁଥିଲେ । ସେ ସମୟରେ ଏକସପ୍ତାହ ଛଡ଼ା ଅଧିକ ଦିନ ସେଠାରେ ରହିବାକୁ ମୁଁ ପ୍ରସ୍ତୁତ ହୋଇଯାଇ ନଥିଲି । ସୁତରାଂ ନିକଟ ଭବିଷ୍ୟତରେ ପୁଣି ସେଠାକୁ ଆସିବାକୁ ଆଗ୍ରହୀ ଥିବା ପ୍ରକାଶ କରି ମୁଁ ତାଙ୍କ ପାଖରୁ ବିଦାୟ ନେଲି ।

ମୋ ସମ୍ପର୍କରେ ଓ ମୋର କାର୍ଯ୍ୟସୂଚୀ ସମ୍ବନ୍ଧରେ ବାପୁଜୀ ଯେଉଁ ଆନ୍ତରିକତା ପ୍ରଦର୍ଶନ କଲେ ତା'ର ଗଭୀର ସ୍ମୃତି ହୃଦୟରେ ବହନ କରି ମୁଁ ପରଦିନ ଆଶ୍ରମ ଛାଡ଼ିଲି । ବିଶେଷକରି ମୋ ଜୀବନର ଆଦର୍ଶ ନିରୀଶ୍ୱରବାଦ ଉପରେ ମୁଁ ଗାନ୍ଧୀଜୀଙ୍କର ଆଗ୍ରହ ସୃଷ୍ଟି କରିପାରିଥିବାରୁ ଆନନ୍ଦ ଅନୁଭବ କଲି ।

ଆଶ୍ରମରେ ଏକ ସପ୍ତାହ ରହଣିକାଳ ଭିତରେ ଗାନ୍ଧୀଜୀଙ୍କର ତତ୍ତ୍ୱାବଧାନରେ ନିକଟସ୍ଥ ଗ୍ରାମମାନଙ୍କରେ ପରିଚାଳିତ ହେଉଥିବା ରଚନାତ୍ମକ କାର୍ଯ୍ୟକ୍ରମଗୁଡ଼ିକୁ ମୁଁ ଅନେକବାର ଯାଇ ପରିଦର୍ଶନ କରିଛି । ଆଶ୍ରମର ଓ ଆଶ୍ରମଦ୍ୱାରା ପରିଚାଳିତ ତାଲିମ ସଙ୍ଘ, ଚରଖା ସଙ୍ଘ, ଗୋସେବା ସଙ୍ଘ, ଗ୍ରାମୋଦ୍ୟୋଗ ସଙ୍ଘ ଇତ୍ୟାଦି ଅନୁଷ୍ଠାନମାନଙ୍କର କାର୍ଯ୍ୟକ୍ରମ ସମ୍ପର୍କରେ ମୁଁ ମଧ୍ୟ ଅବଗତ ହେଲି ।

ଆଶ୍ରମ ଜୀବନଚର୍ଯ୍ୟା ଭିତରେ ପ୍ରତ୍ୟୁଷ ଓ ପ୍ରଦୋଷରେ ହେଉଥିବା ପ୍ରାର୍ଥନା ସଭା ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମ ଥିଲା । ମୁଁ କିନ୍ତୁ ସେଥିରେ ଯୋଗଦେଉ ନଥିଲି ଓ ସେ ପାଇଁ କାହାର କିଛି ଆପତ୍ତି ନଥିଲା । ବନ୍ଧୁ, ରାମସ୍ୱାମୀ ମଧ୍ୟ ଏଥିରେ ଯୋଗଦେଉ ନଥିଲେ । ଆଶ୍ରମର ଜନୈକ ପୁରାତନ ଅନ୍ତେବାସୀ ଶ୍ରୀ ଭଂସାଲି ନିରୀଶ୍ୱରବାଦୀ ନଥିଲେ ମଧ୍ୟ ପ୍ରାର୍ଥନା ସଭାରେ ଯୋଗଦାନ କରୁନଥିଲେ ।

ନିରୀଶ୍ୱରବାଦ ଜୀବନଦର୍ଶନ ନେଇ ଏହା ଗାନ୍ଧୀଜୀଙ୍କ ସହ ମୋର ପ୍ରଥମ ବ୍ୟକ୍ତିଗତ ସମ୍ପର୍କ ଥିଲା । ଏହି ସମ୍ପର୍କ ଭବିଷ୍ୟତରେ ଆମ ଭିତରେ ଅଧିକ ଭାବ ବିନିମୟ ପାଇଁ ସୁଯୋଗ ଆଣିଥିଲା ।

ଷଷ୍ଠ ପରିଚ୍ଛେଦ :

# ମୁଁ ପୁନଶ୍ଚ ସେବାଗ୍ରାମ ଗଲି

ଜାନୁଆରି ୧୯୪୫ରେ ତାଲିମ ସଙ୍ଘ ଅନୁକୂଳରେ ମୌଳିକ ଶିକ୍ଷା ସଂକ୍ରାନ୍ତରେ ଏକ ସମ୍ମିଳନୀ ସେବାଗ୍ରାମରେ ଆହୂତ କରାଗଲା । ଏହି ସମ୍ମିଳନୀରେ ଯୋଗଦାନ କରିବାକୁ ମୋତେ ନିମନ୍ତ୍ରଣ ମିଳିଲା । ମୁଁ ଏହି ସମ୍ମିଳନୀରେ ଯୋଗଦାନ ଦେବା ଅବସରରେ ଗାନ୍ଧୀଜୀଙ୍କ ସହ ସେଠାରେ ଅଧିକ ଦିନ ରହିବା ପାଇଁ ତାଙ୍କର ଅନୁମତି ନେଇ ପତ୍ର ଲେଖିଲି । ସେ ଏଥିପାଇଁ ସ୍ୱୀକୃତି ଦେଲେ ଓ ମୁଁ ଜାନୁଆରି ୧୯୪୫ରେ ପୁଣି ଆଶ୍ରମକୁ ଗଲି ।

ଏଥର ମୁଁ ଅତିଥି ନହୋଇ ଆଶ୍ରମର ଜଣେ ଅନ୍ତେବାସୀ ଭାବରେ ସେଠାରେ ଯୋଗଦେଲି । ସେଠାରେ କେତେକ କାର୍ଯ୍ୟ ମୋ ଉପରେ ନ୍ୟସ୍ତ କରାଗଲା । ପାଇଖାନା ସଫା, ମାଟି କାମ, ପରିବା କଟା, ଅଟା ପେଷା ଇତ୍ୟାଦି କାର୍ଯ୍ୟ ମୋତେ ଦିଆଗଲା । ଏହା ସହିତ ପୂର୍ବରୁ ମୁଁ ଜଣେ ଅଧ୍ୟାପକ ଥିବାରୁ ଆଶ୍ରମ ଚିକିତ୍ସାଳୟର ସେବିକାମାନଙ୍କୁ ବିଜ୍ଞାନ ପଢ଼ାଇବା ପାଇଁ ମୋତେ ମଧ୍ୟ ଦାୟିତ୍ୱ ଦିଆଗଲା ।

ଆଶ୍ରମର ସମସ୍ତ କାର୍ଯ୍ୟକ୍ରମ ସହିତ ମୁଁ ନିଜକୁ ସଂଶ୍ଳିଷ୍ଟ କଲି । କେବଳ ମୁଁ ଆଶ୍ରମର ପ୍ରାର୍ଥନା ସଭାରେ ଯୋଗ ଦେଉନଥାଏ । ଏହି ଅବସରରେ ଆଶ୍ରମର ଜୀବନ ପ୍ରବାହ ଭିତରେ ମୁଁ ଗାନ୍ଧୀଜୀଙ୍କୁ ନିବିଷ୍ଟ ଭାବରେ ବୁଝିବାକୁ ଚେଷ୍ଟା କରୁଥାଏ । ଆଶ୍ରମର ଜୀବନରୁ ମୁଁ ଅନେକ କଥା ଜାଣିବାର ଅବକାଶ ପାଉଥିଲେ ବି ତିନୋଟି ଘଟଣା ମୋତେ ବହୁତ ପ୍ରଭାବିତ କରିଥିଲା ।

ଥରେ ଜଣେ ଡାକ୍ତର ତାଙ୍କର ଏକ ନୂତନ ଚିକିତ୍ସା ପ୍ରଣାଳୀ ସମ୍ପର୍କରେ ବାପୁଜୀଙ୍କୁ ଅବଗତ କରାଇ ତାଙ୍କର ଶୁଭେଚ୍ଛା ପାଇଁ ଆସି ପହଞ୍ଚିଲେ । ସେଠାରେ ତିନିଦିନ ଅପେକ୍ଷା କରିବାପରେ ବାପୁଜୀଙ୍କ ସହ ପାଞ୍ଚମିନିଟ୍ ସାକ୍ଷାତ୍କାର ସୁଯୋଗ ପାଇଲେ । ତାଙ୍କର ନୂତନ ଚିକିତ୍ସା ପ୍ରଣାଳୀ ଅନେକ ତତ୍ତ୍ୱ ଉପରେ ପର୍ଯ୍ୟବସିତ ଥିଲା । କିନ୍ତୁ ଡାକ୍ତର ଜଣଙ୍କ ପାଞ୍ଚମିନିଟ୍ ନସରୁଣୁ ଚାଲିଆସିଲେ । ଅନୁସନ୍ଧାନ କରିବା ପରେ ଡାକ୍ତର ଜଣଙ୍କ ମୋତେ କହିଲେ ଯେ ବାପୁଜୀ ତାଙ୍କ ଚିକିତ୍ସା-ପଦ୍ଧତିର ଟିକିନିଖି ତତ୍ତ୍ୱ ବୁଝିବାକୁ ତାଙ୍କର ସମୟାଭାବ ଦର୍ଶାଇ ସେତେବେଳେ

ଆଶ୍ରମରେ ବାରମ୍ବାର ଅସୁସ୍ଥ ହୋଇ ରହୁଥିବା ଜଣେ ବ୍ୟକ୍ତିଙ୍କର ଚିକିତ୍ସା ପାଇଁ ତାଙ୍କର ଭେଷଜ ତତ୍ତ୍ୱ ପ୍ରୟୋଗ କରିବାକୁ କହୁଥିଲେ ।

ଏହି ଘଟଣାରୁ ଗାନ୍ଧୀଜୀ କିପରି କୌଣସି ତତ୍ତ୍ୱର ମହତ୍ତ୍ୱ ତା'ର ବ୍ୟବହାରିକ ପ୍ରୟୋଗରୁ ବୁଝୁଥିଲେ ତାହା ମୁଁ ଅନୁଭବ କଲି ।

ଆଉ ଏକ ଘଟଣାରେ ଜଣେ ବ୍ୟକ୍ତି ଗାନ୍ଧୀଜୀଙ୍କୁ ସାକ୍ଷାତ୍ କରିବାକୁ ଦଶମିନିଟ୍ ସମୟ ପାଇଥାନ୍ତି । ଏହି ସାକ୍ଷାତ୍ ସମୟରେ ଗାନ୍ଧୀଜୀ ମୌନତା ଅବଲମ୍ବନ କରୁଥିଲେ ଓ ତାଙ୍କର ବକ୍ତବ୍ୟକୁ ଏକ ପଟାରେ ଲେଖି ଦେଉଥିଲେ । ଏହି ସାକ୍ଷାତ୍ ସମୟରେ ମୁଁ ଉପସ୍ଥିତ ଥିଲି ।

ଆଗନ୍ତୁକ ତାଙ୍କର ସମସ୍ୟା ବିଷୟରେ ସାତମିନିଟ୍ ଧରି ଅନର୍ଗଳ ଗାନ୍ଧୀଜୀଙ୍କୁ କହିଗଲେ ଓ ଶେଷରେ ତାଙ୍କର ପରାମର୍ଶ ଲୋଡ଼ିଲେ । ବାପୁ ତାଙ୍କର ଉତ୍ତର ଏହିପରି ଲେଖିଲେ, "ଯେଉଁ ସମସ୍ୟା ସମ୍ପର୍କରେ ଆପଣ ଏତେ ସମୟ ଧରି କହିଲେ ସେଥିରୁ ଅନୁମିତ ହେଉଛି ଯେ ଆପଣ ସମସ୍ୟାଟିକୁ ଠିକ୍ ଭାବରେ ବୁଝି ନାହାନ୍ତି ।"

ଭଦ୍ରବ୍ୟକ୍ତି ଘାବରେଇ ଗଲେ । ତା'ପରେ ବାପୁଜୀ ପୁଣି ଲେଖିଦେଲେ, "ଜଣେ କର୍ମୀ ବାସ୍ତବ ସମସ୍ୟାଟି ଉପରେ ଦୃଷ୍ଟି ରଖିଥାନ୍ତି ।"

ଭଦ୍ରବ୍ୟକ୍ତି ଜଣଙ୍କ ବିନମ୍ର ହୋଇ ଧୀର ଭାବରେ କହିଲେ, "ମୋର ଅସୁବିଧା ହେଉଛି, ବାପୁଜୀ ।"

ବାପୁଜୀ ଉତ୍ତରରେ ଲେଖିଲେ, "ଯାଇ କାମ କରନ୍ତୁ, କାର୍ଯ୍ୟ ହିଁ ଆପଣଙ୍କ ସମସ୍ୟାକୁ ସମାଧାନ କରିଦେବ ।"

ଏହା ଭିତରେ ଦଶମିନିଟ୍ ହୋଇଯାଇଥିଲା ଓ ବାପୁଜୀ ଅନ୍ୟ କାର୍ଯ୍ୟ ପ୍ରତି ଦୃଷ୍ଟିନିକ୍ଷେପ କଲେ ।

ଗାନ୍ଧୀଜୀ କାହାକୁ ପରାମର୍ଶ ଦେବା ସମୟରେ ଏପରି ଦୃଢ଼ ରହୁଥିଲେ ।

ଥରେ ମୁଁ ପଢ଼ାଉଥିବା ସେବିକାମାନଙ୍କ ଶ୍ରେଣୀରେ ହୃତ୍‌ସ୍ପନ୍ଦନକୁ ବୁଝାଇବାକୁ ଗୋଟିଏ ବେଙ୍ଗକୁ କାଟି ତା'ର ଏହି ପ୍ରକ୍ରିୟାକୁ ଦେଖାଇବା ଆବଶ୍ୟକ ଥିଲା । ସେବିକାମାନେ ବେଙ୍ଗକୁ କାଟି ଦେଖାଇବା ପାଇଁ ପ୍ରତିବାଦ କଲେ ଯେହେତୁ ଏହା ଅହିଂସ ନିୟମର ପରିପନ୍ଥୀ ଥିଲା । ଶେଷରେ ବାପୁଜୀଙ୍କୁ ତାଙ୍କର ପରାମର୍ଶ ପାଇଁ ଘଟଣାଟି ଜଣାଇ ଦିଆଗଲା, ଯେଉଁଥିରେ ସେ ଉତ୍ତର

ଦେଲେ, ଯଦିଓ ହୃଦ୍‌ସ୍ପନ୍ଦନକୁ ବୁଝିବାପାଇଁ ବେଙ୍ଗ କାଟିବା ଅପରିହାର୍ଯ୍ୟ, ତେବେ ବେଙ୍ଗ କାଟି ପରୀକ୍ଷା କରିପାର ।

ବସ୍ତୁତଃ ଅହିଂସା ବିଷୟରେ ସାଧାରଣରେ ରହିଥିବା ଧାରଣାଠାରୁ ବାପୁଜୀଙ୍କର ବିଚାର ଯେ ପୃଥକ୍ ଏହା ଏହି ଘଟଣାରୁ ଅନୁମିତ ହୁଏ ।

ଏହିପରି ଆଶ୍ରମରେ ରହି ମୁଁ ଅନେକ ଅନୁଭୂତି ଲାଭ କରୁଥାଏ । ଅବଶ୍ୟ ମୋର ହିନ୍ଦୀ ଭାଷାରେ ଦକ୍ଷତା ନଥିବା ଯୋଗୁଁ ମୁଁ କେତେକ କ୍ଷେତ୍ରରେ ଅସୁବିଧାର ସମ୍ମୁଖୀନ ହେଉଥିଲି । କିନ୍ତୁ ଆଶ୍ରମବାସୀଗଣ ଏ ଦିଗରେ ମୋ ପ୍ରତି ଧ୍ୟାନ ଦେବାରୁ ମୋର ଏହି ଅସୁବିଧା ଦୂର ହୋଇପାରିଲା । ମୋଟାମୋଟି ଭାବରେ ମୁଁ ଆଶ୍ରମରେ ସୁଖରେ ରହିବାକୁ ଲାଗିଲି ।

କିନ୍ତୁ ଗୋଟିଏ କଥା ମୋତେ ସମୟରେ ଆଶ୍ଚର୍ଯ୍ୟ ମନେହେଉଥାଏ ଯେ ବାପୁଜୀ ନିରୀଶ୍ୱରବାଦ ସମ୍ପର୍କରେ ଆଲୋଚନା କରିବାକୁ ମୋତେ କେବେ ଡାକୁନାହାନ୍ତି । ମୋ ସହିତ ବିଭିନ୍ନ ପ୍ରସଙ୍ଗରେ ଏ ସବାନ୍ତରେ କୌଣସି ପ୍ରଶ୍ନକୁ ସେ ସମୟରେ ଏଡ଼ାଇ ଦେଉଥାନ୍ତି । ଆଶ୍ଚର୍ଯ୍ୟର କଥା ମୋର ସ୍ତ୍ରୀ, ପିଲାମାନଙ୍କୁ ଓ ଅନ୍ୟ ସହକର୍ମୀମାନଙ୍କୁ ଆଶ୍ରମକୁ ଡାକିବାକୁ ସେ ମୋତେ କହିଲେ । ତାଙ୍କ ସହି ଆଶ୍ରମରେ ଏକାଠି ରହିବା ଏକ ସୁଯୋଗ ଥିଲା । ତାଙ୍କର ଏହି ନିର୍ଦ୍ଦେଶ ପଶ୍ଚାତରେ କିଛି ତାତ୍ପର୍ଯ୍ୟ ଥିବା ପରେ ଜଣାଗଲା ।

ମୁଁ କାର୍ଯ୍ୟ କରୁଥିବା ଗ୍ରାମକେନ୍ଦ୍ରକୁ ବାପୁଜୀଙ୍କର ଇଚ୍ଛା ଜଣାଇଦେଲି । ମୋର ସ୍ତ୍ରୀ, ପିଲାମାନେ ଓ ସହକର୍ମୀଗଣ କେତୋଟି ଦଳରେ ଆସି ପହଞ୍ଚିଲେ । ଆଶ୍ରମରେ ସେମାନେ ଯେଉଁ କେତେକ ଦିନ ରହିଲେ ସେମାନେ ପ୍ରାର୍ଥନା ଛଡ଼ା ଆଶ୍ରମର ସମସ୍ତ କର୍ମସୂଚୀ ସହିତ ନିଜକୁ ସାମିଲ କରିନେଲେ ।

ଗାନ୍ଧୀଜୀଙ୍କର କଥା ହେବା ସମୟ ଖୁବ୍ ସୀମିତ ଥିଲେ ବି ମୋର ପ୍ରତ୍ୟେକ ଦଳ ପହଞ୍ଚିବା ପରେ ସେ ସେମାନଙ୍କ ସହିତ ସକାଳେ ଦଶମିନିଟ୍ ଲେଖାଏଁ କଥା ହେଉଥିଲେ । ଯଦିବା ମୋର ସହଯୋଗୀଗଣ ହିନ୍ଦୀ ବା ଇଂରାଜୀରେ ଧୂରୀଣ ନଥିଲେ ତଥାପି ସେମାନଙ୍କର ଦରଟଣ୍ଡିଆ ବକ୍ତବ୍ୟକୁ ଗାନ୍ଧୀଜୀ ଉପଭୋଗ କରୁଥିଲେ ଓ ସେମାନଙ୍କଠାରୁ ଗ୍ରାମରେ କରୁଥିବା କାର୍ଯ୍ୟକ୍ରମ, ଲୋକଙ୍କର ମନୋଭାବ ଓ ଏଠିକାର ଆଶ୍ରମ ଜୀବନ ଉପରେ ସେମାନଙ୍କର ପ୍ରତିକ୍ରିୟା ପଚାରି ବୁଝୁଥିଲେ ।

ଏହିପରି ମୁଁ ସେଠାରେ ତିନିମାସ ଅତିବାହିତ କରିବା ପରେ ବାପୁଜୀ ମୋତେ ଆଲୋଚନା ପାଇଁ ଶେଷରେ ନିମନ୍ତ୍ରଣ କଲେ ।

ସପ୍ତମ ପରିଚ୍ଛେଦ :

# ଏକ ଦୀର୍ଘ ଆଲୋଚନା

୩୦ ମାର୍ଚ୍ଚ ୧୯୪୫ ସକାଳ ୪ଟାରେ ଆଶ୍ରମର ଜଣେ ଅନ୍ତେଃବାସୀ ଶ୍ରୀ ପ୍ରଭାକର ମୋତେ ବିଛଣାରୁ ଉଠାଇ କହିଲେ ଯେ ସକାଳର ପ୍ରାର୍ଥନା ପରେ ପାଞ୍ଚଟାରେ ମୋ ସହିତ ବାପୁଜୀ ଆଲୋଚନା କରିବାକୁ ଚାହୁଁଛନ୍ତି । ଏ ସମ୍ବାଦ ପାଇ ମୋର ପ୍ରତୀକ୍ଷାର ମୁହୂର୍ତ୍ତ ଆସିଥିବା ଭାବି ମୁଁ ଖୁବ୍ ଆନନ୍ଦିତ ହେଲି । ଆଶା ଓ ଉତ୍କଣ୍ଠାର ଭିତରେ ମୁଁ ନିଜକୁ ପ୍ରସ୍ତୁତ କରିନେଲି । ଜଣେ ବିଶିଷ୍ଟ ଆସ୍ତିକଙ୍କ ସହ ମୁଁ ଏପ୍ରକାର ଏକ ବିଷୟ ଉପରେ ଆଲୋଚନା କରିବାକୁ ଯାଉଛି ଯେଉଁ ବିଷୟରେ ତାଙ୍କର ଖୁବ୍ ମନ୍ଦ ଏପରିକି ନୀଚଧାରଣା ରହିଛି । ସେ ମୋତେ କ'ଣ ପଚାରିବେ ? ମୁଁ କିପରି ନିରୀଶ୍ୱରବାଦୀ ଜୀବନଦର୍ଶନ ଉପରେ ତାଙ୍କୁ ଅବଗତ କରାଇବି ? ଏହା ବିଷୟରେ ଥିବା ତାଙ୍କର ମନ୍ଦ ଧାରଣାକୁ ମୁଁ କିପରି ଦୂର କରିପାରିବି ? ଏସବୁ ପ୍ରଶ୍ନ ବିଷୟରେ ଭାବି ମୁଁ ବଡ଼ ଉଦ୍‌ବେଳିତ ହେଉଥାଏ । ମୋର ଦୃଢ଼ ବିଶ୍ୱାସ ଯେ ନିରୀଶ୍ୱରବାଦ ଏକ ଯଥାର୍ଥ ଜୀବନଦର୍ଶନ । ଏହା ପ୍ରସଙ୍ଗରେ ବାପୁଜୀଙ୍କ ସହ ଆଲୋଚନା କରିବାପାଇଁ ମୋର ପ୍ରତୀକ୍ଷା ଆଜି ପୂର୍ତ୍ତି ହେବାକୁ ଯାଉଥିବାରୁ ଯେତିକି ଆନନ୍ଦ ଅନୁଭବ କରୁଥାଏ ଉପରୋକ୍ତ ପ୍ରଶ୍ନଗୁଡ଼ିକ ଉପରେ ଭାବି ମୁଁ ସେତିକି ସଙ୍କୁଚିତ ହେଉଥାଏ । ଏହିପରି ଏକ ମିଶ୍ର ଭାବାବେଗ ଭିତରେ ମୁଁ ନିର୍ଦ୍ଧାରିତ ସମୟରେ ବାପୁଜୀଙ୍କର କୁଟୀର ପାଖରେ ପହଞ୍ଚିଲି ।

ବାପୁଜୀ ତାଙ୍କ କୁଟୀରର ବାହାରେ ମୁକ୍ତ ଆକାଶ ତଳେ ଗୋଟିଏ ଛୋଟିଆ ଖଟ ଉପରେ ଶୋଇଥିଲେ । ସେ ମୋତେ ଖଟ ଉପରେ ତାଙ୍କ ପାଖରେ ବସିବାକୁ ଡାକିଲେ । ସେହି ଶାନ୍ତ ପରିବେଶରେ ତାଙ୍କୁ ଲାଗିକରି ମୁଁ ବସିଲି । ସେଠାରେ ମୋତେ ଏକ ସୁନ୍ଦର ଅନୁଭୂତି ମିଳୁଥାଏ, ଯେତେ ଯେପରି ମୁଁ ମୋର ବାପାଙ୍କ ପାଖରେ ବସି କୌଣସି ଏକ ପାରିବାରିକ ବ୍ୟାପାର ଉପରେ ତାଙ୍କର ପରାମର୍ଶ ନେଉଛି ।

ବାପୁଜୀ ଏକ ଶାନ୍ତ ଓ ମମତାଭରା କଣ୍ଠରେ ମୋତେ ପଚାରିଲେ, "ଗୋରା, ଆପଣ କାହିଁକି ନିରୀଶ୍ୱରବାଦ ଚାହୁଁଛନ୍ତି ?"

ତାଙ୍କର ପ୍ରଶ୍ନ ଓ ଦରଦୀ କଣ୍ଠର ଭାଷାରେ ମୁଁ ଅଭିଭୂତ ହୋଇପଡ଼ିଲି । ନିରୀଶ୍ୱରବାଦ କ'ଣ ବା ଏହାର ଆବଶ୍ୟକତା କ'ଣ ପରି ଏହି ପ୍ରଶ୍ନଟି ନଥିଲା । ଏହି ସବୁ ପ୍ରଶ୍ନର ଉତ୍ତର କେବଳ ବୌଦ୍ଧିକ ଆଲୋଚନା ଭିତରେ ସୀମିତ । କିନ୍ତୁ ବାପୁଜୀଙ୍କର ପ୍ରଶ୍ନ—ନିରୀଶ୍ୱରବାଦ କାହିଁକି ଚାହୁଁଛନ୍ତି ?—ବାସ୍ତବ ଜୀବନ କ୍ଷେତ୍ରରେ ଏହାର ଆବଶ୍ୟକତା ନେଇ ଉଦ୍ଦିଷ୍ଟ ବୋଲି ମୁଁ ଅନୁଭବ କଲି । ମୁଁ ପୂର୍ବରୁ ବହୁ ବ୍ୟକ୍ତିଙ୍କ ସହିତ ନିରୀଶ୍ୱରବାଦ କ'ଣ ନେଇ ଅନେକ ଆଲୋଚନା ଓ ବିତର୍କରେ ଯୋଗ ଦେଇଛି । କିନ୍ତୁ କେହି ମୋତେ ଏ ପ୍ରକାର ଏକ ବାସ୍ତବଧର୍ମୀ ପ୍ରଶ୍ନ ପଚାରି ନଥିଲେ । ବାପୁଜୀଙ୍କର ଏହି ପ୍ରଶ୍ନର ତାତ୍ପର୍ଯ୍ୟ ଓ ଏହାର ବାସ୍ତବ ଜୀବନ କ୍ଷେତ୍ରରେ ଆବଶ୍ୟକତା ମୋତେ ଯେତିକି ସ୍ପର୍ଶ କଲା ସେତିକି ତାତ୍ପର୍ଯ୍ୟପୂର୍ଣ୍ଣ ବୋଲି ମନେ ହେଲା ।

ମୁଁ ଆରମ୍ଭ କଲି, "ଗତବର୍ଷ ମୁଁ କଲିକତାରେ ଥିଲି । ସେଠାରେ ଦୁର୍ଭିକ୍ଷ ପ୍ରପୀଡ଼ିତ ବହୁ ଅସହାୟ ଲୋକମାନଙ୍କୁ ରାସ୍ତାରେ ଦଳ ଦଳ ହୋଇ ଯାଉଥିବା ମୁଁ ଦେଖେ । ରାସ୍ତାରେ ଏଣେତେଣେ ସେମାନେ ଅନାହାରରେ ପ୍ରାଣ ବିକଳରେ ମରିପଡ଼ୁଥିବା ମୁଁ ଦେଖୁଥାଏ । ଏପରିକି ରାସ୍ତାର ଅନେକ ଜଳଖିଆ ଦୋକାନ ଓ ଫଳ ଦୋକାନ ଯେଉଁଠାରେ ଜିନିଷ ସବୁ ସୁସଜ୍ଜିତ ଭାବରେ ବିକ୍ରୀ ହେବାକୁ ରଖା ଯାଇଥାଏ ତା' ସମ୍ମୁଖରେ ସେମାନେ ଭୋକର କଷ୍ଟ ସହି ନପାରି ମଧ୍ୟ ମରି ପଡ଼ୁଥାନ୍ତି । ମନେ କରିଯାଉ ସେହି ପରିସ୍ଥିତିରେ ଗୋଟିଏ ଭୋକିଲା କୁକୁର ବା ଷଣ୍ଢ ରହିଛି । ସେ କେବେ ଭୋକରେ ମରି ପଡ଼ିବ କି ? ବୋଧହୁଏ ନୁହେଁ । ତାକୁ ବାଡ଼ାନ୍ତୁ, ତଥାପି ସେ ଚେଷ୍ଟା କରିବ ଜବରଦସ୍ତି ଯେପରି ହେଲେ କିଛି ଖାଦ୍ୟ ନେଇ ତା'ର କ୍ଷୁଧା ମେଣ୍ଟାଇବାକୁ । କିନ୍ତୁ ସେହି ମରିପଡ଼ୁଥିବା ଭୋକିଲା ଲୋକମାନେ ଏପରି କାହିଁକି କରୁନଥିଲେ ? ସେମାନେ ପୋଲିସର ଭୟରେ ଯେ ଏପରି କରୁନଥିଲେ ମୁଁ ତାହା ଭାବୁନାହିଁ । କଲିକତାରେ ହଜାର ହଜାର ଏହି ଅନାହାରୀ ଲୋକମାନେ ରହିଥିଲେ । ଯଦିଓ ତାଙ୍କ ସଂଖ୍ୟାର ଏକ ଭଗ୍ନାଂଶ ମାତ୍ର ଦୋକାନମାନଙ୍କ ଉପରେ ଆକ୍ରମଣ କରି ଖାଦ୍ୟପଦାର୍ଥ ଲୁଟି ନେବାକୁ ଉଦ୍ୟମ କରିଥାନ୍ତେ, ତେବେ କୌଣସି ପୋଲିସ ସେମାନଙ୍କୁ ବାଧା ଦେବାକୁ ସମର୍ଥ ହୋଇନଥାନ୍ତା । ଯଦିଓ ପୋଲିସ ସେମାନଙ୍କୁ ଧରି ଜେଲ ଭିତରେ ରଖିଥାନ୍ତା ତଥାପି ସେଠାରେ ଯେଉଁ ମୁଠାକ ସେମାନଙ୍କୁ ଖାଇବାକୁ ମିଳିଥାନ୍ତା ତାହା ସେମାନଙ୍କ ଅନାହାର ମୃତ୍ୟୁଠାରୁ ବହୁ ଗୁଣରେ ଶ୍ରେୟସ୍କର ହୋଇଥାନ୍ତା । କାହିଁକି ସେହି ଅନାହାରୀ ଭୋକିଲା ଲୋକମାନେ ହତାଶ ହୋଇ ଦୋକାନବାଡ଼ି ଲୁଣ୍ଠନ କରୁ ନଥିଲେ ? ସେମାନେ କ'ଣ ଏପରି ଭୀରୁ ଓ କାପୁରୁଷ ଥିଲେ ? କିମ୍ବା ସମସ୍ତଙ୍କର ଏପରି ଉଚ୍ଚମାନର ନାଗରିକ କର୍ତ୍ତବ୍ୟବୋଧ ରହିଥିଲା ଯଦ୍ଦ୍ୱାରା ସମାଜର ଆଇନଶୃଙ୍ଖଳା ଲଙ୍ଘନ କରିବାକୁ ସେମାନେ ଉଚିତ ମନେ କରୁନଥିଲେ ? ତାହା

ବି ନୁହଁ । ସେମାନେ ସମସ୍ତେ ନିତାନ୍ତ ସାଧାରଣ ମଣିଷ ଥିଲେ ଯେଉଁମାନଙ୍କର ନାଗରିକ କର୍ତ୍ତବ୍ୟ ବା ଅଧିକାର ନେଇ ସଚେତନତା ନଥିଲା । ଯଦିଓ ସେମାନଙ୍କର ଏ ନେଇ ସାମାନ୍ୟ ସଚେତନତା ଥା'ନ୍ତା ତେବେ ସମ୍ଭବତଃ ବଙ୍ଗରେ ଏତେବଡ଼ ଦୁର୍ଭିକ୍ଷ ପରିସ୍ଥିତିକୁ ଏଡ଼ାଇ ଦେଇ ହୋଇଥାନ୍ତା ।

"ଅନ୍ୟ ଉପରୁ ପ୍ରଶ୍ନଟିକୁ ମଧ୍ୟ ବିଚାରକଲେ ଦୋକାନୀମାନେ କ'ଣ ଏପରି ନିଷ୍ଠୁର ଥିଲେ ସେମାନଙ୍କ ଦୋକାନ ସମ୍ମୁଖରେ ପ୍ରାଣ ବିକଳରେ ମରିପଡ଼ୁଥିବା ଲୋକମାନଙ୍କ ପାଇଁ ଖାଦ୍ୟ ମୁଠାଏ ଦେବାକୁ ସେମାନଙ୍କର ଦରଦ ନଥିଲା ? ତା' ମଧ୍ୟ ନୁହେଁ । ସେମାନେ ଦୁଃଖରେ ଅଶ୍ରୁପାତ କରୁଥିଲେ, ବଦାନ୍ୟ ଭାବରେ ଅର୍ଥଦାନ କରି କେତେକ ମାଗଣା ଭୋଜନ କେନ୍ଦ୍ର ପରିଚାଳନା କରୁଥିଲେ ଓ ପ୍ରତ୍ୟହ ମାଡ଼ଶାସ୍ତ୍ରରୁ ମନ୍ତ୍ର ମଧ୍ୟ ଗାଉଥିଲେ ।

"ଅନ୍ନକ୍ଲିଷ୍ଟ ଲୋକମାନେ ଯଦିବା ଭୀରୁ ନଥିଲେ ବା ଦୋକାନୀମାନେ ନିଷ୍ଠୁର ନଥିଲେ ତେବେ ଏତେ ଲୋକ କାହିଁକି ଅନାହାରରେ ମୃତ୍ୟୁବରଣ କଲେ ? ସେମାନେ ପୋଷଣ କରିଥିବା ସେମାନଙ୍କର ଜୀବନଦର୍ଶନ ହିଁ ଏହାର କାରଣ ବୋଲି ମୁଁ ବିଚାର କରୁଛି ।

"ସେମାନେ ଏକା ପ୍ରକାର ଜୀବନଦର୍ଶନରେ ବିଶ୍ୱାସ କରୁଥିଲେ । ପ୍ରତ୍ୟେକ ଭାବୁଥିଲେ, 'ମୋର ପରିସ୍ଥିତି ହେଉଛି ମୋର ଭାଗ୍ୟର ଫଳ, ପ୍ରତ୍ୟେକ ତାର କର୍ମର ଫଳ ନିଶ୍ଚୟ ଭୋଗିବ, ଈଶ୍ୱର ଯାହାକୁ ଯେପରି କରିଛନ୍ତି ସେ ତାହା ଭୋଗ କରିବାକୁ ବାଧ୍ୟ ।' ସେମାନେ ଏକା ପ୍ରକାର ଜୀବନଦୃଷ୍ଟି ପୋଷଣ କରୁଥିବାରୁ ସେମାନଙ୍କ ସମ୍ପର୍କ ଭିତରେ କୌଣସି ପରିବର୍ତ୍ତନ ହେଉନଥିଲା । କିଏ ସ୍ୱଚ୍ଛନ୍ଦରେ ଖାଇ ପି' ସମୟ ଅତିବାହିତ କରୁଥିବା ବେଳେ ଅନ୍ୟ କିଏ ଅନ୍ନକଷ୍ଟରେ ମୃତ୍ୟୁବରଣ କରୁଥିଲା । ଅନାହାରୀ ଲୋକର ଏହି ବିଶ୍ୱାସ ଯୋଗୁଁ ସେ ପଶୁପରି ବ୍ୟବହାର ଦେଖାଉନଥିଲା ।

"ମୋର ଏହି ବକ୍ତବ୍ୟ ଯେ କେବଳ ବଙ୍ଗର ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକମାନଙ୍କ ପାଇଁ ପ୍ରଯୁଜ୍ୟ ତା' ନୁହେଁ, ଭାରତବର୍ଷରେ ଅସବର୍ଣ୍ଣ ଓ ସବର୍ଣ୍ଣ ହିନ୍ଦୁମାନଙ୍କ ଭିତରେ ଥିବା ସମ୍ପର୍କ କା କଲା ଓ ଗୋରା ଲୋକଙ୍କ ଭିତରେ ଥିବା ସମ୍ପର୍କ ଏହି ଜୀବନଦର୍ଶନର ପରିଣାମ । ସାମାଜିକ ଜୀବନରେ ଥିବା ଅସମତା ଏହି ଜୀବନଦର୍ଶନର ଫଳ କହିଲେ ଅତ୍ୟୁକ୍ତି ହେବନାହିଁ ।

"ଏହି ଅଦୃଷ୍ଟିକ ଜୀବନଦର୍ଶନ ଗ୍ରହଣ କରିବାର ପରିଣାମ କ'ଣ ହୋଇଛି ? ମଣିଷ ପଶୁଠାରୁ ଅଧିକ ହୀନ ହୋଇଛି । ସେ ଏକ ସୁସ୍ଥ ଜୀବନ ବଞ୍ଚିବା ପରିବର୍ତ୍ତେ ନାନା ଯନ୍ତ୍ରଣାରେ ମରୁଛି । ଅବଶ୍ୟକ ସମୟରେ ଅନ୍ୟାୟର ବିରୋଧ କରିବା ପାଇଁ

ସାମର୍ଥ୍ୟ ତାହାର ନାହିଁ । କେତେକ ମୁଷ୍ଟିମେୟ ଲୋକଙ୍କର ବିଳାସ ଓ ସମୃଦ୍ଧି ଅଗଣିତ ଜନତାର ପରିଶ୍ରମ ଉପରେ ଗଢ଼ି ଉଠିଛି । ମଣିଷ ସମାଜର ସୁଖଶାନ୍ତି ପାଇଁ ଆମର ସକଳ ଇଚ୍ଛା ଓ ନୈତିକତାର ପ୍ରଚୁର ସତ୍ତ୍ୱେ ସମାଜରେ ଏକ ଅସ୍ୱସ୍ତିକର ପରିସ୍ଥିତି ଲାଗି ରହିଛି । ଈଶ୍ୱର ଓ ଭାଗ୍ୟବାଦର ଭିତ୍ତି ଉପରେ ଗଢ଼ି ଉଠିଥିବା ଏହି ଜୀବନାଦର୍ଶ ଏକ ଆଦର୍ଶ ସମାଜ ଓ ନୀତିପୂର୍ଣ୍ଣ ସମ୍ପର୍କ ପ୍ରତିଷ୍ଠାର ପ୍ରଚେଷ୍ଟାକୁ ନଷ୍ଟ କରିଦେଉଛି । ଏହି ଆଦର୍ଶ ଉପରେ ଗଢ଼ି ଉଠିଥିବା ବୈଷମ୍ୟପୂର୍ଣ୍ଣ ସାମାଜିକ ସମ୍ବନ୍ଧ କିନ୍ତୁ ବେଶିଦିନ ତିଷ୍ଠି ରହିପାରିବ ନାହିଁ । ଏହି ଜୀବନାଦର୍ଶ ଓ ତାର ଆନୁଷଙ୍ଗିକ ସାମାଜିକ ମୂଲ୍ୟବୋଧ ଦ୍ୱାରା ନିଷ୍ପେଷିତ ହୋଇ ରହିଥିବା ଯନ୍ତ୍ରଣାକାତର ମଣିଷ ତାହା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ ଆରମ୍ଭ କଲାଣି ।

"ସମାଜର ସକଳ ସମ୍ପର୍କ ନୈତିକ ମାନଦଣ୍ଡ ଉପରେ ପ୍ରତିଷ୍ଠା ହେବା ଓ ସମାଜରେ ଆଦର୍ଶବାଦର ବିକାଶ ହେବା ମୁଁ ଚାହେଁ । ଯେତେବେଳେ ଭାଗ୍ୟ, ଭଗବାନ ଉପରୁ ମଣିଷର ବିଶ୍ୱାସ ଚାଲିଯିବ ଓ ଆସ୍ତିକ ଜୀବନାଦର୍ଶର ମୂଲ୍ୟବୋଧ ଦୂରୀଭୂତ ହେବ ସେତେବେଳେ ଏହା ସମ୍ଭବ ହେବ । ଅର୍ଥାତ୍ ନିରୀଶ୍ୱରବାଦୀ ଜୀବନ-ଦୃଷ୍ଟିର ବିକାଶ ହେଲେ ମଣିଷ କୌଣସି ଅଦୃଷ୍ଟ ଉପରେ ନିର୍ଭର ନକରି ସେ ସ୍ୱାଧୀନ ଭାବରେ ନିଜର ଗୋଡ଼ ଉପରେ ଛିଡ଼ାହୋଇ ପାରିବ । ସେହି ମଣିଷ ଭିତରେ ଏକ ସୁସ୍ଥ ସାମାଜିକ ଦୃଷ୍ଟିଭଙ୍ଗୀର ବିକାଶ ହୋଇପାରିବ । କାରଣ ନିରୀଶ୍ୱରବାଦୀ ଜୀବନାଦର୍ଶ ମଣିଷ ମଣିଷ ଭିତରେ ରହିଥିବା ସାମାଜିକ ବା ଅର୍ଥନୈତିକ ବୈଷମ୍ୟକୁ ସ୍ୱୀକାର କରେନାହିଁ । ସମାଜରେ ରହିଥିବା ସକଳ ପ୍ରକାର ବୈଷମ୍ୟ ଆସ୍ତିକତା ଉପରେ ତିଷ୍ଠି ନରହି ବରଂ ଆସ୍ତିକତାବାଦର ସ୍ୱୀକୃତି ନେଇ ରହିଆସିଛି । ଈଶ୍ୱର ବିଶ୍ୱାସକୁ ପରିହାର କରି ମଣିଷ ନିଜ ସାମର୍ଥ୍ୟ ଉପରେ ଛିଡ଼ା ହୋଇପାରିଲେ 'ମଣିଷ ସମାଜ ଏକ' ଓ 'ସବୁ ମଣିଷ ସମାନ' ଏହି ବିଚାରର ପ୍ରସାର ହେବ । ସେହି ସମାଜରେ ମଣିଷ ମଣିଷ ଭିତରେ ପାର୍ଥକ୍ୟ ପରିବର୍ତ୍ତେ ସାଦୃଶ୍ୟ ଅଧିକ ରହିବ ଓ ସମ୍ବେଦନଶୀଳତା ଅଧିକ ସୃଷ୍ଟି ହେବ ।

"ଯଦିଓ ଈଶ୍ୱର ସତ୍ୟ ହୋଇଥାନ୍ତେ ତେବେ କେହି ତାହା ଅସ୍ୱୀକାର କରିପାରନ୍ତେ ନାହିଁ । କିନ୍ତୁ ବାସ୍ତବରେ ତାହା ନୁହେଁ । ଈଶ୍ୱର ହେଉଛନ୍ତି ମଣିଷର ଏକ କଳ୍ପନା ଓ ଅସତ୍ୟ । ଅବଶ୍ୟ ଏହି ଧାରଣା ଅସତ୍ୟ ହୋଇ ବି ଅତୀତରେ ବେଳକେ ସମାଜର ଉପକାରରେ ଏହା ଆସିଛି । କିନ୍ତୁ କାଳକ୍ରମେ ଏହା ସମାଜର ଅପକର୍ଷ ସାଧନ ଦିଗରେ ସହାୟ ହୋଇଛି । ସମାଜରୁ ସକଳ ପ୍ରକାରର ଭ୍ରଷ୍ଟାଚାରକୁ ଦୂରକରି ନୈତିକ ମୂଲ୍ୟବୋଧର ଉତ୍କର୍ଷ ସାଧନ ପାଇଁ ଏହି ବିଶ୍ୱାସ ସମ୍ପୂର୍ଣ୍ଣ ଦୂରହେବା ଆବଶ୍ୟକ । ମଣିଷର ଆତ୍ମବିଶ୍ୱାସକୁ ସୁଦୃଢ଼ କରାଇ

ଅହିଂସ ପନ୍ଥାରେ ସମାଜରେ ସାମାଜିକ ଓ ଅର୍ଥନୈତିକ ସମତା ପ୍ରତିଷ୍ଠା କରିବା ପାଇଁ ମୁଁ ନିରୀଶ୍ୱରବାଦର ପ୍ରତିଷ୍ଠା ଚାହୁଁଛି । ମୋର ବିଚାରରେ ଯଦିଓ ଭୁଲ ଅଛି ତେବେ ଦୟାକରି ମୋତେ କୁହନ୍ତୁ ବାପୁ ।"

ବାପୁଜୀ ଧୈର୍ଯ୍ୟର ସହ ମୋର ଏହି ଦୀର୍ଘ ବକ୍ତୃତାକୁ ମନୋଯୋଗ ଦେଇ ଶୁଣିଲେ । ଏହାପରେ ସେ ଖଟଟି ଉପରେ ଉଠିକରି ବସିଲେ ଓ ଧୀର ସ୍ୱରରେ କହିଲେ, "ହଁ, ମୁଁ ଆପଣଙ୍କର ବକ୍ତବ୍ୟରେ ଏକ ଆଦର୍ଶ ଦେଖୁଛି । ମୋର ଆସ୍ତିକତାବାଦ ଠିକ୍ ଓ ଆପଣଙ୍କର ନିରୀଶ୍ୱରବାଦ ଭୁଲ୍—ମୁଁ ଏହା କହିପାରିବି ନାହିଁ । ଆମେ ହେଉଛେ ସତ୍ୟାନ୍ୱେଷୀ । ଯେତେବେଳେ ଆମେ ଆମ ବିଚାରରେ ଭୁଲ୍ ଥିବା ଅନୁଭବ କରୁ ସେତେବେଳେ ଆମେ ନିଜର ମତ ପରିବର୍ତ୍ତନ କରିଥାଉ । ମୁଁ ଏହିପରି ଜୀବନରେ ମୋର ମତକୁ ବହୁବାର ପରିବର୍ତ୍ତନ କରିଛି । ମୁଁ ଅନୁଭବ କରୁଛି ଆପଣ ଜଣେ ନିଷ୍ଠାପର କର୍ମୀ, ଆପଣ ଧର୍ମୋନ୍ମତ୍ତ ବା ମତାନ୍ଧ ନୁହନ୍ତି । ଆପଣ ନିଜ ବିଚାରରେ ଯେତେବେଳେ ତ୍ରୁଟି ଦେଖିବେ ସେତେବେଳେ ତାହା ପରିବର୍ତ୍ତନ କରିବେ । ନିଜ ବିଚାରରେ ଯେତେବେଳ ପର୍ଯ୍ୟନ୍ତ ଜଣେ ଉନ୍ମତ୍ତ ନୁହଁ, ସେ ପର୍ଯ୍ୟନ୍ତ ନିଜ ବିଚାରକୁ ଗ୍ରହଣ କରିବାରେ ଭୁଲ୍ ନାହିଁ । ଆପଣଙ୍କର ପନ୍ଥା ଠିକ୍ କି ମୋ ପନ୍ଥା ଠିକ୍ ତାହା ଭବିଷ୍ୟତ ପରିଣାମରୁ ଜଣାପଡ଼ିବ । ସେତେବେଳେ ମୁଁ ହୁଏତ ଆପଣଙ୍କ ପନ୍ଥାରେ ବ୍ରତୀ ହୋଇପାରେ ବା ଆପଣ ମୋ ପନ୍ଥାକୁ ଗ୍ରହଣ କରିପାରନ୍ତି କିମ୍ବା ଆମେ ଉଭୟ ଏକ ଭିନ୍ନ ପନ୍ଥାର ପଥିକ ହୋଇପାରୁ । ତେଣୁ ନିଜ ବିଚାରରେ ଦୃଢ଼ ରହି ଆଗେଇ ଚାଲନ୍ତୁ । ଯଦିବା ଆପଣଙ୍କ ପନ୍ଥାଠାରୁ ମୋର ବିଚାର ଭିନ୍ନ ତଥାପି ମୁଁ ଆବଶ୍ୟକ ବେଳେ ଆପଣଙ୍କୁ ସାହାଯ୍ୟ କରିବି ।

ବାପୁଜୀଙ୍କର ଏହି ମହାନୁଭବତାରେ ମୁଁ ଅଭିଭୂତ ହେଲି । ମୁଁ ତାଙ୍କୁ ନିବେଦନ କରି କହିଲି, ଆପଣ ମୋତେ ଉତ୍ସାହିତ କରୁଛନ୍ତି, ବାପୁ ! ମୋର ବିଚାର ଓ କର୍ମପନ୍ଥାରେ କିଛି ଭୁଲ୍ ଥିଲେ ସେ ନେଇ ମୁଁ ଆପଣଙ୍କର ପରାମର୍ଶ ଚାହୁଁଛି । ଆପଣଙ୍କର ପ୍ରଜ୍ଞା ଓ ଅନୁଭୂତିବହୁଳ ଜୀବନର ପରାମର୍ଶରୁ ମୁଁ ଶିକ୍ଷା କରିବା ସହିତ ନିଜର ତ୍ରୁଟିକୁ ସୁଧାରିନେବି ।

ବାପୁଜୀ ଉତ୍ତରଦେଲେ, "ଭୁଲ୍ କରିବା ମଣିଷର ସ୍ୱଭାବ କାରଣ କେହି ଜାଣିଶୁଣି ଏକ ଭୁଲ୍ ପନ୍ଥାରେ ପଥିକ ହୁଏନାହିଁ । କିନ୍ତୁ ନିଜର ଭୁଲ୍‌କୁ ଜାଣିବା ପରେ ନିଜର ବିଚାରକୁ ପରିବର୍ତ୍ତନ ନକରିବା ହେଉଛି ଭୁଲ୍ । ଜଣେ କାଳେ ଭୁଲ୍ ହୋଇଯିବ ବୋଲି ଯଦି ଭାବିବସିବ ତେବେ ସେ କିଛି କରିପାରିବ ନାହିଁ । ଆପଣ ଯେଉଁ ସମୟରେ ନିଜର ଭୁଲ୍ ଅନୁଭବ କରିବେ ସେତେବେଳେ ନିଜକୁ ସଂଶୋଧନ କରିନେବେ ।"

ସେ ମୋତେ କହିଲେ ଯେ ମୋର ସହଯୋଗୀ କର୍ମୀମାନଙ୍କ ଆଚରଣରେ ସେ ଖୁବ୍ ସନ୍ତୁଷ୍ଟ । ମୁଁ ସେମାନଙ୍କୁ କପରି ତ୍ରାଲିମ ଦେଉଛି ତାହା ଜାଣିବା ପାଇଁ ସେ ସେମାନଙ୍କୁ ଆଶ୍ରମକୁ ଡାକିଛନ୍ତି । ମୁଁ ଏଥିରୁ ଅନୁଭବ କଲି କାହିଁକି ବାପୁଜୀ ମୋର କର୍ମୀମାନଙ୍କ ସହ କଥା ହେବାରେ ଏତେ ଆଗ୍ରହୀ ହେଉଥିଲେ ଅଥଚ ମୋ ପ୍ରତି ଗତ ତିନିମାସ ଧରି ଉଦାସୀନ ରହିଥିଲେ ।

ଏହାପରେ ବାପୁଜୀ ନୈତିକତା ଉପରେ ମୋର ଦୃଷ୍ଟିଭଙ୍ଗୀ ଜାଣିବାକୁ ଚାହିଁଲେ । ମୁଁ ତାଙ୍କୁ କହିଲି, "ମୁଁ ଯାହା କରେ ତାହା କୁହେ ଓ ଯାହା କୁହେ ତାହା କରେ, ଏହା ହିଁ ମୋ ପାଇଁ ନୈତିକତାର ସଂଜ୍ଞା । କୌଣସି କଥା ଗୁପ୍ତରେ କରିଯିବା ମୁଁ ବିଶ୍ୱାସ କରେନାହିଁ । ନୈତିକ କାର୍ଯ୍ୟ ସମସ୍ତଙ୍କ ସମ୍ମୁଖରେ କରାଯାଇ-ପାରୁଥିବା ଆବଶ୍ୟକ ।"

"ହଁ, ତାହାହିଁ ମୋର ମତ । ଗୁପ୍ତରେ କରିବା କାର୍ଯ୍ୟ ହିଁ ପାପ । ଆପଣ ନିରୀଶ୍ୱରବାଦୀ ଭାବରେ 'ପାପ' ପାଇଁ ସଙ୍କୁଚିତ ମନେକରିପାରନ୍ତି ।" ନିଜ ଜୀବନର ସମସ୍ତ କାର୍ଯ୍ୟକଳାପକୁ ଖୋଲାଖୋଲି ଭାବରେ କରିବା ନେଇ ସେ ତାଙ୍କର କେତେକ କଷ୍ଟଦାୟକ ଅନୁଭୂତି ମୋତେ ବର୍ଣ୍ଣନା କରିଥିଲେ ।

ମୁଁ ମୋର ଗ୍ରାମକେନ୍ଦ୍ରରେ ପାଇଖାନା ବ୍ୟବହାର କରୁଛି କି ନାହିଁ ଏ ବିଷୟରେ ବାପୁଜୀ ଜାଣିବାକୁ ଚାହିଁଲେ । ସ୍ୱାସ୍ଥ୍ୟରକ୍ଷା ସମସ୍ୟା ଉପରେ ସେ କହିବାକୁ ଲାଗିଲେ, "ହରିଦ୍ୱାର ପାଖ ଗଙ୍ଗାକୂଳରେ ମୁଁ ବସିବାକୁ ଚାହିଁଲି । କିନ୍ତୁ ଟିକିଏ ପରିଷ୍କାର ସ୍ଥାନ ମୁଁ ଦେଖିଲି ନାହିଁ । ଅସ୍ପୃଶ୍ୟତା ଓ ବାହାରେ ମଇଳା କରି ପରିବେଶକୁ ଦୂଷିତ କରିବା ହେଉଛି ଆମ ଭାରତୀୟମାନଙ୍କର ଦୁଇଟି ଲଜ୍ଜାକର ପାପ ।"

ଆଲୋଚନା ଭିତରେ ସେ ମୋତେ ଏକଜାଗାରେ କହିଥିଲେ, "ମୁଁ ଆଶ୍ଚର୍ଯ୍ୟ ଆମର କର୍ମୀମାନେ କିପରି ନାଁ ଅର୍ଜନ କରିବାକୁ ବ୍ୟାକୁଳ ହେଉଛନ୍ତି । ମୁଁ ଦକ୍ଷିଣଆଫ୍ରିକାରେ ଥିବା ସମୟରେ ପାଞ୍ଚବର୍ଷ ପାଇଖାନା ସଫା ଓ ମେହେନ୍ତର କାମ କରିଥିଲି ।"

ମୁଁ ତାଙ୍କୁ ପଚାରିଲି ଆବଶ୍ୟକବେଳେ ମୁଁ କେତେବେଳେ ତାଙ୍କୁ ପରାମର୍ଶ କରିବାକୁ ଆସିବି । ସେ ସଙ୍ଗେ ସଙ୍ଗେ ଉତ୍ତର ଦେଲେ, "ଆପଣ ହେଉଛନ୍ତି ମୋ ପରିବାରର ଜଣେ । ମୁଁ ଅନ୍ୟ ସହିତ ବ୍ୟସ୍ତ ନଥିବା ଯେକୌଣସି ସମୟରେ ଆପଣ ଆସିପାରନ୍ତି ।"

ଆମେ ସତୁରି ମିନିଟ୍ ଯାଏ କଥାହେଲୁ । ଅବଶ୍ୟ ଆମ ଆଲୋଚନା ପାଇଁ କିଛି ସମୟସୀମା ନଥିଲା । ଏହା ଏକ ଅନ୍ତରଖୋଲା ଆଲୋଚନା ଥିଲା । ନାନା

ବିଷୟରେ ଓ ବିଶେଷକରି ବ୍ୟକ୍ତିଗତ ଅନୁଭୂତି ଓ ଅଭିରୁଚି ସମ୍ପର୍କରେ ଆମଭିତରେ ଖୁବ ବିନିମୟ ହେଲା । ଆଲୋଚନା ଭିତରେ ମୁଁ ବାପୁଙ୍କର ନିକଟରୁ ନିକଟତର ହୋଇପାରୁଥିବା ଅନୁଭବ କଲି ।

ତାଙ୍କର କେତେକ କଥା ମୋ ଭିତରେ ପରେ ପ୍ରତିଧ୍ୱନିତ ହେବାକୁ ଲାଗିଲା । "ମୋର ଆସ୍ତିକତାବାଦ ଠିକ୍ କି ଆପଣଙ୍କର ନିରୀଶ୍ୱରବାଦ ଠିକ୍ ଏହା ମୁଁ କହିପାରିବି ନାହିଁ"; "ଯଦିବା ଆପଣଙ୍କର ପନ୍ଥା ମୋଠାରୁ ଭିନ୍ନ ତଥାପି ମୁଁ ଆପଣଙ୍କୁ ନିଶ୍ଚୟ ସାହାଯ୍ୟ କରିବି" ବକ୍ତବ୍ୟଗୁଡ଼ିକରୁ ବାପୁଜୀଙ୍କର ଉଦାରତା ଓ ସହିଷ୍ଣୁତା ମୁଁ ଅନୁଭବ କଲି । ଏହାଛଡ଼ା ତାଙ୍କର ବକ୍ତବ୍ୟ, "ଜଣେ ଭୁଲ୍ କରିବାକୁ ଭୟକଲେ ସେ କିଛି କରିପାରିବ ନାହିଁ"—ମୋ ପାଇଁ ଏକ ଉଲ୍ଲେଖନୀୟ ବାସ୍ତବ ପରାମର୍ଶ ଥିଲା ଯଦ୍ଦ୍ୱାରା ନିଜର ବିଶ୍ବାସ ଅଧାରରେ ସାହସିକ ପଦକ୍ଷେପ ନେବାକୁ ମୁଁ ପ୍ରେରଣା ପାଇଲି । ତାଙ୍କ ସହ ଏହି ଆଲୋଚନାର ସ୍ମୃତି ମୋର କାର୍ଯ୍ୟସୂଚୀ ଓ ଓ ଆଚରଣରେ ମୋତେ ବହୁସମୟରେ ଅଭିନିବେଶ ଯୋଗାଇଛି ।

ମୋର ଧାରଣା ଆମର ଆଲୋଚନାର କେତେକ କଥା ଉପରେ ବାପୁଜୀ ମଧ୍ୟ ଗମ୍ଭୀରଭାବରେ ଚିନ୍ତା କରିଛନ୍ତି । ଆମର ଆଲୋଚନା ସମୟରେ ତାଙ୍କର ଭାବଭଙ୍ଗୀ ଓ ମନୋଭାବରୁ ମୁଁ ଏହି ଧାରଣା ପାଇଥିଲି ।

ନାସ୍ତିକତାର ନାକାରାତ୍ମକ ଦିଗ ଛଡ଼ା ମୋ'ର ଆଲୋଚନାରୁ ନିରୀଶ୍ୱରବାଦର ଅନେକ ସକାରାତ୍ମକ ଆଭିମୁଖ୍ୟ ପ୍ରତି ସେ ଗୁରୁତ୍ୱ ଆରୋପ କରିଥିଲେ । ସେ ଯାହାହେଉ ପରବର୍ତ୍ତୀ ସମୟରେ ମୋର ତାଙ୍କ ସହ ହୋଇଥିବା ଆଲୋଚନା ଓ ପତ୍ରାଳାପଠାରୁ ସେ ମୋତେ ଓ ମୋର ଆଦର୍ଶକୁ ଯେ ବୁଝିବାକୁ ଆଗ୍ରହୀ ହୋଇଥିଲେ ଏହା ମୁଁ ନିଶ୍ଚିତ ହେଲି ।

ତା' ପରଦିନ ବାପୁଜୀ ବମ୍ବେ ଗଲେ । ମୁଁ ମୋର ଗ୍ରାମକେନ୍ଦ୍ରକୁ ଫେରିଲି ।

ଅଷ୍ଟମ ପରିଚ୍ଛେଦ :

# ମୋ ଝିଅର ବିବାହ

ଗାନ୍ଧୀଜୀଙ୍କ ସହ ମୋର ସମ୍ପର୍କ ଓ ଆଲୋଚନା ନିରୀଶ୍ୱରବାଦ ଉପରେ ମୋର ଆତ୍ମପ୍ରତ୍ୟୟକୁ ଯେ ଦୃଢ଼ କଲା ତା' ନୁହଁ, ଏହାକୁ ଭିତ୍ତି କରି ବାସ୍ତବ କାର୍ଯ୍ୟସୂଚୀ ଗ୍ରହଣ କରିବାକୁ ମଧ୍ୟ ପ୍ରେରଣା ଯୋଗାଇଲା । ଅସ୍ପୃଶ୍ୟତା ନିବାରଣ ପାଇଁ ଏ ପର୍ଯ୍ୟନ୍ତ ମୁଁ କେବଳ ସାର୍ବଜନୀନ ପଙ୍‌କ୍ତିଭୋଜନ ଉପରେ ଗୁରୁତ୍ୱ ଦେଇଆସିଥିଲି । ଏହାଠାରୁ ଅଧିକା କିଛି କରିଯିବା ମୁଁ ବିଚାର କଲି । ବିଶେଷ କରି ଅନ୍ତର୍ଜାତି ବିବାହ କରାଇବାକୁ ମୁଁ ମନସ୍ଥ କଲି । ଜାତିବିହୀନ ବିବାହ, ଜାତିଗତ, ସମ୍ପ୍ରଦାୟଗତ ଓ ବର୍ଣ୍ଣଗତ ବିଭେଦକୁ ଦୂର କରିବାରେ ସହାୟକ ହେବ ବୋଲି ମୁଁ ଭାବିଲି ।

ମୋର ନିରୀଶ୍ୱରବାଦୀ ଦୃଷ୍ଟିଭଙ୍ଗୀ ଭିତରେ ମୁଁ ଜାତି ବା ଧର୍ମଗତ ପାର୍ଥକ୍ୟକୁ ସ୍ୱୀକାର କରେନାହିଁ । ମୋର ନିରପେକ୍ଷ ଦୃଷ୍ଟିଭଙ୍ଗୀ ସତ୍ତ୍ୱେ ସାମାଜିକ ଜୀବନରେ ଏହା ବହୁଳ ଭାବରେ ରହିଥିବା କଥାକୁ ଅସ୍ୱୀକାର କରାଯାଇପାରିବ ନାହିଁ । ସମାଜର ଏହି ବାସ୍ତବତାକୁ ଗ୍ରହଣ କରି ଜାତିବିହୀନ ବୈବାହିକ ସମ୍ପର୍କ ସୃଷ୍ଟି କରିବାକୁ ମୁଁ ସ୍ଥିର କଲି । ଏ ବିଷୟରେ ମୁଁ ମୋର ସ୍ତ୍ରୀ ଓ ବଡ଼ଝିଅ ମନୋରମା ସହିତ ଆଲୋଚନା କଲି ଓ ସେମାନେ ମୋର ଦୃଷ୍ଟିଭଙ୍ଗୀ ସହିତ ଏକମତ ହେଲେ । ମନୋରମା ଜଣେ ତଥାକଥିତ ଅସ୍ପୃଶ୍ୟ ବ୍ୟକ୍ତିଙ୍କୁ ବିବାହ କରିବାକୁ ସମ୍ମତ ହେଲା ।

ମୁଁ ବାପୁଜୀଙ୍କୁ ମୋ ପରିବାରର ନିଷ୍ପତ୍ତି ଜଣାଇଲି । ମୋର ନିରୀଶ୍ୱରବାଦୀ ଜୀବନଦୃଷ୍ଟି ଏହି ନିଷ୍ପତ୍ତି ନେବାରେ କିପରି ସହାୟକ ହୋଇଛି ତାହା ମଧ୍ୟ ଲେଖିଲି । ବାପୁଜୀ ଏହି ଉତ୍ତର ଦେଇଥିଲେ—

ସୋଦେପୁର
୧୬ । ୧ । ୧୯୪୬

ଶ୍ରୀ ରାମଚନ୍ଦ୍ର ରାଓ,

ମୁଁ ଆପଣଙ୍କର ପତ୍ର ପାଇ ଆନନ୍ଦିତ ହେଲି । ମୁଁ ଖୁସି ଯେ ଆପଣ ମନୋରମାକୁ ଜଣେ ହରିଜନ ସହିତ ବିବାହ ଦେବାକୁ ମନସ୍ଥ କରିଛନ୍ତି । କିନ୍ତୁ

ନାସ୍ତିକବାଦ ଉପରେ ଆପଣଙ୍କର ଅନୁମାନ ଠିକ୍ ନୁହେଁ, ବରଂ ମୁଁ ଭାବୁଛି ଆପଣଙ୍କର ନାସ୍ତିକବାଦ ଆସ୍ତିକତାବାଦରେ ରୂପାନ୍ତରିତ ହୋଇଯାଇଛି ।

ସେବାଗ୍ରାମ ଆଶ୍ରମରେ ଏହି ବିବାହ କରାଇବାକୁ ମୁଁ ରାଜି ଅଛି । ତେଣ୍ଡୁଲକରଙ୍କର ବିବାହୋତ୍ସବ ପରି ମୋର ତତ୍ତ୍ୱାବଧାନରେ ଜଣେ ହରିଜନ ପୁରୋହିତ ହୋଇ ମନୋରମାର ବିବାହ କାର୍ଯ୍ୟ ଏଠାରେ ସମ୍ପାଦନ କରିବେ । ଏଥିପାଇଁ ଆପଣ ଯେକୌଣସି ପରାମର୍ଶ ମଧ୍ୟ ଦେଇପାରନ୍ତି । ମନୋରମାର ବୟସ ଏବେ ସତର, ତାକୁ ମୁଁ ବେଶ୍ ମନେରଖିଛି । ତା'ର ବିବାହ ପାଇଁ ସେ ଅନ୍ତ ଦୁଇବର୍ଷ ଅପେକ୍ଷା କରିବା ମୁଁ ଚାହୁଁଛି । ଆପଣ ଯଦିଓ ତା'ର ବିବାହ ଏବେ କରିବାକୁ ଆଗ୍ରହୀ ତେବେ ଅନ୍ତତଃ ତାଙ୍କୁ ଉଣେଇଶ ବର୍ଷ ହେଲେ ସେ ତା'ର ସ୍ୱାମୀ ପାଖରେ ରହିବ । ସୁତରାଂ ମୁଁ ଭାବୁଛି ସେ ତା'ର ସ୍ୱାମୀ ପାଖରେ ରହିବା ପୂର୍ବରୁ ତା'ର ବରଘର କଲେ ଭଲ ହୁଅନ୍ତା । ଏହି ସମୟ ଭିତରେ କେତେକ ବିଷୟରେ ସେମାନେ ତାଲିମ ନେବା ମୁଁ ଉଚିତ ମନେକରୁଛି । ବିଶେଷକରି ସେମାନେ ହିନ୍ଦୀ ଭାଷା ଶିଖିବା ସହିତ ଚରଖା ସମ୍ପର୍କୀୟ କାର୍ଯ୍ୟ ବିଷୟରେ ତାଲିମ ନେଲେ ଭଲ ହେବ ।

ତା' ପରମାସ ହିନ୍ଦୁସ୍ଥାନ ପ୍ରଚ୍ଛର ସଭାର ଅଧିବେଶନରେ ସଭାପତିତ୍ୱ କରିବାକୁ ବାପୁଜୀ ମାନ୍ଦ୍ରାଜ ଆସିଲେ । ତାଙ୍କ ପତ୍ରରେ ଲେଖିଥିବା ବିଷୟ ଉପରେ ଆଲୋଚନା ପାଇଁ ମୁଁ ତାଙ୍କୁ ମାନ୍ଦ୍ରାଜରେ ସାକ୍ଷାତ୍ କଲି ।

ମୋ ଝିଅର ବିବାହ ଆଶ୍ରମରେ କରିବାକୁ ବାପୁଜୀ ସମ୍ମତି ଦେଇଥିବାରୁ ମୁଁ ତାଙ୍କୁ କୃତଜ୍ଞତା ଜଣାଇଲି । ମୁଁ ମଧ୍ୟ ଦୁଇବର୍ଷ ପାଇଁ ବିବାହକୁ ସ୍ଥଗିତ କରିବା ପ୍ରସ୍ତାବରେ ସମ୍ମତ ଦେଲି । ମୋର ଭାବୀ ଜ୍ୱାଇଁ ଅର୍ଜୁନ ରାଓ ଗାନ୍ଧୀଙ୍କ ଆଶ୍ରମରେ ରହି ଏହି ଦୁଇବର୍ଷ ତାଲିମ ନେବାର ପ୍ରସ୍ତାବରେ ମୁଁ ଖୁସି ହେଲି । ବିଶଦ ଆଲୋଚନା ଭିତରେ ମୁଁ ବାପୁଜୀଙ୍କୁ କହିଲି, "ସମ୍ଭବତଃ ସେମାନଙ୍କ ବିବାହ ଉତ୍ସବରେ ଆପଣ ନବଦମ୍ପତି ପାଇଁ 'ଦିବ୍ୟ ଆଶୀର୍ବାଦ' ଲୋଡ଼ିବେ ବା 'ଭଗବାନଙ୍କ ନାମରେ' ସେମାନଙ୍କୁ ଶପଥ କରାଇବେ । ମୋ ଝିଅ ଓ ଭାବୀ ଜ୍ୱାଇଁ ନାସ୍ତିକବାଦୀ ମନୋଭାବର ବୋଲି ମୁଁ ଜାଣେ । ସେମାନେ ଏହି ଆସ୍ତିକତାବାଦୀ ବକ୍ତବ୍ୟ ସହିତ ସମ୍ପୃକ୍ତ ନହେବାକୁ ଚାହିଁପାରନ୍ତି ।

ଗାନ୍ଧୀଜୀ—ନାସ୍ତିକବାଦୀମାନେ ସତ୍ୟକୁ ସମ୍ମାନ କରୁଥିବାରୁ ଆପଣଙ୍କ ଝିଅର ବିବାହ ପରିପ୍ରେକ୍ଷୀରେ ମୁଁ ସେମାନଙ୍କୁ ଈଶ୍ୱର ଛଡ଼ା ସତ୍ୟ ନାମରେ ଶପଥ କରାଇବି ।

ମୁଁ—ଠିକ୍ ଅଛି, ନିରୀଶ୍ୱରବାଦୀମାନେ ସତ୍ୟବାଦିତାକୁ ଏକ ସାମାଜିକ ଆବଶ୍ୟକତା ଭାବରେ ଗ୍ରହଣ କରନ୍ତି । ସତ୍ୟ ହିଁ ମାନବିକ ସମ୍ବନ୍ଧକୁ ସୁଦୃଢ଼ କରିଛି । ସତ୍ୟ ବ୍ୟତୀତ ସାମାଜିକ ସମ୍ପର୍କ ସମ୍ଭବପର ନୁହେଁ ।

ଗାନ୍ଧୀଜୀ—କେବଳ ସେତିକି ନୁହେଁ । ସତ୍ୟର ଅର୍ଥ ହେଉଛି ସତ୍ (ଯାହା ଅଛି) ଯାହାକୁ ଆମେ ଜାଣୁ ବା ଜାଣିନାହୁଁ । ଆମର ଜ୍ଞେୟ ଓ ଅଜ୍ଞେୟ ଭିତରେ ରହିଥିବା ସତ୍ତ୍ୱର ସାମଗ୍ରିକ ରୂପ ହେଉଛି ସତ୍ୟ । (ଗାନ୍ଧୀଜୀ ଏଠାରେ ନିରଙ୍କୁଶ ସତ୍ୟ ଉପରେ କହୁଥିଲେ) ।

ମୁଁ—ମଣିଷର ଅନୁଭୂତିର ମାନଦଣ୍ଡରୁ ସତ୍ୟ ଆପେକ୍ଷିକ ବୋଲି ମୁଁ ଜାଣୁଛି । ମଣିଷର ଅନୁଭୂତିର ଊର୍ଦ୍ଧ୍ୱରେ ଯେଉଁ ନିରଙ୍କୁଶ ସତ୍ୟର ପରିକଳ୍ପନା କରାଯାଏ ତାହା ଏକ ପ୍ରକଳ୍ପ ମାତ୍ର । ମଣିଷ ନିଜର ଚିନ୍ତାଧାରାକୁ ଶୃଙ୍ଖଳିତ କରିବାକୁ ଏହି ସତ୍ୟର ପରିକଳ୍ପନା କରିଛି । ଅସୀମ ବା ପରମର ଧାରଣାକୁ ମଣିଷ ମନର ଏକ କଳ୍ପନା କହିଲେ ଅତ୍ୟୁକ୍ତି ହେବନାହିଁ ।

ଗାନ୍ଧୀଜୀ—ସତ୍ୟର ପ୍ରତ୍ୟୟ ହୁଏତ ଭିନ୍ନ ଭିନ୍ନ ହୋଇପାରେ । କିନ୍ତୁ ସମସ୍ତେ ସତ୍ୟକୁ ସ୍ୱୀକାର କରନ୍ତି ଓ ସମ୍ମାନ କରନ୍ତି । ସେହି ସତ୍ୟକୁ ମୁଁ ଭଗବାନ ବା ଈଶ୍ୱର କୁହେ । ପୂର୍ବରୁ 'ଈଶ୍ୱର ସତ୍ୟ' ବୋଲି ମୁଁ କହୁଥିଲି । କିନ୍ତୁ ଏହି ଉକ୍ତିରେ ମୁଁ ସନ୍ତୁଷ୍ଟ ନହୋଇ କହିଲି 'ସତ୍ୟ ହିଁ ଈଶ୍ୱର' ।

ମୁଁ ଯଦିଓ ସତ୍ୟ ହିଁ ଈଶ୍ୱର ତା'ହେଲେ 'ସତ୍ୟମ୍...' ନକହି ଆପଣ କାହିଁକି 'ରଘୁପତି ରାଘବ' ବୋଲି କହୁଛନ୍ତି ? 'ରଘୁପତି ରାଘବ' କହିଲେ ଆପଣ ଯାହା ବୁଝୁଛନ୍ତି ଅନ୍ୟମାନେ ତାହା ନବୁଝି ତା'ର ସମ୍ପୂର୍ଣ୍ଣ ଏକ ଭିନ୍ନ ବ୍ୟାଖ୍ୟା କରୁଛନ୍ତି ।

ଗାନ୍ଧୀଜୀ—ଆପଣ କ'ଣ ଭାବୁଛନ୍ତି ମୁଁ କୁସଂସ୍କାରରେ ବିଶ୍ୱାସ କରେ ? ମୁଁ ଜଣେ ପରମ ନାସ୍ତିକ ।

ଗାନ୍ଧୀଜୀ ଶେଷ ବାକ୍ୟଟି ଉପରେ ଗୁରୁତ୍ୱ ଦେଇ କହିଲେ ।

ଗାନ୍ଧୀଙ୍କର ଏହି ଉକ୍ତିରେ ପରେ ଗୁରୁତ୍ୱ ଦିଆଯାଇପାରେ । କିନ୍ତୁ ସେହି ପରିପ୍ରେକ୍ଷୀରେ ଏହା ଉପରେ ମୁଁ ଆଉ ଜୋର୍ ଦେଇନାହିଁ । ଯେହେତୁ ଆମର ଆଲୋଚନା ମୋ ଝିଅର ବିବାହର ନେଇ ଚାଲିଥିଲା ମୁଁ କେବଳ ସେହି ସନ୍ଦର୍ଭରେ ତାଙ୍କ ସହ ଆଲୋଚନାରେ ସମ୍ପୃକ୍ତ ରହିଲି ।

ଯେହେତୁ ସେମାନେ ଈଶ୍ୱରଙ୍କର ନାମ ଉଚ୍ଚାରଣ ନକରି ସତ୍ୟ ନାମରେ ଶପଥ ନେବା ଗାନ୍ଧୀଜୀ କହିଲେ ମୁଁ ଅନ୍ୟ ପ୍ରସଙ୍ଗ ଉପରେ ଆଲୋଚନା ଆରମ୍ଭ କଲି ।

ମୁଁ—ମୁଁ ଯେତେବେଳେ ଆଶ୍ରମରେ ରହିଥିଲି ମୁଁ ପ୍ରାର୍ଥନା ସଭାରେ ଯୋଗଦାନ କରୁନଥିଲି । କିନ୍ତୁ ମୋର ସେଠାରେ ରହିବା ସାମୟିକ ଥିଲା । ବର୍ତ୍ତମାନ ଅର୍ଜୁନ ରାଓ ଆଶ୍ରମରେ ଦୁଇବର୍ଷ ରହିବେ । ଆଶ୍ରମର ଶୃଙ୍ଖଳା ପାଳନ ନେଇ ଆପଣଙ୍କର ମତ ନିର୍ଦ୍ଦିଷ୍ଟ ଭାବରେ ଜାଣିବା ଉଚିତ ହେବ । ତାଙ୍କର ପ୍ରାର୍ଥନା ସଭାରେ ଯୋଗଦାନ ନେଇ ଆପଣଙ୍କର ମତାମତ କ'ଣ ବାପୁ ?

ଗାନ୍ଧୀଜୀ—ଆଶ୍ରମର ଶୃଙ୍ଖଳା ଦୃଷ୍ଟିରୁ ସେ ପ୍ରାର୍ଥନା ସଭାରେ ଯୋଗଦାନ କରନ୍ତୁ । କିନ୍ତୁ ଯଦିଓ ସେ ପ୍ରାର୍ଥନା ଆବୃତ୍ତିରେ ବିଶ୍ୱାସ କରନ୍ତି ନାହିଁ ତେବେ କେବଳ ଯୋଗ ଦେଇ ଏହା ନଗାଇଲେ ହେବ ।

ମୁଁ ଗାନ୍ଧୀଜୀଙ୍କର ଏହି ଉଦାରତା ଦେଖି ଅଭିଭୂତ ହେଲି । ଏହି ଉଦାହରଣରୁ ଆଦର୍ଶ ଓ ବାସ୍ତବତା ଭିତରେ ସେ କିପରି ସମନ୍ୱୟ ଆଣିଛନ୍ତି ତାହା ମୁଁ ହୃଦୟଙ୍ଗମ କଲି ।

ଗାନ୍ଧୀଜୀ କହିବାକୁ ଲାଗିଲେ, "ଧରନ୍ତୁ ଅର୍ଜୁନ ରାଓ ଦୁଇବର୍ଷ ପ୍ରାର୍ଥନା ସଭାରେ ଯୋଗଦାନ କଲାପରେ ଯଦି ସେ ଆସ୍ତିକ ପାଲଟି ଯା'ନ୍ତି ?"

ମୁଁ—ମୁଁ ଏଥିରେ ବହୁତ ଆନନ୍ଦିତ ହେବି ବାପୁଜୀ, ଜଣେ ବ୍ୟକ୍ତି ଭକ୍ତି-ମନୋଭାବ ନେଇ ନିରୀଶ୍ୱରବାଦୀ ହେଉ ଏହା ମୁଁ ଚାହେଁନାହିଁ । ଜଣେ ନିଜର ଆତ୍ମପ୍ରତ୍ୟୟରୁ ଆସ୍ତିକ ବା ନିରୀଶ୍ୱରବାଦୀ ହେବା ଦରକାର । ଯଦିଓ ନିଜର ଦୃଢ଼ ପ୍ରତ୍ୟୟରୁ ଅର୍ଜୁନ ରାଓ ଆସ୍ତିକ ହୋଇଯା'ନ୍ତି ମୁଁ ତାଙ୍କର ସେହି ପରିବର୍ତ୍ତନକୁ ସ୍ୱାଗତ କରିବି ।

ଗାନ୍ଧୀଜୀ—ତାହାହିଁ ଠିକ୍ । ମୁଁ ଜାଣେ ଆପଣ ନିଜ ବିଶ୍ୱାସରେ ମତାନ୍ଧ ନୁହନ୍ତି । ମୁଁ ଯାହା ଭାବୁଛି ଅର୍ଜୁନ ରାଓ ଆସ୍ତିକ ହେବା ପରିବର୍ତ୍ତେ ସେ ଓ ଆପଣ ମିଶି ଏହି ବୁଢ଼ାକୁ (ମୋତେ) ନିରୀଶ୍ୱରବାଦୀ କରିଦେବେ । (ସେ ମୋତେ ଏହା କହି ଜୋର୍‌ରେ ହସିବାକୁ ଲାଗିଲେ) ।

ଏଥିରୁ ମୁଁ ତାଙ୍କ ଉଦାର ହୃଦୟଭାବର ପରିଚୟ ଲାଭ କଲି ।

ଫେବୃଆରୀ ୧୯୪୬ରେ ଅର୍ଜୁନ ରାଓ ଗାନ୍ଧୀଜୀଙ୍କ ସହିତ ସେବାଗ୍ରାମକୁ ଗଲେ । ସେ ସେଠାରେ ଦୁଇବର୍ଷ ରହିଲେ । ସେ ପ୍ରାର୍ଥନା ସଭାରେ ଯୋଗ ଦେଉଥିଲେ; କିନ୍ତୁ କୌଣସି ପ୍ରାର୍ଥନା ଆବୃତ୍ତି କରୁନଥିଲେ ।

୧୯୪୭ ଶେଷଭାଗ ଆଡ଼କୁ ଗାନ୍ଧୀଜୀ ମୋତେ ସେମାନଙ୍କର ବିବାହ ଏପ୍ରିଲ୍ ୧୯୪୮ରେ ହେବାକୁ ଜଣାଇଲେ । ଆଶ୍ରମର ସମସ୍ତ ଆନ୍ତେବାସୀବୃନ୍ଦ ବାପୁଜୀଙ୍କର ଏହି ନିଷ୍ପତ୍ତି ଜାଣିଥିଲେ । ଫଳରେ ଆଶ୍ରମରେ ମାର୍ଚ୍ଚ ୩ ତାରିଖ ୧୯୪୮ରେ ଅର୍ଜୁନ ରାଓ ଓ ମନୋରମା ମଧ୍ୟରେ ବିବାହ ସମ୍ପାଦିତ ହେଲା । ସେହି ସମୟରେ ଈଶ୍ୱରଙ୍କର ନାମ ଆଦୌ ଉଚ୍ଚାରଣ କରାଯାଇ ନାହିଁ । ବାପୁଜୀଙ୍କର ନିର୍ଦ୍ଦେଶକୁ ଏହିପରି ପୂରଣ କରାଯିବା ସହିତ ମୋର ନିରୀଶ୍ୱରବାଦୀ ଜୀବନଦର୍ଶନକୁ ମଧ୍ୟ ସ୍ୱୀକାର କରାଗଲା ।

ସେହି ବିବାହ ଉତ୍ସବରେ ଅତିଥିମାନଙ୍କ ସମ୍ମୁଖରେ ପଣ୍ଡିତ ସୁନ୍ଦରଲାଲ ଭାଷଣ ଦେଇ ଦିଲ୍ଲୀର ସାଂପ୍ରଦାୟିକ ଗଣ୍ଡଗୋଳ ସମୟରେ ସେଠାରେ ବାପୁଜୀ ତାଙ୍କୁ କହିଥିବା ଗୋଟିଏ କଥା ପ୍ରକାଶ କଲେ । ବାପୁଜୀ ତାଙ୍କୁ କହିଥିଲେ ଯେ ଯଦିଓ ନିରୀଶ୍ୱରବାଦୀ ହେବା ଫଳରେ ସାମ୍ପ୍ରଦାୟିକ ଘୃଣା ଓ ଦଙ୍ଗାର ଅବସାନ ହୋଇପାରିବ ତା'ହେଲେ ଏହି ଲୋକମାନେ ନିରୀଶ୍ୱରବାଦ ଗ୍ରହଣ କରିବା ଉଚିତ । ତାଙ୍କର ଏହି ମନ୍ତବ୍ୟରୁ ଏହା ସ୍ପଷ୍ଟ ଯେ ବାପୁଜୀ କୌଣସି ଆଦର୍ଶକୁ ତା'ର ବୌଦ୍ଧିକ ବା ଭାବଗତ ମାନଦଣ୍ଡରୁ ଗ୍ରହଣ ନକରି ବାସ୍ତବ ଜୀବନରେ ତା'ର ତାତ୍ପର୍ଯ୍ୟ ଓ ପରିଣାମ ଦୃଷ୍ଟିରୁ ଗ୍ରହଣ କରୁଥିଲେ । ଅର୍ଥାତ୍ ଯଦି ନିରୀଶ୍ୱରବାଦଦ୍ୱାରା ମଣିଷ ସମାଜ ଅଧିକ ସଭ୍ୟ ହୋଇପାରିବ ତେବେ ସେ ଏହାକୁ କେବେ ବିରୋଧ କରିବେ ନାହିଁ ।

ନବମ ପରିଚ୍ଛେଦ :

# ପାର୍ଥକ୍ୟ

ମାର୍ଚ୍ଚ ୩୦, ୧୯୪୫ରେ ଆଲୋଚନା ସମୟରେ ବାପୁଜୀ ମୋତେ କହିଥିଲେ ଯେ ଯଦିବା ତାଙ୍କର ଜୀବନାଦର୍ଶ ମୋଠାରୁ ଭିନ୍ନ ତଥାପି ସେ ମୋତେ ସାହାଯ୍ୟ କରିବେ । ମୋ ଝିଅ ବିବାହର ତାଙ୍କ ଆଶ୍ରମରେ ବ୍ୟବସ୍ଥା କରିବା ସହିତ ମୋର ଦୃଷ୍ଟିଭଙ୍ଗୀର ସମର୍ଥନରେ ଯେଉଁ ଉଦାରତା ଦେଖାଇଲେ ତାହା ତାଙ୍କର ମୋ ପ୍ରତି ସହାନୁଭୂତି କହିଲେ ଅତ୍ୟୁକ୍ତି ହେବ ନାହିଁ । ଅବଶ୍ୟ ସେ ମୋତେ ଏହା ମଧ୍ୟ ବୁଝାଇଥିଲେ ଯେ ଆମ ଉଭୟଙ୍କର କାର୍ଯ୍ୟପ୍ରଣାଳୀ ପରସ୍ପରଠାରୁ ପୃଥକ୍ । ତାଙ୍କ ସହିତ ମୋର ହୋଇଥିବା ପତ୍ରାଳାପରୁ ଏହି ପାର୍ଥକ୍ୟ ସୁସ୍ପଷ୍ଟ ।

ମାର୍ଚ୍ଚ ୧୯୪୬ରେ ମୁଁ ସମ୍ବାଦପତ୍ରରୁ ପଢ଼ିଲି ଯେ ବାପୁଜୀ ବମ୍ବେରେ ତାଙ୍କର ରହଣି ହରିଜନ ବସ୍ତିରେ ଠିକ୍ କରିବାକୁ ଚାହୁଁଛନ୍ତି । ଏହାପରେ ବମ୍ବେ ପରି ଦିଲ୍ଲୀରେ ମଧ୍ୟ ସେ ହରିଜନ ମନ୍ଦିରରେ ରହିବାକୁ ଆଗ୍ରହ ପ୍ରକାଶ କରିଛନ୍ତି ।

ହରିଜନମାନଙ୍କ ଉପରେ ଯେଉଁ ଅମାନୁଷିକ ବାସନ୍ଦ ବ୍ୟବସ୍ଥା ଭାରତୀୟ ସମାଜରେ କରାଯାଇଛି ସେ ପରିପ୍ରେକ୍ଷୀରେ ଗାନ୍ଧୀଜୀଙ୍କର ଏହି ରହଣି ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା । ମୁଁ ଏଥିପାଇଁ ଗାନ୍ଧୀଜୀଙ୍କୁ ଅଭିନନ୍ଦନ ଜଣାଇ ଏହିପରି ପତ୍ର ଲେଖିଥିଲି—

ଗତ ପାଞ୍ଚ ଛ' ବର୍ଷ ଧରି ମୁଁ ଓ ମୋର ସହଯୋଗୀବୃନ୍ଦ ଅସ୍ପୃଶ୍ୟତା ନିବାରଣ ପାଇଁ ହରିଜନମାନଙ୍କ ସହିତ ଏକାଠି ରହୁଛୁ ଓ ତାଙ୍କ ସହ ଏକାଠି ବସି ଖାଉଛୁ । ଏହି କାର୍ଯ୍ୟଦ୍ୱାରା ସେମାନଙ୍କ ସାମାଜିକ ନ୍ୟୂନତା ଦୂରୀଭୂତ ହେବା ମୁଁ ଅନୁଭବ କରୁଛୁ; କିନ୍ତୁ ଆମର ଏହି କାର୍ଯ୍ୟ ମନ୍ଥର ଗତିରେ ଅଗ୍ରସର ହେଉଛି । ବାପୁଜୀଙ୍କ ପରି ବ୍ୟକ୍ତି ଯଦି ଏହି କାର୍ଯ୍ୟସୂଚୀ ଗ୍ରହଣ କରିବେ, ଯାହା ବମ୍ବେରେ କରିଗଲ, ତେବେ ତାହା ଲୋକଲୋଚନକୁ ଆସିବା ସହିତ ଅନେକ କର୍ମୀଙ୍କୁ ଏହା କରିବାକୁ ପ୍ରେରଣା ଦେଇପାରିବ ।

ଏହି ପରିପ୍ରେକ୍ଷୀରେ ଅନ୍ୟ ଏକ ପରାମର୍ଶ ବିଷୟରେ ବିଚାର କରାଯାଇ ପାରେ । ଏହା କରିବା ସହିତ ଆମମାନଙ୍କ ଭିତରେ ପ୍ରାଚୀର ସୃଷ୍ଟି କରୁଥିବା ଜାତି

ଓ ସମ୍ପ୍ରଦାୟଗତ ଗ୍ରୁପଗୁଡ଼ିକୁ ଦୂର କରିବା ପାଇଁ ମଧ୍ୟ ଚେଷ୍ଟା କରାଯିବା ଉଚିତ । ଅସ୍ପୃଶ୍ୟତା ଦୂରୀଭୂତ ହେବା ସହିତ ହରିଜନମାନେ ନିଜକୁ ନ୍ୟୂନ ମନେ ନକରି ସମାଜର ସାଧାରଣ ସ୍ରୋତ ସହିତ ସାମିଲ ହେବା ଆବଶ୍ୟକ । ସେହିପରି ହିନ୍ଦୁ ଓ ମୁସଲମାନମାନଙ୍କ ଭିତରେ ରହିଥିବା ଏହି ସମ୍ପ୍ରଦାୟଗତ ବିଭେଦ ମଧ୍ୟ ଦୂର ହେବା ଦରକାର । ଏହି ପ୍ରଚେଷ୍ଟା କେବଳ ଜାତି ଜାତି ବା ସମ୍ପ୍ରଦାୟ ସମ୍ପ୍ରଦାୟ ମଧ୍ୟରେ ସଦ୍ଭାବ ରକ୍ଷା ନକରି ଗୋଟିଏ ମଣିଷ ସମାଜ ଗଠନ ଦିଗରେ ସହାୟକ ହେବ । ସାମ୍ପ୍ରଦାୟିକ ସଦ୍ଭାବରୁ ସମ୍ପ୍ରଦାୟମାନଙ୍କର ଅବସ୍ଥିତିକୁ ସ୍ୱୀକାର କରାଯାଇଥାଏ । କିନ୍ତୁ ଗୋଟିଏ ମଣିଷ ସମାଜର ପରିକଳ୍ପନା ଭିତରେ କୌଣସି ଜାତି ବା ସମ୍ପ୍ରଦାୟ ନଥାଏ । ଗାନ୍ଧୀଙ୍କ ପରି ଜଣେ ମହାନ୍ ବ୍ୟକ୍ତି ସାମ୍ପ୍ରଦାୟିକ ସଦ୍ଭାବ ସୃଷ୍ଟି କରିପାରିବେ, କିନ୍ତୁ ଯେତେବେଳେ ତାଙ୍କର ବ୍ୟକ୍ତିଗତ ପ୍ରଭାବ ଚାଲିଯିବ ପୁଣି ସମ୍ପ୍ରଦାୟମାନଙ୍କ ଭିତରେ ବିଦ୍ୱେଷ ଆରମ୍ଭ ହେବ । ସୁତରାଂ ଏହାର ଏକ ସ୍ଥାୟୀ ପ୍ରତିକାର ହେଉଛି ସାମ୍ପ୍ରଦାୟିକ ସଦ୍ଭାବକୁ ଗୁରୁତ୍ୱ ଦେବା ପରିବର୍ତ୍ତେ ମଣିଷ ସମାଜ ମେ ଏକ ଏହିପରି ଏକ ମାନବବାଦୀ ଦୃଷ୍ଟିଭଙ୍ଗୀର ବିକାଶ କରାଇବା ।

ସମସ୍ତ ସାମ୍ପ୍ରଦାୟିକ ଗ୍ରୁପ ପରିହାର କଲେ ଗୋଟିଏ ମଣିଷ ସମାଜର ଅଭ୍ୟୁଦୟ ହୋଇପାରିବ । ସମ୍ଭବତଃ ଧର୍ମଗତ ବିଶ୍ୱାସ ପରିହାର କରିବା ଅର୍ଥ ଈଶ୍ୱରବିଶ୍ୱାସକୁ ମଧ୍ୟ ପରିତ୍ୟାଗ କରିବା; କାରଣ ପ୍ରତ୍ୟେକ ଧର୍ମର ଏକ ନିଜସ୍ୱ ଈଶ୍ୱର ବିଶ୍ୱାସ ରହିବା ଦେଖାଯାଏ । ଯଦିବା ସବୁ ଧର୍ମମାନେ ଏକ ଈଶ୍ୱରଙ୍କ କଥା କହନ୍ତି କିନ୍ତୁ ବାସ୍ତବ ପକ୍ଷରେ ପ୍ରତ୍ୟେକ ଧର୍ମର ଈଶ୍ୱରବିଶ୍ୱାସକୁ କେନ୍ଦ୍ର କରି ସାମ୍ପ୍ରଦାୟିକ ମନୋଭାବ ଓ ସମୟରେ ଉଗ୍ର ମତାନ୍ଧତା ସୃଷ୍ଟି ହୋଇଥାଏ । ଈଶ୍ୱର ବିଶ୍ୱାସ ଅପତ୍ୟ ହୋଇଥିବାରୁ ଏହା ସୃଷ୍ଟି ହେବା ମଧ୍ୟ ସମ୍ଭବ । ବସ୍ତୁତଃ ଏକ ମାନବସମାଜ ଗଠନ ଦିଗରେ ନିରୀଶ୍ୱରବାଦୀ ଜୀବନଦର୍ଶନ ଅଧିକ ପ୍ରାସଙ୍ଗିକ ମନେହୁଏ ।

ସକଳ ମାନବିକ ସମ୍ପର୍କକୁ ସୁଖ ଓ ଶାନ୍ତି ଉପରେ ପ୍ରତିଷ୍ଠା କରିବା କ୍ଷେତ୍ରରେ ଅସ୍ତିକତାବାଦୀ ଜୀବନଦର୍ଶନ ସାମ୍ପ୍ରଦାୟିକ ସଦ୍ଭାବ ଓ ଈଶ୍ୱର ପ୍ରୀତି ନିଶ୍ଚୟ ଆଣିବ । କିନ୍ତୁ ସାମ୍ପ୍ରଦାୟିକ ସଦ୍ଭାବ କ୍ଷେତ୍ରରେ ଅନ୍ତର୍ନିହିତ ରହିଥିବା ପ୍ରତିବନ୍ଧକ ଯୋଗୁଁ ଏହି ଲକ୍ଷ୍ୟ ହାସଲ ଦିଗରେ ଏହା ବିଶେଷ ସଫଳ ହୋଇପାରେ ନାହିଁ । ସୁତରାଂ ମଣିଷସମାଜ ଭିତରେ ଐକ୍ୟ ଓ ସ୍ଥାୟୀ ଶାନ୍ତି ପ୍ରତିଷ୍ଠା କରିବା ପାଇଁ ନିରୀଶ୍ୱରବାଦୀ ମୂଲ୍ୟବୋଧର ଉପଯୋଗିତାକୁ ବିସ୍ମରିକୁ ନଅଯାଇପାରେ ।

ମୋର ପତ୍ର ପାଇ ବାପୁଜୀ ଏହି ଉତ୍ତର ଦେଇଥିଲେ—

ହରିଜନ ମନ୍ଦିର, ନୂଆଦିଲ୍ଲୀ
ତା ୯. ୮. ୪୭

ପ୍ରିୟ ରାମଚନ୍ଦ୍ର ରାଓ,

ମୁଁ ଆପଣଙ୍କର ପତ୍ର ପାଇଛି । ଯଦିଓ ଆପଣଙ୍କର ଓ ମୋର ଚିନ୍ତାର ଓ କର୍ମପନ୍ଥା ଭିତରେ ଅଭିଦୃଶ୍ୟ ସାମଞ୍ଜସ୍ୟ ରହିଛି ତଥାପି ଆପଣଙ୍କର ପନ୍ଥା ମୋଠାରୁ ଉନ୍ନତ ବୋଲି ମୁଁ ଭାବୁଛି । ଏହା ସ୍ୱୀକାର କରିବା ସହିତ ମୁଁ କହିବାକୁ ଚାହେଁ ଯେ ଆପଣଙ୍କ ପନ୍ଥା ଓ ମୋ ଭିତରେ ମୌଳିକ ପାର୍ଥକ୍ୟ ରହିଛି ଓ ଆମର ଜୀବନଦର୍ଶନ ପରସ୍ପରଠାରୁ ମଧ୍ୟ ଭିନ୍ନ । କାରଣ ଆପଣ ସଚେତନ ଭାବରେ ଈଶ୍ୱରଙ୍କୁ ଅସ୍ୱୀକାର କରନ୍ତି । ମୁଁ କିନ୍ତୁ ସଚେତନ ଭାବରେ ଓ ସମ୍ଭବତଃ ଅଧିକ ପ୍ରଗତିଶୀଳ ଭାବରେ ଈଶ୍ୱରଙ୍କୁ ବିଶ୍ୱାସ କରେ । ସୁତରାଂ ଆପଣଙ୍କର ଅଭିଯୋଗ ତର୍କଣୀୟ ବୋଲି ମୁଁ ଭାବୁଛି । ଆମ ଭିତରୁ ଯିଏ ଅଧିକ ଦିନ ବଞ୍ଚି ରହିବ ସେ ହୁଏତ ଦୁଇଟି ପନ୍ଥାର ମୂଲ୍ୟାୟନ କରି କେଉଁଟି ଅଧିକ ଗ୍ରହଣୀୟ ତାହା ଠିକ୍ କରିବ ।

ମୁଁ ଏହିପରି ବୁଲୁଥିବା ପର୍ଯ୍ୟନ୍ତ ଆପଣ ମୋ ସହିତ ସମୟ କଟାଇବା ସମ୍ଭବ ହେବ ନାହିଁ । ମୁଁ ସେବାଗ୍ରାମରେ ରହିବା ସମୟରେ ଆପଣ ସେଠାକୁ ଆସିଲେ ଆମେ ଅଧିକ ଭାବ ବିନିମୟ କରିବା ।

ଆପଣଙ୍କର
ବାପୁ

ଏହି ପତ୍ରରୁ ବାପୁଜୀଙ୍କର ଦୃଷ୍ଟିକୋଣ ଓ ମୋ ଭିତରେ ଥିବା ପାର୍ଥକ୍ୟ ସୂଚିତ ହୁଏ । ଅବଶ୍ୟ ଆମର କର୍ମପନ୍ଥା ଓ କାର୍ଯ୍ୟର ସାମଞ୍ଜସ୍ୟତା ଭିତରେ ଏହି ପାର୍ଥକ୍ୟ ବିଶେଷ ଗୁରୁତ୍ୱପୂର୍ଣ୍ଣ ନୁହେଁ ।

ଏହି ପତ୍ରଟି ସହିତ ଗୋଟିଏ ଘଟଣା ସଂଶ୍ଳିଷ୍ଟ ରହିଛି । ଏହି ପତ୍ରଟିକୁ ବାପୁଙ୍କ ନିର୍ଦ୍ଦେଶରେ ଅନ୍ୟ କେହି ଲେଖିଥିଲେ ଓ ବାପୁଜୀ ଶେଷରେ ଦସ୍ତଖତ କରିଥିଲେ । ପତ୍ରର ଶେଷରେ 'ଆପଣଙ୍କର ବିଶ୍ୱସ୍ତ' ଲେଖାଯାଇଥିଲା ଓ ବାପୁଜୀ ଦସ୍ତଖତ କରିବା ବେଳେ 'ଆପଣଙ୍କର' ରଖି 'ବିଶ୍ୱସ୍ତ' ଶବ୍ଦଟିକୁ କାଟି ଦେଇଥିଲେ । 'ବିଶ୍ୱସ୍ତ' ଶବ୍ଦଟିକୁ କାହିଁକି କାଟିଛନ୍ତି ବୁଝିବାପାଇଁ ମୁଁ ବାପୁଜୀଙ୍କୁ ଲେଖିଲି :

ମୁଜଫରପୁର
ତା ୨. ୫. ୧୯୪୭

ବାପୁଜୀ,

ଆପଣଙ୍କର ୯. ୪. ୪୭ର ପତ୍ର ପାଇଲି । ଆପଣ 'ବିଶ୍ୱସ୍ତ' ଶବ୍ଦଟିକୁ କାଟି ଦେଇଥିବାରୁ ମୁଁ ଦ୍ୱନ୍ଦ୍ୱରେ ପଡ଼ିଛି । ଏହାର ତାତ୍ପର୍ଯ୍ୟ ମୁଁ ବୁଝିପାରୁ ନାହିଁ । ଏହା ମୋତେ ଜଣାଇବାକୁ ମୁଁ ପ୍ରାର୍ଥନା କରୁଛି ।

ଆପଣଙ୍କର ବିଶ୍ୱସ୍ତ
ଜି. ରାମଚନ୍ଦ୍ର ରାଓ

ବାପୁଜୀଙ୍କର ସଚିବ ଶ୍ରୀମତୀ ଅମୃତ କାଉରଙ୍କ ପାଖରୁ ଏହି ଉତ୍ତର ପାଇଲି :

ସିମଲା
ତା ୭. ୫. ୧୯୪୭

ପ୍ରିୟ ରାମଚନ୍ଦ୍ର ରାଓଜୀ,

ପୂଜ୍ୟ ବାପୁଜୀ ଆପଣଙ୍କର ପତ୍ର ପାଇଛନ୍ତି । 'ଆପଣଙ୍କର ବିଶ୍ୱସ୍ତ' ଏକ ଔପଚାରିକ ସମ୍ବୋଧନ ହୋଇଥିବାରୁ 'ବିଶ୍ୱସ୍ତ' ଶବ୍ଦଟିକୁ କାଟି ଦିଆଯାଇଛି । ଏଥିରେ ଗୁରୁତ୍ୱ ଦେବାରେ କିଛି ନାହିଁ ।

ମୁଁ ବାପୁଜୀଙ୍କର ପତ୍ରଟିକୁ ଆପଣଙ୍କୁ ଫେରାଇ ଦେଉଛି ।

ଆପଣଙ୍କର
ଅମୃତ କାଉର ।

ଦିଲ୍ଲୀରେ କେତେକ ଅନୁଭୂତିରୁ ମୁଁ ବାପୁଜୀଙ୍କର ନିକଟତର ହୋଇ-ଉଠୁଥିବା ବେଶ୍ ଅନୁଭବ କଲି ।

ମୁଁ ଜାତୀୟ କଂଗ୍ରେସର ସାଂଗଠନିକ କାର୍ଯ୍ୟରେ ସଂଲଗ୍ନ ହୋଇ ୧୯୪୭ ଶେଷଭାଗକୁ ଦିଲ୍ଲୀର କଂଗ୍ରେସ କାର୍ଯ୍ୟାଳୟରେ ରହୁଥାଏ । ସେହି ସମୟରେ ଗାନ୍ଧୀଜୀ ଅବସ୍ଥାନ କରୁଥିବା ଦିଲ୍ଲୀସ୍ଥିତ ଭଙ୍ଗି କଲୋନି (ହରିଜନ ବସ୍ତି)କୁ ମୁଁ ମଝିରେ ମଝିରେ ଯାଉଥିଲି । ନାସ୍ତିକ୍ୟବାଦୀ ବିଚାରଧାରା ଉପରେ ମୋର ତାଙ୍କ ସହିତ ଅଳ୍ପ କଥାବାର୍ତ୍ତା ସେଠାରେ ମଧ୍ୟ ହୋଇଥିଲା ।

ଥରେ ଅସ୍ପୃଶ୍ୟତା ଦୂରୀକରଣ ପାଇଁ ମୋର କାର୍ଯ୍ୟକ୍ରମ ବିଷୟରେ ସେ ମୋତେ ପ୍ରଶ୍ନ କରିଥିଲେ ।

ଉତ୍ତରରେ ମୁଁ କହିଥିଲି ଯେ ୧୯୨୦ ମସିହାରେ ହୋଇଥିବା ବିଦେଶୀ ବସ୍ତ୍ର ବର୍ଜନରେ ଗଣଜାଗରଣ ପରି ସାର୍ବଜନୀନ ପଙ୍କ୍ତିଭୋଜନ କରିଥିରେ ଅସ୍ପୃଶ୍ୟତା ବିରୁଦ୍ଧରେ ଜନଚେତନା ସୃଷ୍ଟି ହେବା ଆବଶ୍ୟକ ।

ଗାନ୍ଧୀଜୀ—କିନ୍ତୁ ଏହି ପଙ୍କ୍ତିଭୋଜନ ଜରିଆରେ ଲୋକମାନଙ୍କର ଦୃଷ୍ଟିକୋଣକୁ ଏପରି ପ୍ରଭାବିତ କରିବା କ'ଣ ସମ୍ଭବ ?

ମୁଁ—ନହେଲେ ଅସବର୍ଣ୍ଣ ବିବାହ ମାଧ୍ୟମରେ ଏହା କରାଯାଇପାରିବ । ଯେହେତୁ ଆମର ଅନେକ ଜାତୀୟତାବାଦୀ ଓ କଂଗ୍ରେସ ଲୋକମାନେ ମଧ୍ୟବର୍ତ୍ତୀ-କାଳୀନ ସରକାରରେ ରହିଛନ୍ତି, ତେଣୁ ଯେକୌଣସି ଅସବର୍ଣ୍ଣ ବିବାହକୁ ଘୋଷଣା କରାଯାଇ ଏହାରୁ ସରକାରୀ ବିଜ୍ଞାପନ ମାଧ୍ୟମରେ ପ୍ରକାଶ କରାଯାଇପାରିବ । ଏହା ସହିତ ପ୍ରତ୍ୟେକ ଅସବର୍ଣ୍ଣ ବିବାହ କରିଥିବା ଦମ୍ପତିଙ୍କୁ ସରକାରୀ ସାହାଯ୍ୟ ଭାବରେ ପାଞ୍ଚଶହ ଟଙ୍କା ଓ ଏହି ଦମ୍ପତିଙ୍କର ଦୁଇଟି ସନ୍ତାନ ପ୍ରତ୍ୟେକଙ୍କୁ ଷଣ୍ମାସିକ ପଚିଶ ଟଙ୍କା ଲେଖାଏଁ ଦୁଇବର୍ଷ ସାହାଯ୍ୟ ଦେଇ ପ୍ରୋତ୍ସାହନ ଦିଆଯାଇପାରିବ ।

ଗାନ୍ଧୀଜୀ—ଆପଣ ଆର୍ଥିକ ସାହାଯ୍ୟ କଥା କାହିଁକି ପ୍ରସ୍ତାବ ଦେଉଛନ୍ତି ? କେବଳ କ'ଣ ପ୍ରଚାର ଯଥେଷ୍ଟ ହେବ ନାହିଁକି ?

ମୁଁ—ଅନେକ ସମୟରେ ଅସବର୍ଣ୍ଣ ବିବାହ କରୁଥିବା ବ୍ୟକ୍ତିବିଶେଷ ସମାଜର ଅର୍ଥନୈତିକ ବାସନ୍ଦର ସମ୍ମୁଖୀନ ହୋଇଥାନ୍ତି । ଅନେକ ଅସବର୍ଣ୍ଣ ବିବାହକୁ ନୀତିଗତ ଭାବରେ ସମର୍ଥନ କରୁଥିଲେ ବି ସାମାଜିକ ବାସନ୍ଦ ନେଇ ଆର୍ଥିକ ପ୍ରତିବନ୍ଧକର ସମ୍ମୁଖୀନ ହେବା ଭାବି ଏଥିରୁ ଦୂରେଇ ଯାଉଛନ୍ତି । ଯେପର୍ଯ୍ୟନ୍ତ ଆମର ପ୍ରଚଳିତ ଅର୍ଥନୈତିକ ବ୍ୟବସ୍ଥା ଚାଲୁ ରହିଛି ଏହି ଆର୍ଥିକ ଚାପ ହିଁ ହେଉଛି ସବୁଠାରୁ ବଡ଼ ପ୍ରତିବନ୍ଧକ । ସୁତରାଂ ଏକ ସରକାରୀ ବିଜ୍ଞାପନ ଜରିଆରେ ଏହି ଦମ୍ପତିଙ୍କୁ ଆଇନଗତ ସହାୟତା ଓ ଆର୍ଥିକ ସାହାଯ୍ୟ ଦେବା ଦ୍ୱାରା ସେମାନଙ୍କୁ ସାମାଜିକ ଅସମ୍ମାନ ଓ ଆର୍ଥିକ ବାସନ୍ଦରୁ ରକ୍ଷା କରାଯାଇ ପାରିବ । ସରକାରଙ୍କର ଏହି ନିୟମକୁ ପାଞ୍ଚ/ଦଶ ବର୍ଷ କାର୍ଯ୍ୟକାରୀ କରିବା ଆବଶ୍ୟକ ହେବ ଯେଉଁ ସମୟରେ କି ଏହି ଆନ୍ଦୋଳନର ଏକ ଭିତ୍ତି ପଡ଼ିବା ସହିତ ଏହା ଆସ୍ତେ ଆସ୍ତେ ଜନ ସମର୍ଥନ ଲାଭ କରିପିବ ।

ଗାନ୍ଧୀଜୀ—ଏହା ଅବଶ୍ୟ ଠିକ୍ । କିନ୍ତୁ ଏହାଦ୍ୱାରା ବିବାହର ପବିତ୍ରତା ନଷ୍ଟ ହେବ । ଅର୍ଥର ଆକର୍ଷଣ ଦେଖାଇ ବିବାହ କରାଇବା ବେଶ୍ୟାବୃତ୍ତି ସଦୃଶ ହେବ ।

ମୁଁ—ସମ୍ପ୍ରତି ଯୌତୁକ ଓ ଜାତି ଭିତରେ ସୀମିତ ଥିବା ବିବାହ ବି କୌଣସି ଦୃଷ୍ଟିରୁ ଭଲ ନୁହେଁ । ଅନ୍ତର୍ଜାତି ବିବାହ ପାଇଁ ସରକାରୀ ପ୍ରୋତ୍ସାହନ ସାମାଜିକ କଟକଣାକୁ ଦୂର କରିବାରେ ନିଶ୍ଚୟ ସହାୟକ ହେବ, ଯଦିବା ଅର୍ଥିକ ସାହାଯ୍ୟ ପରି ମନ୍ଦ ବ୍ୟବସ୍ଥା ଏଥିରେ ସାମିଲ ହୋଇ ରହିଛି । ସମାଜର ପ୍ରଚଳିତ ଆର୍ଥିକ

ବ୍ୟବସ୍ଥାରେ ପରିବର୍ତ୍ତନ ନହେବା ପର୍ଯ୍ୟନ୍ତ ଏ କ୍ଷେତ୍ରରେ ଅର୍ଥିକ ଉଗଟି ପ୍ରତି ଉଦାସୀନ ରହିବା ଉଚିତ ହେବ ନାହିଁ । ସାମାଜିକ ଦୃଷ୍ଟିକୋଣରୁ ବିବାହ ବନ୍ଧନ କଥା ମଧ୍ୟ ବିଗ୍ଭର କରାଯାଉ । ଜନସଂଖ୍ୟାର ବୃଦ୍ଧି ପାଇଁ ବଡ଼ ପରିବାର କରିବାକୁ ଓ ଏପରିକି ଅବିବାହିତ ସେବିକାମାନଙ୍କୁ ବିବାହ କରିବାକୁ ସୌଭିଗ୍ୟିସ୍ତ ଶାସନ ବ୍ୟବସ୍ଥାରେ ଅର୍ଥିକ ପ୍ରୋତ୍ସାହନ ଦିଆଯାଉ ନାହିଁକି ? ଏହି ରାଷ୍ଟ୍ରସମୂହ ଯୁଦ୍ଧ-କାଳୀନ ଭିତ୍ତିରେ ତାଙ୍କର ଜନସଂଖ୍ୟା ବୃଦ୍ଧି କରିବା ପାଇଁ ପଦକ୍ଷେପମାନ ନେଉଛନ୍ତି । ଆମେ କିନ୍ତୁ ସାମାଜିକ ବାସନ୍ଦ ବ୍ୟବସ୍ଥାକୁ ଦୂର କରିବା ପାଇଁ ଆନ୍ତର୍ଜାତି ଓ ଅସବର୍ଣ୍ଣ ବିବାହକୁ ପ୍ରୋତ୍ସାହନ ଦେବା ଉଦ୍ଦେଶ୍ୟରେ ଏହା କରିବା । ବିବାହର ପବିତ୍ରତା ପ୍ରଶ୍ନଟିକୁ ସାମାଜିକ ପ୍ରଗତିଠାରୁ ଅଲଗା କରି ବିଗ୍ଭର କରିବା ଉଚିତ ହେବ ନାହିଁ ।

ଅତଃପରେ ବାପୁଜୀଙ୍କର ଏକ ମନ୍ତବ୍ୟରେ ମୁଁ ଆଶ୍ଚର୍ଯ୍ୟ ହେଲି । ସେ କହିଲେ, "ବହୁ ପୂର୍ବରୁ ଆପଣ ନାସ୍ତିକବାଦ ପନ୍ଥାରେ କାର୍ଯ୍ୟ କରୁଛନ୍ତି । ବର୍ତ୍ତମାନ ଆପଣ ଏହି ଶବ୍ଦକୁ ପରିହାର କରନ୍ତୁ । ଏହା ଆପଣଙ୍କର କାର୍ଯ୍ୟକୁ ସାହାଯ୍ୟ କରୁନାହିଁ ।"

ମୁଁ—ମୁଁ ଅବଶ୍ୟ ସଚେତନ ଯେ ନାସ୍ତିକବାଦ ଏକ ଘୃଣିତ ଶବ୍ଦ । ଅକ୍ସଫୋର୍ଡ ଅଭିଧାନରେ ଏହାର ଅର୍ଥ ଈଶ୍ୱର-ବିମୁଖତା ବା ଧୂର୍ତ୍ତତା ବୋଲି ଲୁହାଯାଇଛି । ଏହି ଶବ୍ଦ ପ୍ରତି ସ୍ଥଳବିଶେଷରେ ଯେଉଁ ଘୃଣା ବା ଦ୍ୱେଷ ପ୍ରକାଶ ପାଇଥାଏ ତାହା ନେଇ ମୁଁ ସଚେତନ । ଏହା ଜାଣି ମଧ୍ୟ ଏହି ଶବ୍ଦଟି ମୁଁ ପ୍ରୟୋଗ କରୁଛି କାରଣ ଏହା ମଣିଷ ଭିତରେ ଆତ୍ମବିଶ୍ୱାସ ଓ ସାମାଜିକ ଦୃଷ୍ଟିଭଙ୍ଗୀ ସୃଷ୍ଟି କରିବାରେ ସହାୟକ । ନାସ୍ତିକବାଦ ହେଉଛି ସଭ୍ୟତାର ପ୍ରଗତିଶୀଳ ମୂଲ୍ୟବୋଧର ପ୍ରତୀକ । ଏହି ଚିନ୍ତାଧାରାର ଯେଉଁସବୁ ତାତ୍ପର୍ଯ୍ୟ ବିଷୟରେ ମୁଁ ଚିନ୍ତା କରୁଛି ସେ ସବୁ ଆପଣଙ୍କ ପାଖରେ ଉପସ୍ଥାପନ କରିପାରିନାହିଁ । ମୁଁ ଆଶା କରୁଛି ଆପଣ ସମୟ ଦେଲେ ମୁଁ ଏହି ବିଗ୍ଭରଧାରାର ଏକ ବିସ୍ତୃତ ରୂପରେଖ ଉପସ୍ଥାପନ କରିବି ଓ ଏହାକୁ ଏକ ପୁସ୍ତକ ଆକାରରେ ପ୍ରକାଶ କରିବି ।

ଗାନ୍ଧୀଜୀ—ମୁଁ ଆପଣଙ୍କର ବହିର ପାଣ୍ଡୁଲିପିକୁ ନିଶ୍ଚୟ ପଢ଼ିବି । ମୁଁ ସେବାଗ୍ରାମ ଫେରିବା ପରେ ଆପଣ ସେଠାକୁ ଆସନ୍ତୁ, ସେଠାରେ ଆମେ ଏ ବିଷୟରେ ବିସ୍ତୃତ ଆଲୋଚନା କରିବାର ଅବକାଶ ପାଇବା ।

(ଗାନ୍ଧୀଜୀ ଶ୍ରଦ୍ଧାର ସହ ଏହା ପ୍ରକାଶ କଲେ)

ଅତଃପରେ ମୁଁ ଭଙ୍ଗି କଲୋନୀକୁ ଯିବା ସମୟକୁ ବାପୁଜୀଙ୍କର ସାନ୍ଧ୍ୟ ଭ୍ରମଣ ସମୟ ହୋଇଯାଇଥିଲା । ଆଗନ୍ତୁକମାନେ ତାଙ୍କ ରାସ୍ତାର ଦୁଇ ପାର୍ଶ୍ୱରେ

ଧାଡ଼ିବାନ୍ଧି ଛିଡ଼ାହୋଇଯାଇଥିଲେ । ଏହିଭଳି ସମୟରେ ମୁଁ ବାପୁଜୀଙ୍କ ସାକ୍ଷାତ କରିବାକୁ ଆଶା ହିଁ କରି ନାହିଁ । ବାପୁଜୀ ତାଙ୍କ କୁଟୀରରୁ ବାହାରି ରାସ୍ତାରେ କେତେ ପାଦ ଆଗକୁ ଚାଲିକରି ଗଲେ । ତାପରେ ସେ ପଛକୁ ଫେରି ମୁଁ ଛିଡ଼ା ହୋଇଥିବା ସ୍ଥାନ ଆଡ଼କୁ ଅଗ୍ରସର ହେଲେ । ବାପୁଜୀ ଏପଟକୁ କାହିଁକି ଆସୁଛନ୍ତି ବୋଲି ମୁଁ ଆଶ୍ଚର୍ଯ୍ୟ ହେଲି । ସେ ମୋର ଖୁବ୍ ନିକଟକୁ ଆସି ପଚାରିଲେ, "ଆପଣ ମୋ ସହିତ କଥା ହେବାକୁ ଚାହାନ୍ତି କି ?"

ମୁଁ ଆଶ୍ଚର୍ଯ୍ୟ ହୋଇଯାଇ କହିଲି, "ନା, ବାପୁ । ମୋର ଆପଣଙ୍କର ପରାମର୍ଶ ନେବା ଆବଶ୍ୟକ ହେଲେ ମୁଁ ଆପଣଙ୍କ ପାଖକୁ ଆସିବି ।"

ସେ ହସିକରି କହିଲେ, "ହଁ, ଆପଣଙ୍କ ପରି ବନ୍ଧୁମାନେ ମୋତେ ସୁଖରେ ରଖିପାରିଲେ ମୁଁ ବହୁତ ଦିନ ବଞ୍ଚିବି ।"

ବାପୁଜୀଙ୍କ ସହ ମୋର ପାର୍ଥକ୍ୟ ଥିଲେ ବି ସେ ମୋତେ ଆପଣାର କରି ନେଇଥିଲେ । ସେ ମୋତେ କଥା ପ୍ରସଙ୍ଗରେ ଓ ତାଙ୍କ ପତ୍ରରେ କହିଥିଲେ ଯେ ସେବାଗ୍ରାମରେ ସେ ଅବସ୍ଥାନ କରିବା ସମୟରେ ମୋ ସହିତ ଆଲୋଚନା କରିବେ । ପ୍ରତ୍ୟେକ ଦିନ ଅଧଘଣ୍ଟା ଧରି ଦଶ ବାରଦିନ ତାଙ୍କ ସହ ନିରୀଶ୍ୱରବାଦର ବିଭିନ୍ନ ଦିଗ ଉପରେ ଆଲୋଚନା କରିବା ପାଇଁ ସେ ମୋତେ କହିଥିଲେ । ଏହି ସୁଯୋଗକୁ ଆଖିଆଗରେ ରଖି ମୁଁ ତାଙ୍କ ସହ ନିର୍ଦ୍ଦିଷ୍ଟ ପ୍ରସଙ୍ଗ ଛଡ଼ା କୌଣସି ବିସ୍ତୃତ ବା ଗମ୍ଭୀର ଆଲୋଚନାରେ ବ୍ରତୀ ହେଉନଥିଲି ।

ଦଶମ ପରିଚ୍ଛେଦ :

# ଗାନ୍ଧୀଙ୍କ ଈଶ୍ୱର

ଗାନ୍ଧୀଜୀଙ୍କର ହତ୍ୟା ମଣିଷ ସଭ୍ୟତା ପ୍ରତି ଯେପରି ଏକ ଦାରୁଣ ବିପର୍ଯ୍ୟୟ ନିରୀଶ୍ୱରବାଦ ପାଇଁ ମଧ୍ୟ ସେହିପରି ଏକ ଅପୂରଣୀୟ କ୍ଷତି । ତାଙ୍କ ସହ ନିରୀଶ୍ୱର-ବାଦ ଉପରେ ବିଶଦ ଆଲୋଚନା ପାଇଁ ସେହି ସୁଯୋଗକୁ ମୁଁ ଉତ୍କଣ୍ଠାର ସହ ଅପେକ୍ଷା କରିଥିଲି । ଏହା ଭିତରେ ମୁଁ ତାଙ୍କର ନିକଟତର ହୋଇଯାଇଥିଲି । ମୋର ତାଙ୍କ ସହ ଅନୁଭୂତିରୁ ମୋର ଏହି ଆତ୍ମବିଶ୍ୱାସ ସୃଷ୍ଟି ହୋଇଥିଲା ଯେ ତାଙ୍କ ସହ ଏହି ଆଲୋଚନା ହୋଇଥିଲେ ମୁଁ ତାଙ୍କର ଆହୁରି ନିବିଡ଼ତର ହୋଇ ପାରିଥାନ୍ତି । ସେ ନିରୀଶ୍ୱରବାଦୀ ଦୃଷ୍ଟିଭଙ୍ଗୀର ବିରୋଧୀ ନଥିଲେ ବା ତାଙ୍କର ଈଶ୍ୱର ପ୍ରତୀତି ମଧ୍ୟ ଏହା ବିରୁଦ୍ଧାଚରଣ କରୁନଥିଲା । କୌଣସି ବିଚାରଧାରାର ବୌଦ୍ଧିକ ବା ତାତ୍ତ୍ୱିକ ଆଲୋଚନାଠାରୁ ସେ ତା'ର ବାସ୍ତବ ପ୍ରୟୋଗ ଉପରେ ଅଧିକ ଗୁରୁତ୍ୱ ଦେଉଥିଲେ । ସବୁ କ୍ଷେତ୍ରରେ ତାଙ୍କ ବିଚାର ବିମର୍ଶରେ ମଣିଷ ହିଁ ପ୍ରାଧାନ୍ୟ ଲାଭ କରିଥିଲା । ମଣିଷ ପ୍ରତି ଏହି ଗଭୀର ଏକାତ୍ମତା ଯୋଗୁଁ ସେ କହୁଥିଲେ, "ମୋର ଆସ୍ତିକତାବାଦ ଠିକ୍ କି ଆପଣଙ୍କର ନିରୀଶ୍ୱରବାଦ ଠିକ୍ ତାହା କହିବା କଷ୍ଟକର ।" କୌଣସି ଆଦର୍ଶର ପ୍ରୟୋଗ କ୍ଷେତ୍ରରେ ସେ ନିଜ ବିଚାରରେ ମତାନ୍ଧ ନଥିଲେ ବା କିମ୍ବର ଭାବବିଳାସ ନେଇ ଏହାର ପ୍ରଶଂସାମୁଖର ନଥିଲେ । ଯେକୌଣସି ଚିନ୍ତାଧାରାର ଅଭିମୁଖ୍ୟ ବିଚାର କରିବାରେ ସେ ଥିଲେ କ୍ରାନ୍ତଦର୍ଶୀ ପୁରୁଷ । ଯାହା ମଣିଷ ସମାଜର ହିତସାଧନ ଦିଗରେ ପ୍ରୟୋଗ ହୋଇପାରିବ ତାହା ତାଙ୍କ ପନ୍ଥାଠାରୁ ପୃଥକ୍ ଥିଲେ ବି ସେ ତାହାକୁ ପ୍ରତ୍ୟାଖ୍ୟାନ କରୁନଥିଲେ । ମୋଟ ଉପରେ ତାଙ୍କର ଈଶ୍ୱର ପ୍ରତୀତି ଓ ନିରୀଶ୍ୱରବାଦର ମୂଲ୍ୟାୟନ ତାଙ୍କର ସମ୍ବେଦନଶୀଳ ଓ ମାନବବାଦୀ ଆଭିମୁଖ୍ୟ ଉପରେ ପର୍ଯ୍ୟବସିତ ଥିଲା ।

ଏହା ସହିତ ଗାନ୍ଧୀଜୀ ଅତ୍ୟନ୍ତ ବାସ୍ତବବାଦୀ ଥିଲେ । ଜଣେ ନିରୀଶ୍ୱରବାଦୀ ଭାବେ ଯେକୌଣସି ପରିସ୍ଥିତି ଓ ତାର ଅନ୍ତର୍ନିହିତ ବିରୋଧଗୁଡ଼ିକୁ ବୁଝି ସେସବୁର ସମାଧାନ ପାଇଁ ସେ ଉଦ୍ୟମ କରୁଥିଲେ । କେବଳ ଜଣେ ବୁଦ୍ଧିଜୀବୀ ଭାବରେ ସାମାଜିକ ଦ୍ୱନ୍ଦ୍ୱଗୁଡ଼ିକର ସୂକ୍ଷ୍ମ ବିଶ୍ଳେଷଣ କରିବା ତାଙ୍କର ଉଦ୍ଦେଶ୍ୟ ନଥିଲା । ବରଂ ମଣିଷ ସମାଜର ସୁଖସୌହାର୍ଦ୍ଦ୍ୟ ଦିଗରେ ସାମାଜିକ ଦ୍ୱନ୍ଦ୍ୱମାନଙ୍କର

ସମାଧାନ ବାହାର କରିବା ତାଙ୍କର ଅଭିମୁଖ୍ୟ ଥିଲା । ଭୁଲ ବିଗ୍ଭର ଯୋଗୁଁ ସମୟରେ ଏକ ସୁଉଦ୍ଦେଶ୍ୟ ନଷ୍ଟ ହେବାର ସମ୍ଭାବନା ଥିବାରୁ ସେ କୌଣସି ବିଗ୍ଭରଧାରାକୁ ନବୁଝି ତାହା ପ୍ରତ୍ୟାଖ୍ୟାନ କରୁ ନଥିଲେ । ବରଂ ଯେଉଁ ବିଗ୍ଭରଧାରା ସମାଜର ଅଗ୍ରଗତି ଦିଗରେ ସହାୟକ ନୁହେଁ ତାହା ସେ ପରିହାର କରୁଥିଲେ । ଏଥିପାଇଁ କୌଣସି କଥାର ବାସ୍ତବ ଉପଯୋଗ ହିଁ ଥିଲା ତାର ଯଥାର୍ଥ ମୂଲ୍ୟାୟନ । ବୁଦ୍ଧିବାଦୀ ବା ଭାବବାଦୀ ହେବା ପରିବର୍ତ୍ତେ ସେ ଅଧିକ ବାସ୍ତବବାଦୀ ଥିଲେ । କୌଣସି ଭେଷଜତତ୍ତ୍ୱର ବାସ୍ତବ ପ୍ରୟୋଗ କ୍ଷେତ୍ରରୁ ସେ ଏହାର ଉପଯୋଗିତା ବୁଝୁଥିଲେ; ଏକ ଉଦ୍ଦେଶ୍ୟ ସାଧନ ପାଇଁ ଏକ ନେଙ୍ଗ କାଟି ପରୀକ୍ଷା କରିବାକୁ ସେ ମୋତେ ନିର୍ଦ୍ଦେଶ ଦେଇଥିଲେ । ମୋଟ ଉପରେ କୌଣସି କଥାର ବାସ୍ତବ ଉପଯୋଗ ଦେଖିବା ପରେ ସେ ତାହା ଗ୍ରହଣ କରୁଥିଲେ ।

ହରିଜନ ସେବକ ସଂଘର ୧୪. ୮. ୧୯୪୫ର ଅଧିବେଶନରେ ଗାନ୍ଧୀଜୀ ବିଭିନ୍ନ ପ୍ରଶ୍ନମାନଙ୍କର ଯେଉଁ ଉତ୍ତର ଦେଇଥିଲେ ସେଥିରୁ ତାଙ୍କର ଏ କ୍ଷେତ୍ରରେ ଦୃଷ୍ଟିଭଙ୍ଗୀ ଓ କାର୍ଯ୍ୟପ୍ରଣାଳୀର ସୂଚନା ମିଳିଥାଏ । ଯେତେବେଳେ ସେ ଅସ୍ପୃଶ୍ୟତା ନିବାରଣ ପାଇଁ କାର୍ଯ୍ୟକ୍ରମ ଗ୍ରହଣ କଲେ ସେତେବେଳେ ବର୍ଣ୍ଣବ୍ୟବସ୍ଥା ଓ ଜାତିପ୍ରଥା ସମାଜରେ ରହିଥିଲା । ସେ ସମୟରେ ବି କୌଣସି ବୌଦ୍ଧିକ ପର୍ଯ୍ୟା-ଲୋଚନାରୁ ଏହା ସ୍ପଷ୍ଟ ହେଉଥିଲା ଯେ ଅସ୍ପୃଶ୍ୟତାର ଦୂରୀକରଣ କରିବାକୁ ହେଲେ ପ୍ରଥମେ ଜାତିପ୍ରଥାର ବିଲୋପ ହେବା ଦରକାର । କିନ୍ତୁ ବାସ୍ତବ କ୍ଷେତ୍ରରେ ଜାତିପ୍ରଥା ଅପେକ୍ଷା ଅସ୍ପୃଶ୍ୟତାର ନିବାରଣ ସେତେବେଳେ ଏକ ବଡ଼ ସାମାଜିକ ଆବଶ୍ୟକତା ଥିଲା । ସେ ସମୟରେ ଯଦିବା ସେ ଜାତିପ୍ରଥା ପ୍ରତି ବିମୁଖ ଥିଲେ ତଥାପି ଏହାର ବିଲୋପ ପାଇଁ କାର୍ଯ୍ୟକ୍ରମ ଗ୍ରହଣ କରିନଥିଲେ । ଜାତିପ୍ରଥା ଓ ତତ୍‌ସଂଲଗ୍ନ ଦ୍ୱନ୍ଦ୍ୱସମୂହ ସମାଜରେ ଅକ୍ଷୁଣ୍ଣ ଭାବରେ ରହିଥିଲେ ବି ସେ ଆରମ୍ଭରେ କେବଳ ଅସ୍ପୃଶ୍ୟତା ଦୂରୀକରଣ ପାଇଁ କାର୍ଯ୍ୟକ୍ରମ ଗ୍ରହଣ କରିଥିଲେ । ସୁତରାଂ ତାଙ୍କ କାର୍ଯ୍ୟରେ ବିଶେଷ ବିରୋଧ ସୃଷ୍ଟି ହୋଇନଥିଲା । କିନ୍ତୁ ପ୍ରଥମରୁ ଯଦି ସେ ଜାତିପ୍ରଥାର ବିଲୋପ ପାଇଁ କାର୍ଯ୍ୟ ଆରମ୍ଭ କରିଥାନ୍ତେ ତେବେ ତାଙ୍କୁ ନାନା ପ୍ରତିବନ୍ଧକ ଓ ସମାଲୋଚନାର ସମ୍ମୁଖୀନ ହେବାକୁ ପଡ଼ିଥାନ୍ତା; ଯଦ୍ଦ୍ୱାରା ପ୍ରଥମ ଉଦ୍ଦେଶ୍ୟଟି ମଧ୍ୟ ସାଧିତ ହୋଇପାରି ନଥାନ୍ତା । ତାଙ୍କ କାର୍ଯ୍ୟର ଅଗ୍ରଗତି ପରେ ଯେତେବେଳେ ସେ ଅନୁଭବ କଲେ ଯେ ସମାଜର ପ୍ରଗତି ପାଇଁ ଜାତିପ୍ରଥା ମଧ୍ୟ ଏକ ପ୍ରତିବନ୍ଧକ ସେତେବେଳେ ସେ ଏହାର ଦୂରୀକରଣ ପାଇଁ ମଧ୍ୟ ଆହ୍ୱାନ ଦେଲେ । ଏଥିପାଇଁ ଆନ୍ତର୍ଜାତି ପଂକ୍ତିଭୋଜନ ସହିତ ଜାତିବିହୀନ ବିବାହ ପାଇଁ ମଧ୍ୟ କାର୍ଯ୍ୟକ୍ରମ ଗ୍ରହଣ କଲେ । ଜଣେ ବୁଦ୍ଧିଜୀବୀ ଏ କ୍ଷେତ୍ରରେ ଗାନ୍ଧୀଜୀଙ୍କ ବିଗ୍ଭରରେ ବିରୋଧାଭାସ ବାହାର କରିପାରିବ ଯେ ସେ ଜାତିପ୍ରଥାକୁ ପ୍ରଥମେ ପ୍ରଶ୍ରୟ ଦେଇ ପରେ ଏହାର ମୂଳୋତ୍ପାଟନ ଗ୍ଭହିଁଲେ । କିନ୍ତୁ ଜଣେ ବାସ୍ତବବାଦୀ ଅହିଂସ ବ୍ୟକ୍ତି

ଏହା ପରସ୍ପର ବିରୋଧୀ ନିୟମ ଉପରେ ପର୍ଯ୍ୟବସିତ ନଥାଇ ବରଂ ବିଭିନ୍ନ ସୋପାନ ଦେଇ ସାମାଜିକ ପ୍ରଗତି କିପରି ହାସଲ ହୋଇପାରେ ତାହା ଅନୁଭବ କରିବ ।

ସ୍ୱାଧୀନତା ପାଇଁ ସେ ଜାତୀୟ ଆନ୍ଦୋଳନ ଆରମ୍ଭ କରିବା ସମୟରେ ଲୋକମାନଙ୍କ ଭିତରେ ରହିଥିବା ଈଶ୍ୱର ବିଶ୍ୱାସକୁ ଭିତ୍ତିକରି 'ରଘୁପତି ରାଘବ…' ପ୍ରାର୍ଥନାକୁ ଗ୍ରହଣ କରିଥିଲେ—ଏହି ବିଶ୍ୱାସ—ଯାହାକୁ ନିଜ ପ୍ରତ୍ୟୟରେ ଗ୍ରହଣ କରିଥିଲେ—ସେପର୍ଯ୍ୟନ୍ତ ଜାତୀୟ ଆନ୍ଦୋଳନ କାର୍ଯ୍ୟକ୍ରମ ପାଇଁ ପ୍ରତିବନ୍ଧକ ସୃଷ୍ଟି କରିନଥିଲା ତାହାକୁ ରଖା ଯାଇଥିଲା । ଏପରିକି ଈଶ୍ୱରଙ୍କ ଆଶୀର୍ବାଦକୁ କଂଗ୍ରେସର ଶପଥ ପାଠରେ ଗ୍ରହଣ କରାଯାଇଥିଲା । କିନ୍ତୁ ଯେତେବେଳେ ଏହାର ସମାଲୋଚନା କରାଗଲା ସେ ତତ୍‌କ୍ଷଣାତ ନିଜ ମତ ପରିବର୍ତ୍ତନ କରି ମାର୍ଚ୍ଚ ୫, ୧୯୨୫ରେ ନବଜୀବନ ପତ୍ରିକାରେ ଲେଖିଥିଲେ, "ମୁଁ ପ୍ରସ୍ତୁତ କରିଥିବା କଂଗ୍ରେସ ଶପଥପାଠରୁ ଈଶ୍ୱର ନାଁ ବାଦ୍ ଦେବା ପାଇଁ ସର୍ବସମ୍ମତ ମତ ପ୍ରକାଶ ପାଉଥିବାରୁ କଂଗ୍ରେସର ଶପଥପାଠରୁ ଏହା ବାଦ୍ ଦେବାରେ ମୋର ଦ୍ୱିମତ ନାହିଁ । ଏହି ମତାମତ ପ୍ରଥମରୁ ପ୍ରକାଶ ପାଇଥିଲେ ମୁଁ ସେତେବେଳେ ମଧ୍ୟ ଏହା ଗ୍ରହଣ କରିଥାନ୍ତି ।"

ଅନ୍ୟ ଏକ ଘଟଣା ମଧ୍ୟ ଏଠାରେ ଉଲ୍ଲେଖ କରୁଛୁ—୧୯୪୬ରେ ଭାରତୀୟ ଜାତୀୟ କଂଗ୍ରେସ ଦେଶର ସ୍ୱାଧୀନତା ନେଇ ଅନିଶ୍ଚିତ ଥାଏ । ସେହିବର୍ଷ ସ୍ୱାଧୀନତା ଲାଭ ପାଇଁ ଜାନୁଆରି ୨୬ରେ ଜନଗଣ ଏକ ଶପଥପାଠ କରିବାକୁ ଗାନ୍ଧୀଜି ଠିକ୍ କରିଥିଲେ । ଏହି ଶପଥପାଠଟି ପ୍ରକାଶ ପାଇଲା ଓ ଏଥିରେ ମଧ୍ୟ ଈଶ୍ୱର ଶବ୍ଦ ଉଲ୍ଲେଖ ଥିଲା । ମୁଁ ଅରେ ଆଲୋଚନା ପ୍ରସଙ୍ଗରେ ଏ ବିଷୟଟି ଉପରେ ଶ୍ରୀ ପ୍ରଭାକରଙ୍କର ଦୃଷ୍ଟି ଆକର୍ଷଣ କଲି । ମୁଁ ତାଙ୍କୁ କହିଲି ଯେ ଦେଶର ସ୍ୱାଧୀନତା ପାଇଁ ଯଦିବା ସେହି ଶପଥପାଠ କରିବାକୁ ମୁଁ ପ୍ରସ୍ତୁତ ସେଥିରେ ଈଶ୍ୱରଙ୍କ ନାମ ଥିବାରୁ ମୁଁ ତାହା ପୂର୍ଣ୍ଣାଙ୍ଗ ଭାବରେ ପଢ଼ିପାରିବି ନାହିଁ । ଘଟଣାଟିକୁ ସେ ବାପୁଜୀଙ୍କର ଦୃଷ୍ଟିକୁ ନେଲେ ଓ ବାପୁଜୀ ଏ ନେଇ ଲେଖିଥିଲେ "ଆମର ଲକ୍ଷ୍ୟ ପୂରଣ ପାଇଁ ଯେଉଁ ଶପଥ ନିଆଯାଇଛି ସେଥିପାଇଁ ଆମ ଭିତରର ଆତ୍ମଶକ୍ତିକୁ ଜାଗ୍ରତ କରିବାକୁ ହେବ ଓ ଏହାକୁ ଜଣେ ଈଶ୍ୱରଙ୍କ ନାମରେ ଡାକନ୍ତୁ ବା ନଡାକନ୍ତୁ ଆମେ ସମସ୍ତେ ଏହା ଅନୁଭବ କରିବା ଆବଶ୍ୟକ । ସେ (ମୋତେ ନିର୍ଦ୍ଦେଶ କରି) ଈଶ୍ୱରଙ୍କର ନାମ ନନେଇ ମଧ୍ୟ ଏହି ଆତ୍ମଶକ୍ତି ଜାଗ୍ରତ କରିବା ଆବଶ୍ୟକ । ସମସ୍ତ ସଚ୍ଚା ନାସ୍ତିକବାଦୀମାନେ ନିଜ ଭିତରେ ଥିବା ଏକ ଶକ୍ତିକୁ ଗ୍ରହଣ କରିବେ ।"

ଅବଶ୍ୟ ଗାନ୍ଧୀଜିଙ୍କର ଏହି ବକ୍ତବ୍ୟ 'ପ୍ରତ୍ୟେକ ନାସ୍ତିକବାଦୀ ନିଜ ଭିତରେ ଥିବା ଏକ ଶକ୍ତିକୁ ଗ୍ରହଣ କରିବେ' ନାସ୍ତିକବାଦୀ ଜୀବନଦୃଷ୍ଟିଠାରୁ ପୃଥକ୍ ।

ବାସ୍ତବରେ ନିରୀଶ୍ୱରବାଦ ବ୍ୟକ୍ତି ଭିତରେ ଥିବା ସ୍ୱାଧୀନ ସଂକଳ୍ପକୁ ଗ୍ରହଣ କରିଥାଏ । 'ଈଶ୍ୱର ଭାବରେ ଡାକ ବା ନଡାକ କିନ୍ତୁ ଏକ ଶକ୍ତିକୁ ଗ୍ରହଣ କରିବାକୁ ହେବ' । ପ୍ରକୃତ ମଣିଷର ଜୀବନକୁ ଏକ ଅଦୃଷ୍ଟ ପାଖରେ ଅଧସ୍ତନ କରିଥାଏ ଓ ବସ୍ତୁତଃ ଆସ୍ତିକତାବାଦକୁ ସ୍ୱୀକାର କରିନାଏ । ସୁତରାଂ ଗାନ୍ଧୀଜୀ ତାଙ୍କ ଶପଥ-ପାଠରେ ଦେଇଥିବା ଅନ୍ୟ ସମ୍ଭାବନାଟି ମଧ୍ୟ ନିରୀଶ୍ୱରବାଦୀ ଆଦର୍ଶର ଅନୁକୂଳ ନୁହେଁ ।

ମୋତେ ଗ୍ରହଣ କରିନେବା ପାଇଁ ଗାନ୍ଧୀଜୀ କଂଗ୍ରେସକୁ ଦେଇଥିବା ଶପଥ ପାଠଟିରେ 'ଈଶ୍ୱର' ଶବ୍ଦ ପରିବର୍ତ୍ତେ 'ଏକ ଶକ୍ତି ଯାହାକୁ ଜଣେ ଦିବ୍ୟ ଭାବରେ ଗ୍ରହଣ କରିପାରନ୍ତି ବା ନପାରନ୍ତି' ଯେପରି ପରିବର୍ତ୍ତନ କଲେ ତା'ର ଆସ୍ତିକ ବା ନାସ୍ତିକ ତାତ୍ପର୍ଯ୍ୟ ଅପେକ୍ଷା ତାହା ପଶ୍ଚାତରେ ଥିବା ତାଙ୍କର ମନୋଭାବଟି ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ । ସୁତରାଂ ଈଶ୍ୱର ଓ ଏ ନେଇ ବିଶ୍ୱାସ ଓ ଅବିଶ୍ୱାସ ତାଙ୍କ ପାଇଁ ମୂଲ୍ୟବାନ ନଥାଇ ବରଂ ଏହା ପଶ୍ଚାତରେ ଥିବା ସାମାଜିକ ଲକ୍ଷ୍ୟ ଅତ୍ୟନ୍ତ ମୂଲ୍ୟବାନ ଥିଲା । ସାମାଜିକ ଲକ୍ଷ୍ୟକୁ ଆଭିମୁଖ୍ୟ ଭାବରେ ଗ୍ରହଣ କରିଥିବାରୁ ସେ ମୋର ଝିଅ ବିଭାଘର ସମୟରେ ଈଶ୍ୱର ନାମୋଚ୍ଚାରଣକୁ ବାଦ ଦେବା, ମୋର ବ୍ୟକ୍ତିଙ୍କୁ ତାଙ୍କ ପ୍ରାର୍ଥନାସଭାରେ ଯୋଗ ଦେଇ କୌଣସି ପ୍ରାର୍ଥନା ଗାନ ନକରିବା ପାଇଁ ଅନୁମତି ଦେବା, ନିଜକୁ ସମୟରେ ପରମ ନାସ୍ତିକ ବୋଲି ଅଭିହିତ କରିବା, ସମସ୍ତ ସାମ୍ପ୍ରଦାୟିକ ଉଗ୍ରତା ଓ ଘୃଣାକୁ ଦୂର କରିବା ପାଇଁ ନିରୀଶ୍ୱରବାଦ ଗ୍ରହଣ କରିବା ଓ ଆବଶ୍ୟକ ହେଲେ ତାହା ପରସ୍ପର ବିରୋଧୀ ସାମ୍ପ୍ରଦାୟିକ ଗୋଷ୍ଠୀ-ମାନେ ଗ୍ରହଣ କରିବା ଉଚିତ ବୋଲି କହିବା ତାଙ୍କ ଦୃଷ୍ଟିଭଙ୍ଗୀର ପରିଚୟ ଦେଇଥାଏ ।

ରବୀନ୍ଦ୍ର ରାଘବ…ଠାରୁ ନିରୀଶ୍ୱରବାଦ ଗାନ୍ଧୀଜୀଙ୍କ ପାଇଁ ଏକ ବଡ଼ ଆବେଦନ କହିଲେ ଅତ୍ୟୁକ୍ତି ହେବ ନାହିଁ । କିନ୍ତୁ ଗାନ୍ଧୀଜୀ ଜଣେ ବାସ୍ତବବାଦୀ ଓ ମାନବବାଦୀ ଭାବରେ ସମାଜର ହିତସାଧନ ଉଦ୍ଦେଶ୍ୟରେ ଅଭିପ୍ରେତ କୌଣସି ଭାବଧାରାକୁ ଗ୍ରହଣ କରିନେବା ପାଇଁ ଏକ ଖୋଲା ହୃଦୟ ପୋଷଣ କରିଥିଲେ । ମୋର ଅନୁଭୂତିରୁ ମୁଁ କହିପାରେ ଯେ ୧୯୪୧ରୁ ୧୯୪୮ ଭିତରେ ତାଙ୍କ ଦୃଷ୍ଟିଭଙ୍ଗୀରେ ଉଲ୍ଲେଖନୀୟ ପରିବର୍ତ୍ତନ ହୋଇଥିଲା । ୧୧. ୯. ୧୯୪୧ରେ ସେ ମୋତେ ଦେଇଥିବା ପତ୍ରରେ ଲେଖିଥିଲେ, "ନିରୀଶ୍ୱରବାଦ ହେଉଛି ଏକ ଆତ୍ମ ପ୍ରତ୍ୟାଖ୍ୟାନ । ଏହାର ପ୍ରଚାରରେ କେହି କେବେ ସଫଳ ହୋଇନାହାନ୍ତି ।" କିନ୍ତୁ ୧୯୪୬ରେ ତାଙ୍କ ଓ ମୋ ଭିତରେ ଥିବା ପାର୍ଥକ୍ୟକୁ ସ୍ପଷ୍ଟ କରିବା ସହିତ ସେ ମତବ୍ୟକ୍ତ କରିଥିଲେ ଯେ ସାମାଜିକ ଲକ୍ଷ୍ୟପୂରଣ ବାଟରେ ଆସ୍ତିକତାବାଦୀ ବା ନିରୀଶ୍ୱରବାଦୀ ପନ୍ଥା ବେଶି ମହତ୍ତ୍ୱପୂର୍ଣ୍ଣ ତାହା ଭବିଷ୍ୟତ ହିଁ ମୂଲ୍ୟାୟନ କରିବ ।

୧୯୪୮ରେ ମୋର ଝିଅ ବିବାହ କ୍ଷେତ୍ରରେ ଈଶ୍ୱର ଶବ୍ଦକୁ ସମ୍ପୂର୍ଣ୍ଣ ବାଦ୍ ଦେବା ବି ସେ ଗ୍ରହିଥିଲେ ।

ବାପୁଜୀଙ୍କ ନିଜ ଲେଖାନୁଯାୟୀ (ହରିଜନ, ୨୮. ୭. ୧୯୪୬) ତାଙ୍କର ବିଚାରରେ ସେ ଆଗକୁ ଯାଉଥିଲେ ଓ ଅଧିକ ପକ୍ୱ ହେଉଥିଲେ । ସେ ମଣିଷ ସମାଜର ଉତ୍କ୍ରୋରଣ କରାଇବା ସହିତ ନିଜେ ମଧ୍ୟ ଏଥିରେ ସହିତ ଅଗ୍ରଗାମୀ ଥିଲେ । ପ୍ରଥମରୁ ସମାଜର ଈଶ୍ୱରବିଶ୍ୱାସକୁ ନେଇ ସେ 'ରଘୁପତି ରାଘବ···'ରୁ ଆରମ୍ଭ କରିଥିଲେ । ନିଜ ବିଚାରର ଉତ୍କର୍ଷତା ସହିତ ସେ 'ଈଶ୍ୱର ସତ୍ୟ' ଓ 'ସତ୍ୟ ହିଁ ଈଶ୍ୱର' ଉପରେ ଅମ୍ଳ-ବିଶ୍ୱାସ ସୃଷ୍ଟି କରିଥିଲେ । ସଭ୍ୟତାର ବିକାଶ ପଥରେ ଅନ୍ତରାୟ ସୃଷ୍ଟି କରୁଥିବା ପୁରାତନ ବିଶ୍ୱାସକୁ ସେ ପ୍ରଶ୍ରୟ ଦେଉନଥିଲେ । ସେ ଯଦିଓ ଅନୁଭବ କରିଥାନ୍ତେ ଯେ ଈଶ୍ୱର ଧାରଣାର ପରିହାର ଦ୍ୱାରା ମଣିଷ ସମାଜର ଉତ୍କର୍ଷ ସାଧିତ ହେବ, ତେବେ ମୋର ବିଶ୍ୱାସ ସେ ଏଥିକୁ ପରିତ୍ୟାଗ କରିବାକୁ କେବେ ବି କୁଣ୍ଠାବୋଧ କରିନଥାନ୍ତେ ।

ଅସ୍ତିକତାବାଦ ଓ ନିରୀଶ୍ୱରବାଦ ଦୁଇଟି ଭିନ୍ନ ଜୀବନଦୃଷ୍ଟି ବୋଲି ବାପୁଜୀ ସ୍ୱୀକାର କରିଥିଲେ । ସେ ଅସ୍ତିକତାବାଦକୁ ଗ୍ରହଣ କରି ସମାଜର ଉନ୍ନତି ସାଧନ କରିଛନ୍ତି । ଅସ୍ତିକତାବାଦଠାରୁ ନିରୀଶ୍ୱରବାଦ ପ୍ରଣାଳୀରେ ସାମାଜିକ ପ୍ରଗତିକୁ ଅଧିକ ତ୍ୱରାନ୍ୱିତ କରିପାରିବା ନେଇ ସେ ତାଙ୍କର ଏପ୍ରିଲ ୯, ୧୯୪୬ ପତ୍ରରେ ସନ୍ଦେହ ପ୍ରକାଶ କରିଛନ୍ତି । ଗାନ୍ଧୀଜୀ ପୋଷଣ କରିଥିବା ସନ୍ଦେହକୁ ଦୂର କରି ଏହି ପନ୍ଥାରେ ସାମାଜିକ ଶ୍ରେୟ ହାସଲ କରିବା ବର୍ତ୍ତମାନ ନିରୀଶ୍ୱର-ବାଦୀମାନଙ୍କ ପାଇଁ ଏକ ଆହ୍ୱାନ କହିବାକୁ ହେବ ।

ବାପୁଜୀ ଆମକୁ ସାହାଯ୍ୟ କରିବାକୁ ଆଜି ନାହାନ୍ତି; କିନ୍ତୁ ତାଙ୍କର କାର୍ଯ୍ୟ ପ୍ରଣାଳୀ ଆମକୁ ନିଶ୍ଚୟ ପଥ ଦେଖାଇବ ।

# କର୍ମଯୋଗୀ ଗାନ୍ଧୀ

ଗାନ୍ଧୀ ଦାର୍ଶନିକ ବା ଧର୍ମପ୍ରବର୍ତ୍ତକ ନଥିଲେ । ଧର୍ମ ପ୍ରବର୍ତ୍ତକମାନେ ଆଧିଭୌତିକ ଓ ଅତୀନ୍ଦ୍ରିୟ ଶକ୍ତିର ଅଧିକାରୀ ଓ ସେମାନଙ୍କ ଦ୍ୱାରା ପ୍ରବର୍ତ୍ତିତ ମାର୍ଗ ବିଦ୍ୟାନୁଭୂତି ଉପରେ ପର୍ଯ୍ୟବସିତ ବୋଲି କହିଥାନ୍ତି । ସେମାନଙ୍କର ଅନୁଗାମୀମାନେ ସେମାନଙ୍କର ବାଣୀକୁ ଶାଶ୍ୱତ ଓ କର୍ଯ୍ୟକଳାପକୁ ଅଲୌକିକ ବୋଲି ବିଶ୍ୱାସ କରିଥାନ୍ତି । କିନ୍ତୁ ଗାନ୍ଧୀ ଯେକୌଣସି ମଣିଷ ପରି ଦୋଷଦୁର୍ବଳତା ଥିବା ଓ ଜୀବନରେ ଭୁଲ କରୁଥିବା ଜଣେ ସାଧାରଣ ମଣିଷ ବୋଲି ନିଜକୁ କହିଥାନ୍ତି । ଏପରିକି ନିଜର ଅନ୍ତର୍ବାଣୀ—ଯାହା ଉପରେ ସମୟରେ ଅନେକ ଗୁରୁତ୍ୱ ଦିଆଯାଇଥାଏ—ବିଷୟରେ ସେ କହିଛନ୍ତି, "ଯେକୌଣସି ବ୍ୟକ୍ତି ଚେଷ୍ଟା କଲେ ନିଜର ବିବେକର ସ୍ୱର ଶୁଣିପାରିବ । ପ୍ରତ୍ୟେକ କାର୍ଯ୍ୟ ପରି କେବଳ ସେଥିପାଇଁ ନିଜର ମାନସିକ ପ୍ରସ୍ତୁତି ଦରକାର ।" 'ମହାତ୍ମା' ପଦକୁ ସେ ଅସ୍ୱୀକାର କରି ତାଙ୍କୁ କେବଳ ଗାନ୍ଧୀ ବୋଲି କହିବାକୁ ଚାହିଁଛନ୍ତି । ସେହିପରି ସେ ଶଙ୍କର, ସ୍ପିନୋଜା, ମାର୍କସ୍ ବା ଶ୍ରୀ ଅରବିନ୍ଦଙ୍କ ପରି ପ୍ରଜ୍ଞାବାନ୍ ଦାର୍ଶନିକ ନଥିଲେ । ତାଙ୍କର ଆତ୍ମଜୀବନୀ ଓ ବିଶିଷ୍ଟ ଗାନ୍ଧୀ ଗବେଷକ ଜେ. ଏମ. ଉପାଧ୍ୟାୟଙ୍କ ଲେଖାମାନରୁ ଏହା ସ୍ପଷ୍ଟ ଯେ ଗାନ୍ଧୀ ଛାତ୍ରଜୀବନରେ ସେପରି କିଛି ପ୍ରତିଭାବାନ୍ ବିଦ୍ୟାର୍ଥୀ ନଥିଲେ । ଲଣ୍ଡନରେ ପଢ଼ୁଥିବା ସମୟରେ ସେ ଅତ୍ୟନ୍ତ ଲାଜକୁଳା ଓ ଜଣେ ମାମୁଲି ଛାତ୍ର ଥିଲେ । ସେହିପରି ବମ୍ବେରେ ଜଣେ ଆଇନଜୀବୀ ଭାବେ ନିଜର କର୍ମକ୍ଷେତ୍ରରେ ସେ ସମ୍ପୂର୍ଣ୍ଣ ବିଫଳ ହୋଇଥିଲେ ।

ଏହିପରି ଜଣେ ଭୟାଳୁ ଓ ଲାଜକୁଳା ମଣିଷ କିନ୍ତୁ ଜୀବନରେ ଏପରି ମହାନ୍ ହୋଇଥିଲେ ଯାହାଙ୍କ ପ୍ରତି ନିଜର ଭକ୍ତିଅର୍ଘ୍ୟ ଅର୍ପଣ କରିବାକୁ ଯାଇ ଆଲବର୍ଟ ଆଇନଷ୍ଟାଇନ୍ କହିଥିଲେ, "ଭବିଷ୍ୟତର ବଂଶଧରମାନେ ବୋଧହୁଏ ବିଶ୍ୱାସ କରିପାରିବେ ନାହିଁ ଯେ ତାଙ୍କପରି ଜଣେ ଅତିମାନବ ଦିନେ ରକ୍ତମାଂସର ଦେହ ଧରି ଆମ ସଂସାରରେ ଜୀବନ ବିତାଇଛନ୍ତି ।"

ତାଙ୍କର ସାଧାରଣ ଜୀବନ ଭିତରୁ ତାଙ୍କ ଅସାଧାରଣ ବ୍ୟକ୍ତିତ୍ୱର ବିକାଶ ହୋଇଥିଲା । ଅନ୍ୟମାନଙ୍କ ତୁଳନାରେ ବିଶେଷ ପ୍ରତିଭାବାନ୍ ନହୋଇ ମଧ୍ୟ ସେ ଜଣେ ସତ୍ୟାନୁସନ୍ଧୀ ପଥିକ ଭାବରେ ଜୀବନ ବିତାଇଛନ୍ତି । ପ୍ରତିକୂଳ ପରିସ୍ଥିତି ମଧ୍ୟରେ ସେ ସତ୍ୟ ପ୍ରତି ଅନୁରକ୍ତ ରହିଛନ୍ତି ଓ ଭୟଶୂନ୍ୟ ଭାବରେ ଜୀବନର ଘଟଣା

ପ୍ରବାହକୁ ସମ୍ମୁଖୀନ ହୋଇଛନ୍ତି । ଏକ ସାଧାରଣ ଘଟଣା ପରି ନିଜ ମା' ଓ ପରିବାରର ଜଣେ ସ୍ୱକବଣୀ ରମ୍ଭାଙ୍କର ପ୍ରଭାବରେ ଅନୁପ୍ରାଣିତ ହୋଇ ସେ ଏହି ଗୁଣ ପ୍ରତି ଅନୁରାଗୀ ହେବା ଜଣାଯାଏ ।

କିନ୍ତୁ ସେହି ସତ୍ୟର ପଛାଟି କ'ଣ ଯାହାକି ତାଙ୍କୁ ଜୀବନରେ ଏତେ ପ୍ରଭାବିତ କରିଛି ?

**ସତ୍ୟବାଦିତା :**

ସତ୍ୟର ସ୍ୱରୂପ ଉପରେ ଦାର୍ଶନିକମାନେ ବୃହଦାକାର ଗ୍ରନ୍ଥ ଲେଖିପାରନ୍ତି । କିନ୍ତୁ ଜଣେ ସାଧାରଣ ମଣିଷ ସତ୍ୟର ସ୍ୱରୂପକୁ ଅତି ସହଜ ଭାବରେ ବୁଝିଥାଏ । ଜଣେ ବ୍ୟକ୍ତି ନିଜର କାର୍ଯ୍ୟ ଓ କଥାରେ ସମନ୍ୱୟ ରକ୍ଷା କରିବାକୁ ସତ୍ୟବାଦିତା କୁହାଯାଏ । ଗାନ୍ଧୀ ଏହି ସାଧାରଣ ଅର୍ଥଟିକୁ ଗ୍ରହଣ କରି ଏହାକୁ ଏକ ବ୍ରତ ଭାବରେ ନେଇଛନ୍ତି । ବାରବର୍ଷ ବୟସରେ ଏକଦା ମାଂସଭକ୍ଷଣ କରି ନିଜର ମା'ଙ୍କ ପାଖରେ ଲୁଚାଇ ଥିବାରୁ ବା ନିଜ ବାପାଙ୍କ ପକେଟରୁ ପଇସା ଲୁଚାଇ ସିଗାରେଟ ଖାଇଥିବାରୁ ସେ ନିଜକୁ ମିଥ୍ୟାବାଦୀ ବୋଲି ଭାବିଛନ୍ତି । ନିଜର କାର୍ଯ୍ୟକୁ ଲୁଚାଇ କରିଥିବାରୁ ସେ ସେଥିପାଇଁ ମାନସିକ ଜ୍ୱଳନ ଭିତରେ ଲଜ୍ଜା ଅନୁଭବ କରିଛନ୍ତି । ପରେ ନିଜର ଏହି କାର୍ଯ୍ୟକୁ ନିଜ ବାପାଙ୍କ ପାଖରେ ସ୍ୱୀକାର କରି ଅନୁତପ୍ତ ହୋଇଛନ୍ତି ଓ ସତ୍ୟବାଦୀ ହୋଇ ରହିବାକୁ ସଂକଳ୍ପ ନେଇଛନ୍ତି । ଏହି ଘଟଣା ତାଙ୍କ ଜୀବନରେ ସତ୍ୟ ପ୍ରତି ସର୍ବଦା ଅନୁରାଗୀ ହୋଇ ରହିବାର ଭିତ୍ତି ସ୍ଥାପନ କରିଛି ।

ଏହି ଅନୁରାଗ ତାଙ୍କର ଧର୍ମ, ରାଜନୀତି, ଶିକ୍ଷା, ସୌନ୍ଦର୍ଯ୍ୟବୋଧ ଆଦି ଭାବନା କ୍ଷେତ୍ରରେ ପ୍ରତିଫଳିତ ହୋଇଛି ଓ ଏସବୁକୁ ଏକ ନୂତନ ଦିଗଦର୍ଶନ ମଧ୍ୟ ଦେଇଛି । ସତ୍ୟକୁ ଏକ ପ୍ରତ୍ୟୟ ଭିତରେ ସୀମିତ ନରଖି ସେ ଏହାକୁ ପ୍ରତ୍ୟେକଟି କାର୍ଯ୍ୟ ଭିତରେ ପ୍ରତିଫଳିତ କରିବାକୁ ଅବିରତ ପ୍ରୟାସ କରିଛନ୍ତି । ମୋଟ ଉପରେ ସତ୍ୟ ତାଙ୍କ ପାଇଁ ଏକ ଆଚରଣ ଓ ଜୀବନଧାରାରେ ପରିଣତ ହୋଇଯାଇଛି । ଏହି ଆଦର୍ଶରେ ଅନୁପ୍ରାଣିତ ହୋଇ ଅନେକ ବ୍ୟକ୍ତି ତାଙ୍କ ନେତୃତ୍ୱରେ ପରିଚାଳିତ ରାଜନୈତିକ ଓ ସାମାଜିକ କାର୍ଯ୍ୟରେ ସାମିଲ ହୋଇଛନ୍ତି । ସତ୍ୟାଗ୍ରହ ବା ସବୁ କ୍ଷେତ୍ରରେ ସତ୍ୟ ପ୍ରତି ଅନୁରକ୍ତ ରହିବା ତାଙ୍କ ସାମାଜିକ କାର୍ଯ୍ୟକ୍ରମର ଅଭିମୁଖ୍ୟ ହୋଇଯାଇଛି ।

ସତ୍ୟକୁ ଏକ ବ୍ୟବହାରିକ ଅର୍ଥରେ ଗ୍ରହଣ କରି ଗାନ୍ଧୀ ଧର୍ମର ସଂଜ୍ଞା ଦେଇଛନ୍ତି, "ମୋର ଧର୍ମ ହେଉଛି ମୋର ଜୀବନ; ମୋର ବଞ୍ଚିବା, ଖାଇବା,

ଆଳାପ କରିବା ଓ ବ୍ୟବହାର କରିବା ଏସବୁର ସାମଗ୍ରିକ ରୂପ ହେଉଛି ମୋର ଧର୍ମ ।'' ତାଙ୍କ ପାଇଁ ଧର୍ମ କେତେକ ବିଶ୍ୱାସ ନହୋଇ ଏକ ଜୀବନଧାରାରେ ପରିଣତ ହୋଇଥିଲା । ୧୯୪୭ ମସିହାରେ ଜନ ଭି. ବୋଣ୍ଡୁରାଣ୍ଟ ଯେତେବେଳେ ସତ୍ୟାଗ୍ରହ ଉପରେ ଗବେଷଣା କରିବାକୁ ତାଙ୍କର ମତାମତ ଲୋଡ଼ିଲେ, ଗାନ୍ଧୀ ତାଙ୍କୁ କହିଥିଲେ, ''ଗବେଷଣା ପରିବର୍ତ୍ତେ ସତ୍ୟାଗ୍ରହକୁ ନିଜର ଅନୁଭୂତି ଓ ଜୀବନ-ଧାରାରେ ବ୍ୟକ୍ତ କରିବା ଆବଶ୍ୟକ । ବିଦେଶୀ ଜିନିଷ ବର୍ଜନ କରିବା ପାଇଁ ଯେତେବେଳେ ୧୯୨୧ ମସିହାରେ ସେ ମଦୁରାଇରେ ଘୋଷଣା କଲେ ସେହି ଦିନଠାରୁ ସେ ନିଜେ ମଧ୍ୟ ଅଣ୍ଟା ଲୁଚୁନଥିବା ଖଦୀବସ୍ତ୍ର ପରିଧାନ କଲେ । ଯାହା ନିଜ ଜୀବନରେ କରିବା ସମ୍ଭବ ନୁହେଁ ତାହାକୁ ସେ ବ୍ୟକ୍ତ କରୁନଥିଲେ । ସେହିପରି ନିରୀଶ୍ୱରବାଦୀମାନଙ୍କୁ ଯୁକ୍ତି ଦ୍ୱାରା ଈଶ୍ୱରଙ୍କୁ ବିଶ୍ୱାସ କରାଇବା ପାଇଁ ପ୍ରୟାସ କରିବା ପରିବର୍ତ୍ତେ ଈଶ୍ୱରବିଶ୍ୱାସୀଙ୍କର ପବିତ୍ର ହୃଦୟ ଓ ନୈତିକ ଆଚରଣ ଦ୍ୱାରା ଅଧିକ ପ୍ରଭାବିତ କରିବା ସମ୍ଭବ ବୋଲି ସେ ଭାବୁଥିଲେ ।

ରାଜନୀତି, ନୀତିଶାସ୍ତ୍ର, ଧର୍ମ ଓ ଦର୍ଶନ ପ୍ରତି ତାଙ୍କର ଅବଦାନ ହେଉଛି ସେ ଏସବୁକୁ ଏକ ତାତ୍ତ୍ୱିକ ସ୍ତରରୁ ବାସ୍ତବ ଜୀବନକ୍ଷେତ୍ରକୁ ପ୍ରସାରିତ କରିନେଇ ପ୍ରତ୍ୟେକଟିରେ ସତ୍ୟର ପ୍ରୟୋଗ କରିବାକୁ ପ୍ରୟାସ କରିଥିଲେ । ବିଶେଷକରି ରାଜନୀତି ଓ ଧର୍ମକୁ ସେ କୂଟନୀତିଜ୍ଞ, ଧର୍ମଯାଜକ ଓ ବୁଦ୍ଧିଜୀବୀଙ୍କ ତାତ୍ତ୍ୱିକ ଫାଶରୁ ମୁକ୍ତ କରି ସାଧାରଣ ମଣିଷର ସ୍ତରକୁ ପ୍ରସାରିତ କରି ଆଣିଥିଲେ ।

## ମୁକ୍ତ ସଂକଳ୍ପ :

ସତ୍ୟକୁ ଏକ ଜୀବନଧାରା ଭାବରେ ନେଇ ସେ ଏହାର ତାତ୍ତ୍ୱିକ ବିଚାରରୁ ବା କାର୍ଯ୍ୟକାରଣଜନିତ ବସ୍ତୁବାଦରୁ ମୁକ୍ତ ରହି ଏକ ସଚେତନ ବ୍ୟକ୍ତିବାଦକୁ ଗ୍ରହଣ କରିଛନ୍ତି । ସତ୍ୟ ପଥରେ ପଥିକ ହେବା ବ୍ୟକ୍ତି ପ୍ରଥମେ ନିଜକୁ ମୁକ୍ତ ବୋଲି ଭାବିଥାଏ । ନିଜର କର୍ତ୍ତବ୍ୟ ପ୍ରତି ସଚେତନ ଥିବା ବ୍ୟକ୍ତିବିଶେଷ ନିଜର କାର୍ଯ୍ୟ ପାଇଁ ନୈତିକ ଦାୟିତ୍ୱ ଗ୍ରହଣ କରେ । ଯେକୌଣସି ପ୍ରକାର ପୂର୍ବନିର୍ଦ୍ଦିଷ୍ଟବାଦରୁ ମୁକ୍ତ ରହିବା ଦ୍ୱାରା ବ୍ୟକ୍ତି ନିଜକୁ ସ୍ୱାଧୀନ ବୋଲି ବିଚାର କରିବା ସହିତ ନିଜର କର୍ତ୍ତବ୍ୟ କ୍ଷେତ୍ରରେ ବା ସତ୍ୟବାଦୀ ହେବାରେ ନୈତିକ ଦାୟିତ୍ୱ ବହନ କରିଥାଏ । କିନ୍ତୁ ସୃଷ୍ଟିତତ୍ତ୍ୱ ବା ଐତିହାସିକ ବସ୍ତୁବାଦ ସମ୍ପର୍କରେ ବିଚାର କଲାବେଳେ ପୂର୍ବନିର୍ଦ୍ଦିଷ୍ଟବାଦ ଆସିଥାଏ ଓ ସେଥିରୁ ସୃଷ୍ଟ ଜୀବନ ଦର୍ଶନ ବ୍ୟକ୍ତିକୁ ପରାଧୀନ ରଖିଥାଏ । ଅର୍ଥାତ୍ ଏହାଦ୍ୱାରା ବ୍ୟକ୍ତି ନିଜର କାର୍ଯ୍ୟ ପାଇଁ ଦାୟୀ ନରହି ନିଜ ଜୀବନର ଘଟଣାପ୍ରବାହ ପୂର୍ବନିର୍ଦ୍ଦିଷ୍ଟ ବୋଲି ଗ୍ରହଣ କରିଥାଏ ।

ଚରାଚରିତ ଭାବେ ଅବଶ୍ୟ ଗାନ୍ଧୀ ବହୁ ସମୟରେ ଏକ 'ପରମ ଶକ୍ତି' ଓ ତା' ପ୍ରତି ନିଜର ସମର୍ପଣ ବିଷୟରେ କହିଥାନ୍ତି । କିନ୍ତୁ ପରବର୍ତ୍ତୀ କାଳରେ

ଯେତେବେଳେ ସେ ସାଂପ୍ରଦାୟିକ ବିଦ୍ୱେଷର ସମ୍ମୁଖୀନ ହୋଇଛନ୍ତି ସେତେବେଳେ ପାରମ୍ପରିକ ଧର୍ମବିଶ୍ୱାସରୁ ମୁକ୍ତ ରହି ବ୍ୟକ୍ତିର ସ୍ୱାଧୀନ ଚିନ୍ତାର ଉପରେ ଗୁରୁତ୍ୱ ଦେଇଛନ୍ତି । ନିଜର କାର୍ଯ୍ୟ ପାଇଁ ପ୍ରତ୍ୟେକ ଉତ୍ତରଦାୟୀ ବୋଲି ଗ୍ରହଣ କରି ସେ ଅନ୍ୟ ଭିତରେ ଆତ୍ମବିଶ୍ୱାସ ସୃଷ୍ଟି କରିବାକୁ ପ୍ରଯତ୍ନ କରିଛନ୍ତି । ସେ କହିଛନ୍ତି, "ମୁଁ ନିଜ ଉପରେ ଗଭୀର ବିଶ୍ୱାସ ରଖିଥିବାରୁ ସର୍ବଦା ଆଶାବାଦୀ । ଅବଶ୍ୟ ଏହା କରିବା ଦ୍ୱାରା ମୁଁ ନିଜର ଅହଙ୍କାରକୁ ପ୍ରକାଶ କରୁନାହିଁ । କିନ୍ତୁ ଅତ୍ୟନ୍ତ ବିନୟ ସହକାରେ ମୁଁ କହିବି ଯେ ମୁଁ ସର୍ବଦା ଆଶାବାଦୀ, କାରଣ ମୁଁ ନିଜ ପାଖରୁ ଅନେକ କିଛି ଆଶାକରିଥାଏ ।"

ମଣିଷର ସ୍ୱାଧୀନତା ଉପରେ ବିଶ୍ୱାସରୁ ମଣିଷର ଉତ୍ତମ ସ୍ୱଭାବ ଉପରେ ବିଶ୍ୱାସ ସୃଷ୍ଟି ହୋଇଥାଏ । ସେ ଲେଖିଛନ୍ତି, "ଅହିଂସାର ପ୍ରୟୋଗ କରୁଥିବା ବ୍ୟକ୍ତି ପ୍ରଥମେ ମଣିଷ ଭିତରେ ଥିବା ଅନ୍ତର୍ନିହିତ ଉତ୍ତମ ସ୍ୱଭାବ ଉପରେ ଆସ୍ଥା ରଖିବା ଆବଶ୍ୟକ । କାରଣ ସଚେତନ ଉଦ୍ୟମ ଓ ସମ୍ବେଦନଶୀଳ ବ୍ୟବହାର ଦ୍ୱାରା ଯେକୌଣସି ପଥଭ୍ରଷ୍ଟ ବ୍ୟକ୍ତିକୁ ପରିବର୍ତ୍ତନ କରିବା ସମ୍ଭବପର ।"

ବ୍ୟକ୍ତି ସ୍ୱାଧୀନତାର ମନୋଭାବ ବ୍ୟକ୍ତିର ଅସହାୟତା ବା ଅଧସ୍ତନତାକୁ ପରିହାର କରିଥାଏ । ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲାବେଳେ ସେ ନିଷ୍କ୍ରିୟ ବିରୋଧ ନକରି ସେ ଏହାର ସକ୍ରିୟ ବିରୋଧ କରିବାରେ ଗୁରୁତ୍ୱ ଦେଉଥିଲେ । କାରଣ ତଦ୍ୱାରା ଅନ୍ୟାୟର ପରିବର୍ତ୍ତନ ପାଇଁ ବ୍ୟକ୍ତି ଭିତରେ ଆଗ୍ରହ ସୃଷ୍ଟି ହୋଇପାରିବ ଓ ବ୍ୟକ୍ତି ସଚେତନ ଭାବେ ଏହା କରିବାବେଳେ ସତ୍ୟ ପ୍ରତି ଅଙ୍ଗୀକାର ରହିବ । ଏହି ପଦକ୍ଷେପ ପାଇଁ ସେ ପ୍ରଥମେ ଭୟଶୂନ୍ୟ ରହିବାକୁ ଏକ ପ୍ରାଥମିକ ଆବଶ୍ୟକତା ଭାବରେ ଗ୍ରହଣ କରୁଥିଲେ । କାରଣ ଜଣେ ଭୟଶୂନ୍ୟ ବ୍ୟକ୍ତି ହିଁ ନୈତିକ ଦାୟିତ୍ୱ ବହନ କରି ଅନ୍ୟାୟକୁ ପ୍ରତିରୋଧ କରିପାରିବ । ଅନ୍ୟାୟ ପାଖରେ, ଅଧସ୍ତନ ହୋଇ ରହିବା ଦ୍ୱାରା ନିଜର ଅସହାୟତା ବା ଦୁର୍ବଳତା ହିଁ ପ୍ରକାଶ ପାଇଥାଏ । ଏହାର ପ୍ରତିରୋଧ କରିବା ପାଇଁ ଭୟଶୂନ୍ୟ ନହେବାଦ୍ୱାରା ଜଣେ ଅତ୍ମଗ୍ଲାନି ଭିତରେ ପ୍ରତିଶୋଧ ମନୋଭାବ ପୋଷଣ କରିଥାଏ ଓ ସୁଯୋଗର ଅପେକ୍ଷାରେ ଥାଏ । ବରଂ ଅସହାୟ ବ୍ୟକ୍ତି ସହ ସାମିଲ ହୋଇ ଅନ୍ୟାୟ ଶକ୍ତି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାବେଳେ ପ୍ରଥମେ ବିରୋଧକାରୀ ମନରେ ଆତ୍ମ-ବିଶ୍ୱାସ ସୃଷ୍ଟି କରିବା ଆବଶ୍ୟକ ହୁଏ । ଅନ୍ୟ ଭିତରେ ଆତ୍ମପ୍ରତ୍ୟୟ ସୃଷ୍ଟି କରିପାରିଲେ ଜଣେ ସ୍ୱତଃପ୍ରବୃତ୍ତ ଭାବରେ ଅନ୍ୟାୟର ବିରୁଦ୍ଧାଚରଣ କରିବ ଓ ସେଥିପାଇଁ ତ୍ୟାଗ ସହିବାକୁ ଆଗେଇ ଆସିବ । ଏହାଦ୍ୱାରା ସେ ପ୍ରତିହିଂସାର ମନୋଭାବକୁ ପରିହାର କରି ନିଜର ଆତ୍ମବିଶ୍ୱାସ ଓ ଉନ୍ନତ ଆଚରଣଦ୍ୱାରା ପ୍ରତି-ପକ୍ଷର ହୃଦୟକୁ ପରିବର୍ତ୍ତନ କରିବାର ଦାୟିତ୍ୱ ବହନ କରିବ । ନିଜର ଅସୀମ

ତ୍ୟାଗଦ୍ୱାରା ଅନ୍ୟାୟକାରୀ ମନରେ ଭାବାବେଗ ସୃଷ୍ଟି କରିବା ଫଳରେ ଅନ୍ୟାୟକୁ ବିଲୋପ କରାଯାଇପାରିବ । ନୂଆଖାଲିର ସାମ୍ପ୍ରଦାୟିକ ଦଙ୍ଗାବିଧ୍ୱସ୍ତ ଅଞ୍ଚଳରେ ଗାନ୍ଧୀ ରହିଥିବାବେଳେ ବହୁ ମହିଳା ତାଙ୍କ ପାଖକୁ ଆସି କହିଲେ, "ଆମେ ଆମର ସ୍ୱାମୀ, ସନ୍ତାନ ଓ ଆତ୍ମୀୟସ୍ୱଜନଙ୍କୁ ହରାଇ ଅସହାୟ ହୋଇପଡ଼ିଛୁ । ଆମକୁ ଆଶ୍ୱାସନା ଦିଅନ୍ତୁ ଓ ସହାୟ ହୁଅନ୍ତୁ ।" ଗାନ୍ଧୀ ବ୍ୟଥିତ ହୃଦୟରେ କହିଥିଲେ, "ମୁଁ ଏଠାକୁ ଆଶ୍ୱାସନା ଦେବାକୁ ଆସିନାହିଁ, ବରଂ ସମସ୍ତଙ୍କ ଭିତରେ ସାହସ ଓ ଆତ୍ମବିଶ୍ୱାସ ଫେରାଇ ଆଣିବାକୁ ଆସିଛି ।" ତାଙ୍କର ଏହି ବକ୍ତବ୍ୟ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ମନେହୁଏ ।

ସମ୍ପ୍ରତି ରାଜନୈତିକ ଶକ୍ତି ଓ ଅର୍ଥନୈତିକ ବ୍ୟବସ୍ଥା ଭିତରେ ସଙ୍କୁଚିତ ହୋଇ ମଣିଷ ନିଜକୁ ନ୍ୟୂନ ଓ ମୂଲ୍ୟହୀନ ଅନୁଭବ କରୁଥିବାବେଳେ ଗାନ୍ଧୀ ଏହା ବିରୁଦ୍ଧରେ ସ୍ୱରଉତ୍ତୋଳନ କରି ବ୍ୟକ୍ତିର ମହତ୍ତ୍ୱକୁ ପ୍ରତିପାଦନ କରିଛନ୍ତି । ସେ କହିଛନ୍ତି, "ମଣିଷଦ୍ୱାରା ପ୍ରଚଳିତ ବ୍ୟବସ୍ଥାଠାରୁ ମଣିଷ ଅଧିକ ମୂଲ୍ୟବାନ୍ ।" ଯେକୌଣସି କେନ୍ଦ୍ରୀଭୂତ ବ୍ୟବସ୍ଥା ବ୍ୟକ୍ତି ଉପରେ ଆଧିପତ୍ୟ ବିସ୍ତାର କରି ତା'ର ସ୍ୱାଧୀନତାକୁ ସଙ୍କୁଚିତ କରିବାର ସମ୍ଭାବନା ଥିବାରୁ ଗାନ୍ଧୀ ରାଜନୀତି ଓ ଅର୍ଥନୀତି ଉଭୟ କ୍ଷେତ୍ରରେ ବିକେନ୍ଦ୍ରୀକରଣ ବ୍ୟବସ୍ଥାର ପରିକଳ୍ପନା କରିଛନ୍ତି । ସେ ଗ୍ରାମସ୍ୱରାଜ ଓ ସ୍ୱାବଲମ୍ବନଶୀଳ ପଞ୍ଚାୟତ ବ୍ୟବସ୍ଥା ଭିତରେ ସ୍ୱାୟତ୍ତ ଶାସନର ଚିତ୍ର ଆଙ୍କିଛନ୍ତି । ଆତ୍ମନିର୍ଭରଶୀଳତା, ବିକେନ୍ଦ୍ରୀଭୂତ ପ୍ରଶାସନ ଓ ସ୍ୱରାଜ ବ୍ୟବସ୍ଥା ଭିତରେ ସେ ଏକ ପ୍ରଗତିଶୀଳ ବିଶ୍ୱସଙ୍ଘର ଚିତ୍ର ଦେଇଛନ୍ତି । ଏପରିକି ବିକେନ୍ଦ୍ରୀକରଣ ଉନ୍ନତ ଶାସନ ବ୍ୟବସ୍ଥା କରିଆରେ ସମଗ୍ର ମାନବଜାତି ପାଇଁ ସେ ନୈରାଜ୍ୟର ପରିକଳ୍ପନା କରିଛନ୍ତି ।

ବ୍ୟକ୍ତି ସ୍ୱାଧୀନତାକୁ ସର୍ବଶ୍ରେଷ୍ଠ ମୂଲ୍ୟ ଦେବା ଭିତରେ ସେ ବ୍ୟକ୍ତିର ନୈତିକ ଦାୟିତ୍ୱବୋଧକୁ ସ୍ୱୀକାର କରି ଏଥିପାଇଁ କୌଣସି ଗୁରୁବାଦକୁ ଗ୍ରହଣ କରିବାର ଅବକାଶ ନାହିଁ ବୋଲି ମତ ଦେଇଛନ୍ତି ।

ନିଜର ବିଚାର ଓ କର୍ତ୍ତବ୍ୟ କ୍ଷେତ୍ରରେ ନିଜକୁ ସ୍ୱାଧୀନ ବୋଲି ମନେକରୁଥିବାରୁ ସମୟରେ ଭୁଲ୍ କରିବାର ବା ତ୍ରୁଟିପୂର୍ଣ୍ଣ ବିଚାରଦ୍ୱାରା ପରିଚାଳିତ ହେବାର ସମ୍ଭାବନା ରହିଥାଏ । କିନ୍ତୁ ଭୁଲ୍ କରିବା ଭିତରେ ବ୍ୟକ୍ତି ନିଜକୁ ସଂଶୋଧନ କରିଥାଏ ଓ ଯେକୌଣସି ପ୍ରକାର ପରୀକ୍ଷା କରିବା ଭିତରେ ଭୁଲ୍ ରହିବାର ଅବକାଶ ଥାଏ । ବସ୍ତୁତଃ ସେହି ତ୍ରୁଟି ଭିତରୁ ବ୍ୟକ୍ତି ଶିକ୍ଷା କରେ । ମଣିଷ ଜାତିର ବିକାଶ ଏହିପରି ନାନା ପରୀକ୍ଷା ଓ ତ୍ରୁଟିପୂର୍ଣ୍ଣ ଭାବନାର ସଂଶୋଧନ ଦ୍ୱାରା ସମ୍ଭବ ହୋଇପାରିଛି । ଏକଦା ସେ ମୋତେ କହିଥିଲେ, "ଭୁଲ୍ କରିବା

ଏକ ମାନବୀକ ଦୁର୍ବଳତା; କାରଣ କେହି ଉଦ୍ଦେଶ୍ୟମୂଳକ ଭାବରେ ଭୁଲ୍ କରେ-ନାହିଁ । କିନ୍ତୁ ନିଜର ତ୍ରୁଟିକୁ ଜାଣିବାପରେ ତାକୁ ସଂଶୋଧନ ନକରିବା ହିଁ ହେଉଛି ଭୁଲ । ନିଜେ ଭୁଲ୍ କରିବାର ସମ୍ଭାବନା ଥିବାରୁ ଭାବି କର୍ମରେ ପ୍ରବୃତ୍ତ ନହେବା ଠିକ୍ ନୁହେଁ । ପ୍ରତ୍ୟେକ ନିଜର କର୍ମ କରିବା ଆବଶ୍ୟକ ଓ ତା' ଭିତରେ ଭୁଲ୍ ରାସ୍ତାରେ ପରିଚାଳିତ ହେଉଥିଲେ ଏହା ଜାଣିବା ପରେ ନିଜକୁ ସଂଶୋଧନ କରିବା ଦରକାର ।'' ଏହାରି ଭିତର ଦେଇ ଉଚିତ ମାର୍ଗଟି ଜଣେ ଜାଣିବାର ସୁଯୋଗ ପାଏ ଓ ସେହି ପଥରେ ବ୍ରତୀ ହେବା ଦ୍ୱାରା ଜଣେ ନିଜର ଦୃଷ୍ଟିଭଙ୍ଗୀକୁ ବ୍ୟାପକ କରିଥାଏ ଓ କୁସଂସ୍କାର ଓ ଅନାବଶ୍ୟକ ଭାବନାରୁ ନିଜକୁ ମୁକ୍ତ ରଖିପାରେ । ଏହିପରି ବ୍ୟକ୍ତିର ନୈତିକ ଶୃଙ୍ଖଳା ଓ ନିଜର କାର୍ଯ୍ୟ ପାଇଁ ଦାୟିତ୍ୱବୋଧ ଆସିଥାଏ ବୋଲି ସେ ବିଚାର କରିଛନ୍ତି ।

ନିଜର ଗଭୀର ଆତ୍ମବିଶ୍ୱାସ ଓ କର୍ମପ୍ରବଣତା ଭିତରେ ଗାନ୍ଧୀଙ୍କର ଅନ୍ତର୍ଜୀବନ ସତ୍ୟରୁ ସତ୍ୟ ସ୍ତରରେ ଅଧିକ ରଙ୍ଗିନ ହୋଇଥିଲା । ସତ୍ୟାଗ୍ରହକୁ ପାଥେୟ ଭାବରେ ନେଇ ସେ ଜୀବନର ଶେଷପର୍ଯ୍ୟନ୍ତ ଏହାର ପ୍ରୟୋଗ କରି ଚାଲିଥିଲେ । ପରିଣତ ବୟସରେ ଉପନୀତ ହେଲାପରେ ମଧ୍ୟ ସତ୍ୟାନୁଭୂତି ସ୍ତରରେ ତାଙ୍କର ଅଗ୍ରଗତି ସ୍ଥବିର ହୋଇଯାଇ ନଥିଲା । ତାଙ୍କର ବିଚାର ସ୍ତରରେ ସେ ସଙ୍ଗତିରକ୍ଷା ନକରି ସତ୍ୟ ସହିତ ସର୍ବଦା ସଙ୍ଗତି ରକ୍ଷା କରିବାକୁ ପ୍ରୟାସ କରିଥିଲେ । ତାଙ୍କର ସାମଗ୍ରିକ ବିଚାରକୁ ପର୍ଯ୍ୟାଲୋଚନା କଲେ ହୁଏତ ସ୍ଥଳବିଶେଷରେ ବିରୋଧାଭାସ ଦେଖିବାକୁ ମିଳିଥାଏ, କିନ୍ତୁ ସର୍ବଦା ନିଜର ଅନୁଭୂତି ଭିତରେ ସତ୍ୟକୁ ଗ୍ରହଣ କରିବାଦ୍ୱାରା ସେ ନିଜର ପୂର୍ବ ବିଚାରକୁ ପରିବର୍ତ୍ତନ କରୁଥିଲେ । କିନ୍ତୁ ବିଚାରସ୍ତରରେ ଜଣାପଡୁଥିବା ବିରୋଧାଭାସ ପଶ୍ଚାତରେ ସତ୍ୟ ପ୍ରତି ଉନ୍ମୁକ୍ତ ହୋଇରହିଥିବା ପ୍ରଚ୍ଛନ୍ନ ସଙ୍ଗତିଟି ଦେଖିବାକୁ ମିଳିଥାଏ ।

ମୋଟାମୋଟି ଭାବରେ ଆଧୁନିକ ସଭ୍ୟତାକୁ ଗାନ୍ଧୀଙ୍କର ଅବଦାନ ସମ୍ପର୍କରେ ଏହା କୁହାଯାଇପାରିବ ଯେ ରାଜନୈତିକ ଓ ଅର୍ଥନୈତିକ ବ୍ୟବସ୍ଥା ବ୍ୟକ୍ତିକୁ ଯେପରି ନ୍ୟୂନ ଓ ଅବଦମନ କରିଛି ସେଥିରୁ ସେ ବ୍ୟକ୍ତିକୁ ମୁକ୍ତ କରି ତା'ର ମହତ୍ତ୍ୱ ପ୍ରତିଷ୍ଠା କରିଛନ୍ତି । ବ୍ୟକ୍ତିର କର୍ତ୍ତିବ୍ୟଜ୍ଞାନ ଓ ଅଙ୍ଗୀକାରବୋଧକୁ ଉଜ୍ଜୀବିତ କରି ସେ ମଣିଷର ମୁକ୍ତିକୁ ଉଚ୍ଚସ୍ଥାନ ଦେଇଛନ୍ତି । ଏହି ଆଭିମୁଖ୍ୟ ଭିତରେ ସତ୍ୟାଗ୍ରହକୁ ପାଥେୟଭାବେ ନେଇ ସତ୍ୟକୁ ଜୀବନର ନିରଙ୍କୁଶ ମୂଲ୍ୟବୋଧ ଭାବରେ ପ୍ରତିଷ୍ଠା କରିଛନ୍ତି ।

# ଗାନ୍ଧୀବାଦର ନୂତନ କଳେବର

ଗାନ୍ଧୀଙ୍କର ଜନ୍ମ ଶତବାର୍ଷିକୀ ଉପଲକ୍ଷେ ଗାନ୍ଧୀବାଦର ଏକ ନବଜନ୍ମ ହେବା ବିଧେୟ ।

ଘୃଣା ଓ ଯୁଦ୍ଧ-ବିକ୍ଷୁବ୍‌ଧ ପୃଥିବୀରେ ଗାନ୍ଧୀ ପ୍ରେମ ଓ ଶାନ୍ତିର ବାର୍ତ୍ତାବହ ହୋଇ ଏକ ନୂତନ ସମାଜର ଦିଗଦର୍ଶନ ଦେଇଥିଲେ । ଭାରତ ସ୍ୱାଧୀନତା ପରେ ଯଦି ସେ ବଞ୍ଚି ରହିଥାନ୍ତେ (ତାଙ୍କର ଆତ୍ମବିଶ୍ୱାସ ଥିଲା ଯେ ସେ ଅନ୍ତତଃ ଦୁଇ/ତିନି ଦଶନ୍ଧି ବଞ୍ଚିପାରିବେ), ସେ ଏକ ନୂତନ ଜୀବନଧାରାକୁ ପ୍ରତିଷ୍ଠା କରିପାରିଥାନ୍ତେ । ତାଙ୍କର ନିଧନ ଏହି ସମ୍ଭାବନାକୁ ସବୁଦିନ ପାଇଁ ବନ୍ଦ କରିଦେଲା । ତାଙ୍କର ଉତ୍ତରାଧିକାରୀମାନେ ଭିନ୍ନ ପନ୍ଥା ଗ୍ରହଣ କଲେ । ଗାନ୍ଧୀ ଯେଉଁ ମାଟିରେ ଜନ୍ମ ହୋଇଥିଲେ ସେହି ଭୂମିରେ ଗାନ୍ଧୀବାଦ ତିଷ୍ଠି ପାରିଲା ନାହିଁ । ପରନ୍ତୁ ସୁଦୂର ଭୂଇଁରେ ମାର୍ଟିନ ଲୁଥର କିଙ୍ଗ୍ ତାଙ୍କ ପନ୍ଥାକୁ ପ୍ରୟୋଗ କରିଥିଲେ । ଯଦିବା ପୃଥିବୀରେ ଆମେ ଶାନ୍ତି ଓ ପ୍ରେମର ଜୟଗାନ କରୁ, କିନ୍ତୁ ବାସ୍ତବପକ୍ଷେ ଘୃଣା ଓ ହିଂସାର ପ୍ରଭାବରୁ ମାନବଜାତିକୁ ମୁକ୍ତ କରିପାରୁ ନାହିଁ । ପ୍ରେମ ଓ ଶାନ୍ତିର ବାର୍ତ୍ତାବହ ଓ ପ୍ରୟୋଗକାରୀ ଗାନ୍ଧୀ ଓ ମାର୍ଟିନ ଲୁଥର କିଙ୍ଗ୍ ନିଜର ଲକ୍ଷ୍ୟପୂରଣ ପୂର୍ବରୁ ଶହୀଦ ହୋଇଗଲେ ।

## ଗାନ୍ଧୀ ନେହେରୁ ପାର୍ଥକ୍ୟ :

ଜବାହରଲାଲ ନେହେରୁ ଗାନ୍ଧୀଙ୍କର ଉତ୍ତରାଧିକାରୀ ଥିଲେ । ତାଙ୍କର ଗାନ୍ଧୀଙ୍କ ପ୍ରତି ଯଥେଷ୍ଟ ସମ୍ମାନ ଥିଲା ଓ ତାଙ୍କ ଜୀବନର ମୂଲ୍ୟବୋଧ ପ୍ରତି ଶ୍ରଦ୍ଧା ରହିଥିଲା । କିନ୍ତୁ ଗାନ୍ଧୀବାଦରେ ତାଙ୍କର ବିଶ୍ୱାସ ନଥିଲା । ତିନିଥର ପ୍ରଧାନମନ୍ତ୍ରୀ ହେବା ଭିତରେ ସେ ଗାନ୍ଧୀଙ୍କ ପନ୍ଥାକୁ ପରିହାର କରି ବ୍ରିଟିଶ ବିକାଶ ବ୍ୟବସ୍ଥାକୁ ପ୍ରଚଳନ କରିଥିଲେ । ତାଙ୍କ ନେତୃତ୍ୱ ସମୟରେ ଅମଲାତନ୍ତ୍ରର ଗୁରୁତ୍ୱ, ଯନ୍ତ୍ରଶିଳ୍ପ, ଉଚ୍ଚ ବେତନଭୋଗୀ କର୍ମଚାରୀ, ଆଡ଼ମ୍ବରପୂର୍ଣ୍ଣ କାର୍ଯ୍ୟକ୍ରମ, ପ୍ରତିଯୋଗିତାମୂଳକ ଅର୍ଥନୀତି, ଏକଚାଟିଆ କାରବାର ପ୍ରାଧାନ୍ୟ ଲାଭ କଲା । ଏହା ସହିତ ସହର ଓ ବସ୍ତି ଏକା ସାଙ୍ଗରେ ମୁଣ୍ଡ ଟେକିଲା । ଏହା ଗାନ୍ଧୀଙ୍କର ସରଳ ଜୀବନ, ସେବା ଓ ତ୍ୟାଗମୂଳକ ମନୋଭାବ, କୁଟୀରଶିଳ୍ପ ଓ ସାଧାରଣ ମଣିଷ ପ୍ରତି ଥିବା ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀଠାରୁ ଦୂରେଇ ଯାଇଥିଲା ।

ୟୁରୋପରେ ନାଗରିକ ସଚେତନତା, ଗଣତାନ୍ତ୍ରିକ ମୂଲ୍ୟବୋଧ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପରିଣାମ ସ୍ୱରୂପ ଶିଳ୍ପ ସଭ୍ୟତାର ବିକାଶ ହୋଇଥିଲା । ଶିଳ୍ପ ସଭ୍ୟତାରୁ ଶ୍ରମିକ ଆନ୍ଦୋଳନ, ଅନ୍ୟ ରାଷ୍ଟ୍ର ସହ ଯୁଦ୍ଧ ଓ କଞ୍ଚାମାଲ ଓ ବଜାର

ପାଇବା ପାଇଁ ଔପନିବେଶିକ ସାମ୍ରାଜ୍ୟ ବିସ୍ତାର ବିକାଶ ଲାଭ କଲା । ଶିଳ୍ପ ସଭ୍ୟତାର ସୁଫଳ ଓ କୁପରିଣାମ ନେଇ ଗାନ୍ଧୀ ଅଭିହିତ ଥିଲେ । ସୁତରାଂ ସେ ଅର୍ଥନୈତିକ ବିକେନ୍ଦ୍ରୀକରଣ ଓ ଗ୍ରାମ ସ୍ୱରାଜର ପରିକଳ୍ପନା କରିଥିଲେ । ଭାରତ ଭଳି ଅନୁନ୍ନତ ରାଷ୍ଟ୍ରମାନଙ୍କ ପାଇଁ ଏହି ବ୍ୟବସ୍ଥା ଅଧିକ ଉପଯୋଗୀ ହେବ ବୋଲି ତାଙ୍କର ବିଶ୍ୱାସ ଥିଲା । ଏତଦ୍‌ବ୍ୟତୀତ ଶିଳ୍ପସଭ୍ୟତା ଓ ତା'ର ସାମ୍ରାଜ୍ୟବାଦୀ ଯୁଦ୍ଧଖୋର ବ୍ୟବସ୍ଥା ଅପେକ୍ଷା ତାଙ୍କ ପ୍ରଗତିର ଧାରା ଭାରତୀୟ ସଂସ୍କୃତି ସହି ଅଧିକ ସଙ୍ଗତି ରକ୍ଷାକରିବା ସହିତ ଏକ ଅହିଂସ ସମାଜର ମୂଳଦୂଆ ପକାଇଥାନ୍ତା ।

ଗାନ୍ଧୀଙ୍କ ନୂତନ ସାମାଜିକ ପ୍ରକଳ୍ପ ଭିତରେ ଗ୍ରାମ ହିଁ କେନ୍ଦ୍ରବିନ୍ଦୁ ହୋଇ ରହିଥିଲା । ୧୯୪୫ ମସିହା ଅକ୍ଟୋବର ମାସରେ ସେ ଏକଥା ନେହେରୁଙ୍କୁ କହିଥିଲେ ଯେ ଭାରତର ରାଜନୈତିକ ସ୍ୱାଧୀନତା ପରେ ଆମକୁ ଗ୍ରାମଗୁଡ଼ିକ ଉପରେ ଗୁରୁତ୍ୱ ଦେଇ ତା'ର ଯଥାର୍ଥ ବିକାଶ କରାଇବାକୁ ପଡ଼ିବ । ଗ୍ରାମଗୁଡ଼ିକ ସ୍ୱାବଲମ୍ବୀ ହେଲେ ସ୍ୱାଧୀନତାର ମହତ୍ତ୍ୱ ପ୍ରତିଷ୍ଠା ହେବ । କେବଳ ଭାରତ କାହିଁକି ଯେକୌଣସି ବିକାଶଶୀଳ ରାଷ୍ଟ୍ର ପରିପ୍ରେକ୍ଷୀରେ ଗ୍ରାମ ସ୍ୱରାଜ ଦ୍ୱାରା ମାନବ ଜାତିର ମୁକ୍ତି ସମ୍ଭବ ହେବ । ଦେଶର ଅଗଣିତ ଜନଗଣ ସହର ପରିବେଶରେ ଅବିରତ ପ୍ରତିଯୋଗିତା ଭିତରେ ବଞ୍ଚିବା ସମ୍ଭବ ହେବନାହିଁ । ଯଦିବା ତାହା ହୁଏ ତାହା ଆମ ସ୍ୱାଧୀନତାକୁ କାଳକ୍ରମେ ବିପନ୍ନ କରିଦେବ । ଫଳରେ ହିଂସା ଓ ଅସତ୍ୟର ପ୍ରସାର ହେବ । ଗାନ୍ଧୀଙ୍କର ଗ୍ରାମସ୍ୱରାଜର ପରିକଳ୍ପନା ଭିତରେ ଗ୍ରାମର ଜନଗଣ ଅବିଦ୍ୟା ଓ ଅନ୍ଧକାର ଭିତରେ ବଞ୍ଚିବେ ନାହିଁ । ବରଂ ନାରୀ-ପୁରୁଷ ନିର୍ବିଶେଷରେ ପ୍ରତ୍ୟେକେ ମୁକ୍ତ ଓ ଦାୟିତ୍ୱସମ୍ପନ୍ନ ନାଗରିକ ବୋଲି ଅନୁଭବ କରିବେ । କେହି ନିଷ୍କର୍ମା ହୋଇ ରହିବେ ନାହିଁ ବା କେହି ବିଳାସ ବା ପ୍ରାଚୁର୍ଯ୍ୟ ଭିତରେ ଜୀବନ ବିତାଇବେ ନାହିଁ । ପ୍ରତ୍ୟେକ ନିଜ ସାମର୍ଥ୍ୟ ଭିତରେ ଶାରୀରିକ ଶ୍ରମ କରି ନିଜର ଆବଶ୍ୟକତା ପୂରଣ କରିବେ । ଏହା ସହିତ ରେଳ, ଡାକତାର ବ୍ୟବସ୍ଥା ଓ ଆବଶ୍ୟକ ସ୍ଥଳେ ଯନ୍ତ୍ର-ଶିଳ୍ପର ବିକାଶ ମଧ୍ୟ କରିହେବ । ୧୯୪୧ ମସିହାରେ ଗାନ୍ଧୀ କହିଥିଲେ ଯେ ସ୍ୱାଧୀନ ଭାରତରେ ଏକା ସହରରେ ଗୋଟିଏ ପଟେ ବିଳାସ ଓ ପ୍ରାଚୁର୍ଯ୍ୟ ଏବଂ ଅପର ପକ୍ଷରେ ଅଗଣିତ ବସ୍ତିବାସିନ୍ଦା ଓ ଶ୍ରମଜୀବୀଙ୍କର ଦୁଃଖଦୁର୍ଦ୍ଦଶା ଓ ଜୀବନ ସଂଗ୍ରାମ ଏକାଠି ରହିପାରିବ ନାହିଁ ।

କିନ୍ତୁ ନେହେରୁ ପ୍ରଗତିର ଏକ ଭିନ୍ନ ପରିକଳ୍ପନା କରିଥିଲେ । ସେ ଗାନ୍ଧୀଙ୍କୁ ଉତ୍ତର ଦେଇଥିଲେ, "ମୁଁ ବୁଝିପାରୁନାହିଁ ଗ୍ରାମ ସଭ୍ୟତାର ବିକାଶ କିପରି ସତ୍ୟ ଓ ଅହିଂସାର ପ୍ରସାର ଘଟାଇବ । ବରଂ କହିବାକୁ ଗଲେ ବୌଦ୍ଧିକ ଓ ସାଂସ୍କୃତିକ ମାନଦଣ୍ଡରୁ ଗ୍ରାମଗୁଡ଼ିକ ପଛୁଆ ଓ ସେହିପରି ଏକ ପରିବେଶରୁ ପ୍ରଗତିର ଧାରା ବିକାଶ ଲାଭ କରିପାରିବ ନାହିଁ । ସଙ୍କୀର୍ଣ୍ଣ ମନୋଭାବ ପୋଷଣ କରୁଥିବା

ଗ୍ରାମର ଲୋକମାନେ ବରଂ ଅଧିକ ଅସତ୍ୟ ଓ ହିଂସାର ଆଶ୍ରୟ ନେବେ ।"
ସେହିପରି ଯନ୍ତ୍ରଶିଳ୍ପ ଓ ସହରୀ ସଭ୍ୟତାର ବିକାଶ ନେଇ ଗାନ୍ଧୀ ଓ ନେହେରୁଙ୍କ ଦୃଷ୍ଟିଭଙ୍ଗୀରେ ପାର୍ଥକ୍ୟ ରହିଥିଲା । ଆଧୁନିକ ଶିଳ୍ପବିକାଶ ଓ ଗମନାଗମନର ପ୍ରଭୂତ ଉନ୍ନତି ଦ୍ୱାରା ବିକାଶର ଧାରାକୁ ତ୍ୱରାନ୍ୱିତ କରିହେବ ବୋଲି ନେହେରୁ ବିଶ୍ୱାସ କରିଥିଲେ । ଅବଶ୍ୟ ସହରରେ ଜନସଂଖ୍ୟାର ଦ୍ରୁତ ବୃଦ୍ଧି ଯୋଗୁଁ କେତେକ ମନ୍ଦ ବ୍ୟବସ୍ଥା ସୃଷ୍ଟି ହୋଇଛି; କିନ୍ତୁ ସେଗୁଡ଼ିକ ନିୟନ୍ତ୍ରଣ କରି ସହର ସଂସ୍କୃତି ଛାଞ୍ଚରେ ଗ୍ରାମଗୁଡ଼ିକର ଆଧୁନିକୀକରଣ କରାଗଲେ ଦେଶର ପ୍ରଗତି ସାଧିତ ହେବ ।

## ବିକେନ୍ଦ୍ରୀଭୂତ ସମାଜ :

ସମାଜରେ ସମତା ଓ ସଂହତି ପ୍ରତିଷ୍ଠା ପାଇଁ ପ୍ରଚଳିତ ସାମାଜିକ ଛାଞ୍ଚରେ ଏକ ମୌଳିକ ପରିବର୍ତ୍ତନ ଆଣିବାକୁ ଗାନ୍ଧୀ ପ୍ରୟାସ କରିଥିଲେ । ପରସ୍ପର ନିର୍ଭରଶୀଳ ଗ୍ରାମସ୍ୱରାଜ ଗଠନ ମାଧ୍ୟମରେ ସମାଜରେ ଏହି ଗୁଣାତ୍ମକ ପରିବର୍ତ୍ତନ ଆସିପାରିବ ବୋଲି ସେ ବିଶ୍ୱାସ କରିଥିଲେ । ସହରରେ ବହୁଲୋକ ବାସ କରୁଥିବାରୁ ସେଠାରେ ପରସ୍ପର ଭିତରେ ସାମାଜିକ ସମ୍ବନ୍ଧ ଓ ଆତ୍ମୀୟତା ସୃଷ୍ଟି ହୋଇପାରେ ନାହିଁ; ଫଳରେ ହିଂସା ଓ ବିଦ୍ୱେଷର ବାତାବରଣ ସୃଷ୍ଟି ହୁଏ । ଅପର-ପକ୍ଷରେ କ୍ଷୁଦ୍ର ପରିସର ଭିତରେ ପାରସ୍ପରିକ ବୁଝାମଣା ଓ ସହଯୋଗ ରହିବା ସମ୍ଭବ ହୁଏ । ବସ୍ତୁତଃ ଗାନ୍ଧୀଙ୍କ ରାଜନୈତିକ ବିଚାର ବିମର୍ଶ କ୍ଷେତ୍ରରେ ଗ୍ରାମସ୍ୱରାଜ ହିଁ ମୁଖ୍ୟ ସ୍ଥାନ ନେଇଥିଲା ଓ କେବଳ ଭାରତବର୍ଷ ନୁହେଁ ସମଗ୍ର ବିଶ୍ୱ ପାଇଁ ମଧ୍ୟ ସେ ଏକ ବିକେନ୍ଦ୍ରୀଭୂତ ସ୍ୱାବଲମ୍ବୀ କ୍ଷୁଦ୍ର ସାମାଜିକ ବ୍ୟବସ୍ଥାର ପରିକଳ୍ପନା କରିଥିଲେ । ଗ୍ରାମସ୍ୱରାଜକୁ କେନ୍ଦ୍ର ଭାବରେ ନେଇ ସ୍ତର ପରେ ସ୍ତର ଦେଇ ଏକ ପ୍ରଗତିଶୀଳ ବିଶ୍ୱ ସଙ୍ଘର ରୂପରେଖ ଆଙ୍କିଥିଲେ । ଏହି ପ୍ରକାର ଏକ ସମାଜ ବ୍ୟବସ୍ଥାରେ ଜାତିଗତ, ସାଂପ୍ରଦାୟିକ ଓ ଜାତୀୟତା ନେଇ ବିଦ୍ୱେଷ ଓ ଉତ୍ତେଜନା ରହିବ ନାହିଁ । ପ୍ରତ୍ୟେକ ନାଗରିକ ଗୋଟିଏ ମୂଳକେନ୍ଦ୍ର ସହିତ ସମ୍ବନ୍ଧିତ ରହିବେ ଓ ତାଙ୍କର ସର୍ବାଙ୍ଗୀନ ବିକାଶ ପ୍ରତି ତାଙ୍କ ସମ୍ବନ୍ଧିତ ସମାଜ ଅଙ୍ଗୀକାର ରହିବ ।

ଅବଶ୍ୟ କେନ୍ଦ୍ରୀଭୂତ ବ୍ୟବସ୍ଥାରେ ଗଢ଼ିଉଠୁଥିବା ସହରୀ ସଭ୍ୟତା, ଶିଳ୍ପ ବିକାଶ ଓ ପ୍ରଯୁକ୍ତିବିଦ୍ୟାର ଉନ୍ନତି ଯୋଗୁଁ ଯେଉଁ ସୁଖସ୍ୱାଚ୍ଛନ୍ଦ୍ୟ ମିଳିପାରୁଛି ତାହା ଗାନ୍ଧୀଙ୍କ ପ୍ରକଳ୍ପିତ ବ୍ୟବସ୍ଥାରେ ମିଳିପାରିବ ନାହିଁ । ସୁତରାଂ ଏହି ମାନଦଣ୍ଡରେ ଗାନ୍ଧୀଙ୍କ ବିକେନ୍ଦ୍ରୀଭୂତ ବିକାଶ-ପ୍ରକଳ୍ପ ପୁରୁଣାକାଳିଆ ବୋଲି ପ୍ରତୀୟମାନ ହୋଇପାରେ । କିନ୍ତୁ କେନ୍ଦ୍ରୀଭୂତ ବ୍ୟବସ୍ଥାରେ ମୁଷ୍ଟିମେୟ ବ୍ୟକ୍ତିଙ୍କ ପାଇଁ ଅନେକ ସୁଖସ୍ୱାଚ୍ଛନ୍ଦ୍ୟ ମିଳିବାବେଳେ ଅନେକଙ୍କ ପାଇଁ ସର୍ବନିମ୍ନ ସ୍ୱାଚ୍ଛନ୍ଦ୍ୟ ମିଳିପାରେ ନାହିଁ ।

ମୁଷ୍ଟିମେୟ ବ୍ୟକ୍ତି କାର୍ ଚଢ଼ି ସକଳ ପ୍ରାଚୁର୍ଯ୍ୟକୁ ଉପଭୋଗ କଲାବେଳେ ଗ୍ରାମ ଓ ବସ୍ତିରେ ଥିବା ଅଗଣିତ ମଣିଷ ଅକ୍ଲାନ୍ତ ପରିଶ୍ରମ ସତ୍ତ୍ୱେ ସର୍ବନିମ୍ନ ଆବଶ୍ୟକତା ପୂରଣ କରିବାରେ ସମର୍ଥ ହୋଇପାରନ୍ତି ନାହିଁ । ସେମାନେ ଅଜ୍ଞତା ଓ ଦାରିଦ୍ର୍ୟ ଭିତରେ ପେଷି ହୋଇ ରହିଥାନ୍ତି । ସମାଜରେ ଏହି ବୈଷମ୍ୟ ଲାଗିରହିଲେ ତା'ର ପରିଣାମ ସ୍ୱରୂପ ସାମାଜିକ ଜୀବନରେ ଭ୍ରାତୃସାମ୍ୟତା ନଷ୍ଟ ହେବା ସହିତ ପରସ୍ପର ପ୍ରତି ଈର୍ଷା, ବିଦ୍ୱେଷ ଓ ପ୍ରତିହିଂସାର ମନୋଭାବ ବିକାଶ ଲାଭ କରିବ । କିନ୍ତୁ ବିକେନ୍ଦ୍ରୀକରଣ ବ୍ୟବସ୍ଥାରେ ପ୍ରତ୍ୟେକ ନିଜର ସାମର୍ଥ୍ୟ ଅନୁଯାୟୀ କର୍ମତତ୍ପର ହେବା, ଉତ୍ପାଦନ ବୃଦ୍ଧି ଘଟିବା, ଆର୍ଥିକ ସମତା ରକ୍ଷା ହୋଇପାରିବା ଓ ପରସ୍ପର ପ୍ରତି ସମ୍ବେଦନ ମନୋଭାବ ରହିବା ସମ୍ଭବ ହୋଇପାରେ । ଯେଉଁସବୁ କାରଣ ଯୋଗୁଁ ସମାଜରେ ଉତ୍ତେଜନା ସୃଷ୍ଟି ହୋଇଥାଏ ତା'ର ଅଭାବରେ ସମାଜର ଗୁଣାତ୍ମକ ବିକାଶ ତ୍ୱରାନ୍ୱିତ ହୁଏ । ସୁତରାଂ ଆଧୁନିକ ସମାଜ ପରିପ୍ରେକ୍ଷୀରେ ଗାନ୍ଧୀବାଦ ଅତ୍ୟାଧୁନିକ ମନେହୁଏ ।

ନେହେରୁ ଗାନ୍ଧୀବାଦର ଏହି ଦିଗଟି ପ୍ରତି ଗୁରୁତ୍ୱ ଦେଇନଥିଲେ । ଆଧୁନିକ ଶିଳ୍ପୀକରଣ, କେନ୍ଦ୍ରୀଭୂତ ବ୍ୟବସ୍ଥା ଓ ସହରୀ ସଭ୍ୟତାଦ୍ୱାରା ଦେଶର ବିକାଶକୁ ତ୍ୱରାନ୍ୱିତ କରିହେବ ବୋଲି ସେ ବିଚାର କରିଥିଲେ । କିନ୍ତୁ ବାସ୍ତବପକ୍ଷେ ପରିଣାମ ନେହେରୁଙ୍କ ଆଶାକୁ ପୂରଣ କରିପାରିଲା ନାହିଁ ।

ନେହେରୁଙ୍କ ପ୍ରଚଳିତ ବିକାଶଧାରାର ଅନୁଭୂତିରୁ ଗାନ୍ଧୀଙ୍କ ପନ୍ଥାରେ ବିଶ୍ୱାସ ଦୃଢ଼ ହେବାରେ ଲାଗିଛି । ଆଜି ପୃଥିବୀ ଏକ ସନ୍ଧିସ୍ଥ ମୁହୂର୍ତ୍ତରେ ଉପନୀତ ହୋଇଛି । କେନ୍ଦ୍ରୀଭୂତ ବ୍ୟବସ୍ଥା ଓ ବିକେନ୍ଦ୍ରୀକରଣ ଭିତରୁ ଆମକୁ ଗୋଟିଏ ପଦ୍ଧତିକୁ ବାଛିବାକୁ ହେବ । କେନ୍ଦ୍ରୀକରଣ ଆର୍ଥିକ ବ୍ୟବସ୍ଥା ଏକ କେନ୍ଦ୍ରୀଭୂତ ଶାସନ ବ୍ୟବସ୍ଥାଦ୍ୱାରା ପରିଚାଳିତ ହେବ । ଶିଳ୍ପ ଉତ୍ପାଦନର ସମବଣ୍ଟନ ପାଇଁ କେନ୍ଦ୍ରୀଭୂତ ଓ ଅନେକାଂଶରେ ନିରଙ୍କୁଶ କ୍ଷମତା ଉପଭୋଗ କରୁଥିବା ଗୋଟିଏ ରାଜନୈତିକ ବ୍ୟବସ୍ଥା ମୁଣ୍ଡ ଟେକିବ । କେନ୍ଦ୍ରୀଭୂତ ବ୍ୟବସ୍ଥାରୁ ନିଷ୍ପନ୍ନ ଅର୍ଥନୈତିକ ସମାଜବାଦ ସହିତ ଗଣତାନ୍ତ୍ରିକ ରାଜନୈତିକ ବ୍ୟବସ୍ଥା ମେଳ ଖାଇବ ନାହିଁ । ଏଥିରେ ଧନୀ ଅଧିକ ଧନୀ ହେବ ଓ ଗରିବ ସର୍ବହରା ହୋଇଉଠିବ । ଏପରିକି ଗଣତାନ୍ତ୍ରିକ ବ୍ୟବସ୍ଥାରେ ଥିବା ସ୍ୱାଧୀନତା କେନ୍ଦ୍ରୀଭୂତ ଉତ୍ପାଦନ ପ୍ରକ୍ରିୟା ଉପରେ କୌଣସି ନିୟନ୍ତ୍ରଣ ରଖିପାରିବ ନାହିଁ । ଅପରପକ୍ଷରେ ରାଜନୈତିକ ସ୍ୱାଧୀନତା ଓ ବିକେନ୍ଦ୍ରୀକରଣ ଶାସନ ବ୍ୟବସ୍ଥା ସହିତ ଅର୍ଥନୈତିକ ବିକେନ୍ଦ୍ରୀକରଣ ଓ କୁଟୀର-ଶିଳ୍ପର ବିକାଶ ସମତାଳ ଦେଇ ଚାଲିପାରିବ । ପରିଣାମ ସ୍ୱରୂପ ଅର୍ଥନୈତିକ ଓ ସାମାଜିକ ସମତା ସୃଷ୍ଟି ହେବ ।

ଉଭୟ ମାର୍କ୍ସ ଓ ଗାନ୍ଧୀ ମଣିଷ ସମାଜରେ ସମତା ପ୍ରତିଷ୍ଠା କରିବାପାଇଁ ନିଷ୍ଠାପର ଉଦ୍ୟମ କରିଥିଲେ । ଗଠନ, ଶକ୍ତି ଓ ସାମର୍ଥ୍ୟରେ ସବୁ ମଣିଷଙ୍କ ଭିତରେ ସମାନତା ଥିବାରୁ ଯେକୌଣସି ପ୍ରକାରର ବୈଷମ୍ୟ ଅପ୍ରାକୃତିକ ଓ ଅଯଥାର୍ଥ ମନେହୁଏ । ଏହି ଲକ୍ଷ୍ୟ ହାସଲ ପାଇଁ ମାର୍କ୍ସ ଏକ କେନ୍ଦ୍ରୀଭୂତ ଉତ୍ପାଦନ ପଦ୍ଧତି ଓ ଏକଛତ୍ରବାଦୀ ବ୍ୟବସ୍ଥାକୁ ସମର୍ଥନ କରିଥିବାବେଳେ ଗାନ୍ଧୀ କୁଟୀରଶିଳ୍ପ ଓ ଗଣତାନ୍ତ୍ରିକ ବ୍ୟବସ୍ଥାକୁ ସ୍ୱୀକାର କରିଥିଲେ । କିନ୍ତୁ ଚେତନଶୀଳ ମାନବସମାଜ ଯେକୌଣସି ଏକଛତ୍ରବାଦୀ ବ୍ୟବସ୍ଥା ପ୍ରତି ପରାଙ୍ମୁଖ ରହିବା ଦେଖାଯାଏ । କେବଳ ସେତିକି ନୁହେଁ, ଏକଛତ୍ରବାଦୀ ବ୍ୟବସ୍ଥା ଭିତରେ ନିଜର ପ୍ରତିବେଶୀ ସହିତ ଯୁଦ୍ଧରେ ବ୍ୟାପୃତ ରହିବା ଦେଖାଯାଏ । ସୁତରାଂ ଗଣତନ୍ତ୍ର ଓ ପ୍ରତ୍ୟେକ ସ୍ତରରେ ବିକେନ୍ଦ୍ରୀକରଣ ଯାହାକି ଗାନ୍ଧୀଙ୍କ ପ୍ରଦତ୍ତ ପ୍ରଣାଳୀ—ସମ୍ପ୍ରତି ପ୍ରଗତିଶୀଳ ଚିନ୍ତାନାୟକଙ୍କର ଦୃଷ୍ଟି ଆକର୍ଷଣ କରିଛି ।

## ବାସ୍ତବବାଦୀ ଦୃଷ୍ଟିଭଙ୍ଗୀ :

ଗାନ୍ଧୀ ବାସ୍ତବବାଦୀ ଥିଲେ । ସୁତରାଂ ସେ କୁଟୀରଶିଳ୍ପ ଓ ଅର୍ଥନୈତିକ ସମତା ହାସଲର ଲକ୍ଷ୍ୟ ରଚନାତ୍ମକ କାର୍ଯ୍ୟର ପରିସର ଭିତରେ ସୀମିତ ରଖିନଥିଲେ ବା ନ୍ୟାସ ବ୍ୟବସ୍ଥାଦ୍ୱାରା ଉଦ୍ଭବ ହେବ ବୋଲି ଗ୍ରହଣ କରିନଥିଲେ । ସାମ୍ପ୍ରତିକ ଯୁଗରେ ରାଜନୈତିକ ଶକ୍ତି ଉପରେ ଗୁରୁତ୍ୱ ଦେଇ ସ୍ୱରାଜ ପାଇଁ ସଂଗ୍ରାମ କରିଥିଲେ । ସେ ଆଶା କରିଥିଲେ ଏକ ସାବାଳକ ଗଣତାନ୍ତ୍ରିକ ପଦ୍ଧତି ସମାଜର ପ୍ରତ୍ୟେକ ବ୍ୟକ୍ତି ପାଇଁ ଖାଦ୍ୟ, କର୍ମସଂସ୍ଥାନ ଓ ବସ୍ତ୍ରପତ୍ର ଯୋଗାଇ ଦେବାକୁ ଅବଶ୍ୟମ୍ଭାବୀ ଆଇନ ବ୍ୟବସ୍ଥା କରିପାରିବ ଓ ପ୍ରଗତିଶୀଳ ବିକେନ୍ଦ୍ରୀକରଣ ପାଇଁ ଆନୁଷଙ୍ଗିକ ପଦକ୍ଷେପ ନେଇପାରିବ । ସେ ଆଶା କରିଥିଲେ ଯେ ଜନଗଣଙ୍କର ପ୍ରତିନିଧି, ବିଧାୟକ ଓ ମନ୍ତ୍ରୀମାନେ ସମସ୍ତପ୍ରକାର ବିଳାସପୂର୍ଣ୍ଣ ଜୀବନକୁ ପରିହାର କରି ସାଧାରଣ ମଣିଷଙ୍କ ସହ ନିକଟତର ହୋଇ ରହିବେ । ସେ କଂଗ୍ରେସ ସଙ୍ଗଠନକୁ ଭାଙ୍ଗି-ଦେବାକୁ ମଧ୍ୟ ଚାହିଁଥିଲେ । ଜନସାଧାରଣ କପରି ସରକାରକୁ ନିୟନ୍ତ୍ରଣ କରିପାରିବେ ଓ ଯଦି କେନ୍ଦ୍ରୀଭୂତ ବ୍ୟବସ୍ଥା ମୁଣ୍ଡ ଟେକେ ତାକୁ ବିରୋଧ କରିବେ, ସେଥିପାଇଁ ସ୍ୱାଧୀନତା ସଂଗ୍ରାମୀମାନେ ଜନଗଣଙ୍କ ସହିତ ସାମିଲ ହୋଇ କାର୍ଯ୍ୟ କରିବାକୁ ସେ ଆଶା ପୋଷଣ କରିଥିଲେ । କେତେକ ମୁଷ୍ଟିମେୟ ବ୍ୟକ୍ତିଙ୍କ ହାତରେ କ୍ଷମତା ଠୁଳ ହୋଇ ରହିବାଦ୍ୱାରା ସ୍ୱରାଜ ଆସିବ ନାହିଁ ବରଂ ଜନଗଣ ଶାସକମାନଙ୍କୁ ନିୟନ୍ତ୍ରଣରେ ରଖିବାଦ୍ୱାରା ଏହା ସଫଳ ହେବ । ସେ ଯଦି ଅଧିକ ସମୟ ବଞ୍ଚି ରହିଥାନ୍ତେ ତେବେ ସମ୍ଭବତଃ ଏହି ଲକ୍ଷ୍ୟକୁ କାର୍ଯ୍ୟକାରୀ କରିବାରେ ସଫଳ ହୋଇଥାନ୍ତେ ।

# ଗାନ୍ଧୀଙ୍କ ଦୃଷ୍ଟିରେ ନୈତିକତା ଓ ଧର୍ମ

ଜାତୀୟ ଜୀବନରେ ଗାନ୍ଧୀଙ୍କର ଆବିର୍ଭାବ ପୂର୍ବରୁ ଭାରତୀୟ ଦର୍ଶନ, ନୈତିକତା ଓ ଧର୍ମ କେତେ କେତେ କଳ୍ପନାବିଳାସ, ବୌଦ୍ଧିକ ପୂର୍ଣ୍ଣତା ଓ ମନୋବାଞ୍ଛା ଭାବନାରେ ପୂର୍ଣ୍ଣ ଥିବା ଦେଖାଯାଏ । ଭାବନା ଓ କାର୍ଯ୍ୟ ଭିତରେ ପ୍ରଭେଦ ଅସତ୍ୟ ଓ ଅସାଧୁତାକୁ ପ୍ରଶ୍ରୟ ଦେଇଥାଏ । ଗାନ୍ଧୀ ବାସ୍ତବ କ୍ଷେତ୍ରରେ ସତ୍ୟର ପ୍ରୟୋଗ କରିବାରୁ ଅସାଧୁତା ପରିହାର କରିବା ସହିତ ଦର୍ଶନ, ନୈତିକତା ଓ ଧର୍ମ କ୍ଷେତ୍ରରେ ସତ୍ୟର ପ୍ରୟୋଗ ନେଇ ମାନସିକତା ସୃଷ୍ଟି କରିଥିଲେ । ବୌଦ୍ଧିକ ଉତ୍କର୍ଷ ଲାଭ କରିଥିବା ବ୍ୟକ୍ତିଙ୍କ ଅପେକ୍ଷା ବାସ୍ତବ କ୍ଷେତ୍ରରେ ସତ୍ୟର ପ୍ରୟୋଗ କରି କାର୍ଯ୍ୟ କରୁଥିବା କର୍ମୀ ଅଧିକ ଦୃଷ୍ଟି ଆକର୍ଷଣ କଲେ । ଯାହା ସତ୍ୟର ଅନୁକୂଳ ନୁହଁ ତାହା ଯେତେ ପ୍ରାଚୀନ ବା ପରମ୍ପରାଗତ ହେଲେ ବି ତାକୁ ବିରୋଧ କରିବାର ଚେତନା ଜାଗ୍ରତ ହେଲା । ଶାସ୍ତ୍ରସମ୍ମତ ବୋଲି ପ୍ରତୀୟମାନ ହେଉଥିବା ଅସ୍ପୃଶ୍ୟତାକୁ ପରିହାର କରିବାକୁ ଗାନ୍ଧୀ ଆହ୍ୱାନ ଦେଇଥିଲେ ।

ଗାନ୍ଧୀ ବେଦ, ଉପନିଷଦ ଓ ପୁରାଣ ଉପରେ ବିଶ୍ୱାସ ରଖିଥିଲେ ଓ ନିଜକୁ ଜଣେ 'ସନାତନୀ ହିନ୍ଦୁ' ବୋଲି ଅଭିହିତ କରୁଥିଲେ । ଏହା ସହିତ ସେ କହିଥିଲେ, "ଏଥିରେ ବିଶ୍ୱାସ କରିବା ଅର୍ଥ ନୁହେଁ ଯେ ଶାସ୍ତ୍ରରେ ଥିବା ସମସ୍ତ କଥାକୁ ବା ପଣ୍ଡିତମାନଙ୍କର ବ୍ୟାଖ୍ୟାକୁ ସତ୍ୟ ବୋଲି ମୁଁ ଗ୍ରହଣ କରିବି । ବରଂ ଯାହା ମୌଳିକ ନୈତିକ ନିୟମର ବିରୋଧୀ ତାହା ଯେତେ ଶାସ୍ତ୍ରସମ୍ମତ ହେଲେ ବି ମୁଁ ତାର ବିରୋଧ କରେ ।" ଗାନ୍ଧୀଙ୍କର ଅସ୍ପୃଶ୍ୟତା-ବିରୋଧୀ କାର୍ଯ୍ୟକ୍ରମ ବିରୁଦ୍ଧରେ ଶଙ୍କରାଚାର୍ଯ୍ୟଙ୍କ ସଭାପତିତ୍ୱରେ ଅହ୍ମଦାବାଦ ସଭାର ନିଷ୍ପତ୍ତିକୁ ବିରୋଧ କରି ସେ ଲେଖିଥିଲେ, "ଅସ୍ପୃଶ୍ୟତାକୁ ପରିହାର କରିବାକୁ ଓ ଏହା କପରି ଜୀବନ-ବିରୋଧୀ ତାହା ଚିନ୍ତା କରିବାକୁ ମୁଁ ଗୁଜୁରାଟର ହିନ୍ଦୁମାନଙ୍କୁ ଆହ୍ୱାନ କରୁଛି । ଅସ୍ପୃଶ୍ୟତାକୁ ସମର୍ଥନ କରି ଶଙ୍କରାଚାର୍ଯ୍ୟଙ୍କ ସଭାପତିତ୍ୱରେ ହୋଇଥିବା ନିଷ୍ପତ୍ତି ଦ୍ୱାରା ପ୍ରଭାବିତ ନହେବାକୁ ମୁଁ ସମସ୍ତଙ୍କୁ ନିବେଦନ କରୁଛି ।"

କର୍ତ୍ତବ୍ୟର ନିୟମକୁ ନୀତିଶାସ୍ତ୍ରର ପରିସରଭୁକ୍ତ କରିବା ଦ୍ୱାରା ନୈତିକତାର ଭିତ୍ତି ସୁଦୃଢ଼ ହେବା ସହିତ ଏହାର ସ୍ୱାଭାବିକ ଅନୁସିଦ୍ଧାନ୍ତ ଭାବରେ ସହିଷ୍ଣୁତାର ବିକାଶ ହେଲା । ଅସହିଷ୍ଣୁତାରୁ ହିଂସାତ୍ମକ ମନୋଭାବର ଉଦ୍ରେକ ହୁଏ । ପରନ୍ତୁ କାର୍ଯ୍ୟ ଓ କଥା ଭିତରେ ସମନ୍ୱୟ ରହିବା ଦ୍ୱାରା ସତ୍ୟର ପ୍ରତିଷ୍ଠା ହୁଏ ଓ ଅସହିଷ୍ଣୁତାକୁ ପରିହାର କରିବାରେ ସହାୟକ ହୋଇଥାଏ । ଯାହାକୁ କାର୍ଯ୍ୟରେ ପରିଣତ କରିବା ସମ୍ଭବ ନୁହଁ ତାହାକୁ ଏକ ବିଶ୍ୱାସ ବା ମତ ବୋଲି କହିବାକୁ ହେବ । ଗୋଟିଏ ମତକୁ ବିରୋଧ କରିବାର ଅବକାଶ ନଥାଏ । କିନ୍ତୁ ଯେତେବେଳେ ବିଶ୍ୱାସ ଉପରେ ଆଧାରିତ ମତକୁ ସତ୍ୟ ବୋଲି ସ୍ୱୀକାର କରାଯାଏ

ସେତେବେଳେ ସମସ୍ୟା ସୃଷ୍ଟି ହୁଏ । ବିଶ୍ୱାସ ଓ ସତ୍ୟ ଭିତରେ ଥିବା ପାର୍ଥକ୍ୟକୁ ସ୍ୱୀକାର କଲେ ଅସହିଷ୍ଣୁତା ବା ହିଂସାର ଉଦ୍ରେକ ହୁଏନାହିଁ । ସୁତରାଂ ସତ୍ୟବାଦୀ ବ୍ୟକ୍ତି ସ୍ୱରୂପତଃ ସହିଷ୍ଣୁ ଓ ଅହିଂସ ହୋଇଥାଏ ।

ଏହି ସହିଷ୍ଣୁତାର ମନୋଭାବ ପୋଷଣ ଦ୍ୱାରା ସାମ୍ପ୍ରଦାୟିକତାର ଊର୍ଦ୍ଧ୍ୱରେ ରହି ଗାନ୍ଧୀ ଏକ ମାନବବାଦୀ ଦୃଷ୍ଟିଭଙ୍ଗୀ ପୋଷଣ କରିପାରିଥିଲେ । ସେ ନିଜେ କହିଛନ୍ତି, "ମୋ ଧର୍ମ କୌଣସି ଭୌଗୋଳିକ ଧର୍ମ ଭିତରେ ଆବଦ୍ଧ ନୁହେଁ । ଏପରିକି ମୋର ଦେଶପ୍ରେମଠାରୁ ମଧ୍ୟ ଏହା ଊର୍ଦ୍ଧ୍ୱରେ । ମୁଁ ଇଂରେଜ, ବ୍ରିଟିଶ ବା କୌଣସି ସରକାରର ବିରୋଧୀ ନୁହେଁ । କିନ୍ତୁ ମୁଁ ଅସତ୍ୟ, ପ୍ରତାରଣା ଓ ଅନ୍ୟାୟର ବିରୋଧୀ ।"

**ମାନବତାବାଦ :**

ଜଣେ ମାନବବାଦୀ ଭାବରେ ସେ ପ୍ରାର୍ଥନା ଅପେକ୍ଷା ଜଣେ ଦରିଦ୍ର ବ୍ୟକ୍ତିର ଅବସ୍ଥାରେ ଉନ୍ନତି ଆଣିବାକୁ ଅଧିକ ଗୁରୁତ୍ୱ ଦେଉଥିଲେ । ସେ କହିଛନ୍ତି, "ମନ୍ତ୍ର ଜପ କରିବା ଓ ଚରଖା ଚଲାଇବା ଭିତରୁ ମୋତେ ଯଦି ଗୋଟିକୁ ବାଛିବାକୁ ହୁଏ ତେବେ ମୁଁ ଶେଷୋକ୍ତ ବିଷୟଟିକୁ ଗ୍ରହଣ କରିବି । ଦାରିଦ୍ର୍ୟ ଓ ରୋଗ ଉପାସରେ ରହିଥିବା ଅଗଣିତ ଲୋକଙ୍କର ଦୁଃଖ ଦୂରକରିବା ଦିଗରେ କିଛିଟା କାମ କରିବା ଭଗବାନଙ୍କ ନାମ ଜପ କରିବା ଅପେକ୍ଷା ଅଧିକ ମହତ୍ତ୍ୱପୂର୍ଣ୍ଣ ।" ମାନବ ଜାତିର ବିକାଶ ଓ ପ୍ରଗତିଶୀଳ ଦୃଷ୍ଟିଭଙ୍ଗୀକୁ ଜାତୀୟତାବୋଧ ଓ ପ୍ରାର୍ଥନା ଅପେକ୍ଷା ସେ ଅଧିକ ଗୁରୁତ୍ୱ ଦେଉଥିଲେ । ସେହିପରି ମାନବିକ ପ୍ରଗତିକୁ କଳାତ୍ମକ ବିକାଶ ଅପେକ୍ଷା ଅଧିକ ମହତ୍ତ୍ୱପୂର୍ଣ୍ଣ ବୋଲି ସେ ଗ୍ରହଣ କରୁଥିଲେ । ପୁଷ୍ପ ଉଦ୍ୟାନଟିଏ କରିବା ଅପେକ୍ଷା ଫଳ ବା ପରିବା ଉତ୍ପାଦନ ତାଙ୍କ ପାଇଁ ଅଧିକ ଗୁରୁତ୍ୱପୂର୍ଣ୍ଣ ଥିଲା । ସେ କହିଛନ୍ତି, "ପନିପରିବାର ସୌନ୍ଦର୍ଯ୍ୟ କାହିଁକି ତୁମେ ଉପଭୋଗ କରିପାରୁନ ।" ତାଙ୍କର ଏକ ପ୍ରତିମୂର୍ତ୍ତି ନିର୍ମାଣ କରିବାର ପ୍ରସ୍ତାବକୁ ସେ ପ୍ରତ୍ୟାଖ୍ୟାନ କରି ପ୍ରସ୍ତାବ ବିରୁଦ୍ଧରେ ଲେଖିଥିଲେ, "ମୋର ଗୋଟିଏ ମୂର୍ତ୍ତି ନିର୍ମାଣ କରିବାରେ କୌଣସି ଅର୍ଥ ବ୍ୟୟ କରିବାକୁ ମୁଁ ପୂର୍ଣ୍ଣ ବିରୋଧ କରୁଛି । ଯେତେବେଳେ ଲୋକଙ୍କର ଖାଦ୍ୟ-ବସ୍ତ୍ରର ଅଭାବ କଷ୍ଟ ରହିଛି ସେତେବେଳେ ପ୍ରତିମୂର୍ତ୍ତି ନିର୍ମାଣ ଦିଗରେ ଯେଉଁ ଅର୍ଥ ଖର୍ଚ୍ଚ ହେବ ସେଥିରେ କେତେ ଭୋକିଲା ଲୋକଙ୍କ ପାଇଁ ଖାଦ୍ୟର ବ୍ୟବସ୍ଥା କରାଯାଇ ପାରିବ ତାହା ବିଚାର କରିବା ଉଚିତ ।"

ଗାନ୍ଧୀଙ୍କର ସହନଶୀଳତା ତାଙ୍କର ସମ୍ବେଦନଶୀଳତା ପରି ସୀମିତ ନଥିଲା । ସେ ସମ୍ପୂର୍ଣ୍ଣ ନିରାମିଷାଶୀ ଓ ଅତ୍ୟନ୍ତ ନୀତିବାଦୀ ଥିଲେ ମଧ୍ୟ ମାଂସାହାରୀ ଓ ଅପରାଧୀ-ମାନଙ୍କ ସାଥିରେ ନେଇ କାର୍ଯ୍ୟ କରୁଥିଲେ ଓ ସେମାନଙ୍କ ପ୍ରତି ତାଙ୍କର କୌଣସି ଘୃଣା ନଥିଲା । ଦକ୍ଷିଣ ଆଫ୍ରିକାରେ ତାଙ୍କର ଆନ୍ଦୋଳନ ସମ୍ବନ୍ଧରେ ସେ ଲେଖିଛନ୍ତି,

"ମାଂସ ଖାଉଥିବା ବା ଗୋମାଂସ ଭକ୍ଷଣ କରୁଥିବା ଲୋକଙ୍କୁ ମୁଁ ସାହାଯ୍ୟ କରେ । ଯଦି ସେମାନଙ୍କୁ ସାହାଯ୍ୟ ନକରିବାକୁ ମୁଁ ନିଷ୍ପତ୍ତି କରି କେବଳ ଶାକାହାରୀମାନଙ୍କୁ ନେଇ ସତ୍ୟାଗ୍ରହ ଆନ୍ଦୋଳନ କରେ ତେବେ ତଦ୍ଦ୍ୱାରା ଆନ୍ଦୋଳନ ବ୍ୟର୍ଥ ହେବ । କାରଣ ସମସ୍ତ ଭାରତୀୟମାନଙ୍କୁ ସଂଗଠିତ କରି ଯେଉଁ ଆନ୍ଦୋଳନର ଚେଷ୍ଟା ନିର୍ଣ୍ଣୟ କରାଯାଇଛି ତାହା ଅସମ୍ଭବ ହୋଇପଡ଼ିବ । ସେହିପରି ଅପରାଧୀମାନଙ୍କ ସମ୍ପର୍କରେ ସେ କହିଥିଲେ, "କେତେକ ଅପରାଧୀ ଓ ଚୋରିକରି ଜେଲ ଯାଇଥିବା ବ୍ୟକ୍ତି ମଧ୍ୟ ମୋତେ ସାହାଯ୍ୟ କରୁଛନ୍ତି । ଅନ୍ୟ ସତ୍ୟାଗ୍ରହୀମାନଙ୍କ ପରି ଅହିଂସ ପନ୍ଥାରେ ବିରୋଧ ପାଇଁ ସେମାନେ ମୋତେ ସେମାନଙ୍କର ସମର୍ଥନ ଦେଇଛନ୍ତି । ଏହି ଅନୁଭୂତିରୁ ସେ ଜାଣିଥିଲେ ଯେ କୌଣସି ବ୍ୟକ୍ତି ପୂର୍ଣ୍ଣତା ଲାଭ କରିବା ସମ୍ଭବ ନଥିବା ବେଳେ ଅନ୍ୟ ପ୍ରତି ଅଙ୍ଗୁଳି ପ୍ରଦର୍ଶନ କରିବା ସମୀଚୀନ ନୁହେଁ ।"

ଗାନ୍ଧୀଙ୍କ ପାଇଁ ମାନବବାଦ କେବଳ ଏକ ନୈତିକ ଆଦର୍ଶ ଭିତରେ ସୀମିତ ନରହି ବାସ୍ତବ ଜୀବନ ସ୍ତରକୁ ସଂପ୍ରସାରିତ ହୋଇ ଆସିଥିଲା । ସବୁ ମଣିଷଙ୍କ ଭିତରେ ପ୍ରତ୍ୟେକ ସ୍ତରରେ ସମତା ପ୍ରତିଷ୍ଠା ହେବା ଦରକାର । ସାମାଜିକ ପରିବର୍ତ୍ତନ ଦ୍ୱାରା ବା ଆଇନଦ୍ୱାରା ଏହା ଆସିବା ପାଇଁ ସେ ଅପେକ୍ଷା କରିନଥିଲେ । ଦେଶର ରାଜନୈତିକ ସ୍ୱାଧୀନତା ପାଇଁ କାର୍ଯ୍ୟ କରୁଥିବା ବେଳେ ସେ ଏକ ରଚନାତ୍ମକ କାର୍ଯ୍ୟକ୍ରମର ସୂତ୍ରପାତ କରିଥିଲେ । ଏହି ରଚନାତ୍ମକ କାର୍ଯ୍ୟକ୍ରମର ପ୍ରୟୋଗ କରି ସମତା ପ୍ରତିଷ୍ଠା ଦିଗରେ ସେ ପ୍ରୟାସୀ ହୋଇଥିଲେ । ମିତବ୍ୟୟିତାକୁ ବ୍ୟକ୍ତିଗତ ଗୁଣ ଭାବରେ ନେବା ପରିବର୍ତ୍ତେ ସେ ଏହାକୁ ଏକ ସାମାଜିକ କର୍ତ୍ତବ୍ୟ ବୋଲି ଗ୍ରହଣ କରୁଥିଲେ । ବହୁ ଲୋକଙ୍କର ନିମ୍ନତମ ଆବଶ୍ୟକତା ପୂରଣ ହୋଇପାରୁ ନଥିବା ବେଳେ କେହି ଆବଶ୍ୟକତାଠାରୁ ଅଧିକ ଉପଭୋଗ କରିବା ଅନୁଚିତ ବୋଲି ସେ କହୁଥିଲେ । ସେଥିପାଇଁ ସେ ନିଜେ ଅଣ୍ଟା ଲୁଗା ନଥିବା ପୋଷାକ ପିନ୍ଧୁଥିଲେ । ସେ ସର୍ବଦା ରେଲଗାଡ଼ିର ତୃତୀୟ ଶ୍ରେଣୀ ଡବାରେ ଯାଉଥିଲେ ଓ ଏହି ଅଭ୍ୟାସ ସେ ଦକ୍ଷିଣ ଆଫ୍ରିକାରୁ ଆରମ୍ଭ କରିଥିଲେ । "ଟଲଷ୍ଟୟ ଫାର୍ମ କାର୍ଯ୍ୟ ନେଇ ଯେତେବେଳେ ଯୋହାନ୍ସବର୍ଗ ସହରକୁ ଯିବାକୁ ପଡ଼ୁଥିଲା ସେତେବେଳେ ଆମେ ତୃତୀୟ ଶ୍ରେଣୀ ଡବାରେ ଯାଉଥିଲୁ । ଅପରପକ୍ଷରେ ଖୁସିରେ ବୁଲିବା ପାଇଁ ଯିବାବେଳେ ଆମେ ଚାଲିକରି ଓ ଘରେ ପ୍ରସ୍ତୁତ ଜଳଖିଆ ନେଇକରି ଯାଉଥିଲୁ" ବୋଲି ଗାନ୍ଧୀ ଲେଖିଛନ୍ତି । ଏହି ଆର୍ଥିକ ଶୃଙ୍ଖଳାବୋଧ ନୈତିକ ଚରିତ୍ର ପାଇଁ ପ୍ରେରଣା ଦେଇଥିଲା ।

ଦର୍ଶନ କ୍ଷେତ୍ରରେ ସେ ମଧ୍ୟ ନୈତିକତାର ପ୍ରୟୋଗ କରିଥିଲେ । ସେ ସ୍ୱପ୍ନବିଳାସୀ ହେବା ପରିବର୍ତ୍ତେ ବାସ୍ତବବାଦୀ ଥିଲେ ।

ଗାନ୍ଧୀ ଥିଲେ କର୍ମଯୋଗୀ । ସେ ନିଜ ଧର୍ମର ସଂଜ୍ଞା ଦେବାକୁ ଯାଇ ଲେଖିଛନ୍ତି, "ତୁମେ ମୋର ଜୀବନକୁ ଦେଖ । ମୁଁ କିପରି ଖାଏ, ବସେ, କଥା କହେ, ବ୍ୟବହାର କରେ—ଏ ସବୁର ସାମଗ୍ରିକ ରୂପ ହେଉଛି ମୋର ଧର୍ମ ।" ସେ ହିନ୍ଦୁଧର୍ମର ରକ୍ଷଣଶୀଳ ଉପଗ୍ରନ୍ଥର ଊର୍ଦ୍ଧ୍ୱରେ ରହି ନିଜର କର୍ତ୍ତବ୍ୟରେ ଅଧିକ ଗୁରୁତ୍ୱ ଦେଉଥିବାରୁ ସେ ନିରୀଶ୍ୱରବାଦର ସମୀପବର୍ତ୍ତୀ ହୋଇଥିଲେ ।

ଗାନ୍ଧୀ ଆରମ୍ଭରେ ଜଣେ ରକ୍ଷଣଶୀଳ ବୈଷ୍ଣବ ଭାବରେ ଏହାର ଔପଗ୍ରନ୍ଥିକ ବିଶ୍ୱାସକୁ ଗ୍ରହଣ କରିଥିଲେ । ଏଥିରେ ପ୍ରଭାବିତ ହୋଇ ସେ କହିଥିଲେ, "ତୁମେ ମୋର ଆଖି ଦୁଇଟିକୁ ଉପାଡ଼ିଦେଲେ ମୁଁ ବଞ୍ଚିପାରିବି, ମୋର ନାକକୁ କାଟି ଦିଆଗଲେ ବି ମୁଁ ମୃତ୍ୟୁମୁଖରେ ପଡ଼ିବି ନାହିଁ; କିନ୍ତୁ ମୋର ଈଶ୍ୱରବିଶ୍ୱାସକୁ କାଢ଼ି ନିଆଗଲେ ମୁଁ ମୃତ୍ୟୁଲଭ କରିବି ।" କିନ୍ତୁ ଜୀବନରେ ସତ୍ୟର ପ୍ରୟୋଗ କଲାବେଳେ ପାରମ୍ପରିକ ଈଶ୍ୱରବିଶ୍ୱାସ ଓ ସାମାଜିକ ସମ୍ବନ୍ଧ ଭିତରେ ଥିବା ଅସଙ୍ଗତିକୁ ସେ ଅନୁଭବ କରିଥିଲେ । ସତ୍ୟର ଅନୁଗାମୀ ହୋଇ ରହିବା ପାଇଁ ସେ ନିଜ ବିଶ୍ୱାସକୁ ପରିବର୍ତ୍ତିତ କରିଥିଲେ । ସେ ୧୯୩୧ ମସିହାରେ ଲେଖିଥିଲେ, "ମୁଁ ପ୍ରଥମେ ଈଶ୍ୱର ସତ୍ୟ ବୋଲି ଗ୍ରହଣ କରିଥିଲି । କିନ୍ତୁ ଦୁଇବର୍ଷ ତଳେ ମୁଁ ମୋର ମତ ପରିବର୍ତ୍ତନ କରି 'ସତ୍ୟ ହିଁ ଈଶ୍ୱର' ବୋଲି କହିଲି । ଏହି ଦୁଇଟି ଉକ୍ତି ମଧ୍ୟରେ ଥିବା ପାର୍ଥକ୍ୟ ତୁମେ ଅନୁଭବ କରୁଥିବ ।" ବାସ୍ତବପକ୍ଷେ 'ଈଶ୍ୱର ସତ୍ୟ' ଅପେକ୍ଷା 'ସତ୍ୟ ହିଁ ଈଶ୍ୱର' କହିବା ଅଧିକ ଯୁକ୍ତିସଙ୍ଗତ ମନେହୁଏ । ୧୯୪୬ ମସିହାରେ ସେ ଯେତେବେଳେ ସାମ୍ପ୍ରଦାୟିକ ଦଙ୍ଗାର କୁପରିଣାମ ଦେଖିଲେ ସେ ଏକ ବାସ୍ତବ-ବାଦୀ ଦୃଷ୍ଟିଭଙ୍ଗୀ ପୋଷଣ କଲେ । ଈଶ୍ୱରଙ୍କର ବ୍ୟାଖ୍ୟା ବିଭିନ୍ନ ଧର୍ମାବଲମ୍ବୀମାନଙ୍କ ଭିତରେ ଭିନ୍ନ ଭିନ୍ନ ହେଉଥିବାରୁ ବିଭିନ୍ନ ଧର୍ମାବଲମ୍ବୀମାନଙ୍କୁ ଏକତ୍ର କରିବା ସମ୍ଭବ ହେଉନାହିଁ । କାରଣ ଈଶ୍ୱର-ପ୍ରତୀତି ବିଶ୍ୱାସ ଉପରେ ଆଧାରିତ, ସତ୍ୟ ଉପରେ ନୁହେଁ । ଅବଶ୍ୟ ଏହି ବିଶ୍ୱାସ ପରମ୍ପରାକ୍ରମେ ମଣିଷର ମନସ୍ତତ୍ତ୍ୱ ଭିତରେ ଗଭୀର ସ୍ଥାନ ଅଧିକାର କରିଛି । ସୁତରାଂ ବିଭିନ୍ନ ଧର୍ମର ଈଶ୍ୱରଙ୍କୁ ସମନ୍ୱିତ କରି ସେ ସାମ୍ପ୍ରଦାୟିକ ସଦ୍‌ଭାବ ପ୍ରତିଷ୍ଠା କରିବାକୁ ପ୍ରୟାସ କରିଥିଲେ । ଏଣୁ ଈଶ୍ୱର ଓ ଆଲ୍ଲାଙ୍କୁ ଏକତ୍ର ମିଶାଇ ସେ ତାଙ୍କର ପ୍ରାର୍ଥନା ଗାଉଥିଲେ । ଏହାଦ୍ୱାରା ବି ସେ ବିଭିନ୍ନ ସମ୍ପ୍ରଦାୟ ମଧ୍ୟରେ ଶାନ୍ତି ପ୍ରତିଷ୍ଠା କରିପାରିଲେ ନାହିଁ । ଧର୍ମବିଶ୍ୱାସ ମଧ୍ୟରେ ରହିଥିବା ପାର୍ଥକ୍ୟ ଯୋଗୁଁ ଏହା ସମ୍ଭବ ହେଲନାହିଁ । ଏଣୁ ସେ ଏହି ସମସ୍ୟାର ସମାଧାନ ପାଇଁ ଧର୍ମ ନିରପେକ୍ଷ ରାଷ୍ଟ୍ରକୁ ସମର୍ଥନ କଲେ । ହରିଜନ ପତ୍ରିକାର ଅଗଷ୍ଟ ୩୧, ୧୯୪୬ ସଂଖ୍ୟାରେ ତାଙ୍କର ମତପ୍ରକାଶ ପାଇଲା ଯେ ଧର୍ମ ଏକ ବ୍ୟକ୍ତିଗତ ବିଶ୍ୱାସ, ନିଜର ବିଶ୍ୱାସକୁ ବ୍ୟକ୍ତିଗତ ସ୍ତରରେ ସୀମିତ ରଖିବାଦ୍ୱାରା ରାଷ୍ଟ୍ରରେ ବିଭିନ୍ନ ଧର୍ମର ଲୋକମାନେ ସୁଖଶାନ୍ତିରେ ଏକତ୍ର ବାସ କରିପାରିବେ ।

ସରକାରୀ କର୍ମଚାରୀ ଓ ସାଧାରଣ ଜନଗଣ ଏକ ଧର୍ମନିରପେକ୍ଷ ରାଷ୍ଟ୍ର ଗଠନରେ ପୂର୍ଣ୍ଣପ୍ରାଣରେ ସହଯୋଗ କରିବା ଆବଶ୍ୟକ ।

ବହୁଦିନ ପର୍ଯ୍ୟନ୍ତ ଗାନ୍ଧୀ ଜୀବନକୁ ସାମଗ୍ରିକ ଭାବରେ ଗ୍ରହଣ କରୁଥିଲେ । ୧୯୨୨ ମସିହାରେ ସେ ଲେଖିଥିଲେ, "ମୁଁ ବିଶ୍ୱାସ କରୁଛି ଯେ ମଣିଷର ସମାଜ ବା ଜ୍ଞାନ ସାମାଜିକ, ରାଜନୀତିକ ବା ଧାର୍ମିକ ରୂଢ଼ ବ୍ୟବସ୍ଥାରେ ବିଭକ୍ତ ନୁହେଁ । ବରଂ ପ୍ରତ୍ୟେକ ଅନ୍ୟ ସହିତ ସମ୍ବନ୍ଧିତ ଓ ସେମାନଙ୍କ ଭିତରେ କୌଣସି ରୂଢ଼ ବିଭାଜନ ସମ୍ଭବ ନୁହେଁ ।" କିନ୍ତୁ ଚବିଶ ବର୍ଷ ପରେ ସେ ଏକ ଧର୍ମ ନିରପେକ୍ଷ ରାଷ୍ଟ୍ରର ଆବଶ୍ୟକତା ଅନୁଭବ କରି ଧର୍ମକୁ ରାଜନୀତିଠାରୁ ପୃଥକ୍ କରିଥିଲେ । ଯେପରି ଅସ୍ପୃଶ୍ୟତା ପରିହାର ପାଇଁ ଶାସ୍ତ୍ରର କେତେକ ଅଂଶକୁ ପରିତ୍ୟାଗ କରିବା ଉଚିତ ବୋଲି ମନେକରିଥିଲେ ସେହିପରି ସତ୍ୟର ଅନୁସନ୍ଧିତ୍ସା ଭିତରେ ଗୋଟିଏ ସ୍ତରରେ ସେ କାଳ୍ପନିକ ଈଶ୍ୱର ପ୍ରୀତିକୁ ମଧ୍ୟ ପରିହାର କରିଥିଲେ । ତାଙ୍କ ଚିନ୍ତାମାନସରେ ଏହି ପରିବର୍ତ୍ତନ ୧୯୪୬ ମସିହାରେ ଘଟିଥିଲା ।

ତାଙ୍କର ଏହି ପରିବର୍ତ୍ତନ ଗୋଟିଏ ନିର୍ଦ୍ଦିଷ୍ଟ ଘଟଣାଦ୍ୱାରା ମଧ୍ୟ ସ୍ପଷ୍ଟ ହୋଇଥିଲା । ମୋ ଝିଅର ବିଭାଘର ଗାନ୍ଧୀଙ୍କ ଆଶ୍ରମରେ ଓ ଉପସ୍ଥିତିରେ ହେବାକୁ ସ୍ଥିର ହୋଇଥାଏ । କେବଳ ସବର୍ଣ୍ଣ-ଅସବର୍ଣ୍ଣ ମଧ୍ୟରେ ବିବାହ ତାଙ୍କ ଆଶ୍ରମରେ ହେଉଥିବାରୁ ଓ ମୋ ଝିଅ ଜଣେ ହରିଜନ ଯୁବକଙ୍କୁ ବିବାହ କରିବାକୁ ଯାଉ-ଥିବାରୁ ସେ ଏଥିପାଇଁ ସମ୍ମତି ଦେଇଥିଲେ । ଜଣେ ନିରୀଶ୍ୱରବାଦୀଭାବେ କୌଣସି ଈଶ୍ୱରଙ୍କ ନାମରେ ସେ ଏହି ବିବାହ କରାଇବା ପାଇଁ ମୁଁ ବିରୋଧ କଲି । ଏଥିରେ ଗାନ୍ଧୀ 'ଈଶ୍ୱର' ପରିବର୍ତ୍ତେ ସତ୍ୟ ନାମରେ ବରକନ୍ୟା ବିବାହ ଶପଥ ନେବାକୁ ସମ୍ମତ ହୋଇଥିଲେ । 'ଈଶ୍ୱର ସତ'ରୁ 'ସତ୍ୟ ହିଁ ଈଶ୍ୱର' ବୋଲି ନିଜର ମତ ପରିବର୍ତ୍ତନ କରିଥିବା ଗାନ୍ଧୀ ଆଉ ପାଦେ ଆଗକୁ ଯାଇ 'ସତ୍ୟ ହିଁ ସତ୍ୟ' ବୋଲି ଭାବିଥିଲେ ।

ଗାନ୍ଧୀଙ୍କର ପ୍ରାର୍ଥନା ଧାରାରେ ମଧ୍ୟ ଆନୁଷଙ୍ଗିକ ପରିବର୍ତ୍ତନ ହୋଇଥିଲା । ହିନ୍ଦୁ ଭଜନ ସହିତ ସେ ଅନ୍ୟ ଧର୍ମର ଈଶ୍ୱରଙ୍କ ନାମ ସଂଶ୍ଳିଷ୍ଟ କରି ପ୍ରାର୍ଥନା କରୁଥିଲେ । ପ୍ରାର୍ଥନା ସହିତ ଦୁଇ ମିନିଟ୍ ନୀରବତା ମଧ୍ୟ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା । ଗାନ୍ଧୀଙ୍କ ପରେ ବିନୋବା ନୀରବ ପ୍ରାର୍ଥନାକୁ ଗୁରୁତ୍ୱ ଦେଇ ପ୍ରାର୍ଥନାକୁ ନୀରବତାରେ ପରିବର୍ତ୍ତନ କରିଥିଲେ । ଗାନ୍ଧୀ ଯେପରି ଆସ୍ତିକ ଓ ନାସ୍ତିକମାନଙ୍କ ଭିତରେ ସମନ୍ୱୟ ପାଇଁ ଈଶ୍ୱର ପରିବର୍ତ୍ତେ ସତ୍ୟକୁ ଅଧିକ ଗୁରୁତ୍ୱ ଦେଇଥିଲେ, ବିନୋବା ସେହିପରି ନୀରବ ପ୍ରାର୍ଥନାକୁ ଗ୍ରହଣ କରିବାଦ୍ୱାରା ନିରୀଶ୍ୱରବାଦୀମାନେ ପ୍ରାର୍ଥନା ସଭାରେ ଯୋଗ ଦେଉଥିଲେ । ନୀରବ ପ୍ରାର୍ଥନା ଭିତରେ କେହି ଈଶ୍ୱର ପରିବର୍ତ୍ତେ ସତ୍ୟ,

ପ୍ରେମ ବା କରୁଣା ଉପରେ ନିଜର ମନୋନିବେଶ କରିପାରିବେ । ସତ୍ୟର ଆବଶ୍ୟକତା ଭିତରୁ ପ୍ରାର୍ଥନାକୁ ନୂତନ ସଂଜ୍ଞା ସେ ପ୍ରଦାନ କରିଥିଲେ ।

ସତ୍ୟ ପ୍ରତି ନିଜର ଅନୁରାଗ ଭିତରୁ ଗାନ୍ଧୀଙ୍କ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ହୋଇଥିଲା । କୌଣସି ଭାବନାକୁ ଅପରିବର୍ତ୍ତନୀୟ ଭାବେ ଗ୍ରହଣ ନକରି ସେ ପ୍ରଗତିର ଧାରାକୁ ବିଶ୍ଳେଷଣ କରୁନଥିଲେ । ସତ୍ୟର ପ୍ରତିଷ୍ଠା ଓ ମାନବଜାତିର ବିକାଶ ପାଇଁ ଯଦି ଈଶ୍ୱରଙ୍କୁ ପରିହାର କରି ନିରୀଶ୍ୱରବାଦକୁ ଗ୍ରହଣ କରିବାକୁ ହୋଇଥାନ୍ତା, ତେବେ ମୋର ବିଶ୍ୱାସ—ଯାହା ଗାନ୍ଧୀଙ୍କ ସହ ସମ୍ପର୍କ ଭିତରୁ ମୁଁ ନିଶ୍ଚିତ ଭାବରେ କହିପାରେ—ଗାନ୍ଧୀ ତାହା କରିବାକୁ କେବେ ପଶ୍ଚାତ୍ପଦ ହୋଇନଥାନ୍ତେ । ଏହି ପରିପ୍ରେକ୍ଷୀରେ ଆର୍ଣ୍ଣେ ନେସ୍ ତାଙ୍କର 'ଗାନ୍ଧୀ ଓ ଆଣବିକ ଯୁଗ' ପୁସ୍ତକରେ ଉଲ୍ଲେଖ କରିଛନ୍ତି ଯେ ଗାନ୍ଧୀଙ୍କର ଈଶ୍ୱର ବିଶ୍ୱାସ ଜଣେ ନିରୀଶ୍ୱରବାଦୀଙ୍କୁ ସମର୍ଥନ କରିବାରେ ପ୍ରତିବନ୍ଧକ ହୋଇନଥିଲା ଓ ଏପରିକି ଜଣେ ନିରୀଶ୍ୱରବାଦୀ ଗାନ୍ଧୀଙ୍କ ପରି ଜଣେ ଈଶ୍ୱରବିଶ୍ୱାସୀଙ୍କ ଅପେକ୍ଷା ସତ୍ୟର ଯେ ଅଧିକ ସମୀପବର୍ତ୍ତୀ ହୋଇପାରିବ ଏଥିରେ ମଧ୍ୟ ତାଙ୍କର ଅବିଶ୍ୱାସ ନଥିଲା ।

## ଈଶ୍ୱର ହିଁ ଈଶ୍ୱର ଓ ସତ୍ୟ ହିଁ ସତ୍ୟ

ଈଶ୍ୱର ଓ ସତ୍ୟକୁ ସମାନ କରିବାରେ ଗାନ୍ଧୀ ପ୍ରସିଦ୍ଧି ଲାଭ କରିଥିଲେ । ସେ ନିଜ ଜୀବନକୁ ସତ୍ୟ ଓ ଈଶ୍ୱରଙ୍କ ପାଇଁ ସମର୍ପିତ କରିଥିଲେ । ନିଜର ଆତ୍ମଜୀବନୀକୁ ସେ ସତ୍ୟର ପରୀକ୍ଷା ବୋଲି କହିବାବେଳେ ଶେଷନିଃଶ୍ୱାସ ତ୍ୟାଗ କରିବା ପୂର୍ବରୁ ତାଙ୍କ ତୁଣ୍ଡରୁ ଈଶ୍ୱରଙ୍କର ନାମ ହିଁ ଉଚ୍ଚାରିତ ହୋଇଥିଲା । ଈଶ୍ୱର ଓ ସତ୍ୟକୁ ଅଭିନ୍ନ କରିଥିବା ପରିପ୍ରେକ୍ଷୀରେ ଏହାର ଯଥାର୍ଥ ବିଶ୍ଳେଷଣମେନେହୁଏ ।

ଏହି ପ୍ରସଙ୍ଗରେ ସତ୍ୟ ଓ ଈଶ୍ୱରଙ୍କ କ୍ଷେତ୍ରରେ ତାଙ୍କର ଦୃଷ୍ଟିଭଙ୍ଗୀରେ କିପରି ପରିବର୍ତ୍ତନ ହୋଇଥିଲା ତାହା ତାଙ୍କ ନିଜ ଲେଖାରୁ ଦେଖାଯାଉ ।

'ୟଙ୍ଗ ଇଣ୍ଡିଆ'ର ଜୁଲାଇ ୩୦, ୧୯୩୧ ସଂଖ୍ୟାରେ ସେ ଲେଖିଥିଲେ, "ଈଶ୍ୱର ସତ୍ୟ ବୋଲି କହିବା ପରିବର୍ତ୍ତେ ସତ୍ୟ ଈଶ୍ୱର ବୋଲି କହିବା ଅଧିକ ସମୀଚୀନ ମନେହୁଏ ।" ଛ' ମାସ ପରେ ଡିସେମ୍ବର ୧୬, ୧୯୩୧ ସଂଖ୍ୟାର 'ୟଙ୍ଗ ଇଣ୍ଡିଆ'ରେ ସେ ଏହାର ବ୍ୟାଖ୍ୟା କରି ଲେଖିଥିଲେ, "କେତେକ ଈଶ୍ୱରଙ୍କୁ ପ୍ରେମମୟ ବୋଲି କହିଥାନ୍ତି । ଈଶ୍ୱର ପ୍ରେମମୟ ହୋଇପାରନ୍ତି, କିନ୍ତୁ ମୁଁ ତାଙ୍କୁ ସତ୍ୟ ବୋଲି କହିବି । ଯଦି ମନୁଷ୍ୟ ପକ୍ଷରେ ଈଶ୍ୱରଙ୍କ ଯଥାର୍ଥ ସ୍ୱରୂପକୁ ବର୍ଣ୍ଣନା କରିବା ସମ୍ଭବ, ତେବେ ମୁଁ ଏହି ସିଦ୍ଧାନ୍ତକୁ ଆସିଛି ଯେ ଈଶ୍ୱର ସତ୍ୟ । କିନ୍ତୁ ଦୁଇ ବର୍ଷ ତଳେ ମୁଁ ଆଉ ଗୋଟିଏ ପାଦ ଆଗକୁ ଯାଇ ସତ୍ୟ ହିଁ ଈଶ୍ୱର ବୋଲି

କହିଥିଲି । 'ଈଶ୍ୱର ହିଁ ସତ୍ୟ' ଓ 'ସତ୍ୟ ହିଁ ଈଶ୍ୱର' ଏ ଦୁଇଟି ଉକ୍ତି ମଧ୍ୟରେ ଥିବା ସୂକ୍ଷ୍ମ ପାର୍ଥକ୍ୟଟି ବେଶ୍ ଉଲ୍ଲେଖନୀୟ ।''

**ପାର୍ଥକ୍ୟ :**

ପ୍ରକୃତରେ ଏ ଦୁଇଟି ବକ୍ତବ୍ୟ ଭିତରେ କି ପ୍ରକାର ସୂକ୍ଷ୍ମ ପାର୍ଥକ୍ୟ ରହିଛି ? ଗାନ୍ଧୀ 'ସତ୍ୟ ହିଁ ଈଶ୍ୱର' କହିବା ଦ୍ୱାରା ନିଜର ସତ୍ୟାନୁଭୂତିରେ ଆଉ ପାଦେ ଅଗ୍ରସର ହୋଇଛନ୍ତି ବୋଲି କାହିଁକି ବିଚାର କରିଛନ୍ତି ?

ଈଶ୍ୱର ବିଶ୍ୱାସ ଏକ ବ୍ୟକ୍ତିଗତ ବ୍ୟାପାର ହୋଇଥିବା ବେଳେ ସତ୍ୟ ଏକ ସାମାଜିକ ଆବଶ୍ୟକତା ଅଟେ । ଜଣେ ଈଶ୍ୱରଙ୍କୁ ବିଶ୍ୱାସ କରିନପାରେ; କିନ୍ତୁ ଅନୈତିକ ନହୋଇ ସତ୍ୟକୁ ଅସ୍ୱୀକାର କରିପାରିବ ନାହିଁ । ବାସ୍ତବ ପକ୍ଷରେ କଥା ଓ କାର୍ଯ୍ୟରେ ସମନ୍ୱୟ ରକ୍ଷା କରିବା ସତ୍ୟବାଦିତା ଅଟେ । ଏହାହିଁ ସତ୍ୟବାଦିତାର ସରଳତମ ସୂତ୍ର । କଥା ଓ କାର୍ଯ୍ୟରେ ସମ୍ବନ୍ଧ ହିଁ ହେଉଛି ସାଧୁତା ।

ସମାଜରେ ଜଣେ ଅନ୍ୟ ଉପରେ ବିଶ୍ୱାସ ସ୍ଥାପନ ନକଲେ ସାମାଜିକ ବନ୍ଧନ ରହିପାରିବ ନାହିଁ । ସୁତରାଂ ସତ୍ୟ ସାମାଜିକ ସଙ୍ଗଠନର ଭିତ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଣୁ ସମାଜରେ ବ୍ୟକ୍ତି ସତ୍ୟବାଦୀ ହେବା ଆବଶ୍ୟକ ଓ ଏହା ସହିତ ଅନ୍ୟ ପାଖରୁ—ଯାହା ସହିତ ତା'ର ସାମାଜିକ ସମ୍ବନ୍ଧ ରହିଛି—ଏହା ମଧ୍ୟ ଆଶା କରିବା ଉଚିତ ।

କେହି ମିଥ୍ୟାବାଦୀ ହେବା ଫଳରେ ଅନ୍ୟ ପାଇଁ ନୈରାଶ୍ୟର କାରଣ ହେବା ସହିତ ସୁଖଶାନ୍ତି ପ୍ରତି ଆଶଙ୍କା ସୃଷ୍ଟି କରିଥାଏ । ସମୟାନୁବର୍ତ୍ତୀ ନହେବାକୁ ମିଥ୍ୟାବାଦୀ ହେବାର ଏକ ଉଦାହରଣ ଭାବରେ ଗ୍ରହଣ କରାଯାଇପାରେ । ସମୟାନୁବର୍ତ୍ତୀ ନହେବା ଫଳରେ ଅନ୍ୟମାନଙ୍କର ଅସୁବିଧା ଓ ବିଶୃଙ୍ଖଳା ସୃଷ୍ଟି ହୋଇଥାଏ । କୌଣସି ସଭାରେ ମୁଖ୍ୟ ବ୍ୟକ୍ତିଙ୍କର ସମୟ ଜ୍ଞାନ ନରହିବା ଯୋଗୁଁ ଅନ୍ୟମାନଙ୍କର ଅସଂଖ୍ୟ ଶ୍ରମ-ଘଣ୍ଟା ନଷ୍ଟ ହୋଇଥାଏ । ବସ୍ତୁତଃ ସତ୍ୟବାଦିତା ଏକ ସାମାଜିକ କର୍ତ୍ତବ୍ୟ ଅଟେ ।

ଧର୍ମୀୟ ଧାରାରେ ସତ୍ୟବାଦିତା ସହ ଈଶ୍ୱରବିଶ୍ୱାସକୁ ସଂଶ୍ଳିଷ୍ଟ କରାଯାଇ ଥାଏ । ଧର୍ମବିଶ୍ୱାସ ଅନୁଯାୟୀ ଜଣେ ସତ୍ୟବାଦୀ ବ୍ୟକ୍ତି ଈଶ୍ୱରଙ୍କର ଆଶୀର୍ବାଦ ଲାଭ କରି ସ୍ୱର୍ଗସୁଖ ପ୍ରାପ୍ତ ହୁଏ ଓ ମିଥ୍ୟାବାଦୀ ବ୍ୟକ୍ତି ଈଶ୍ୱରଙ୍କ କ୍ରୋଧର ଶିକାର ହୋଇ ନର୍କଗାମୀ ହୁଏ । ସୁତରାଂ ଧର୍ମବିଶ୍ୱାସ ଅନେକାଂଶରେ ବ୍ୟକ୍ତିମାନଙ୍କୁ ସତ୍ୟବାଦୀ ହେବାରେ ଅଭିନିବେଶ ଯୋଗାଇଥାଏ ।

**ବୁଦ୍ଧିବାଦୀ ବିଚାର :**

ଧର୍ମଧାରଣାରେ ସତ୍ୟ ପାଳନକୁ ଈଶ୍ୱର ବିଶ୍ୱାସର ଅଙ୍ଗ ଭାବରେ ଗ୍ରହଣ କରାଯାଉଥିଲା । କିନ୍ତୁ ବୁଦ୍ଧିବାଦୀ ବିଚାରର ବିକାଶ ଈଶ୍ୱରଙ୍କ ଅସ୍ତିତ୍ୱକୁ ଅମୂଳକ ବୋଲି ପ୍ରକାଶ କରିବାରୁ ଧର୍ମଧାରାରେ ଈଶ୍ୱର ବିଶ୍ୱାସ ଯେପରି ସତ୍ୟକୁ ସ୍ୱୀକୃତି ଦେଇଥିଲା ତାହାର ତାର୍କିକ ଭିତ୍ତି ଭାଙ୍ଗିପଡ଼ିଲା । ସତ୍ୟ ପ୍ରତି ଜୀବନସାରା ଅନୁରାଗୀ ହୋଇଥିବା ଗାନ୍ଧୀ ପ୍ରାଥମିକ ଅବସ୍ଥାରେ ଧର୍ମୀୟ ଧାରାରେ ବିଶ୍ୱାସ ରଖି ଈଶ୍ୱର ସତ୍ୟ ବୋଲି ଗ୍ରହଣ କରିଥିଲେ । ସେ ଭାବିଥିଲେ ଈଶ୍ୱରବିଶ୍ୱାସ ଦୃଢ଼ ହେବା ସହିତ ସତ୍ୟବାଦିତାର ବିକାଶ ହେବ । କିନ୍ତୁ ଆଧୁନିକ ଯୁଗରେ ବୁଦ୍ଧିବାଦୀ ବିଚାରଧାରାର ବିକାଶ ଈଶ୍ୱରଙ୍କ ଅସ୍ତିତ୍ୱକୁ ଅମୂଳକ ବୋଲି ପ୍ରତିଷ୍ଠା କରିବାରୁ ସେ ଈଶ୍ୱରବିଶ୍ୱାସ ଅପେକ୍ଷା ସତ୍ୟନିଷ୍ଠା ଉପରେ ଅଧିକ ଗୁରୁତ୍ୱ ଦେଇଥିଲେ । ଈଶ୍ୱର-ବିଶ୍ୱାସ ଅପେକ୍ଷା ସତ୍ୟ ପ୍ରତି ସମ୍ମାନବୋଧକୁ ଅଧିକ ମହତ୍ତ୍ୱ ପ୍ରଦାନ କରିବା ଭିତରେ ସେ 'ଈଶ୍ୱର ସତ୍ୟ'ଠାରୁ 'ସତ୍ୟ ହିଁ ଈଶ୍ୱର' ବୋଲି ଗ୍ରହଣ କରିଥିଲେ । ଏହି ପରିବର୍ତ୍ତନ ଭିତରେ ଈଶ୍ୱରବିଶ୍ୱାସ ଓ ସତ୍ୟବାଦିତା ଭିତରୁ ଯଦି ଗୋଟିକୁ ଗ୍ରହଣ କରିବାକୁ କୁହାଯାଏ ତେବେ ସେ ସତ୍ୟବାଦିତାକୁ ଅଧିକ ଗୁରୁତ୍ୱ ଦେଇ ଗ୍ରହଣ କରିବେ । ଯଦିବା ସତ୍ୟ ଆଚରଣ କରୁଥିବା ଓ ଈଶ୍ୱରବିଶ୍ୱାସ ରଖିଥିବା ବ୍ୟକ୍ତିଙ୍କୁ ଅଧିକ ଗୁରୁତ୍ୱ ଦେଉଥିଲେ ତଥାପି ସତ୍ୟାନୁରାଗୀ ନିରୀଶ୍ୱରବାଦୀଙ୍କୁ ଅନୈତିକ ଈଶ୍ୱର ବିଶ୍ୱାସୀଙ୍କ ଅପେକ୍ଷା ସେ ସର୍ବଦା ଆଦର କରୁଥିଲେ ।

**ଉଦାହରଣ :**

ସତ୍ୟ ଓ ଶାନ୍ତିର ପ୍ରତିଷ୍ଠା ପାଇଁ ସେ ଆବଶ୍ୟକ ହେଲେ ଈଶ୍ୱର ବିଶ୍ୱାସକୁ ପରିହାର କରିବାକୁ ପ୍ରସ୍ତୁତ ଥିବା ତାଙ୍କ ଜୀବନର ଦୁଇଟି ଉଲ୍ଲେଖନୀୟ ଘଟଣାରୁ ସ୍ପଷ୍ଟ ହୋଇଥାଏ । ୧୯୪୭ ମସିହାରେ ଯେତେବେଳେ ଭାରତରେ ସାମ୍ପ୍ରଦାୟିକ ସଦ୍‌ଭାବ ନଷ୍ଟ ହୋଇଯାଉଥିଲା ଓ ଈଶ୍ୱର ବିଶ୍ୱାସକୁ ନେଇ ଦଙ୍ଗା ସୃଷ୍ଟି ହେଉଥିଲା ସେତେ-ବେଳେ ଗାନ୍ଧୀ ଏକ ଉଲ୍ଲେଖନୀୟ ମନ୍ତବ୍ୟ ଦେଇଥିଲେ । ସେ କହିଥିଲେ ଯେ ଧର୍ମ ବ୍ୟକ୍ତିର ଏକ ବ୍ୟକ୍ତିଗତ ବିଶ୍ୱାସ ଓ ଏହାକୁ ଯଦି ଆମେ ଏହି କ୍ଷେତ୍ରରେ ସୀମାବଦ୍ଧ ରଖିବା ତେବେ ସାମାଜିକ ଜୀବନରେ ଆମେ ସୁଖ ଶାନ୍ତିରେ ରହିପାରିବା । ସୁତରାଂ ସମସ୍ତ ସରକାରୀ କର୍ମଚାରୀ ଓ ଜନସାଧାରଣ ଏକ ଧର୍ମନିରପେକ୍ଷ ରାଷ୍ଟ୍ର ଗଠନ ଦିଗରେ ଆନ୍ତରିକ ଉଦ୍ୟମ କରିବା ଆବଶ୍ୟକ । ଧର୍ମନିରପେକ୍ଷ ଭାରତବର୍ଷ ବିଶ୍ୱ ଦରବାରରେ ଆମ ପାଇଁ ଏକ ଗୌରବର ଘଟଣା ହେବ । ଯେଉଁ ଗାନ୍ଧୀ ଏକଦା ତାଙ୍କ ଚକ୍ଷୁ, କାନକୁ କାଟିଦେଲେ ବଞ୍ଚିପାରିବେ ଅଥଚ ତାଙ୍କ ଈଶ୍ୱରବିଶ୍ୱାସକୁ କାଢ଼ି ନିଆଗଲେ ବଞ୍ଚିପାରିବେ ନାହିଁ ବୋଲି କହିଥିଲେ, ସେ ସାମାଜିକ ବାସ୍ତବତାର ସମ୍ମୁଖୀନ ହୋଇ ଏକ ଧର୍ମନିରପେକ୍ଷ ରାଷ୍ଟ୍ର ଗଠନ ପାଇଁ ଆହ୍ୱାନ

ଦେଇଥିଲେ । ତାଙ୍କ ଦୃଷ୍ଟିଭଙ୍ଗୀରେ ଏହି ଉଲ୍ଲେଖନୀୟ ପରିବର୍ତ୍ତନ ଦେଖିବାକୁ ମିଳିଥାଏ ।

୧୯୪୭ ମସିହାରେ ଦୁଇଜଣ ନିରୀଶ୍ୱରବାଦୀଙ୍କର ବିବାହ ପରିପ୍ରେକ୍ଷୀରେ ସେ ସେମାନଙ୍କୁ ଈଶ୍ୱରଙ୍କ ନାମ ପରିବର୍ତ୍ତେ ସତ୍ୟ ନାମରେ ବିବାହ ଶପଥ କରାଇବାକୁ ସମ୍ମତ ହୋଇଥିଲେ । ଅସ୍ପୃଶ୍ୟତା ଦୂରୀକରଣ ଉଦ୍ଦେଶ୍ୟରେ ସବର୍ଣ୍ଣ-ଅସବର୍ଣ୍ଣ ବିବାହକୁ ସେ ପ୍ରୋତ୍ସାହନ ଦେଉଥିବାରୁ ଓ ଏହାକୁ ଗ୍ରହଣ କରିବାକୁ ଯାଇ ସେ ଈଶ୍ୱରଙ୍କ ନାମରେ ଶପଥ ପାଠକୁ ପରିହାର କରିଥିଲେ ।

ଗାନ୍ଧୀ ଈଶ୍ୱର ପରିବର୍ତ୍ତେ ସତ୍ୟକୁ ଏକ ସାର୍ବଜନୀନ ଓ ନିରଙ୍କୁଶ ମୂଲ୍ୟବୋଧ ଭାବରେ ଗ୍ରହଣ କରିବା ଦ୍ୱାରା ତାଙ୍କର ଚିନ୍ତାଧାରାରେ ସେ ଅଗ୍ରଗତି କରୁଥିଲେ । ବସ୍ତୁତଃ 'ଈଶ୍ୱର ସତ୍ୟ'ରୁ 'ସତ୍ୟ ହିଁ ଈଶ୍ୱର' କହିବା ଏହି କ୍ଷେତ୍ରରେ ଏକ ଉଲ୍ଲେଖନୀୟ ଅଗ୍ରଗତି ଥିଲା । ପୁନଶ୍ଚ ନିରୀଶ୍ୱରବାଦୀଙ୍କର ବିବାହ ବେଳେ ସେ ଈଶ୍ୱରଙ୍କୁ ପରିହାର କରିଥିବାରୁ 'ସତ୍ୟ ହିଁ ଈଶ୍ୱର' ପରିବର୍ତ୍ତେ 'ସତ୍ୟ ହିଁ ସତ୍ୟ' ବୋଲି ଗ୍ରହଣ କରିଥିଲେ । ଧର୍ମ, ଈଶ୍ୱରଙ୍କୁ ବ୍ୟକ୍ତିଗତ ବିଶ୍ୱାସ ବୋଲି କହିବା ଓ ଧର୍ମ ନିରପେକ୍ଷ ରାଷ୍ଟ୍ର ଗଠନକୁ ଗୁରୁତ୍ୱ ଦେବା ଭିତରେ ଗାନ୍ଧୀ ସତ୍ୟ ଓ ଈଶ୍ୱରଙ୍କୁ ପୃଥକ୍ କରିଥିଲେ । ଈଶ୍ୱର ବ୍ୟକ୍ତିଗତ ବିଶ୍ୱାସ ଓ ସତ୍ୟ ଏକ ସାମାଜିକ ଆବଶ୍ୟକତା ବୋଲି ଅନୁଭବ କରିବା ପଶ୍ଚାତ୍ତରେ ସେ ସତ୍ୟକୁ ଈଶ୍ୱର ବୋଲି କହିବା ପରିବର୍ତ୍ତେ ଉଭୟ ଭିତରେ ପାର୍ଥକ୍ୟ ଆଣି 'ସତ୍ୟ ସତ୍ୟ ଅଟେ' ଓ 'ଈଶ୍ୱର ଈଶ୍ୱର ଅଟନ୍ତି' କହିବାକୁ ଅଧିକ ସମୀଚୀନ ମନେ କରିଥାନ୍ତେ । ଉଲ୍ଲିଖିତ ଘଟଣା ପ୍ରବାହ ଗାନ୍ଧୀଙ୍କ ମାନସିକ ପରିବର୍ତ୍ତନର ସୂଚନା ଦିଏ ।

## ଗାନ୍ଧୀ ଓ ପୁଷ୍ପ

ଫୁଲ ଏକ ସୌନ୍ଦର୍ଯ୍ୟର ବସ୍ତୁ । ଯେତେ ବସ୍ତୁ ମଣିଷର ହୃଦୟକୁ ଆନନ୍ଦ ଦେଇଥାଏ ସେମାନଙ୍କ ଭିତରେ ସବୁଠାରୁ ସାଧାରଣ ବସ୍ତୁ ହେଉଛି ପୁଷ୍ପ । ସଙ୍ଗୀତ, ନୃତ୍ୟ, ଚିତ୍ରକଳା, କବିତା ଓ ଭାସ୍କର ମଧ୍ୟ ଉପଭୋଗ୍ୟ ବସ୍ତୁ । କିନ୍ତୁ ଏଗୁଡ଼ିକ ପୁଷ୍ପ ପରି ଏତେ ସହଜରେ ମିଳିପାରେ ନାହିଁ । ଫୁଲର ରଙ୍ଗ, ବାସ୍ନା ଓ ଆକୃତି ଲୋକମାନଙ୍କୁ ଆକୃଷ୍ଟ କରିଥାଏ, ପିଲାମାନେ ଫୁଲକୁ ନେଇ ଖେଳନ୍ତି । ବଧୂମାନେ ଫୁଲ ସାହାଯ୍ୟରେ ସାଜସଜ୍ଜା କରନ୍ତି । ଏପରିକି କେତେକ ଲୋକ ନିଜ ଶରୀରରେ ଚିତାକୁଟାଇ ଓ ଦେହକୁ ପତ୍ର, ଘର, ଫୁଲ ଓ ଚନ୍ଦ୍ର ସାହାଯ୍ୟରେ ସଜାଇଥାନ୍ତି ।

ଫୁଲ ଅଦବା ସହଜରେ ପ୍ରାପ୍ୟ ଓ ଉପଭୋଗ୍ୟ ଫୁଲକୁ ଶୁଙ୍ଘିବାରେ ଆନନ୍ଦ ମିଳିଯାଏନାହିଁ । ଫୁଲ ବା ସେପରି କିଛି ବସ୍ତୁକୁ ଉପଭୋଗ କରିବାରେ ମଣିଷର

ମାନସିକ ଅବସ୍ଥା ଗୁରୁତ୍ୱପୂର୍ଣ୍ଣ ମନେହୁଏ । ପାଶବାଦିକ ସମସ୍ୟାରେ ଜର୍ଜରିତ ଦମ୍ପତି ଏକ ସଙ୍ଗୀତକୁ ଆନନ୍ଦପ୍ରଦ ପରିବର୍ତ୍ତେ ଏକ ବିରକ୍ତିକର କୋଳାହଳରେ ଗ୍ରହଣ କରିଥାନ୍ତି । ଏକ କ୍ଷୁଧାର୍ତ୍ତ ବ୍ୟକ୍ତି ଫୁଲର ସୌନ୍ଦର୍ଯ୍ୟ ପରିବର୍ତ୍ତେ ଖାଦ୍ୟର ଅନ୍ୱେଷଣ କରିଥାଏ । ସୁତରାଂ କୌଣସି ବସ୍ତୁକୁ ଉପଭୋଗ କରିବାରେ ନିହିତ ସୌନ୍ଦର୍ଯ୍ୟ ବସ୍ତୁ ଭିତରର ଏକ ଅନ୍ତର୍ନିହିତ ଗୁଣ ନୁହେଁ । ଏହା ବ୍ୟକ୍ତିର ଦୃଷ୍ଟିକୋଣ ଉପରେ ନିର୍ଭର କରେ, ସୁତରାଂ ଆପେକ୍ଷିକ ଅଟେ ।

ଏହି ପରିପ୍ରେକ୍ଷୀରେ ଗାନ୍ଧୀ ଯେଉଁ ଦୃଷ୍ଟିରେ ବସ୍ତୁର ସୌନ୍ଦର୍ଯ୍ୟକୁ ନେଇଥିଲେ ତାହା ତାତ୍ପର୍ଯ୍ୟପୂର୍ଣ୍ଣ ମନେହୁଏ । ୧୯୪୫ ମସିହାରେ ପ୍ୟାରେଲାଲ ଗାନ୍ଧୀଙ୍କ ଜୀବନର ଏକ ଘଟଣା ବର୍ଣ୍ଣନା କରିଛନ୍ତି ଯେଉଁଥିରୁ ତାଙ୍କର ଏ କ୍ଷେତ୍ରରେ ମତ ସୁସ୍ପଷ୍ଟ ବୋଧହୁଏ ।

**ଗାନ୍ଧୀଙ୍କ ପ୍ରତିକ୍ରିୟା :**

ବମ୍ବେରେ ଗାନ୍ଧୀ ଆର୍. ଡି. ବିର୍ଲାଙ୍କର ଅତିଥି ଥିଲେ । ବିର୍ଲାଙ୍କ ଅତିଥିଶାଳାରେ ଯେଉଁଠି ଗାନ୍ଧୀ ରହୁଥିଲେ ସେଠାରେ ଗ୍ରୀଡ ଉପରେ ଫୁଲ-କିଆରିମାନ ଥିଲା । ସେ ସମୟରେ ଦେଶର ଖାଦ୍ୟସମସ୍ୟା ନେଇ ଗାନ୍ଧୀ ଚିନ୍ତା-ଗ୍ରସ୍ତ ଥିଲେ । ଯେତେବେଳେ ବଙ୍ଗ ଦୁର୍ଭିକ୍ଷରେ ହଜାର ହଜାର ଲୋକ ମୃତ୍ୟୁବରଣ କରିଥିଲେ ଏବଂ ଅଗଣିତ ଲୋକ ଅନାହାରରେ କଲିକତା ରାସ୍ତାରେ ବୁଲୁଥିଲେ । ଯେକୌଣସି ସମାଜସେବୀଙ୍କର ତାହା ଚିନ୍ତାର ବିଷୟ ଥିଲା । ଗାନ୍ଧୀ ମଧ୍ୟ ଦେଶର ଖାଦ୍ୟସମସ୍ୟା ନେଇ ଅତ୍ୟନ୍ତ ଉଦ୍‌ବିଗ୍ନ ଥିଲେ । ସେ ମୌଳିକ ଶିକ୍ଷାକେନ୍ଦ୍ରର ଯୁବକମାନଙ୍କୁ ଡାକି କହିଥିଲେ, "ଯେତେବେଳେ ଅଗଣିତ ଲୋକ ଅନାହାରରେ ମୃତ୍ୟୁବରଣ କରୁଛନ୍ତି ସେତେବେଳେ ତୁମେମାନେ ତୁମର ଶିକ୍ଷା କାର୍ଯ୍ୟରେ ବ୍ୟସ୍ତ ରହିବା ଶୋଭନୀୟ ନୁହେଁ । ଦେଶର ଏହି ସଙ୍କଟପୂର୍ଣ୍ଣ ମୁହୂର୍ତ୍ତରେ ଦେଶର ଖାଦ୍ୟ-ଯୋଗାଣ କିପରି ବୃଦ୍ଧି ପାଇବ ସେ ଦିଗରେ ଚିନ୍ତା କରିବା ଅବଶ୍ୟକ ।"

ବିର୍ଲାଙ୍କ ଗୃହର ଗ୍ରୀଡ ଉପରେ ହୋଇଥିବା ଫୁଲକିଆରିମାନଙ୍କୁ ଦେଖି ସେ ନିଜର ପ୍ରତିକ୍ରିୟା ପ୍ରକାଶ କରି ଫୁଲକିଆରି ବଦଳରେ ପରିବା ଉତ୍ପାଦନ ପାଇଁ ପରାମର୍ଶ ଦେଇଥିଲେ ।

ଶାନ୍ତି ସ୍ଥାପନ ପାଇଁ ମିତ୍ରମଣ୍ଡଳୀର ସଦସ୍ୟ ଓ ଗାନ୍ଧୀଙ୍କର ବନ୍ଧୁ ଅଗଥା ହାରିସନ୍ ଗାନ୍ଧୀଙ୍କର ଏହି ପରାମର୍ଶକୁ ସମାଲୋଚନା କରି କହିଥିଲେ, "ଲୋକମାନେ କାହିଁକି ଫୁଲ ଉତ୍ପାଦନ କରିବେ ନାହିଁ ? ଖାଦ୍ୟ ଯେପରି ଦେହ ପାଇଁ ଦରକାର ରଙ୍ଗ ଓ ସୌନ୍ଦର୍ଯ୍ୟ ସେହିପରି ଆତ୍ମା ପାଇଁ ଦରକାର ।"

ଗାନ୍ଧୀଙ୍କର ଉତ୍ତର ଉଲ୍ଲେଖନୀୟ ଥିଲା । ସେ କହିଥିଲେ "ଯାହା ସୁନ୍ଦର ତାହା ଉପଯୋଗୀ ନୁହେଁ ଓ ଯାହା ଉପଯୋଗୀ ତାହା ସୁନ୍ଦର ହୋଇପାରିବ ନାହିଁ ବୋଲି ଆମକୁ କୁହାଯାଇଛି । ମୁଁ କିନ୍ତୁ କହିବାକୁ ଚାହେଁ ଯେ ଯାହା ଉପଯୋଗୀ ତାହା ସୁନ୍ଦର ହୋଇପାରିବ । ବରଂ ପନିପରିବାର ରଙ୍ଗ ଓ ସୌନ୍ଦର୍ଯ୍ୟକୁ ଯଥାର୍ଥ ଭାବରେ ଆମେ ଗ୍ରହଣ କରି ଶିଖିବା ଉଚିତ ।"

ବିରଲାଙ୍କ ଗୃହରେ ଥିବା ଫୁଲକିଆରିମାନଙ୍କୁ ପନିପରିବା ଉତ୍ପାଦନରେ ରୂପାନ୍ତରିତ କରି ବିନ୍ଷ୍ ମଟର, କୋବି ଆଦି ଚାଷ କରାଯାଇଥିଲା ।

## ନୈତିକତା ଓ ସୌନ୍ଦର୍ଯ୍ୟ :

ଗାନ୍ଧୀଙ୍କର ସୌନ୍ଦର୍ଯ୍ୟବୋଧ ସହିତ ନୈତିକ ଦୃଷ୍ଟିଭଙ୍ଗୀର ସମନ୍ୱୟ ହୋଇଥିଲା । ଜୀବନର ମୌଳିକ ଆବଶ୍ୟକତାଗୁଡ଼ିକ ପୂରଣ ହେଲା ପରେ ଯାଇ ଶୋଭାଯୁକ୍ତ ଫୁଲ ଉପଭୋଗ୍ୟ ହୋଇପାରିବ । ଆମର ପ୍ରଚଳିତ ସଭ୍ୟତାରେ କେତେକ ଲୋକ ପ୍ରାଚୁର୍ଯ୍ୟ ଭିତରେ ଥିବାବେଳେ ଅଗଣିତ ମଣିଷ ଦାରିଦ୍ର୍ୟ ଭିତରେ ରହିଥାନ୍ତି । ପେଟ ପୂରୁଥିବା ମଣିଷମାନଙ୍କ ପାଇଁ ଫୁଲର ସୌନ୍ଦର୍ଯ୍ୟ ଉପଭୋଗ୍ୟ । କିନ୍ତୁ ଜଣେ ଭୋକିଲା ମଣିଷ ଫୁଲର ସୌନ୍ଦର୍ଯ୍ୟକୁ ଉପଭୋଗ କରିପାରିବ କି ? ଫୁଲ ତାହାର କ୍ଷୁଧାକୁ ନିବାରଣ କରିପାରିବ ନାହିଁ । ସୁତରାଂ ଏକ ଅନାହାରୀ ମଣିଷ ପାଇଁ ଫୁଲର ଉପଯୋଗିତା ନାହିଁ । ଫୁଲଗଛ ବଦଳରେ ଫଳଗଛଟିଏ ଲଗାଇଲେ ଜଣେ କ୍ଷୁଧାର୍ତ୍ତ ବ୍ୟକ୍ତିକୁ କିଛି ଖାଦ୍ୟ ମିଳିପାରିବ । ପନିପରିବା ଗଛ ଗରିବର ସାଥୀ ହେବାବେଳେ ଶୋଭାଯୁକ୍ତ ଫୁଲର ଗଛ ତା' ପାଇଁ ଅଦରକାରୀ ହୋଇଥାଏ । ସାଧାରଣ ମଣିଷମାନଙ୍କର ସମସ୍ୟା ସହିତ ନିଜକୁ ଓତପ୍ରୋତ ଭାବରେ ସଂଶ୍ଳିଷ୍ଟ କରିଥିବା ଗାନ୍ଧୀ ସାଧାରଣ ମଣିଷର ଖାଦ୍ୟସମସ୍ୟା ପାଇଁ ଫୁଲ ଚାଷ ଅପେକ୍ଷା ଫଳଚାଷ ଉପରେ ଗୁରୁତ୍ୱ ଦେବା ସ୍ୱାଭାବିକ ଅଟେ । ନିଜର ଉଚ୍ଚ ନୈତିକ ଅଭିମୁଖ୍ୟ ଭିତରେ ସେ ଫୁଲକିଆରିକୁ ପରିବାକିଆରିରେ ପରିବର୍ତ୍ତିତ କରିବାପାଇଁ ପରାମର୍ଶ ଦେଇଥିଲେ ।

## ପରାମର୍ଶ :

ସେ ସମୟରେ ହରିଜନ ପତ୍ରିକାରେ ବିସ୍ତୃତ ଲେଖାମାନ ପ୍ରକାଶ କରି ଜନଗଣ ଓ ସରକାର ଫୁଲ ପରିବର୍ତ୍ତେ ଫଳ ଓ ପନିପରିବା ଉତ୍ପାଦନ କରିବା ପାଇଁ ସେ ନିବେଦନ କରିଥିଲେ । ସେ ଲେଖିଥିଲେ, "ସମସ୍ତ ଫୁଲ ବଗିଚାକୁ ଫଳ ଓ ପନିପରିବା ଚାଷ ପାଇଁ ବିନିଯୋଗ କରାଯିବା ଆବଶ୍ୟକ । ଭାରତର ବଡ଼ଲାଟ, ରାଜ୍ୟପାଳ ଓ ଉଚ୍ଚ ପଦାଧିକାରୀମାନେ ଏ କ୍ଷେତ୍ରରେ ଆଗଭର ହେବାକୁ ମୁଁ ଅନୁରୋଧ

କରୁଛି । × × × ସମ୍ପ୍ରତି ଆମ ଦେଶ ଗୁରୁତର ଖାଦ୍ୟସମସ୍ୟା ଦେଇ ଗତି-ଗରୁଛି । ଖାଦ୍ୟାଭାବ ଯୋଗୁଁ ଆମ ଦେଶର ଲକ୍ଷ ଲକ୍ଷ ବ୍ୟକ୍ତି ଅନାହାରରେ ରହୁଥିବା ବେଳେ ସୌନ୍ଦର୍ଯ୍ୟ ଓ ସୁଖ ପାଇଁ ଆମେ ଗୋଲାପର ଉଦ୍ୟାନ ସୃଷ୍ଟି କରିବା କି ? ବରଂ ଖାଦ୍ୟଶସ୍ୟ ଉତ୍ପାଦନ କ୍ଷୁଧାର୍ତ୍ତ ବ୍ୟକ୍ତିମାନଙ୍କର ଉପକାରରେ ଆସିପାରିବ । ଖାଦ୍ୟଶସ୍ୟ ପରିବର୍ତ୍ତେ ସୌଖୀନ ଫୁଲର ବଗିଚା ଦେଖିଲେ ମୋର ଆଖି ଆନନ୍ଦରେ ନାଚିଉଠିବା ପରିବର୍ତ୍ତେ ମୁଁ କଷ୍ଟ ଅନୁଭବ କରିଥାଏ । × × × ଆଇନ ଦ୍ୱାରା ସମସ୍ତ ସର୍ବସାଧାରଣ ଫୁଲବଗିଚାକୁ ପନିପରିବା ଉତ୍ପାଦନ ପାଇଁ ବିନିଯୋଗ କରାଯିବା ଆବଶ୍ୟକ । ଦିଲ୍ଲୀର କେନ୍ଦ୍ରସ୍ଥଳରେ ଅବସ୍ଥିତ ଥିବା ଉଦ୍ୟାନ ଓ ସରକାରୀ ବଙ୍ଗଳାମାନଙ୍କ ଭିତରେ ଥିବା ସ୍ଥାନକୁ ପ୍ରଚୁର ପରିବା ଚାଷ ପାଇଁ ବ୍ୟବହାର କରାଯିବା ଦରକାର । × × × ନଗରପାଳିକାର ମାଳୀ କର୍ମଚାରୀ-ମାନଙ୍କୁ ଫୁଲ ଓ ଘାସ କଟାଇବା କରିବା ପରିବର୍ତ୍ତେ ଖାଦ୍ୟ ଉତ୍ପାଦନ ପାଇଁ ନିର୍ଦ୍ଦେଶ ଦିଆଯିବା ଦରକାର । ଏହାଦ୍ୱାରା ସେମାନେ ବୃଥାରେ ବ୍ୟୟ କରୁଥିବା ସମୟକୁ ଗଠନମୂଳକ କାର୍ଯ୍ୟରେ ବିନିଯୋଗ କରିପାରିବେ ।”

ଗାନ୍ଧୀ ନିଜେ ମଧ୍ୟ ଫୁଲ ବଦଳରେ ଫଳ ଓ ପନିପରିବା ଚାଷକରି ନିଜର କଥାକୁ କାର୍ଯ୍ୟରେ ପରିଣତ କରିଥିଲେ । କେବଳ ବକ୍ତୃତା ଭିତରେ ସେ ସୀମାବଦ୍ଧ ନରହି ବା ଉପଯୁକ୍ତ ପ୍ରସ୍ତୁତି ପର୍ଯ୍ୟନ୍ତ ଅପେକ୍ଷା ନକରି କାର୍ଯ୍ୟ ଆରମ୍ଭ କରିବାରେ ପ୍ରୟାସୀ ହୋଇଥିଲେ ।

## ଗାନ୍ଧୀବାଦ ଜନଶକ୍ତିକୁ ସକ୍ରିୟ କରାଏ

ଗାନ୍ଧୀଙ୍କର ସତ୍ୟାଗ୍ରହ ପଦ୍ଧତି ମାନବ ସଭ୍ୟତା ପ୍ରତି ଏକ ମହାନ୍ ଅବଦାନ । ସାମାଜିକ କାର୍ଯ୍ୟକଳାପ ପ୍ରତି ଏହା ବ୍ୟକ୍ତିକୁ ଆକୃଷ୍ଟ କରିଥାଏ ।

ଗାନ୍ଧୀଙ୍କ ପୂର୍ବରୁ ଜୀବନଧାରଣ କ୍ଷେତ୍ରରେ ଧର୍ମଗତ ବିଶ୍ୱାସ, ସରକାର, ବିବର୍ତ୍ତନ ପ୍ରକ୍ରିୟା, ପରମ୍ପରା, ଐତିହାସିକ ଆବଶ୍ୟକତା, ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦ ଇତ୍ୟାଦି ଉପରେ ଗୁରୁତ୍ୱ ଦିଆଯାଉଥିଲା । ଏହାଦ୍ୱାରା ମଣିଷ ଗୌଣ ହୋଇଯାଉଥିଲା । ତା'ର ଜୀବନକୁ ବ୍ୟବସ୍ଥା ପାଖରେ ନିର୍ଭରଶୀଳ ବା ତା'ର ଅଧୀନ ବୋଲି ଗ୍ରହଣ କରାଯାଉଥିଲା । କିନ୍ତୁ ଗାନ୍ଧୀ ମଣିଷର ମହତ୍ତ୍ୱ ଉପରେ ପ୍ରାଧାନ୍ୟ ଦେଇଥିଲେ । ୧୯୨୧ ମସିହାରେ ସେ ଲେଖିଥିଲେ, “ନିଜେ ପ୍ରସ୍ତୁତ କରୁଥିବା ବ୍ୟବସ୍ଥାଠାରୁ ମଣିଷ ଅଧିକ ମୂଲ୍ୟବାନ୍ ।” ସତ୍ୟାଗ୍ରହ ମଣିଷର ବ୍ୟକ୍ତିତ୍ୱକୁ ଜାଗ୍ରତ କରିଥାଏ । ସତ୍ୟାଗ୍ରହୀ ଯାହା ସତ୍ୟ ବୋଲି ବିବେଚନା କରେ ତାକୁ ହିଁ ଗୁରୁତ୍ୱ ଦେଇଥାଏ । ସେ ପ୍ରତ୍ୟେକ ମଣିଷକୁ ଏକ ସମ୍ମାନଜନକ ବ୍ୟକ୍ତି ଭାବରେ ଗ୍ରହଣ କରୁଥିବାରୁ

ସ୍ୱରୂପତଃ ଅହିଂସାକୁ ଗୁରୁତ୍ୱ ଦେଇଥାଏ । କାରଣ ଜଣେ ଅନ୍ୟ ପ୍ରତି ହିଂସା ଆଚରଣ କରିବା ଦ୍ୱାରା ଅନ୍ୟର ମତ ସ୍ୱାଧୀନଭାବରେ ପ୍ରକାଶ ଢଙ୍ଗରେ ଅନ୍ତରାୟ ହୋଇଥାଏ । ସତ୍ୟ ନେଇ ଯେତେ ପରସ୍ପର ବିରୋଧୀ ମତ ରହିଲେ ମଧ୍ୟ ବ୍ୟକ୍ତି ବା କେତେକ ବ୍ୟକ୍ତିଙ୍କର ସାଧୁ ଉଦ୍ୟମଦ୍ୱାରା କୌଣସି ପରିସ୍ଥିତିରେ ପ୍ରକାଶ ପାଉଥିବା ବାସ୍ତବତାକୁ ସତ୍ୟ ବୋଲି ନଅଗିବା ଦରକାର । ସତ୍ୟାଗ୍ରହ ମୋଟ୍- ଉପରେ କୌଣସି କାର୍ଯ୍ୟ ପାଇଁ ବ୍ୟକ୍ତି ଉପରେ ନୈତିକ ଦାୟିତ୍ୱ ସ୍ଥିର କରିଥାଏ । କୌଣସି ଇଶ୍ୱରୀୟ ଇଚ୍ଛା ବା ପରିସ୍ଥିତିର ତାଡ଼ନା ଦେଖାଇ ବ୍ୟକ୍ତିକୁ ନୈତିକ ଦାୟିତ୍ୱରୁ ମୁକ୍ତ କରେନାହିଁ ।

**ମଣିଷର ପ୍ରାଧାନ୍ୟ**

ଏକ ବ୍ୟବସ୍ଥା ଅପେକ୍ଷା ମଣିଷର ଶ୍ରେଷ୍ଠତା ସରକାର ପାଖରେ ସ୍ପଷ୍ଟ ଭାବରେ ଦୃଷ୍ଟିଗୋଚର ହୋଇଥାଏ । ଲୋକମାନଙ୍କର ସହଯୋଗ ଓ ଟିକସ ପ୍ରଦାନ ଉପରେ ସରକାର ତିଷ୍ଠି ରହିଥାଏ । ଜନସଂଖ୍ୟାର ଏକ ପ୍ରମୁଖ ଅଂଶ ଯଦି ସରକାର ପାଖରୁ ସହଯୋଗ ପ୍ରତ୍ୟାହାର କରିନେବେ ଓ ଟିକସ ଦେବା ବନ୍ଦ କରିଦେବେ ତେବେ ସରକାର ନିଶ୍ଚିତଭାବେ ଭୁଶୁଡ଼ିପଡ଼ିବ । ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ସଂଗ୍ରାମ କଲାବେଳେ ଗାନ୍ଧିଙ୍କର ଅସହଯୋଗ ଆନ୍ଦୋଳନର ଏହାହିଁ ତାତ୍ପର୍ଯ୍ୟ ଥିଲା । ଯୁଗ ଯୁଗ ଧରି ଦେଶବାସୀ ଯେଉଁ ଅସହାୟ ଅବସ୍ଥାରେ ସାମ୍ରାଜ୍ୟବାଦୀ ଶକ୍ତିଙ୍କଦ୍ୱାରା ପଦଦଳିତ ହୋଇ ରହିଥିଲେ ସତ୍ୟାଗ୍ରହଦ୍ୱାରା ଗାନ୍ଧୀ ଜନଗଣଙ୍କ ମଧ୍ୟରେ ନୂତନ ଜୀବନଶକ୍ତି ସଞ୍ଚାର କରିପାରିଥିଲେ । ଯେତେବେଳେ ସାଧାରଣ ଜନତାଙ୍କ ଭିତରେ ଏହି ଭାବନା ଉଦ୍ରେକ ହେଲା ଯେ ସେମାନଙ୍କର ସହଯୋଗ ଓ କରପ୍ରଦାନଦ୍ୱାରା ସରକାର ତିଷ୍ଠି ରହିଛି ଓ ସରକାର ସେମାନଙ୍କ ଉପରେ ନିର୍ଭରଶୀଳ ସେମାନେ ସରକାର ଉପରେ ନୁହନ୍ତି, ସେତେବେଳେ ସେମାନଙ୍କର ଆଖି ଖୋଲିଯାଇଥିଲା । ଏହା ସହିତ ଜନଗଣଙ୍କ ଭିତରେ ବ୍ୟକ୍ତି ମର୍ଯ୍ୟାଦାବୋଧ ଓ ଆତ୍ମବିଶ୍ୱାସ ସୃଷ୍ଟି ହୋଇଥିଲା । ଲୋକମାନଙ୍କର ଉଦ୍ୟମରେ ଶାସନ ବ୍ୟବସ୍ଥା ପରିବର୍ତ୍ତିତ ହେଲା । ବ୍ୟବସ୍ଥା ଯେତେ ଶକ୍ତିଶାଳୀ ହେଉ ନା କାହିଁକି ଜନଗଣଙ୍କ ଊର୍ଦ୍ଧ୍ୱରେ ରହିପାରିବ ନାହିଁ ।

ଗାନ୍ଧୀ ଏହା ବାରମ୍ବାର ସୂଚାଇଛନ୍ତି ଯେ ଜନଗଣଙ୍କର ନ୍ୟୂନତା ଯୋଗୁଁ କେତେକଙ୍କର ଉତ୍ପୀଡ଼ନ ସାବ୍ୟସ୍ତ ହୋଇରହିଛି । ଯେତେବେଳେ ଲୋକମାନଙ୍କ ଭିତରେ ସ୍ୱାଧୀନ ଦୃଷ୍ଟିଭଙ୍ଗୀର ବିକାଶ ହେବ କୌଣସି ପ୍ରକାର ଅତ୍ୟାଚାର ସଭ୍ୟତାରେ ରହିପାରିବ ନାହିଁ । ପ୍ରଭୁମାନଙ୍କର ଅତ୍ୟାଚାର ଦାସମାନଙ୍କର ସହଯୋଗରେ ହିଁ ତିଷ୍ଠି ରହିଛି । କିନ୍ତୁ ଅତ୍ୟାଚାରିତ ଲୋକମାନଙ୍କର ଅସହ- ଯୋଗରେ ଅତ୍ୟାଚାର କରାଯାଇପାରିବ ନାହିଁ । ଇତିହାସରୁ ଅନେକ ଦୃଷ୍ଟାନ୍ତ

ଏ କ୍ଷେତ୍ରରେ ଦିଆଯାଇପାରିବ । ଆମେରିକାରେ ଥିବା କଳା-ଗୋରା ବିଭେଦକୁ ଲୋପ କରିବାକୁ ମାର୍ଟିନ ଲୁଥର କିଙ୍ଗ୍ ଯେତେବେଳେ ମଣ୍ଟଗୋମେରିରେ କଳା ଲୋକମାନଙ୍କ ସହାୟତାରେ ବସ୍‌ରେ ଯିବାଆସିବା ନେଇ ଅସହଯୋଗ କରିଥିଲେ ସେଥିରେ ଯଥେଷ୍ଟ ସଫଳତା ମିଳିଥିଲା । ସେହିପରି ମୁଜିବୁର ରହମାନ ବାଂଲା-ଦେଶର ଜନଗଣଙ୍କୁ ନେଇ ଅସହଯୋଗ ଢଙ୍ଗାରେ ଶାସକମାନଙ୍କ ବିରୁଦ୍ଧରେ ଆନ୍ଦୋଳନ ଆରମ୍ଭ କରିଥିଲେ । ଯେତେବେଳେ ବାଂଲାଦେଶରେ ଚପରାସୀଠାରୁ ଆରମ୍ଭ କରି ମୁଖ୍ୟ ବିଚାରପତି ପର୍ଯ୍ୟନ୍ତ ପାକିସ୍ତାନୀ ଶାସକମାନଙ୍କ ବିରୁଦ୍ଧରେ ସତ୍ୟାଗ୍ରହ କରିଥିଲେ ସେତେବେଳେ ବାଂଲାଦେଶର ସ୍ୱାଧୀନତା ପାଇଁ ଭିତ୍ତି ପଡ଼ିଥିଲା । ଅସହଯୋଗ, ଆଇନ୍ ଅମାନ୍ୟ, ଟିକସ୍ ପ୍ରତ୍ୟାଖ୍ୟାନ, ହରତାଳ ଓ ଘେରାଉ ଇତ୍ୟାଦିଦ୍ୱାରା ବ୍ୟବସ୍ଥାଠାରୁ ଲୋକମାନଙ୍କର ପ୍ରାଧାନ୍ୟକୁ ଜାହିର କରିବା ପାଇଁ ଜନଗଣଙ୍କ ଭିତରେ ସଚେତନତା ସୃଷ୍ଟି କରାଯାଇପାରିବ ।

**ସତ୍ୟାଗ୍ରହର ଭୂମିକା :**

ଜନଗଣଙ୍କ ଭିତରେ ଆଦାନପ୍ରଦାନ ଓ ପାରସ୍ପରିକ ସମ୍ବନ୍ଧ ସ୍ଥାପନ ପାଇଁ ସଭ୍ୟତାରେ ନାନା ବ୍ୟବସ୍ଥା ଆବଶ୍ୟକ ହୁଏ । କିନ୍ତୁ ଲୋକମାନଙ୍କ ଭିତରେ ଏହି ଚେତନା ରହିବା ଆବଶ୍ୟକ ଯେ ସେମାନେ ନିଜର ସୁଖସୁବିଧା ପାଇଁ ବ୍ୟବସ୍ଥାକୁ ସୃଷ୍ଟି କରିଛନ୍ତି । କିନ୍ତୁ ଆମ ସଭ୍ୟତାର ଦୁଃଖଦାୟକ ଘଟଣା ହେଉଛି ମଣିଷ ଓ ତା'ର ବ୍ୟବସ୍ଥା ଭିତରେ ଥିବା ସମ୍ବନ୍ଧକୁ ବିପରୀତ ଭାବରେ ଗ୍ରହଣ କରିବା । ବ୍ୟବସ୍ଥା ଉପରେ ନିଜର କର୍ତ୍ତୃତ୍ୱ ସ୍ଥାପନ କରିବା ଓ ଆବଶ୍ୟକ ସମୟରେ ସେଗୁଡ଼ିକର ପରିବର୍ତ୍ତନ କରିବା ପରିବର୍ତ୍ତେ ନିଜର ଅଧସ୍ତନ ମନୋଭାବ ଯୋଗୁଁ ବ୍ୟକ୍ତି ବ୍ୟବସ୍ଥା ପାଖରେ ନିଜକୁ ନ୍ୟୂନ ମନେକରିଥାଏ ଓ ଯେଉଁମାନଙ୍କଦ୍ୱାରା ବ୍ୟବସ୍ଥାଟି ପରିଚାଳିତ ହୁଏ ସେମାନଙ୍କଦ୍ୱାରା ଶୋଷିତ ହୋଇଥାଏ । ସାଧାରଣ ମଣିଷର ବଶ୍ୟତା ଯୋଗୁଁ ଅତୀତରେ ଧର୍ମଯାଜକମାନେ ଓ ଆଧୁନିକ ଯୁଗରେ ରାଜନୈତିକ ବ୍ୟକ୍ତିମାନେ ତାକୁ ଶୋଷଣ କରିଥାନ୍ତି । ସୈନିକମାନେ ଯୁଦ୍ଧ କରିବା ହେତୁ ଯୁଦ୍ଧ ସମ୍ଭବ ହୁଏ; ଶ୍ରମିକମାନଙ୍କର ଶ୍ରମ ଯୋଗୁଁ ପୁଞ୍ଜିବାଦ ରହିଥାଏ, ବିଶ୍ୱାସୀମାନଙ୍କର ଅହେତୁକ ବିଶ୍ୱାସ ଫଳରେ କୁସଂସ୍କାର ଥାଏ ଓ ହରିଜନ-ମାନଙ୍କର ମାନିନେବା ଯୋଗୁଁ ଅସ୍ପୃଶ୍ୟତା ରହିବା ଦେଖାଯାଏ । ସତ୍ୟାଗ୍ରହ ଅତ୍ୟାଚାରୀ ଓ ପୁରୁଣା ବ୍ୟବସ୍ଥା ବିରୁଦ୍ଧରେ ସଚେତନ ଜନଗଣଙ୍କର ବିପ୍ଳବକୁ ବୁଝାଏ । ଅତୀତରେ ପୁଞ୍ଜିବାଦ ଓ ଜାତିପ୍ରଥା ହୁଏତ ଉପଯୋଗୀ ଥାଇପାରେ; କିନ୍ତୁ ସାମ୍ପ୍ରତିକ ପରିସ୍ଥିତିରେ ସେସବୁ ଅନୁପଯୋଗୀ ହୋଇଥିବାରୁ ସେସବୁକୁ ପ୍ରତ୍ୟାଖ୍ୟାନ କରିବା ଦରକାର । ବ୍ୟବସ୍ଥାକୁ ଧ୍ୱଂସ କରିବା, ପରିବର୍ତ୍ତନ କରିବା ଓ ଆବଶ୍ୟକତାନୁଯାୟୀ ସେଥିରେ ନୂଆ ନୂଆ ସଂସ୍କାର ଆଣିବାଦ୍ୱାରା ମଣିଷର ପ୍ରଗତି ସମ୍ଭବପର ହୋଇଥାଏ ।

କେନ୍ଦ୍ରୀକରଣ ଯୋଗୁଁ ଗୋଟିଏ ବ୍ୟବସ୍ଥା ତା'ର ଗୁରୁତ୍ୱ ନେଇ ଏକ ଭ୍ରମଧାରଣା ସୃଷ୍ଟି କରିପାରେ । ପୁଞ୍ଜିବିନିଯୋଗକାରୀ ଓ ସଞ୍ଚୟକାରୀଙ୍କର ସହାୟତାରେ ଗୋଟିଏ ବ୍ୟାଙ୍କ୍‌ର ଉତ୍ପତ୍ତି ହୋଇଥାଏ । କିନ୍ତୁ ଖଟା ଯାଇଥିବା ମୂଳଧନ ଓ ସଞ୍ଚୟକୁ ପ୍ରତ୍ୟାହାର କରିନେବା ଫଳରେ ବ୍ୟାଙ୍କ୍‌ର ଅସ୍ତିତ୍ୱ ଲୋପପାଏ । ସୁତରାଂ ଗୋଟିଏ ବ୍ୟାଙ୍କ୍‌ର ଅସ୍ତିତ୍ୱ ଏଥିରେ ଧନ ଖଟାଇଥିବା ସତ୍ତ୍ୱାଧିକାରୀ ଓ ସଞ୍ଚୟକାରୀଙ୍କ ଉପରେ ନିର୍ଭର କରିଥାଏ । କିନ୍ତୁ କାଳକ୍ରମେ ଏଥିରେ ଗଚ୍ଛିତ ଅର୍ଥ ବୃଦ୍ଧି ପାଇଲାପରେ ଏହା ଗ୍ରାହକମାନଙ୍କର ଆର୍ଥିକ ସ୍ଥିତିକୁ ନିୟନ୍ତ୍ରଣ କରିବା ଆରମ୍ଭ କରେ । ବ୍ୟାଙ୍କ୍‌ର ସାମର୍ଥ୍ୟ ବହୁ ଲୋକଙ୍କର ଗଚ୍ଛିତ ଅର୍ଥର କେନ୍ଦ୍ରୀକରଣଦ୍ୱାରା ବୃଦ୍ଧି ପାଇଥାଏ । ଏହାର ଅପରିସୀମ ପୁଞ୍ଜିସତ୍ତ୍ୱେ ଏହାର ଅଂଶ କ୍ରୟକାରୀ ଓ ଏହାର ଗଚ୍ଛିତକାରୀମାନେ ଯଦି ବ୍ୟାଙ୍କ୍ ଉପରେ ଥିବା ସେମାନଙ୍କର କର୍ତ୍ତୃତ୍ୱ ନେଇ ସଚେତନ ହେବେ ତେବେ ଏହାକୁ ନିୟନ୍ତ୍ରଣ ଭିତରେ ରଖିପାରିବେ । କିନ୍ତୁ ସେମାନଙ୍କର ଦାୟିତ୍ୱହୀନ ଓ ଉଦାସୀନଭାବ ଯୋଗୁଁ ସେମାନେ ନିଜର କର୍ତ୍ତୃତ୍ୱବୋଧ ହରାଇ ବସନ୍ତି । ସେମାନେ ନିଜଦ୍ୱାରା ସୃଷ୍ଟ ଅନୁଷ୍ଠାନ ପାଖରେ ଅଧସ୍ତନ ହୋଇରହନ୍ତି । ମଣିଷ ନିଜଦ୍ୱାରା ସୃଷ୍ଟି କରିଥିବା ଅନୁଷ୍ଠାନ ବା ବ୍ୟବସ୍ଥା ଉପରେ ପ୍ରାଧାନ୍ୟ ଜାହିର କରିବାକୁ ସତ୍ୟାଗ୍ରହ ଲୋକମାନଙ୍କୁ ସଚେତନ କରିଥାଏ । ଏହା ସହିତ ଅନୁଷ୍ଠାନମାନଙ୍କର ବିକେନ୍ଦ୍ରୀକରଣ ପାଇଁ ସତ୍ୟାଗ୍ରହ ସୁପାରିଶ କରିବା ହେତୁ ସେସବୁ ଲୋକମାନଙ୍କର ନିକଟତର ହେବା ସହିତ ସେସବୁ ଉପରେ ଜନଗଣଙ୍କର କର୍ତ୍ତୃତ୍ୱ ସୃଷ୍ଟି ହୋଇଥାଏ । ଗାନ୍ଧୀ ରାଷ୍ଟ୍ର ବା ରାଜ୍ୟ ପରିବର୍ତ୍ତେ ସ୍ୱୟଂଶାସିତ ଗ୍ରାମୀଣ ବ୍ୟବସ୍ଥାକୁ ସମର୍ଥନ କରୁଥିଲେ । ପରସ୍ପର ସମ୍ବନ୍ଧିତ ଓ ଅନ୍ତଃନିର୍ଭରଶୀଳ ଗ୍ରାମ ସ୍ୱରାଜ୍ୟର ରୂପରେଖ ସେ ଆଙ୍କିଥିଲେ । କାଳକ୍ରମେ ଏହି ସ୍ୱାବଲମ୍ବୀ ଗ୍ରାମଗୁଡ଼ିକର ପରିସର ସଂଘୀୟ ଢାଞ୍ଚାରେ ବୃଦ୍ଧି କରାଯିବା ସହିତ ସାଧାରଣ ଉଦ୍ଦେଶ୍ୟ ସାଧନ କରାଯାଇପାରିବ ।

ପୃଥିବୀରୁ ଯୁଦ୍ଧ, ଶୋଷଣ ଓ ଦାସତ୍ୱର ବିଲୋପ ପାଇଁ ବିକେନ୍ଦ୍ରୀକରଣ ବ୍ୟବସ୍ଥା ଉପରେ ପୃଥିବୀର ମାନବତାବାଦୀ ଓ ଦାର୍ଶନିକମାନେ ଗୁରୁତ୍ୱ ଦେଇଛନ୍ତି । ରୁଷର ସୋଭିଏଟ୍, ଚୀନର କମ୍ୟୁନ୍, ଇସ୍ରାଏଲର କିବୁଜ୍, ସ୍ୱିଜରଲଣ୍ଡର କାଣ୍ଟୋନ ଓ ଆର୍ଥର ମୋର୍ଗାନଙ୍କ ପ୍ରସ୍ତାବିତ କ୍ଷୁଦ୍ର ଗୋଷ୍ଠୀ ଜୀବନ ଭାରତବର୍ଷର ଗ୍ରାମଦାନ ସହିତ ସୁସମଞ୍ଜସ୍ୟ ଅଟେ । କିନ୍ତୁ ସେସବୁ ଜନଗଣଙ୍କର ବାସ୍ତବ କାର୍ଯ୍ୟସୂଚୀ ପରିବର୍ତ୍ତେ ଏକଛତ୍ରବାଦୀ ଶାସକମାନଙ୍କ ଦ୍ୱାରା ପ୍ରତିଷ୍ଠା ହେବା ଫଳରେ ସେଗୁଡ଼ିକ ଉପରେ ଜନଗଣଙ୍କର କର୍ତ୍ତୃତ୍ୱ ରହିବା ବା ଯଥେଷ୍ଟ ଉପଯୋଗୀ ହେବା ପରିବର୍ତ୍ତେ ସେଗୁଡ଼ିକ ଏକ ଔପଚାରିକ ଅନୁଷ୍ଠାନରେ ପରିଣତ ହୋଇଛି । ସୋଭିଏଟ୍ ବ୍ୟବସ୍ଥାରେ ଅର୍ଥନୈତିକ ବିକେନ୍ଦ୍ରୀକରଣ ହୋଇଥିଲେ ବି ଏହା

ଜନଗଣଙ୍କୁ ରାଜନୈତିକ ନିୟନ୍ତ୍ରଣରୁ ବଞ୍ଚିତ କରିଛି । ଯେତେବେଳେ ଯେକୌଣସି ପ୍ରକାର ଅଧିପତ୍ୟକୁ ବିରୋଧ କରିବା ପାଇଁ ଲୋକମାନେ ସତ୍ୟାଗ୍ରହକୁ ପନ୍ଥା ଭାବରେ ନେବେ ସେତେବେଳେ ସମ୍ପୂର୍ଣ୍ଣ ବିକେନ୍ଦ୍ରୀକରଣ ସମ୍ଭବପର ହେବ ।

**ସମାନତା :**

ଯେକୌଣସି ବୈଷମ୍ୟ ଭିତରେ ଅନ୍ତର୍ନିହିତ ଥିବା ସାମାଜିକ ବୈଷମ୍ୟକୁ ସତ୍ୟାଗ୍ରହ ଲୋକଲୋଚନକୁ ଆଣିଥାଏ । ସମସ୍ତ ମଣିଷ ଗୋଟିଏ ଶ୍ରେଣୀର ହୋଇଥିବାରୁ ସେମାନେ ସମାନ ସୁବିଧା ସୁଯୋଗ ଭିତରେ ବଞ୍ଚିବା ଅବଶ୍ୟକ । ଯେପରି ସମସ୍ତ ବିରାଡ଼ି ଓ ସବୁ ଭରତଆ ପକ୍ଷୀ ସମାନ ଭାବରେ ଜୀବନଧାରଣ କରନ୍ତି ସେହିପରି ସବୁ ମଣିଷ ସମାନତା ଭିତରେ ବଞ୍ଚିବା ଆବଶ୍ୟକ । ପ୍ରଭୁ ଓ ଶ୍ରମିକ, ବ୍ରାହ୍ମଣ ଓ ହରିଜନ, ନିର୍ଗ୍ରିକ ଓ ନିଗ୍ରୋମାନଙ୍କ ମଧ୍ୟରେ କିନ୍ତୁ ଅନେକ ବୈଷମ୍ୟ ଥାଏ ଓ ତଳ ସ୍ତରରେ ଥିବା ଲୋକମାନଙ୍କୁ ସମ୍ପତ୍ତି ଉପରେ ଥିବା ବ୍ୟକ୍ତିଗତ ମାଲିକାନା, ଅସ୍ପୃଶ୍ୟତା ଓ ଜାତିଗତ ପ୍ରାଧାନ୍ୟତା ବିଷୟରେ ବାରମ୍ବାର କୁହାଯାଇଥାଏ । କିନ୍ତୁ ଯେଉଁ ବ୍ୟବସ୍ଥା ଦ୍ୱାରା ମଣିଷମାନଙ୍କୁ ଦୁଃଖଦୁର୍ଦ୍ଦଶା ଓ ଅସମ୍ମାନଜନକ ଅବସ୍ଥାରେ ରଖାଯାଇଛି ସତ୍ୟାଗ୍ରହ ତାହାର ବୈଧତା ନେଇ ପ୍ରଶ୍ନ କରିଥାଏ । ଯୁଗ ଯୁଗ ଧରି ଗୋଟିଏ ଅନ୍ୟାୟ ଓ ବୈଷମ୍ୟପୂର୍ଣ୍ଣ ବ୍ୟବସ୍ଥାକୁ ଯେପରି ସ୍ୱୀକୃତି ଦିଆଯାଇଛି ସେହି ବିଶ୍ୱାସ ଉପରେ ସତ୍ୟାଗ୍ରହ କୁଠାରାଘାତ କରିଥାଏ । ଐଶ୍ୱରୀୟ ବା ଧର୍ମୀୟବିଧାନ ଓ ଅର୍ଥନୈତିକ ଯୁକ୍ତିବାଦ ସତ୍ୟାଗ୍ରହୀମାନଙ୍କୁ ଅଧିକକାଳ ବଞ୍ଚିତ କରି ରଖିପାରିବ ନାହିଁ । ଗଣତନ୍ତ୍ରର ପ୍ରସାର ଦ୍ୱାରା ରାଜନୈତିକ ସ୍ତରରେ ସମତା ଆସିପାରିଛି, ଯେହେତୁ ପ୍ରତ୍ୟେକ ସାବାଳକ ବ୍ୟକ୍ତି ଭୋଟ ଦେଇ ପ୍ରତିନିଧି ବାଛିପାରୁଛି । କିନ୍ତୁ ସାମାଜିକ ସମତା ଓ ଅର୍ଥନୈତିକ ସମାନ ସୁଯୋଗ ଅଭାବରେ ଗଣତନ୍ତ୍ର ତାତ୍ପର୍ଯ୍ୟହୀନ ହୋଇଥାଏ । ଅଧିକନ୍ତୁ ସ୍ୱାର୍ଥପର ପୁଞ୍ଜିକ ଗୋଷ୍ଠୀ ଓ ସୁବିଧାବାଦୀ ରାଜନୈତିକ ବ୍ୟକ୍ତିମାନେ ଧର୍ମଗତ ବିଶ୍ୱାସ ଓ ଦଳୀୟ ବ୍ୟବସ୍ଥାର ଦୋହାଇ ଦେଇ ସାମାଜିକ ଓ ଅର୍ଥନୈତିକ ସମତା ପ୍ରତିଷ୍ଠାରେ ପ୍ରତିବନ୍ଧକ ହୋଇଛନ୍ତି ଓ ପରିଣାମତଃ ଗଣତନ୍ତ୍ରର ଆଦର୍ଶ ବାସ୍ତବପକ୍ଷେ ବିଡ଼ମ୍ବିତ ହୋଇ ରହିଛି । ସବୁ ମଣିଷର ସମାନ ଅଧିକାର ଓ ସବୁ ସ୍ତରରେ ସମତା ପ୍ରତିଷ୍ଠା ପାଇଁ ସତ୍ୟାଗ୍ରହ ଲକ୍ଷ୍ୟ ରଖିଥିବାରୁ ଜନଗଣଙ୍କର ପ୍ରତ୍ୟକ୍ଷ କାର୍ଯ୍ୟକ୍ରମ ଦ୍ୱାରା ଗଣତନ୍ତ୍ରକୁ ଏକ ବାସ୍ତବ ସତ୍ୟରେ ପରିଣତ କରାଯାଇ ପାରିବ ।

ଗାନ୍ଧୀ ସମାନତାର ତାତ୍ପର୍ଯ୍ୟକୁ ଅନୁଭବ କରିଥିଲେ । ସେ ଲେଖିଛନ୍ତି, "ଯେଉଁ ପର୍ଯ୍ୟନ୍ତ ଧନୀ ଓ ଅଗଣିତ ଭୋକିଲା ମଣିଷଙ୍କ ଭିତରେ ବ୍ୟବଧାନ ରହିଥିବ ସେପର୍ଯ୍ୟନ୍ତ ଏକ ଅହିଂସ ସରକାରର ପ୍ରତିଷ୍ଠା ସମ୍ଭବ ହୋଇପାରିବ ନାହିଁ ।"

ଅହିଂସ ପନ୍ଥା ପ୍ରତି ଉତ୍ସର୍ଗୀକୃତ ଥିବା ଗାନ୍ଧୀ ଏହା ମଧ୍ୟ କହିଛନ୍ତି, "ସମାଜର ଧନୀ ଲୋକମାନେ ସ୍ୱେଚ୍ଛାକୃତ ଭାବରେ ନିଜର ଅର୍ଥ ଓ ସୁବିଧା ସୁଯୋଗକୁ ସାଧାରଣ ମଣିଷର ହିତ ଦିଗରେ ବ୍ୟୟ ନକଲେ ଏକ ହିଂସା ଓ ରକ୍ତାକ୍ତ ବିପ୍ଳବ ଯେବେହେଲେ ମୁଣ୍ଡ ଟେକିବ।" ସେହିପରି ସାମାଜିକ ସ୍ତରରେ ସମତା ପ୍ରତିଷ୍ଠା ପାଇଁ ବ୍ୟାକୁଳ ହେଉଥିବା ଗାନ୍ଧୀ ଦ୍ୱିତୀୟ ଗୋଲଟେବୁଲ ବୈଠକରେ ଘୋଷଣା କରିଥିଲେ, "ଯଦି ଅସ୍ପୃଶ୍ୟତା ରହିବ ତେବେ ବରଂ ହିନ୍ଦୁଧର୍ମର ବିଲୋପ ହେବା ଦରକାର।"

ସତ୍ୟାଗ୍ରହ ଜରିଆରେ ସମସ୍ୟାର ସମାଧାନ କରିବା ପାଇଁ ଗାନ୍ଧୀ ହିଁ ପଥ-ପ୍ରଦର୍ଶକ ହୋଇଛନ୍ତି।

## ଅହିଂସାର ରାଜନୀତି

ଅନ୍ଧ୍ର ବିଶ୍ୱବିଦ୍ୟାଳୟର ସମାଜବିଜ୍ଞାନ ବିଭାଗର ଅଧ୍ୟାପକ ଡଃ କେ. ଭି. ରମଣ ତାଙ୍କର ନିବନ୍ଧ 'ଅହିଂସାର ରାଜନୀତି : କେତେ ସମାଜ ବୈଜ୍ଞାନିକ ଆଲୋଚନା'ରେ ତିନୋଟି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ଉଠାଇଛନ୍ତି। ସେ ନିଜ ନିବନ୍ଧରେ ଏହାର ଉତ୍ତର ଦେଇ ନାହାନ୍ତି, କିନ୍ତୁ ପ୍ରଶ୍ନଗୁଡ଼ିକ ଉପରେ ଗଭୀର ଚିନ୍ତନ ଆବଶ୍ୟକ ବୋଲି ସୂଚାଇଛନ୍ତି। ସେହି ପ୍ରଶ୍ନ ତିନୋଟି ହେଲା—

୧। ଆଧୁନିକ ଯୁଗରେ ଦୂରଗାମୀ କ୍ଷେପଣାସ୍ତ୍ର ବ୍ୟବହାର କରି ଯୁଦ୍ଧ କରୁଥିବା ଗୋଟିଏ ସାମରିକ ଶକ୍ତି ବିରୁଦ୍ଧରେ ଅହିଂସ ପ୍ରତିରୋଧ କରାଯାଇ ପାରିବ କି ?

୨। କୌଣସି ବହିଃଶତ୍ରୁ ଆକ୍ରମଣ ପରିପ୍ରେକ୍ଷୀରେ କୌଣସି ରାଷ୍ଟ୍ର ଅହିଂସ ପଦ୍ଧତିରେ ଯୁଦ୍ଧର ସମ୍ମୁଖୀନ ହେବା ସମ୍ଭବ କି ?

୩। ଅତ୍ୟାଚାରୀ ଏକଛତ୍ରବାଦୀ ଶାସକଙ୍କ ବିରୁଦ୍ଧରେ ଅହିଂସ ପନ୍ଥାରେ ଆନ୍ଦୋଳନ ସଫଳତାର ସହ କରାଯାଇ ସାମାଜିକ ପରିବର୍ତ୍ତନ ଆଣିବା ସମ୍ଭବ କି ?

ଏହି ପ୍ରଶ୍ନ ତିନୋଟିରେ ଦୂରଗାମୀ କ୍ଷେପଣାସ୍ତ୍ର ବହିଃଶତ୍ରୁ ଆକ୍ରମଣ ଓ ଏକଛତ୍ରବାଦ ଶାସକଙ୍କ ବିରୁଦ୍ଧରେ ସତ୍ୟାଗ୍ରହ ପ୍ରୟୋଗ କରିବା ନେଇ ଅହିଂସ ପନ୍ଥାର ଶକ୍ତି ଓ କାର୍ଯ୍ୟକାରିତା ଉପରେ ସନ୍ଦେହ ବ୍ୟକ୍ତ କରାଯାଇଛି। ଗାନ୍ଧୀ ଗଣ-ସତ୍ୟାଗ୍ରହ ଆୟୋଜନ କରିଥିଲେ ବି ଏହିପ୍ରକାର ପରିସ୍ଥିତିରେ ସତ୍ୟାଗ୍ରହ ପ୍ରୟୋଗ କରିବାର ଅବକାଶ ପାଇନାହାନ୍ତି। କିନ୍ତୁ ସେ ଅନୁରୂପ ଅବସ୍ଥାର ମୁକାବିଲା କରିଛନ୍ତି। ଗାନ୍ଧୀ ଓ ତାଙ୍କର ଅନୁଗାମୀମାନେ ବ୍ରିଟିଶ ସାମ୍ରାଜ୍ୟବାଦୀ ଶକ୍ତିର ବନ୍ଧୁକର ସମ୍ମୁଖୀନ ହୋଇଛନ୍ତି। ଅବଶ୍ୟ ସେହି କ୍ଷେତ୍ରରେ କୌଣସି ଦୂରଗାମୀ

ଅସ୍ପଷ୍ଟ ରହିନଥିଲା । କିନ୍ତୁ ଗାନ୍ଧୀଙ୍କ ନେତୃତ୍ୱରେ ଅହିଂସ ପ୍ରତିରୋଧକାରୀମାନେ ଏହା ଅନୁଭବ କରିଛନ୍ତି ଯେ ସାମରିକ ଶକ୍ତି ପଶ୍ଚାତରେ ମୁଖ୍ୟତଃ ମଣିଷ ଓ ତା'ର ଯୋଜନା ରହିଛି । ସୁତରାଂ ସେହିପରି ଯେତେବେଳେ ଏକ ସାମରିକ ଶକ୍ତି ବିରୁଦ୍ଧରେ ଲଢ଼ାଇ କରିବାକୁ ହେବ ଅହିଂସ ପ୍ରତିରୋଧକାରୀମାନେ ଅନୁରୂପ ଉତ୍ସାହ ଓ ଆଗ୍ରହ ନେଇ ତା'ର ସମ୍ମୁଖୀନ ହେବେ । ସାମରିକ ସାମର୍ଥ୍ୟରେ ବଳଶାଳୀ ହୋଇଥିବା ସୈନ୍ୟବାହିନୀ ଯେତେବେଳେ ଏକ ନିରସ୍ତ୍ର ବାହିନୀର ମୁକାବିଲା କରିଛନ୍ତି ସେମାନେ ନିଜର ଅସ୍ତ୍ରକୁ ତଳକୁ ଖସାଇଛନ୍ତି ଓ କ୍ୱଚିତ୍ ସେମାନେ ଗୁଳିଚାଳନା କରିଛନ୍ତି । ଏପରିକି ଯେଉଁମାନେ ଦୂରଗାମୀ କ୍ଷେପଣାସ୍ତ୍ର ସାହାଯ୍ୟରେ ଆକ୍ରମଣ କରିଥାନ୍ତି ସେମାନେ ଏକ ଅହିଂସ ଓ ନିରସ୍ତ୍ର ଜନଗଣଙ୍କର କ୍ରନ୍ଦନକୁ ଯେ ଅନୁଭବ କରିପାରିବେ ନାହିଁ ଏହା କୁହାଯାଇପାରିବ ନାହିଁ । କିନ୍ତୁ ଅହିଂସ ବିରୋଧର ସେପରି ପ୍ରଚୁର ହୋଇ ତା' ପାଇଁ ମାନସିକତା ସୃଷ୍ଟି ହେବା ଦରକାର ।

## ଗୋଷ୍ଠୀବାଦର ବିରୋଧ :

ଅହିଂସ ବିରୋଧ କ୍ଷେତ୍ରରେ ଥିବା ଦୁଇଟି ତାତ୍ପର୍ଯ୍ୟକୁ ଏହି ପ୍ରଶ୍ନ ଉନୋଟିରେ ବିଚାରକୁ ନିଆଯାଇ ନାହିଁ । ପ୍ରଥମତଃ, ଅହିଂସ ବିରୋଧ କୌଣସି ବ୍ୟକ୍ତିମାନଙ୍କ ବିରୁଦ୍ଧରେ ନହୋଇ ଗୋଟିଏ ବ୍ୟବସ୍ଥାରେ ଅନ୍ତର୍ନିହିତ ଥିବା ଅନ୍ୟାୟ ବିରୁଦ୍ଧରେ ଅଭିପ୍ରେତ ରହିଥାଏ । ଅହିଂସ ବିରୋଧୀର ସ୍ୱପୀଡ଼ନ ଯୋଗୁଁ ସ୍ୱାର୍ଥାନ୍ୱେଷୀ ବ୍ୟକ୍ତିଗଣ ଶୀଘ୍ର ହେଉ ବା ପରେ ହେଉ ସେମାନଙ୍କର ଦୃଷ୍ଟିକୋଣରେ ପରିବର୍ତ୍ତନ ଆଣିଥାନ୍ତି ଓ ସତ୍ୟାଗ୍ରହୀ ଯେଉଁ ନ୍ୟାୟ ପାଇଁ କ୍ଲେଶ ସହୁଛନ୍ତି ତାହାକୁ ଗ୍ରହଣ କରନ୍ତି । ପ୍ରତିପକ୍ଷର ସହଯୋଗରେ ଅନ୍ୟାୟର ଦୂର କରିବା ଅହିଂସ ବିରୋଧୀର ଅଭିମୁଖ୍ୟ ଅଟେ । ଏଥିରେ ଉଭୟ ପକ୍ଷ ମଧ୍ୟରେ ଗୋଷ୍ଠୀ କନ୍ଦଳ ନଥାଏ । ସ୍ୱାଧୀନତା ପରେ ରାଷ୍ଟ୍ରମଣ୍ଡଳରେ ଭାରତର ଯୋଗଦାନ ଦ୍ୱାରା ବ୍ରିଟେନ ସହିତ ଥିବା ବିରୋଧ ବନ୍ଧୁତାରେ ପରିଣତ ହେଲା । କେବଳ ଅହିଂସ ବିରୋଧଦ୍ୱାରା ଉଭୟ ପକ୍ଷ ମଧ୍ୟରେ ବନ୍ଧୁତା ରହିବା ସମ୍ଭବପର ହୋଇଥାଏ ।

ଅହିଂସାର ଦ୍ୱିତୀୟ ତାତ୍ପର୍ଯ୍ୟଟି ହେଉଛି ମାନବିକ ସ୍ତରରେ ସମତା ପ୍ରତିଷ୍ଠା କରିବା । ଅହିଂସାରେ ବିଶ୍ୱାସ ରଖିଥିବା ବ୍ୟକ୍ତିବିଶେଷ କୌଣସି ଗୋଷ୍ଠୀବାଦରେ ବିଶ୍ୱାସ କରନ୍ତି ନାହିଁ । ଏହି ଗୋଷ୍ଠୀବାଦ ଶ୍ରେଣୀ, ଜାତି, ସଂସ୍କୃତି ଓ ଜାତୀୟତାକୁ ନେଇ ସୃଷ୍ଟି ହୋଇଥାଏ । ଭାରତର ସ୍ୱାଧୀନତା ସଂଗ୍ରାମର ନେତୃତ୍ୱ ସମୟରେ ଗାନ୍ଧୀ ବାରମ୍ବାର କହୁଥିଲେ ଯେ ସେ ବ୍ରିଟିଶ ବିରୋଧୀ ନୁହନ୍ତି କିନ୍ତୁ ସାମ୍ରାଜ୍ୟ-ବାଦକୁ ବିରୋଧ କରନ୍ତି । 'ସବୁ ମଣିଷ ସମାନ' ଏହିପରି ଏକ ମାନସିକତା ସୃଷ୍ଟି

ଦ୍ୱାରା ବାହ୍ୟ ଆକ୍ରମଣ ଓ ସାମନ୍ତବାଦୀ ଏକଛତ୍ରବାଦର ପ୍ରଶ୍ନ ଉଠିନଥାଏ । ଏହି ଦୃଷ୍ଟିଭଙ୍ଗୀଦ୍ୱାରା ପରିଚାଳିତ ହୋଇ ୧୯୪୩ ମସିହାରେ ଗାନ୍ଧୀ ଜାପାନୀ ସୈନ୍ୟମାନଙ୍କୁ ଶାସକ ଭାବରେ ନୁହେଁ, ବରଂ ବନ୍ଧୁ ଭାବରେ ନିମନ୍ତ୍ରଣ କରିଥିଲେ । ଅହିଂସା ଯେପରି ଧର୍ମଗତ ବିଭେଦତାକୁ ସ୍ୱୀକାର କରେ ନାହିଁ ସେହିପରି ଏହା ରାଷ୍ଟ୍ରୀୟ ସୀମାକୁ ମଧ୍ୟ ଗ୍ରହଣ କରେନାହିଁ । ଭାରତବର୍ଷରେ ସାମ୍ପ୍ରଦାୟିକ ବିଦ୍ୱେଷକୁ ଦୂର କରିବାକୁ ସେ ସବୁ ଧର୍ମକୁ ସମାନ ଭାବରେ ଗ୍ରହଣ କରୁଥିଲେ ବି ଧର୍ମକୁ ଏକ ବ୍ୟକ୍ତିଗତ ବ୍ୟାପାର ଭାବରେ ନେଇ ଭାରତକୁ ଏକ ଧର୍ମ ନିରପେକ୍ଷ ରାଷ୍ଟ୍ରରେ ପରିଣତ କରିବାକୁ ପଶ୍ଚାତ୍‌ପଦ ହୋଇନଥିଲେ । ଅହିଂସ ପନ୍ଥା ସର୍ବଦା ରାଷ୍ଟ୍ରୀୟ ପ୍ରଭେଦ ବା ଧର୍ମଗତ ପାର୍ଥକ୍ୟର ଊର୍ଦ୍ଧ୍ୱରେ ରହି ମାନବିକ ସମସ୍ୟାକୁ ବିଚାର କରିଥାଏ । ଜାପାନୀମାନଙ୍କର ଆକ୍ରମଣ ପରିପ୍ରେକ୍ଷୀରେ ଏହା ସ୍ପଷ୍ଟ ହୋଇଥାଏ ।

**ସମତାର ପ୍ରତିଷ୍ଠା :**

ସାମାଜିକ, ଅର୍ଥନୈତିକ, ରାଜନୀତିକ ଓ ଯେକୌଣସି ବୈଷମ୍ୟ ବିରୁଦ୍ଧରେ ଅହିଂସ ସଂଗ୍ରାମ କରିବାଦ୍ୱାରା ଏକଛତ୍ରବାଦ ମୁଣ୍ଡ ଟେକି ନଥାଏ । ନାଗରିକଗଣ ମୁଣ୍ଡପାତି ସହିନେବାଦ୍ୱାରା ଏକଛତ୍ରବାଦ ତିଷ୍ଠି ରହିଥାଏ । ଯେତେବେଳେ ଲୋକମାନେ ନିଜକୁ ମୁକ୍ତବୋଲି ଅନୁଭବ କରି ସାହସର ସହିତ ସତ୍ୟାଗ୍ରହ କରନ୍ତି ସେତେବେଳେ ଏକଛତ୍ରବାଦ ତିଷ୍ଠି ରହିବା ସମ୍ଭବ ହୁଏନାହିଁ । ଅର୍ଥନୈତିକ କ୍ଷେତ୍ରରେ ଯେତେବେଳ ପର୍ଯ୍ୟନ୍ତ ଧନୀ ଓ ଅଗଣିତ ବୁଭୁକ୍ଷୁ ଲୋକମାନଙ୍କ ଭିତରେ ପାର୍ଥକ୍ୟ ରହିଥାଏ ସେପର୍ଯ୍ୟନ୍ତ ଏକ ଅହିଂସ ରାଜନୈତିକ ବ୍ୟବସ୍ଥା ସମ୍ଭବ ହୁଏନାହିଁ । ଗାନ୍ଧୀଙ୍କ ମତରେ ଅର୍ଥନୈତିକ ସମତା ହାସଲ ଅହିଂସ ସ୍ୱାଧୀନତାର ଚାବି ଅଟେ ।

ଅଣଗୋଷ୍ଠୀବାଦ ଓ ସବୁ ସ୍ତରରେ ସମତା ହାସଲକୁ ଅହିଂସ ପନ୍ଥାର ଦୁଇଟି ଅପରିହାର୍ଯ୍ୟ ଆବଶ୍ୟକତା ଭାବରେ ଗ୍ରହଣ କରିବାଦ୍ୱାରା ଉଲ୍ଲିଖିତ ତିନୋଟି ପ୍ରଶ୍ନ ମଧ୍ୟରେ ଯେଉଁ ସନ୍ଦେହ ବ୍ୟକ୍ତ କରାଯାଇଛି ତାହା ଦୂର ହୋଇପାରିବ । ଅହିଂସାର ଏହି ଅପରିହାର୍ଯ୍ୟ ତାତ୍ପର୍ଯ୍ୟ ବା ଆଭିମୁଖ୍ୟକୁ ନନେଇ କେବଳ ଏହାକୁ ଏକ ଜୀବନ-ଦୃଷ୍ଟି ଭାବରେ ଗ୍ରହଣ କରିନାଦ୍ୱାରା ଆମକୁ ଏହି ସନ୍ଦେହ ଯଥାର୍ଥ ମନେହେବ । କିନ୍ତୁ ସଂକଳ୍ପବଦ୍ଧ ଭାବରେ ଏହି ଲକ୍ଷ୍ୟ ପୂରଣ ପାଇଁ ଅହିଂସାକୁ ଗ୍ରହଣ କରିବାଦ୍ୱାରା ସମସ୍ତପ୍ରକାର ଗୋଷ୍ଠୀବାଦ, ଅସମତା, ସାମରିକ ଅସ୍ତ୍ରଶସ୍ତ୍ର, ବାହ୍ୟ ଆକ୍ରମଣ ଓ ଏକଛତ୍ରବାଦ ନିରର୍ଥକ ହେବା ସହିତ ଶେଷରେ ଏସବୁ ଲୋପ-ପାଇବ । ଏହି ଶତାବ୍ଦୀର ପ୍ରଥମାର୍ଦ୍ଧରେ ଦକ୍ଷିଣ ଆଫ୍ରିକା ଓ ଭାରତରେ ଗାନ୍ଧୀ ଯେତେବେଳେ ସତ୍ୟାଗ୍ରହ ଆନ୍ଦୋଳନ ଆରମ୍ଭ କରିଥିଲେ ଲୋକମାନେ ଗୋଷ୍ଠୀଗତ

ପାର୍ଥକ୍ୟକୁ ଭୁଲିଯାଇ ଓ ନିଜର ସୁବିଧାସୁଯୋଗକୁ ଜଳାଞ୍ଜଳି ଦେଇ ସାମୂହିକ ଲକ୍ଷ୍ୟ ସାଧନ ଦିଗରେ କାର୍ଯ୍ୟକରିଥିଲେ । ସେହି ସମୟରେ ସାମରିକ ଶକ୍ତି, ବାହ୍ୟ ଆକ୍ରମଣ ବା ଏକଛତ୍ରବାଦୀ ଶାସକଙ୍କ ପ୍ରତି କୌଣସି ଭୟ ରହିନଥିଲା ।

'ସମସ୍ତ ମନ୍ଦ ବ୍ୟବସ୍ଥା ଦୂର ନହେଲେ ଅହିଂସା ସମ୍ଭବପରେ ହେବନାହିଁ ଓ ଅହିଂସା ପ୍ରତିଷ୍ଠା ନହେଲେ ମନ୍ଦର ବିଲୋପ ହେବନାହିଁ' ଏହି ପ୍ରକାର ଏକ ବୃତ୍ତ-ଚକ୍ରରେ ଆକ୍ରାନ୍ତ ହେବା ଠିକ୍ ନୁହେଁ । ଅପରପକ୍ଷରେ ଅହିଂସାର ପ୍ରତିଷ୍ଠା ନହେଲେ ମନ୍ଦର ବିଲୋପ ହେବନାହିଁ । ଅହିଂସାର ସମର୍ଥକଗଣ ନିଜର ତ୍ୟାଗ ଓ ଏକ ଗୋଷ୍ଠୀହୀନ ଦୃଷ୍ଟିଭଙ୍ଗୀ ପୋଷଣ କରି ଅନ୍ୟାୟ ଓ ବୈଷମ୍ୟ ବିରୁଦ୍ଧରେ ସେମାନଙ୍କର ସତ୍ୟାଗ୍ରହ ଆନ୍ଦୋଳନ ଆରମ୍ଭ କରିବା ଆବଶ୍ୟକ । ବାସ୍ତବ କାର୍ଯ୍ୟସୂଚୀ ଦ୍ୱାରା ଅହିଂସାର ଆବଶ୍ୟକତା ପୂରଣ ହେବା ସହିତ ମନ୍ଦର ବିଲୋପ ପାଇଁ ଭିତ୍ତି-ପ୍ରସ୍ତୁତ ହୋଇପାରିବ ।

## ନୂତନ ସାହସିକ ପଦକ୍ଷେପ

ସାମ୍ପ୍ରତିକ ଯୁଗରେ ଗଣ ସଚେତନତା ଯଥେଷ୍ଟ ବୃଦ୍ଧି ପାଇଛି । ସାମାଜିକ ବୈଷମ୍ୟ ସୃଷ୍ଟି ରହିବାରେ ଯେଉଁ ଆଦର୍ଶ ସହାୟକ ହେଉଥିଲା ତାହା ଦ୍ରୁତ ଗତିରେ ନଷ୍ଟ ହେବାରେ ଲାଗିଛି । ଲୋକମାନଙ୍କୁ ଅଧିକକାଳ ଶୋଷଣ ବା ଦାସତ୍ୱ ଭିତରେ ରଖିବା ସମ୍ଭବ ନୁହେଁ । ସବୁ ମଣିଷ ସମାନ ହୋଇ ଜନ୍ମ ହୋଇଛନ୍ତି । ସୁତରାଂ ସେମାନେ ସମାନ ଭାବରେ ବଞ୍ଚି ରହିବା ଆବଶ୍ୟକ । କିନ୍ତୁ କେଉଁ ପନ୍ଥା ପ୍ରୟୋଗ ଦ୍ୱାରା ଅସମତାରୁ ସମତା ଦିଗରେ ପରିବର୍ତ୍ତନ ଆଣିବା ସମ୍ଭବ ? ଦଙ୍ଗା, ସଙ୍ଘର୍ଷ ଓ ଯୁଦ୍ଧ ଭଳି ହିଂସାତ୍ମକ ପନ୍ଥାର ପରିଣତି ବେଶ୍ ଜଣାଅଛି । ଏହାଦ୍ୱାରା ପୁରୁଣା ଶୋଷକ ବଦଳରେ ନୂତନ ଶୋଷକ ସୃଷ୍ଟି ହୋଇଥାନ୍ତି, କିନ୍ତୁ ଶୋଷଣର ଲୋପ ହୁଏ ନାହିଁ । ଯେଉଁଠି ହିଂସା ରାଜତ୍ୱ କରେ ସେଠାରେ ଭଲମନ୍ଦର ବିଚାର ଓ ନ୍ୟାୟର ପ୍ରଶ୍ନ ରହେ ନାହିଁ । ବରଂ ଯେଉଁ ପକ୍ଷ ହିଂସାତ୍ମକ ପନ୍ଥାକୁ ଯେତେ ଅଧିକ ଭାବରେ ବିନିଯୋଗ କରିପାରେ, ସେ ପକ୍ଷ ସଫଳତା ହାସଲ କରିଥାଏ । ସମ୍ପ୍ରତି ପ୍ରଯୁକ୍ତିବିଦ୍ୟାର ବିକାଶ ଓ ସଫଳତା ଯୋଗୁଁ ଯେଉଁ ଭୟଙ୍କର ମାରଣାସ୍ତ୍ରରେ ରାଜନୀତିକ ନେତୃବୃନ୍ଦ ଅଧିକାରୀ ହୋଇଛନ୍ତି ତାହା ସମଗ୍ର ମଣିଷ ଜାତି ଓ ସଭ୍ୟତାର ସକଳ ବିକାଶକୁ ଧ୍ୱଂସ କରିଦେଇ ପାରିବ । ହିରୋସୀମା ଓ ନାଗାସାକିରେ ଆମେ ତା'ର ପ୍ରମାଣ ପାଇ ସାରିଛେ । ନିରସ୍ତ୍ରୀକରଣ ଚୁକ୍ତିରେ ସମସ୍ତେ ସହମତ ନହେବା ଫଳରେ ପୃଥିବୀରେ ଶାନ୍ତି ସ୍ଥାପନ ବ୍ୟାହତ ହେବାରେ ଲାଗିଛି ।

ଯେଉଁ ପନ୍ଥାଦ୍ୱାରା କେତେକ ଅନ୍ୟାୟକୁ ଦୂର କରିବାକୁ ଯାଇ ସମଗ୍ର ମାନବଜାତିକୁ ଧ୍ୱଂସମୁଖକୁ ଠେଲି ଦିଆଯାଏ ତାଦ୍ୱାରା କୌଣସି ଲାଭ ହେବ

ନାହିଁ । ଏଣୁ କେଉଁ ପ୍ରଣାଳୀ ଅବଲମ୍ବନ ଦ୍ୱାରା ସାମାଜିକ ଅନ୍ୟାୟ ଓ ବୈଷମ୍ୟକୁ ଦୂର କରି ବ୍ୟକ୍ତି ସ୍ୱାଧୀନତା ପ୍ରତିଷ୍ଠା କରଯାଇ ପାରିବ ? ଗାନ୍ଧୀଙ୍କର ଅହିଂସ ପଦ୍ଧତିକୁ ଏଥିପାଇଁ ଏକ ପନ୍ଥା ଭାବରେ ନିଆଯାଇପାରେ ।

ଅବଶ୍ୟ ଗାନ୍ଧୀଙ୍କର ଅହିଂସ ପଦ୍ଧତି ସମ୍ପୂର୍ଣ୍ଣ ଏକ ନୂତନ ଚିନ୍ତନ ନୁହେଁ । ପ୍ରାଚୀନ ସମୟରେ ବୁଦ୍ଧ ଓ ଯିଶୁଖ୍ରୀଷ୍ଟ ମଧ୍ୟ ଅହିଂସ ପଦ୍ଧତିର ପ୍ରବର୍ତ୍ତିକ ଥିଲେ । ଆଧୁନିକ ଯୁଗରେ ଗାନ୍ଧୀ ଗଣ କାର୍ଯ୍ୟକ୍ରମ ପାଇଁ ଅହିଂସ ପଦ୍ଧତିର ବହୁଳ ପ୍ରୟୋଗ କରିଛନ୍ତି ।

## ସାହସୀର ଅହିଂସା :

ଗାନ୍ଧୀ ଯେଉଁ ଅହିଂସ ପଦ୍ଧତି କଥା କହୁଛନ୍ତି ତାହା ସାହସୀ ଓ ବଳଶାଳୀ ବ୍ୟକ୍ତିହିଁ ପ୍ରୟୋଗ କରିପାରିବ । ଏହା ଭୀରୁର ନିଷ୍କ୍ରିୟ ବିରୋଧ ପରି ନୁହେଁ । ମାନସିକ ସ୍ତରରେ ଦୁର୍ବଳ ବା ଭୀରୁ ବ୍ୟକ୍ତି ଅହିଂସାର ପ୍ରୟୋଗ କରିପାରିବ ନାହିଁ । ବରଂ ଭୀରୁତାକୁ ସେ ଏକ ସୂକ୍ଷ୍ମ ହିଂସା ଭାବରେ ଗ୍ରହଣ କରିଛନ୍ତି । ଅହିଂସାକୁ ଏକ ସର୍ବୋତ୍ତମ ଆଦର୍ଶ ଭାବେ କେବଳ ସାହସୀ ଲୋକମାନେହିଁ ପ୍ରୟୋଗ କରିପାରିବେ । ଅହିଂସ ପ୍ରତିରୋଧ ହେଉଛି ସତ୍ୟାଗ୍ରହ । ଯେକୌଣସି ଅନ୍ୟାୟକୁ ସତ୍ ପଥରେ ଓ ସାହସର ସହିତ ପ୍ରତିରୋଧ କରିବା ସତ୍ୟାଗ୍ରହ ଅଟେ ।

ବାସ୍ତବ ଜୀବନର ଘଟଣାବଳୀରୁ ସାହସୀ ଓ ଭୀରୁର ଅହିଂସା ମଧ୍ୟରେ ପାର୍ଥକ୍ୟ ଜଣାଯାଇ ପାରିବ । ଯେତେବେଳେ ଏକ ବଳଶାଳୀ ପ୍ରତିପକ୍ଷର ସମ୍ମୁଖୀନ ହେବାକୁ ହୁଏ ସେତେବେଳେ ଭୀରୁ ବ୍ୟକ୍ତି ଭୟ ଯୋଗୁଁ ଅନ୍ୟାୟର ବିରୋଧ କରିନଥାଏ । ଏହାକୁ ଯଦି ଅହିଂସା କୁହାଯାଏ ତେବେ ଏହା ଭୀରୁର ଅହିଂସା ହେବ । କାରଣ ପ୍ରତିପକ୍ଷ ପ୍ରତି ମାନସିକ ସ୍ତରରେ ବିଦ୍ୱେଷ ରହିଥାଏ । ଯେତେ-ବେଳେ ଏକ ଦୁର୍ବଳ ପ୍ରତିପକ୍ଷର ମୁକାବିଲା କରିବାକୁ ପଡ଼େ ସେତେବେଳେ ହୁଏତ ନିଜ ସାମର୍ଥ୍ୟ ପାଇଁ ଜଣେ ହିଂସାର ଆଶ୍ରୟ ନେଇ ନଥାଏ । କିନ୍ତୁ ଏହାକୁ ଔପଚାରିକ ଅହିଂସା କୁହାଯାଇପାରେ । ବାସ୍ତବ ପକ୍ଷେ ବିନା ସାହସରେ ଅହିଂସାର ପ୍ରୟୋଗ ସମ୍ଭବ ନୁହେଁ ।

ଏପରିକି ଭୁଲ ଢଙ୍ଗରେ ପ୍ରକାଶିତ ହେଉଥିଲେ ବି ଗାନ୍ଧୀ ସର୍ବଦା ସାହସର ପ୍ରଶଂସା କରୁଥିଲେ । କୌଣସି ନିଷ୍ଠାପର ଉଦ୍ୟମ ସର୍ବଦା ଭୁଲ ହେବ ନାହିଁ ବରଂ ପ୍ରତ୍ୟେକ କାର୍ଯ୍ୟରେ ନୂତନ ଅନୁଭୂତି ଦେବ ବୋଲି ସେ ଭାବୁଥିଲେ । ସେ ଏକ ସକାରାତ୍ମକ ଦୃଷ୍ଟିଭଙ୍ଗୀ ପୋଷଣ କରି କହିଛନ୍ତି, "ଭୁଲ ଓ ତାର ସଂଶୋଧନ ମଧ୍ୟ ଦେଇ ପ୍ରଗତି ହାସଲ ହୋଇଥାଏ । ପ୍ରଥମରୁ କୌଣସି କାର୍ଯ୍ୟ ସମ୍ପୂର୍ଣ୍ଣ ରୂପେ ଉତ୍କର୍ଷ ଲାଭ କରିପାରେ ନାହିଁ । ବରଂ ବିଫଳତା ମାଧ୍ୟମରେ ବାରମ୍ବାର ଉଦ୍ୟମ ଦ୍ୱାରା

ସଫଳତା ମିଳିଥାଏ । ଭୁଲ କରିବା ପଶ୍ଚାତରେ ଉଦ୍ୟମ କରିବାର ସ୍ୱାଧୀନତା ଥାଏ । ଯେକୌଣସି ସଫଳତା ଓ ପ୍ରଗତି ଏହି ଭଳି ସାଧିତ ହୋଇଥାଏ ।"

ଯେକୌଣସି ପରିବର୍ତ୍ତନ ଆନୟନ କରିବାରେ ଅହିଂସାକୁ ଏକ ନୂତନ ସାହସିକ ପଦକ୍ଷେପ ଭାବରେ ନିଆଯାଇ ପାରେ । ଅହିଂସାର ତିନୋଟି ମୁଖ୍ୟ ତାତ୍ପର୍ଯ୍ୟ ହେଉଛି ସମତା, ନିରସ୍ତ୍ରୀକରଣ ଓ ସତ୍ୟବାଦିତା ।

## ମୁକ୍ତ ମନୋଭାବ :

ମୁକ୍ତ ମନୋଭାବ ପୋଷଣ ଗାନ୍ଧୀଙ୍କ ପନ୍ଥାର ଏକ ମହତ୍ତ୍ୱପୂର୍ଣ୍ଣ ତାତ୍ପର୍ଯ୍ୟ ଅଟେ । ସେ କହିଛନ୍ତି, "ଅହିଂସା ନେଇ ମୁଁ ଯାହା କହୁଛି ବା ତା'ର ଯେପରି ପ୍ରୟୋଗ କରୁଛି ତାହା ସମ୍ପୂର୍ଣ୍ଣ ଅଭ୍ରାନ୍ତ ବୋଲି କେହି ଭାବିବା ଠିକ୍ ନୁହେଁ । ମୁଁ ସତ୍ୟର ଜଣେ ସାଧାରଣ ଉପାସକ । ମୁଁ କିନ୍ତୁ ଏତିକି କହିପାରେ ଯେ, ମୁଁ ଯେତେ ସବୁ ନୂତନ ପ୍ରୟୋଗ କରିଛି ତାହା ଅହିଂସା ଉପରେ ମୋର ବିଶ୍ୱାସକୁ ଦୃଢ଼ କରିଛି ଓ ଏହା ମାନବ ସମାଜ ପାଇଁ ସବୁଠାରୁ ଉତ୍କୃଷ୍ଟ ପନ୍ଥା ବୋଲି ମୋର ହୃଦବୋଧ ହୋଇଛି । ମୁଁ ଅବଶ୍ୟ ଏକ ପରାଧୀନ ଓ ଦୁର୍ବଳ ଦେଶର ପ୍ରତିନିଧିତ୍ୱ କରିଛି, ଏକ ସବଳ ଦେଶର ନୁହେଁ । ମୋଠାରୁ ଅଧିକ ଶୃଙ୍ଖଳିତ, ସାହସୀ ଓ ଭବିଷ୍ୟ ଦୃଷ୍ଟି-ସମ୍ପନ୍ନ ବ୍ୟକ୍ତି ଅହିଂସାର ଅଧିକ ନିର୍ଭୁଲ ଓ ଯଥାର୍ଥ ପ୍ରୟୋଗ କରିପାରିବେ । ସତ୍ୟ ଓ ଅହିଂସା ଉପରେ ମୋର ବିଶ୍ୱାସ ସର୍ବଦା ବିକଶିତ ଓ ଦୃଢ଼ ହେବାରେ ଲାଗିଛି । ମୁଁ ନିଷ୍ଠାର ସହ ତାକୁ ଜୀବନରେ ପାଳନ କରିବାକୁ ଉଦ୍ୟମ କରୁଛି ଓ ତାରି ଭିତରେ ମୋର ଅନ୍ତର୍ଜୀବନ ବିକଶିତ ହେବାରେ ଲାଗିଛି । ମୁଁ ତା'ର ମହତ୍ତ୍ୱକୁ ଅନୁଭବ କରିପାରୁଛି ଓ ଆସ୍ତେ ଆସ୍ତେ ତା'ର ତାତ୍ପର୍ଯ୍ୟ ମୋ ପାଇଁ ନୂତନ ସନ୍ଦେଶ ସୃଷ୍ଟି କରୁଛି । ସେଥିପାଇଁ ବାରମ୍ବାର ମୁଁ ମୋର ମତ ପରିବର୍ତ୍ତନ କରି ନୂତନ ପ୍ରସ୍ତାବ ଆପଣମାନଙ୍କ ସମ୍ମୁଖରେ ଉପସ୍ଥାପନ କରୁଛି । କୌଣସି ପ୍ରଶ୍ନ ଉପରେ ମୋର ପୂର୍ବ ମତ ସହିତ ସଙ୍ଗତି ରକ୍ଷା କରିବାକୁ ମୁଁ ଉଦ୍ୟମ କରେନି ବରଂ ସେହି ମୁହୂର୍ତ୍ତରେ ସତ୍ୟ ନେଇ ମୋର ଅବବୋଧ ସହିତ ସଙ୍ଗତି ରକ୍ଷା ପାଇଁ ଚେଷ୍ଟା କରିଥାଏ । ମୁଁ ଅହିଂସାର ପ୍ରୟୋଗ ଭିତରେ ସତ୍ୟର ନୂଆ ନୂଆ ଅନୁଭୂତି ଲାଭ କରିବାକୁ ସମର୍ଥ ହୋଇଛି ।"

## ନୂତନ ସାମାଜିକ ଶୃଙ୍ଖଳା :

ଗାନ୍ଧୀ ଏକ ନୂତନ ସାମାଜିକ ପ୍ରକଳ୍ପର ରୂପରେଖ ଦେଇଥିଲେ । ସାମାଜିକ ଓ ଅର୍ଥନୈତିକ ସମତା ଉପରେ ଆଧାରିତ ଏକ ନୂଆ ସଭ୍ୟତାର ସ୍ୱପ୍ନ ଦେଖିଥିଲେ । ଏହା ଏକ ଅହିଂସ ଓ ମୃତ୍ୟୁରହିତ ବିଶ୍ୱର ପରିକଳ୍ପନା ଥିଲା ।

ପ୍ରେମ ଉପରେ ଆଧାରିତ ଏକ ବିଶ୍ୱରେ ଯେକୌଣସି ସାମାଜିକ ସମସ୍ୟାକୁ ଅହିଂସ ପନ୍ଥାରେ ସମାଧାନ କରାଯାଇପାରିବ । ମଣିଷ ଜାତିକୁ ନିଷ୍ପନ୍ଦ, କଠୋର ଓ ସ୍ପର୍ଶକାତରଶୂନ୍ୟ ହେବା ପରିବର୍ତ୍ତେ ଦରଦୀ, ସମ୍ବେଦନଶୀଳ ଓ ସୃଷ୍ଟିଶୀଳ ହେବାରେ ଏହି ନୂତନ ପ୍ରକଳ୍ପ ସାହାଯ୍ୟ କରିପାରିବ । ବାହ୍ୟ ଶକ୍ତି ଉପରେ ନିର୍ଭରଶୀଳ ହେବା ପରିବର୍ତ୍ତେ ଲୋକମାନେ ଆତ୍ମବିଶ୍ୱାସୀ ଓ ସାହସୀ ହେବା ସହିତ ପରସ୍ପର ସହଯୋଗରେ ଏକ ନୂତନ ସମାଜ ଓ ତା'ର କଲ୍ୟାଣ ଦିଗରେ ବ୍ରତୀ ହେବେ । ପରିଣାମତଃ ଏକାଧିପତ୍ୟ ସାମରିକ ଶାସନ ବା ଏକଛତ୍ରବାଦ ବିଲୋପ ହୋଇପାରିବ । ଗାନ୍ଧୀଙ୍କ ପନ୍ଥାରେ ବ୍ୟକ୍ତିମର୍ଯ୍ୟାଦା ଓ ବାସ୍ତବ ଗଣତନ୍ତ୍ର ରୂପରେଖ ନେଇପାରିବ ।

## ସନ୍ଥ ଓ ସତ୍ୟାଗ୍ରହ

ସାମାଜିକ କାର୍ଯ୍ୟକ୍ରମ କ୍ଷେତ୍ରରେ ଏକ ବୈପ୍ଳବାତ୍ମକ ପରିବର୍ତ୍ତନ ଆଣିବାକୁ ଅଭିପ୍ରେତ ଥିବା ଗାନ୍ଧୀ ଧର୍ମୀୟ ବିଶ୍ୱାସଧାରାରେ ଏହା କରିଥିବାରୁ ତାଙ୍କୁ ଅନେକ ମୂଲ୍ୟ ଦେବାକୁ ପଡ଼ିଛି । ଗୋଟିଏ ପ୍ରଚଳିତ ପରମ୍ପରା ଭିତରେ ଅଭ୍ୟସ୍ତ ଥିବା ଜନଗଣଙ୍କ ସହିତ ଶୀଘ୍ର ସମ୍ବନ୍ଧ ସ୍ଥାପନ କରି ଇପ୍ସିତ ଲକ୍ଷ୍ୟ ଦିଗରେ ଅଗ୍ରସର ହେବାରେ ପ୍ରାରମ୍ଭରେ ଏହା ତାଙ୍କୁ ସାହାଯ୍ୟ କରିଛି । କିନ୍ତୁ ପରବର୍ତ୍ତୀ ସମୟରେ ତାଙ୍କୁ ଏକ ସନ୍ଥ ଭାବରେ ଚିତ୍ରିତ କରିବାରେ ଅବକାଶ ସୃଷ୍ଟି ହୋଇଛି । ବିଶେଷକରି ତାଙ୍କ ମୃତ୍ୟୁପରେ ତାଙ୍କର ସମର୍ଥକଗଣ ଏକ ଔପଚାରିକ ପନ୍ଥାରେ ତାଙ୍କୁ ପୂଜା କଲେ ସିନା କିନ୍ତୁ ସାମାଜିକ ମନ୍ଦିର ଦୂରୀକରଣ ପାଇଁ ସତ୍ୟାଗ୍ରହୀଭାବେ ସାହସର ସହିତ କାର୍ଯ୍ୟ କଲେନାହିଁ । ସେମାନେ ଯେ ଗାନ୍ଧୀ ବିଚାରର ଯଥାର୍ଥ ବ୍ୟାଖ୍ୟା କରିବାରେ ଅସମର୍ଥ ହେଲେ ତାହା ନୁହେଁ ବରଂ ଭୟାଳୁଭାବେ ଅସମ୍ମାନଜନକ ପରିସ୍ଥିତି ପାଖରେ ନିଜର ମୁଣ୍ଡ ନୁଆଁଇଲେ । ପରିଣାମ ସ୍ୱରୂପ ଆଜି ସମଗ୍ର ଦେଶରେ ଦୁର୍ନୀତି ବ୍ୟାପିଯାଇଛି । ଗାନ୍ଧୀବାଦ ଅଗ୍ରୁଣାମଣୀର ଫାଶରେ ଛନ୍ଦି ହୋଇଯାଇଥିବାବେଳେ ଜେ. ବି. କୃପାଲନିଙ୍କର ପୁସ୍ତକ 'ସନ୍ଥ ଓ ସତ୍ୟାଗ୍ରହୀ' ନୂତନ ଆଶାସଞ୍ଚାର କରିଛି । କୋଡ଼ିଏ ପୃଷ୍ଠାର ଏହି ପୁସ୍ତକରେ ସେ ସନ୍ଥ ଓ ସତ୍ୟାଗ୍ରହୀ ମଧ୍ୟରେ ଏକ ସ୍ପଷ୍ଟ ପାର୍ଥକ୍ୟ ଦେଖାଇଛନ୍ତି । ସେ ଦର୍ଶାଇଛନ୍ତି ଯେ ଗାନ୍ଧୀ ସନ୍ଥ ନଥିଲେ, ସେ ଥିଲେ ଧର୍ମନିରପେକ୍ଷତାରେ ବିଶ୍ୱାସୀ ଜଣେ ସାମାଜିକ ବିପ୍ଳବୀ ।

ନିଜର ଅଧ୍ୟାପନା ବୃତ୍ତିରୁ ବିଦାୟ ନେଇ ୧୯୧୭ ମସିହାରେ ଗାନ୍ଧୀଙ୍କ ସହ ଯୋଗଦେଇ ତାଙ୍କ ସହିତ କାର୍ଯ୍ୟ କରିଥିବା କୃପାଲନି ଗାନ୍ଧୀଙ୍କ ବିଚାରର ଯଥାର୍ଥ ବ୍ୟାଖ୍ୟା କରିବାରେ ଜଣେ ଉପଯୁକ୍ତ ବ୍ୟକ୍ତି । ରାଜନୈତିକ ସଂଗ୍ରାମ ଓ ରଚନାତ୍ମକ କାର୍ଯ୍ୟକ୍ରମ ଉଭୟ କ୍ଷେତ୍ରରେ ସେ ଥିଲେ ଗାନ୍ଧୀଙ୍କର ସହଯୋଗୀ । ସେ

କାଠାମୋ କଂଗ୍ରେସର ଦୁଇ ଦଶନ୍ଧିରୁ ଊର୍ଦ୍ଧ୍ୱ ସମୟ ସମ୍ପାଦକ ଥିଲେ ଓ ପରେ ସଭାପତି ମଧ୍ୟ ହୋଇଥିଲେ । ଦଳର ସଭାପତି ଓ ପ୍ରଧାନମନ୍ତ୍ରୀଙ୍କର କ୍ଷମତା ପରିସର ପ୍ରସଙ୍ଗ ନେଇ ଏକ ନୀତିଗତ ପ୍ରଶ୍ନ ଉପରେ ସେ ସଭାପତି ପଦରୁ ଇସ୍ତଫା ଦେଇଥିଲେ । ସେ ସଂସଦ ସଭ୍ୟ ଭାବରେ ଲୋକସଭାକୁ ନିର୍ବାଚିତ ହୋଇଥିଲେ ଓ ବିଭିନ୍ନ ଦେଶ ଭ୍ରମଣ କରି ବହୁ ଅଭିଜ୍ଞତା ହାସଲ କରିଥିଲେ । ତାଙ୍କର ପ୍ରଜ୍ଞା, ଶାଣିତ ବୁଦ୍ଧି ଓ ନିର୍ଭୀକ ମତଦାନ ପାଇଁ ସେ ବେଶ୍ ସୁପରିଚିତ ।

**ସନ୍ଥ ଲକ୍ଷଣ :**

କିପାଲାନି ପୁସ୍ତକର ପ୍ରଥମ ଭାଗରେ ଖ୍ରୀଷ୍ଟିଆନ, ହିନ୍ଦୁ, ଜୈନ ଓ ଇସଲାମ ଧର୍ମଗ୍ରନ୍ଥମାନଙ୍କରୁ ଅନେକ ଉଦ୍ଧୃତି ନେଇ ସନ୍ଥର ସଂଜ୍ଞା ଦେଇଛନ୍ତି । ପୁସ୍ତକର ଦ୍ୱିତୀୟ ଭାଗରେ ଗାନ୍ଧୀଙ୍କୁ ସନ୍ଥଙ୍କଠାରୁ ପୃଥକ୍ କରି ତାଙ୍କୁ ଏକ ସତ୍ୟାଗ୍ରହୀ ବୋଲି ଦର୍ଶାଇଛନ୍ତି ।

ଜଣେ ସନ୍ଥ ମୌଳିକତଃ ହେଉଛନ୍ତି ଜଣେ ବ୍ୟକ୍ତିବାଦୀ । ତାଙ୍କର ବୈରାଗ୍ୟ ଓ ସଂଯମ ଆଚରଣର ଉଦ୍ଦେଶ୍ୟ ହେଉଛନ୍ତି ସ୍ୱର୍ଗପ୍ରାପ୍ତି ଓ ମୁକ୍ତି । ତାଙ୍କର ନୈତିକ ଜୀବନ ସାମାଜିକ ମହତ୍ତ୍ୱ ପରିବର୍ତ୍ତେ ଆଧ୍ୟାତ୍ମିକ ଉତ୍କର୍ଷ ସାଧନ ପାଇଁ ଅଭିପ୍ରେତ । ଖ୍ରୀଷ୍ଟିଆନ ଧର୍ମର ଉପଦେଶ "ମନ୍ଦର ବିରୋଧ କର ନାହିଁ; କେହି ତୁମର ଡାହାଣ ଗାଲରେ ଆଘାତ କଲେ, ତାକୁ ଅନ୍ୟ ଗାଲଟିକୁ ଦେଖାଇ ଦିଅ; କେହି ଯଦି ତୁମ ନାମରେ ନାଲିସ କରି ତୁମର କୋଟ୍‌ଟିକୁ ନେଇଯାଏ, ତେବେ ତାକୁ ତୁମର ଜାମାଟି ମଧ୍ୟ ଦେଇଦିଅ; ଅନ୍ୟର ଯେ ବିଚାର ହେବ ନାହିଁ ତାହା ତୁମେ ବିଚାର କର ନାହିଁ" ଇତ୍ୟାଦିକୁ ବିଶ୍ୱାସ କରିବା ଦ୍ୱାରା ଜଣେ ଅନ୍ୟ ପ୍ରତି ଅତ୍ୟନ୍ତ ସହିଷ୍ଣୁ ମନୋଭାବ ପୋଷଣ କରିଥାନ୍ତି । ସେହିପରି ହିନ୍ଦୁ ଧର୍ମଶାସ୍ତ୍ର ଭଗବତ୍ ଗୀତାରେ ଭଗବାନ କୃଷ୍ଣ କହିଛନ୍ତି, "ଯେ ଆନନ୍ଦରେ ବିଭୋର ହୁଏ ନାହିଁ, କାହାକୁ ଘୃଣା କରେନାହିଁ ବା କୌଣସି କିଛି ପ୍ରାପ୍ତ ହେବାକୁ ଚାହେଁ ନାହିଁ, ଭଲ ମନ୍ଦର ଊର୍ଦ୍ଧ୍ୱରେ ରହି ମୋ ପ୍ରତି ଉନ୍ମୁକ୍ତ ହୋଇଥାଏ ସେ ହେଉଛି ମୋର ସବୁଠାରୁ ପ୍ରିୟ ।" ଜୈନ ଧର୍ମରେ ପାଞ୍ଚଟି ମହାନ୍ ନୀତି—ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ ଓ ଅପରିଗ୍ରହ ଉପରେ ଗୁରୁତ୍ୱ ଆରୋପ କରାଯାଇଛି । ଇସଲାମ ଧର୍ମରେ ଥିବା ପ୍ରାର୍ଥନା, ତୀର୍ଥ ଭ୍ରମଣ, ଉପବାସ, କରୁଣା ଆଦି ମହାନ୍ ନୈତିକ ଶୃଙ୍ଖଳାକୁ ଗୁରୁତ୍ୱ ଦିଆଯାଇଛି । ଏସବୁ ଗୁଣକୁ ନେଇ ସନ୍ଥମାନେ ନିଜର ବ୍ୟକ୍ତିଗତ ଚରିତ୍ରକୁ ଶୁଦ୍ଧ କରିବାକୁ ଚେଷ୍ଟା କରିଛନ୍ତି । କିନ୍ତୁ କୌଣସି ଧର୍ମ ନିଜ ବିଶ୍ୱାସର ମାନଦଣ୍ଡରେ ଗୋଟିଏ ଆଦର୍ଶ ସମାଜ ସୃଷ୍ଟି କରିପାରି ନାହାନ୍ତି । ଖ୍ରୀଷ୍ଟିଆନ ସାମ୍ରାଜ୍ୟବାଦୀମାନେ ନିଷ୍ଠୁର ଭାବରେ ଏସିଆ ଓ ଆଫ୍ରିକାର ଲୋକମାନଙ୍କୁ ଶୋଷଣ କରିଛନ୍ତି ।

ହିନ୍ଦୁମାନେ ସ୍ପୃଶ୍ୟ-ଅସ୍ପୃଶ୍ୟ ଭେଦଭାବ ରଚିଛନ୍ତି, ଜାତିପ୍ରଥା ଦ୍ୱାରା ଜନଗଣଙ୍କ ଭିତରେ ସାନବଡ଼ ବିଭେଦ ସୃଷ୍ଟି କରିଛନ୍ତି ଓ ତଳ ଜାତିର ଲୋକମାନଙ୍କୁ ଅର୍ଥନୈତିକ ସମତାରୁ ବଞ୍ଚିତ କରିଛନ୍ତି । ସେହିପରି ଜୈନମାନେ ଅନ୍ୟମାନଙ୍କ ପାଖରୁ ମାତ୍ରାଧିକ ସୁଧ ଆଦାୟ ପାଇଁ ଜୁଲମ କରିବାରେ ବେଶ୍ ଜଣାଶୁଣା ଅଟନ୍ତି । ଇସଲାମର ଜେହାଦ ଦ୍ୱାରା ଅଣମୁସଲିମ ସଂପ୍ରଦାୟର ଲୋକମାନେ ନିଜକୁ ନିରାପଦ ଅନୁଭବ କରିନାହାନ୍ତି ।

ଈଶ୍ୱରୀୟ ବ୍ୟକ୍ତି (God Man)ଙ୍କର ବ୍ୟକ୍ତିଗତ ଜୀବନର ମହାନୀୟତା ଦେଖି ତାଙ୍କ ପ୍ରତି ବହୁ ବ୍ୟକ୍ତି ଆକୃଷ୍ଟ ହୋଇଥାନ୍ତି । ସେ କିନ୍ତୁ ସମାଜରେ ଶାନ୍ତି ଓ ବନ୍ଧୁତ୍ୱପୂର୍ଣ୍ଣ ସାମାଜିକ ସମ୍ବନ୍ଧ ପ୍ରତିଷ୍ଠା କରିପାରନ୍ତି ନାହିଁ । ସାମାଜିକ କାର୍ଯ୍ୟକ୍ରମ, ଜନସେବା ଓ ରାଜନୀତି ଅପେକ୍ଷା ଆତ୍ମ ଉପଲବ୍ଧି ଦିଗରେ ବ୍ରତୀ ହେବାକୁ ସେ ଅଧିକ ମୂଲ୍ୟବାନ୍ ମନେ କରନ୍ତି । ସାମ୍ପ୍ରତିକ କାଳରେ ସ୍ୱାମୀ ବିବେକାନନ୍ଦ, ଶ୍ରୀ ଅରବିନ୍ଦ ଓ ରମଣ ମହର୍ଷିଙ୍କୁ କେନ୍ଦ୍ରକରି ବିରାଟ ଅନୁଷ୍ଠାନମାନ ଗଢ଼ି ଉଠିଛି । କିନ୍ତୁ ଅଗଣିତ ମଣିଷଙ୍କର ଦୁଃଖ, ଦାରିଦ୍ର୍ୟ, ଘୃଣା ଓ କୁସଂସ୍କାର ପ୍ରତି ସେମାନେ ବିଶେଷ ଗୁରୁତ୍ୱ ଦେଇ ନାହାନ୍ତି । ଭଗବତ୍ ଗୀତାରେ ଏହା କୁହାଯାଇଛି, "ଯେଉଁ ଲୋକ ସଂଯମ ପାଳନ ଭିତରେ ନିଜର ଇନ୍ଦ୍ରିୟସୁଖ ପ୍ରତି ଆକୃଷ୍ଟ ହୁଅନ୍ତି ନାହିଁ ଓ ସମସ୍ତ ଇନ୍ଦ୍ରିୟ ଭୋଗବସ୍ତୁ ମଧ୍ୟରେ ଥାଇ ମଧ୍ୟ ସଂଯମୀ ରୁହନ୍ତି ସେ ହିଁ ପରମ ଶାନ୍ତି ଲାଭକରି ପାରନ୍ତି ।" ସନ୍ନ୍ୟାସୀମାନଙ୍କର ଶାନ୍ତି ଓ ଜନପ୍ରିୟତାର କୌଣସି ସାମାଜିକ ମହତ୍ତ୍ୱ ନଥାଏ । ରାସ୍ତାରେ ଗୋଟିଏ ହାତୀ ଦେଖି ପିଲାମାନେ ଯେପରି ଗୋଡ଼ାଇଥାନ୍ତି ସେହିପରି ସାଧାରଣ ଲୋକ ସାଧୁ ସନ୍ନ୍ୟାସୀମାନଙ୍କର ଭକ୍ତ ହୋଇଥାନ୍ତି । ସେହି ସନ୍ନ୍ୟାସୀମାନଙ୍କର ସାମାଜିକ ଅଙ୍ଗୀକାରବୋଧ ନଥିବାରୁ ସେମାନଙ୍କର କାର୍ଯ୍ୟ ସାମାଜିକ ମାନଦଣ୍ଡରୁ ମହତ୍ତ୍ୱପୂର୍ଣ୍ଣ ନା ପ୍ରତାରଣାପୂର୍ଣ୍ଣ ? କିପାଲନି ଅତି ବିନୟର ସହ ଏହି ପ୍ରଶ୍ନ କରିଛନ୍ତି ।

ସନ୍ଥଙ୍କର ଲକ୍ଷଣ ବର୍ଣ୍ଣନା କଲା ପରେ କିପାଲନି ସେହି ମାନଦଣ୍ଡରେ ଗାନ୍ଧୀଙ୍କୁ ମୂଲ୍ୟାୟନ କରିଛନ୍ତି ।

### ସନ୍ଥ ନୁହନ୍ତି :

ଗାନ୍ଧୀଙ୍କର ଅହିଂସା ସନ୍ଥ ଓ ସନ୍ନ୍ୟାସୀମାନେ ପାଳନ କରୁଥିବା ଅହିଂସା ପରି ନଥିଲା । ସେ ମନ୍ଦର ବିରୋଧ କରିବା ସହିତ ବ୍ୟବସ୍ଥା, ଘଟଣା ପ୍ରବାହ ଓ ଏପରିକି ବ୍ୟକ୍ତିବିଶେଷଙ୍କର ମୂଲ୍ୟାୟନ କରୁଥିଲେ । ଭାରତ ବର୍ଷରେ ଶାସନ କରୁଥିବା ବ୍ରିଟିଶ୍ ସରକାରକୁ ସେ ମନ୍ଦ ସରକାର ବୋଲି ଆଖ୍ୟା ଦେଉଥିଲେ । ବ୍ରିଟିଶ ଶାସନର ଅମଲାତନ୍ତ୍ରକୁ ମଧ୍ୟ ସେ ସମାଲୋଚନା କରୁଥିଲେ । ଯେଉଁମାନେ

ନିୟମ ପ୍ରୟୋଗ କରୁଥିଲେ ସେମାନେ ସମୟରେ ନିୟମର ଊର୍ଦ୍ଧ୍ୱରେ ରହି କାର୍ଯ୍ୟ କରୁଥିଲେ । ଏଥିରେ ଗାନ୍ଧୀ ସେମାନଙ୍କୁ ତିରସ୍କାର କରୁଥିଲେ । କେବଳ ସେ କାହାକୁ ଶାରୀରିକ ଆଘାତ ଦେଉନଥିଲେ ।

ଗାନ୍ଧୀଙ୍କୁ କେହି ଡାହାଣ ଗାଲରେ ଆଘାତ କରିଥିଲେ ସେ କେବେ ନିଜର ବାମ ଗାଲ ଦେଖାଇ ନଥାନ୍ତେ । ଯଦିବା ତାଙ୍କ ଉପରେ ଆଘାତ ଦେଉଥିବା ବ୍ୟକ୍ତି ପ୍ରତି ସେ କୌଣସି ହିଂସା ଆଚରଣ କରିନଥାନ୍ତେ ତେବେ ସେ ନିଜର ଗାଲକୁ ଏପରି ଦୃଢ଼ କରିବାକୁ ଚେଷ୍ଟା କରିଥାନ୍ତେ ଯଦ୍ଦ୍ୱାରା ଆଘାତକାରୀ ତାଙ୍କ ଗାଲକୁ ପ୍ରଥମ ଚାପୁଡ଼ା ମାରିବାକୁ ବି ସହଜ ଓ ସରଳ ବୋଲି ଅନୁଭବ କରିନଥାନ୍ତା । ସେ ନିଜର ଅନୁଗାମୀମାନଙ୍କୁ ଭବିଷ୍ୟ ବିଷୟରେ ଚିନ୍ତା ନକରିବାକୁ କହିନାହାନ୍ତି । କେବଳ ନିଜ ଦେଶର ଉତ୍କଟ ଦାରିଦ୍ର୍ୟ ପରିସ୍ଥିତି ଯୋଗୁଁ ନିଜର ସହଯୋଗୀ-ମାନଙ୍କୁ ସରଳ ଭାବରେ ବଞ୍ଚିବାକୁ ପରାମର୍ଶ ଦେଇଛନ୍ତି ।

ସୁତରାଂ ଗାନ୍ଧୀ ସନ୍ଥ ଓ ସନ୍ନ୍ୟାସୀଙ୍କଠାରୁ ପୃଥକ୍ ଥିଲେ । ତେବେ ପ୍ରଶ୍ନ ହେଉଛି—ସେ କାହିଁକି ଧର୍ମୀୟ ପନ୍ଥା ଅନୁସରଣ କରୁଥିଲେ ?

ଗାନ୍ଧୀ ଅତ୍ୟନ୍ତ ନୀତିବାଦୀ ଥିବା ସହିତ ବାସ୍ତବବାଦୀ ମଧ୍ୟ ଥିଲେ । ଆଧୁନିକ ଯୁଗରେ ରାଜନୀତିକ କ୍ଷମତା ବାସ୍ତବପକ୍ଷେ ସାମାଜିକ ସମ୍ପର୍କକୁ ବହୁ ଭାବରେ ପ୍ରଭାବିତ କରିଥିଲେ ବି ରାଜନୀତିକ ବ୍ୟକ୍ତିଗଣ ଜନଗଣଙ୍କର ସେବା କରିବା ପରିବର୍ତ୍ତେ କେବଳ କ୍ଷମତା ରାଜନୀତିରେ ସମ୍ପୃକ୍ତ ହେଉଥିବା ସେ ଲକ୍ଷ୍ୟ କରିଥିଲେ । ଅପର ପକ୍ଷରେ ପ୍ରତ୍ୟେକ ଧର୍ମ ପାରମ୍ପରିକ ଭାବରେ କେତେକ ମୌଳିକ ଶୃଙ୍ଖଳା ନିଜ ମାନଦଣ୍ଡରେ ପିଢ଼ି ପରେ ପିଢ଼ିର ଲୋକମାନଙ୍କୁ ଶିକ୍ଷା ଦେଇପାରିଛି । ଧର୍ମର ନୈତିକ ଦିଗଟି ସହିତ ରାଜନୀତିକୁ ସମନ୍ୱିତ କରାଇ ସ୍ୱାଧୀନତା ପାଇଁ ସେ ଉଦ୍ୟମ କରିଥିଲେ ।

ପ୍ରାଥମିକ ଅବସ୍ଥାରେ ରାଜନୀତିକୁ ଏକ ନୈତିକ ଅଭିମୁଖ୍ୟ ଦେବାରେ ସେ ବହୁ ଭାବରେ ସଫଳ ହୋଇଥିଲେ । କିନ୍ତୁ କାଳକ୍ରମେ ଧର୍ମୀୟ ବିଶ୍ୱାସଗୁଡ଼ିକ ସାମାଜିକ ପରମ୍ପରା ଓ ରାଜନୈତିକ ବ୍ୟବସ୍ଥା ସହିତ ମିଶି ମତାନ୍ଧତା ସୃଷ୍ଟି କଲା ଓ ତାଙ୍କର କାର୍ଯ୍ୟଧାରା ପ୍ରତି ମଧ୍ୟ ସଙ୍କମିତ ହୋଇ ଆସିଲା । ମତାନ୍ଧତା ଓ ପାଗଳାମିର ବଶବର୍ତ୍ତୀ ହୋଇ ତାଙ୍କୁ ହତ୍ୟା କରାଗଲା । ସ୍ୱାଧୀନୋତ୍ତର ଭାରତରେ ସର୍ବୋଦୟ-ବାଦୀ ଓ କଂଗ୍ରେସ ଲୋକମାନେ ଦୁଇଟି ପୃଥକ୍ ଶିବିରରେ ଭାଗ ହୋଇଗଲେ । ପୂର୍ବୋକ୍ତ ବ୍ୟକ୍ତିମାନେ ସନ୍ଥଙ୍କ ପରି ନୀତିବାଦୀ ହେବାବେଳେ ଶେଷୋକ୍ତ ବ୍ୟକ୍ତିମାନେ କ୍ଷମତା ରାଜନୀତି ଭିତରେ ଆବଦ୍ଧ ହୋଇ ରହିଲେ ।

ରାଜନୀତି ଓ ନୈତିକତା ଭିତରେ ସମନ୍ୱୟ ନକରି ପାରିବା ହେତୁ ସର୍ବୋଦୟବାଦୀ ଓ କଂଗ୍ରେସର ବ୍ୟକ୍ତିମାନଙ୍କୁ ଗାନ୍ଧୀଙ୍କର ଯଥାର୍ଥ ଅନୁଗାମୀ ବୋଲି ଗ୍ରହଣ କରାଯାଇ ପାରିବ ନାହିଁ । ନେହେରୁଙ୍କୁ ଗାନ୍ଧୀ ନିଜର ଉତ୍ତରାଧିକାରୀ ଭାବେ ସ୍ଥିର କରିବା ବୋଲି ଯାହା କୁହାଯାଉଛି କିପାଳିନଙ୍କ ମତରେ ତାହା ଏକ ଅନୁମାନ ଉପରେ ଆଧାରିତ । ଗାନ୍ଧୀଙ୍କର ପରିକଳ୍ପିତ ସ୍ୱରାଜ ଶୀଘ୍ର ଆସିଯିବ ଓ ନେହେରୁ ପ୍ରଧାନମନ୍ତ୍ରୀ ନିଯୁକ୍ତ ହେବେ ଏହା ଗାନ୍ଧୀ କେବେ ବି ଆଶା କରି ନଥିଲେ । ବରଂ ଏକ ବିଦେଶୀ ସରକାର ବିରୁଦ୍ଧରେ ଯେଉଁ ସଂଗ୍ରାମ ଚାଲିଛି ତାହା ସ୍ୱରାଜ ପ୍ରାପ୍ତି ପର୍ଯ୍ୟନ୍ତ ଚାଲୁ ରହିବ । ଏହି ସଂଗ୍ରାମକୁ ନେହେରୁ ଅଧିକ ଆଗ୍ରହ ଓ ସଙ୍କଳ୍ପ ନେଇ ଆଗେଇନେବେ ବୋଲି ସେ ବିଶ୍ୱାସ କରିଥିଲେ । ସେହିପରି ସର୍ବୋଦୟବାଦୀମାନଙ୍କର ରାଜନୀତିଠାରୁ ଦୂରେଇଯିବା ପରିପ୍ରେକ୍ଷୀରେ ସେମାନଙ୍କୁ ସାଧୁ କୁହାଯାଇ ପାରିବ ସିନା ଗାନ୍ଧୀବାଦୀ କୁହାଯାଇ ପାରିବ ନାହିଁ ।

ଗାନ୍ଧୀଙ୍କର ଉତ୍ତରାଧିକାରୀମାନେ ରାଜନୀତି ଓ ଧର୍ମ ଭିତରେ ସମନ୍ୱୟ ଆଣିବାରେ ବିଫଳ ହେବା ଯୋଗୁଁ ଗାନ୍ଧୀବାଦକୁ ନ୍ୟୂନ କରାଯାଇ ପାରିବ ନାହିଁ । ବରଂ ଯୁଦ୍ଧ, ଶୋଷଣ, ଏକଛତ୍ରବାଦ ଓ ରାଜନୈତିକ ବିଭେଦକୁ ଦୂର କରିବାକୁ ହେଲେ ଉଭୟର ସମନ୍ୱୟ ଅବଶ୍ୟମ୍ଭାବୀ ମନେହୁଏ । ସତ୍ୟ ଓ ଅହିଂସା ଧର୍ମୀୟ ଶୃଙ୍ଖଳା ଭିତରୁ ଯାଇ ରାଜନୀତିକ ଆଭିମୁଖ୍ୟରେ ପ୍ରତିଫଳିତ ହେବା ଉଚିତ । ରାଜନୀତିକ ନେତୃବୃନ୍ଦ କିପରି ଏହା କରିବେ ସେ ପାଇଁ ଜନଗଣଙ୍କ ଉପରେ ଯେଉଁ ନୈତିକ ଦାୟିତ୍ୱ ନ୍ୟସ୍ତ କରାଯାଇଛି, ତାହା ସେ ସତ୍ୟାଗ୍ରହ ବୋଲି ଆଖ୍ୟା ଦେଇଛନ୍ତି ।

ଯନ୍ତ୍ରମାନଙ୍କର ଅନ୍ୟାୟର ଅବରୋଧ ବା ପରିସ୍ଥିତିର ଅମୂଳୋତ୍ପାଟନଜନିତ ଅହିଂସା ପଦ୍ଧତି ସତ୍ୟାଗ୍ରହକୁ ମିଶାଯାଇ ପାରିବ ନାହିଁ । ବରଂ ସତ୍ୟାଗ୍ରହ ଅନ୍ୟାୟର ନିଷ୍କ୍ରିୟ ବିରୋଧ କରିବା ସହିତ ଅନ୍ୟାୟକାରୀର ପରିବର୍ତ୍ତନ ପାଇଁ ଉଦ୍ୟମ କରିଥାଏ ।

ଗାନ୍ଧୀଙ୍କ ସତ୍ୟାଗ୍ରହକୁ ଧର୍ମ ଓ ରହସ୍ୟବାଦର ଯେଉଁ ଆବରଣ ବେଳକେ ଆଚ୍ଛାଦନ କରିବା ମନେହୁଏ କିପାଳିନଙ୍କ ପୁସ୍ତକ 'ଯନ୍ତ୍ର ଓ ସତ୍ୟାଗ୍ରହ' ତାହା ଦୂର କରିବା ସହିତ ଯେଉଁ ମାନଦଣ୍ଡରୁ ଗାନ୍ଧୀ ଧର୍ମ ଓ ରାଜନୀତିର ସମନ୍ୱୟ କରିଛନ୍ତି ତା'ର ଏକ ବାସ୍ତବ ଚିତ୍ର ଦେବାରେ ପ୍ରୟାସ ଅଛି ।

# ଗାନ୍ଧୀବାଦ ଓ ଯନ୍ତ୍ରଶିଳ୍ପ

ଗାନ୍ଧୀବାଦ ଯନ୍ତ୍ରର ବିନିଯୋଗକୁ କ'ଣ ବିରୋଧ କରେ ?

ନୁହେଁ । ଗାନ୍ଧୀ ଯେଉଁ ଚରଖା ଉପରେ ଏତେ ଗୁରୁତ୍ୱ ଦେଉଥିଲେ ତାହା ବି ଏକ ଯନ୍ତ୍ର । ଗାନ୍ଧୀ ପ୍ରକୃତରେ ଶିଳ୍ପୀକରଣ ଓ ବୃହତ୍ ଯନ୍ତ୍ରର ବ୍ୟବହାର ଦ୍ୱାରା ଶ୍ରମିକ ଗୋଷ୍ଠୀର ଶୋଷଣକୁ ବିରୋଧ କରୁଥିଲେ । ବ୍ୟକ୍ତିମାନଙ୍କର ସ୍ୱାଧୀନତା ଓ ସମତା ଉପରେ ସମାଜ ପ୍ରତିଷ୍ଠିତ ହେବା ପରି ଏକ ଭାବନାରୁ ଏହି ବିରୋଧ ଆସିଥାଏ । ବଡ଼ ଯନ୍ତ୍ରମାନଙ୍କର ବ୍ୟବହାର ଦ୍ୱାରା କେନ୍ଦ୍ରୀକରଣ ବ୍ୟବସ୍ଥାର ଉଦ୍ଭବ ହୋଇଥାଏ ଓ ଏହି ବ୍ୟବସ୍ଥା ଶ୍ରମିକମାନଙ୍କୁ ଶୋଷଣ କରିବା ସହିତ କେତେକ ବ୍ୟକ୍ତିଙ୍କର ସ୍ୱାଧୀନତାକୁ କ୍ଷୁଣ୍ଣ କରିଥାଏ । ଏଥିରୁ ପୁଞ୍ଜିବାଦ ମଧ୍ୟ ଆସିଥାଏ । ପୁଞ୍ଜିବାଦର ମନ୍ଦ ବ୍ୟବସ୍ଥାକୁ ଦୂର କରିବା ପାଇଁ ସମାଜବାଦୀ ବ୍ୟବସ୍ଥାର ଆବଶ୍ୟକ ହୁଏ । ରାଜନୀତିକ ଏକଛତ୍ରବାଦ ଓ ତାର ନିୟନ୍ତ୍ରଣ ଦ୍ୱାରା ବ୍ୟକ୍ତି ସ୍ୱାଧୀନତା ବାଧାପ୍ରାପ୍ତ ହୋଇଥାଏ । ଅର୍ଥନୈତିକ ଓ ରାଜନୀତିକ କେନ୍ଦ୍ରୀକରଣକୁ ପ୍ରତିହତ କରିବା ପାଇଁ ଗାନ୍ଧୀ ପ୍ରତ୍ୟେକ ସ୍ତରରେ ବିକେନ୍ଦ୍ରୀକରଣ ପାଇଁ ଆଗ୍ରହ ପ୍ରକାଶ କରିଥିଲେ । ତାଙ୍କର ଗ୍ରାମ ସ୍ୱରାଜର ପରିକଳ୍ପନା ଭିତରେ ତଳ ସ୍ତରରୁ ଶାସନର ବିକେନ୍ଦ୍ରୀକରଣ ଓ କୁଟୀରଶିଳ୍ପ ଉପରେ ଗୁରୁତ୍ୱ ଦେଖିବାକୁ ମିଳିଥାଏ । ବିକେନ୍ଦ୍ରୀଭୂତ ଗ୍ରାମ ସ୍ୱରାଜରୁ ପ୍ରଗତିଶୀଳ ସଙ୍ଘୀୟ ବ୍ୟବସ୍ଥା ମଧ୍ୟ ଦେଇ ଏକ 'ବିଶ୍ୱ ସରକାର' ସମ୍ଭବ ହେବ ବୋଲି ସେ ଭାବିଥିଲେ । ସଙ୍ଘୀୟ ବ୍ୟବସ୍ଥାରେ ଶାସନର ମୂଳଉତ୍ସ ଗ୍ରାମରେ ରହିବା ବେଳେ ଏହା ଯେତିକି ବୃହତ୍ତର ସ୍ତର ଦେଇ ଗତି କରିବ, ସେତିକି ବ୍ୟାପକ ବିଷୟ ଉପରେ ସମ୍ପୃକ୍ତ ହେବ ।

ସୁତରାଂ ଗାନ୍ଧୀ ସରକାର ବା ଯନ୍ତ୍ରର ବିରୋଧୀ ନଥିଲେ । ସେ ଯେକୌଣସି ପ୍ରକାର କେନ୍ଦ୍ରୀକରଣ ବ୍ୟବସ୍ଥାର ବିରୋଧୀ ଥିଲେ; କାରଣ ତାହାଦ୍ୱାରା ବ୍ୟକ୍ତି ସ୍ୱାଧୀନତା ବାଧାପ୍ରାପ୍ତ ହୋଇଥାଏ । ବ୍ୟକ୍ତି ସ୍ୱାଧୀନତ, ସମତା ଓ ସର୍ବଜନହିତୈଷୀ ମୂଲ୍ୟବୋଧକୁ ନେଇ ସେ ଏକ ନୂତନ ରାଜନୈତିକ ବ୍ୟବସ୍ଥାର ବିକାଶକୁ ଗୁରୁତ୍ୱ ଦେଇଥିଲେ । ବ୍ୟକ୍ତିମାନଙ୍କର ସମତା ଓ ସ୍ୱାଧୀନତା ଯଦି ଏକ ବୃହତ୍ତର ଦମବାୟୁ ସଂସ୍ଥାଦ୍ୱାରା ସମ୍ଭବ ହେବ ତେବେ ସେ ଏହାର ବିରୋଧ କରିବେ ନାହିଁ । ଯେତେବେଳେ ବ୍ୟକ୍ତିମାନେ ନିଜର ବ୍ୟକ୍ତିତ୍ୱର ବିକାଶ ଘଟାଇ ସଚେତନ ହେବେ ସେତେବେଳେ ସେମାନେ ରାଜନୈତିକ ଓ ଅର୍ଥନୈତିକ ବ୍ୟବସ୍ଥା ପାଖରେ ନିଜକୁ ଅଧସ୍ତନ ନକରି ତାହାକୁ ନିଜର ନିୟନ୍ତ୍ରଣ ଭିତରେ ରଖିପାରିବେ । ମୁକ୍ତ ଓ ସମାନ ବ୍ୟକ୍ତିମାନଙ୍କର ସହଯୋଗରେ ଗଢ଼ି ଉଠିଥିବା ଅନୁଷ୍ଠାନମାନଙ୍କର ଆକାର ଅପେକ୍ଷା ସେଗୁଡ଼ିକର ଗୁଣାତ୍ମକ ମାନ ଗୁରୁତ୍ୱପୂର୍ଣ୍ଣ ହୋଇଥାଏ । ମଣିଷର ସାମର୍ଥ୍ୟ ଅପରିବର୍ତ୍ତିତ ରହି ଗୋଟିଏ ବ୍ୟବସ୍ଥା ଯେତିକି ବୃହତ୍ତର ହୁଏ ତାହା ବ୍ୟକ୍ତିଗତ

ସମ୍ପର୍କ ରକ୍ଷା ନକରି ପାରିବାରୁ ଶୋଷଣକୁ ପ୍ରଶ୍ରୟ ଦେଇଥାଏ । ଏଣୁ ଗାନ୍ଧୀ ବୃହତ ଯନ୍ତ୍ର ଓ କେନ୍ଦ୍ରୀକରଣ ବ୍ୟବସ୍ଥାକୁ ବିରୋଧ କରୁଥିଲେ ।

ଯନ୍ତ୍ରଶିଳ୍ପ ପ୍ରସାରର ଆଉ ଗୋଟିଏ ପ୍ରତିବନ୍ଧକ ହେଉଛି ଏହା ବ୍ୟକ୍ତିର ଆବଶ୍ୟକତାଠାରୁ ଯଥେଷ୍ଟ ଅଧିକ ଉତ୍ପାଦନ କରିଥାଏ । ଯନ୍ତ୍ରଶିଳ୍ପର ବିନିଯୋଗ ଦ୍ୱାରା ଖାଦ୍ୟ ଓ ଉପଭୋଗ୍ୟ ସାମଗ୍ରୀ ଆବଶ୍ୟକତାଠାରୁ ଅଧିକ ଉତ୍ପାଦନ ହୋଇ-ଥାଏ । ଅବଶ୍ୟ ଚରଖା ଭଳି ଯନ୍ତ୍ରର ବିକାଶଦ୍ୱାରା ମଣିଷର ଆବଶ୍ୟକତା ଅନୁଯାୟୀ ଉତ୍ପାଦନକୁ ସୀମିତ ରଖିହୁଏ । କିନ୍ତୁ ବୃହତକାୟ ଯନ୍ତ୍ରର ବିନିଯୋଗ ଫଳରେ ଆବଶ୍ୟକତାଠାରୁ ଉତ୍ପାଦନ ଯଥେଷ୍ଟ ଅଧିକ ବୃଦ୍ଧି ପାଏ । ବଳକା ସାମଗ୍ରୀ ପାଇଁ ବଜାରଭିତ୍ତିକ ଶୋଷଣ ଓ ବେକାରି ସମସ୍ୟା ବୃଦ୍ଧି ପାଏ । ଉତ୍ପାଦନକୁ ସାମାଜିକୀକରଣ କରିବାଦ୍ୱାରା ବେକାରିକୁ ବିନୋଦନରେ ରୂପାନ୍ତରିତ କରାଯାଇପାରେ । ବିନୋଦନ ବି ଏକ ବୃହତ୍ତର ସମସ୍ୟା ଭାବରେ ମୁଣ୍ଡ ଟେକି-ପାରେ । ସାମନ୍ତବାଦୀ କାଳରେ ୟୁରୋପ ଶିଳ୍ପୋନ୍ନତ ହୋଇଥିବାରୁ ଏହା ନିଜର ସ୍ୱାଚ୍ଛନ୍ଦ୍ୟ ପାଇଁ ଶିଳ୍ପବିକାଶ କ୍ଷେତ୍ରରେ ପଛରେ ଥିବା ଏସିଆ ଓ ଆଫ୍ରିକାରେ ସାମ୍ରାଜ୍ୟବାଦର ପ୍ରସାର କରାଇବା ସହିତ ସେମାନଙ୍କୁ ଶୋଷଣ କରିବା ଦେଖାଯାଏ । ଏପରିକି ଆମେରିକାରେ ଯୁଦ୍ଧସାମଗ୍ରୀ ଉତ୍ପାଦନ କରିବା ଏକ ଶିଳ୍ପରେ ପରିଣତ ହୋଇଛି । ଭିଏତନାମ ଯୁଦ୍ଧର ଅବସାନ ଓ ମଧ୍ୟପ୍ରାଚ୍ୟର ଉତ୍ତେଜନା ପ୍ରଶମିତ ହେବାଦ୍ୱାରା ଆମେରିକାର ସୈନ୍ୟମାନେ ବେକାର ହେବେ ଓ ଯେଉଁ କାରଖାନାରେ ଅସ୍ତ୍ର ତିଆରି ହେଉଛି ସେସବୁ ବନ୍ଦ ହୋଇଯିବ । ବେକାରି ସମସ୍ୟାର ଭୟ ଯୋଗୁଁ ଗୋଟିଏ ପଟେ ଯୁଦ୍ଧ ବନ୍ଦ ହେଲେ ସାମ୍ରାଜ୍ୟବାଦୀ ରାଷ୍ଟ୍ରମାନେ ଅନ୍ୟ ସେଇଁଠି ହେଲେ ଯୁଦ୍ଧ ବା ଉତ୍ତେଜନା ଜାରି ରହିବା ପାଇଁ ଚକ୍ରାନ୍ତ ଚଳାଇଥାନ୍ତି । ଶିଳ୍ପୀକରଣ ଯୋଗୁଁ ଆଧୁନିକ ସଭ୍ୟତା ଏହି ବିପଜ୍ଜନକ ପରିସ୍ଥିତିର ସମ୍ମୁଖୀନ ହେଉଛି । ମୁଷ୍ଟିମେୟ ବ୍ୟକ୍ତିଙ୍କର ବିଳାସ ପାଇଁ ଅଗଣିତ ଜନଗଣଙ୍କର ନିରାପତ୍ତା ମଧ୍ୟ ବ୍ୟାହତ ହୋଇଥାଏ ।

ମଣିଷ ଜୀବନ ମାଟି, ପାଣି ଓ ପବନ ସହିତ ଘନିଷ୍ଠ ଭାବରେ ସମ୍ବନ୍ଧିତ ଅଟେ । ଯନ୍ତ୍ର ଏପରି କଞ୍ଚାମାଲ ଆବଶ୍ୟକ କରେ ଯାହା ପ୍ରକୃତି ନିର୍ଦ୍ଦିଷ୍ଟ ସମୟ ଭିତରେ ପ୍ରସ୍ତୁତ କରିପାରେ ନାହିଁ । ଯେଉଁ ପେଟ୍ରୋଲ, କୋଇଲା ଓ ଖଣିଜ ବସ୍ତୁ-ଗୁଡ଼ିକ ପ୍ରସ୍ତୁତ କରିବାପାଇଁ ପ୍ରକୃତି କୋଟି କୋଟି ବର୍ଷ ନେଇଥାଏ, ଏକ ଶିଳ୍ପ ସମୃଦ୍ଧ ସମାଜ ତାହାକୁ ଶହେବର୍ଷ ଭିତରେ ଖର୍ଚ୍ଚ କରିଦିଏ । ଏ ଦୃଷ୍ଟିରୁ ଶିଳ୍ପ ସଭ୍ୟତା ଅତି ସ୍ୱାର୍ଥପର ମନେହୁଏ; କାରଣ ଭବିଷ୍ୟତ ବଂଶଧରମାନଙ୍କର ବିନିଯୋଗ ପାଇଁ ଏହା ପ୍ରାକୃତିକ ସମ୍ପଦ ଗଚ୍ଛିତ ରଖିପାରେ ନାହିଁ ।

ଏତଦ୍‌ବ୍ୟତୀତ ଶିଳ୍ପ ସଭ୍ୟତାର ପରିଣାମ ସ୍ୱରୂପ ବାୟୁ, ଜଳ ଓ ପରିବେଶ ଏପରି ପ୍ରଦୂଷିତ ହୁଏ ଯାହାକି ଶିଳ୍ପୋନ୍ନତ ରାଷ୍ଟ୍ର ଓ ସହରମାନଙ୍କ ପାଇଁ ବିପଦ-ସଙ୍କୁଳ ପରିସ୍ଥିତି ସୃଷ୍ଟି କରେ । ମୁକ୍ତ ପବନ ଓ ବିଶୁଦ୍ଧ ପାଣି ପାଇବା ପାଇଁ ଲୋକମାନେ ଶିଳ୍ପ ସହରଠାରୁ ଦୂରେଇଯିବାକୁ ଲାଗନ୍ତି ।

ବୃହତକାୟ ଯନ୍ତ୍ର ବିନିଯୋଗର କୁପରିଣାମ ବିଷୟରେ ଗାନ୍ଧୀଙ୍କର ଦୂରଦୃଷ୍ଟି ଥିଲା । ଯୁଦ୍ଧ, ଶୋଷଣ ଓ ପ୍ରଦୂଷଣ ସହିତ ଏକ ନୂଆ ସାମାଜିକ ପ୍ରଜାଳିର ମୂଳଦୂଆ ସେ ପକାଇଥିଲେ ଯେଉଁଠି ଜନଗଣ ସ୍ୱାଧୀନତା ଓ ସମତା ଭିତରେ ବଞ୍ଚିପାରିବେ । ଯନ୍ତ୍ରଦ୍ୱାରା ସୃଷ୍ଟି ମୁଷ୍ଟିମେୟ ବ୍ୟକ୍ତି ବିଳାସ ଭିତରେ ରହିବାବେଳେ ଗାନ୍ଧୀ ସବୁ ମଣିଷଙ୍କ ପାଇଁ ସମାନ ସୁବିଧାସୁଯୋଗ ବିଷୟ ଚିନ୍ତା କରିଥିଲେ । ଅବଶ୍ୟ ଏହାଦ୍ୱାରା ପୁଞ୍ଜିବାଦୀ, ଶିଳ୍ପଉଦ୍ୟୋଗୀ ଓ ସାମ୍ରାଜ୍ୟବାଦୀମାନେ ଯେଉଁ ବିଳାସରେ ରହିଛନ୍ତି ତାହା ସମ୍ଭବ ହେବନାହିଁ । ସୁତରାଂ ଚରଖା ଉପରେ ଗୁରୁତ୍ୱ ଦେଇଥିବା ଗାନ୍ଧୀବାଦ ପୁରୁଣାକାଳିଆ ଏକ ବିଚାର ନୁହେଁ । ବରଂ ସାମାଜିକ ଓ ନୈତିକ ମାନଦଣ୍ଡରୁ ଗାନ୍ଧୀବାଦ ସ୍ୱାର୍ଥାନ୍ୱେଷୀ ଓ ହିଂସାପ୍ରବଣ ସଭ୍ୟତାଠାରୁ ଉନ୍ନତ ମନେହୁଏ ।

## ଗାନ୍ଧୀ ଓ ନିରୀଶ୍ୱରବାଦ

ପ୍ରଶ୍ନ—ଆପଣ ଗାନ୍ଧୀଙ୍କ ସହିତ ଏକାଠି ରହିଥିଲେ । ଗାନ୍ଧୀ ଈଶ୍ୱରଙ୍କ ଉପରେ ବିଶ୍ୱାସ ରଖିଥିଲେ ଓ ଏକ ମହାନ୍ ବ୍ୟକ୍ତି ଥିଲେ । ଆପଣ ନିରୀଶ୍ୱରବାଦ ଉପରେ ଗୁରୁତ୍ୱ ଦେବାଦ୍ୱାରା ତାଙ୍କ ପ୍ରତି ଅନ୍ୟାୟ କରୁନାହାନ୍ତି କି ?

ଉପରଠାଉରିଆ ଦୃଷ୍ଟିରୁ ଦେଖିଲେ ଏହି ଅଭିଯୋଗ ଯଥାର୍ଥ ମନେହୁଏ । କିନ୍ତୁ 'ଈଶ୍ୱର ବିଶ୍ୱାସ' କହିଲେ ଗାନ୍ଧୀ କ'ଣ ବୁଝୁଥିଲେ ତାହା ବ୍ୟାଖ୍ୟା କରାଗଲେ ଏହି ସନ୍ଦେହ ଦୂର ହୋଇପାରିବ ।

ଈଶ୍ୱର ବିଶ୍ୱାସ ଅପେକ୍ଷା ତାଙ୍କର ମୁକ୍ତ ମନ ତାଙ୍କୁ ମହାନ୍ କରିଛି । ଅବଶ୍ୟ ସେ ନିଜ ମା'ଙ୍କ ପାଖରୁ ଯେଉଁ ଶିକ୍ଷା ପାଇଥିଲେ ସେଥିରୁ ପାରମ୍ପରିକ ଗାରେ ସେ ଈଶ୍ୱର ବିଶ୍ୱାସ ରଖିଥିଲେ । କିନ୍ତୁ ସେ ଏକ ମୁକ୍ତ ଦୃଷ୍ଟିଭଙ୍ଗୀ ପୋଷଣ କରୁଥିବାରୁ ନୂତନ ପରିସ୍ଥିତିର ସମ୍ମୁଖୀନ ହୋଇ ନିଜର ଈଶ୍ୱର ଧାରଣାରେ ପରିବର୍ତ୍ତନ ଆଣିଥିଲେ । ଅକ୍ଟୋବର ୩୧, ୧୯୩୧ରେ ସେ 'ୟଙ୍ଗ ଇଣ୍ଡିଆ'ରେ ଲେଖିଥିଲେ, "ଯେଉଁମାନେ ଈଶ୍ୱର ପ୍ରେମମୟ ବୋଲି କହୁଛନ୍ତି ମୁଁ ସେମାନଙ୍କ ସହିତ ସ୍ୱର ମିଶାଇ ମଧ୍ୟ କହିବି ଈଶ୍ୱର ପ୍ରେମମୟ । କିନ୍ତୁ ମୁଁ ମୋର ଅନ୍ତର ଭିତରୁ ଈଶ୍ୱର ସତ୍ୟ ବୋଲି କହିବି । ଯଦି ଈଶ୍ୱରଙ୍କର ପୂର୍ଣ୍ଣ ବ୍ୟାଖ୍ୟା କରିବା

ମଣିଷ ପକ୍ଷରେ ସମ୍ଭବ ତେବେ ମୁଁ ଏହି ସିଦ୍ଧାନ୍ତକୁ ଆସୁଛି ଯେ ଈଶ୍ୱର ହେଉଛନ୍ତି ସତ୍ୟ । କିନ୍ତୁ ଦୁଇବର୍ଷ ତଳେ ମୁଁ ଆଉ ପାଦେ ଆଗକୁ ଯାଇ କହିଥିଲି ସତ୍ୟ ହେଉଛି ଈଶ୍ୱର ।” ଗାନ୍ଧୀ ପୁନଶ୍ଚ କହିଥିଲେ, “ଗତ ପାଞ୍ଚ ଦଶନ୍ଧି ଧରି ସତ୍ୟ ପଥରେ ଅନ୍ୱେଷଣ ଭିତରୁ ମୁଁ ଏହି ସିଦ୍ଧାନ୍ତକୁ ଆସିଛି ଯେ ପ୍ରେମ ମାଧ୍ୟମରେ ସତ୍ୟକୁ ଜାଣିହେବ । କିନ୍ତୁ ପ୍ରେମର ଅନେକ ଅର୍ଥ ରହିଛି । ମାନବିକ ସ୍ତରରେ ପ୍ରେମ ବେଳକେ ଇନ୍ଦ୍ରିୟ ଆବେଗକୁ ମଧ୍ୟ ବୁଝାଇପାରେ । ପ୍ରେମକୁ ଅହିଂସା ଅର୍ଥରେ ନେଇ ମୁଁ ଦେଖୁଛି ଯେ ଏହାକୁ ବିଶ୍ୱାସ କରୁଥିବା ବ୍ୟକ୍ତିଙ୍କ ସଂଖ୍ୟା ପୃଥିବୀରେ ବହୁତ ସୀମିତ ଅଛି । କିନ୍ତୁ ସତ୍ୟ ପରିପ୍ରେକ୍ଷୀରେ ମୁଁ ଦୁଇଟି ପୃଥକ୍ ଅର୍ଥ ପାଉନାହିଁ । ଏପରିକି ନାସ୍ତିକବାଦୀମାନେ ମଧ୍ୟ ସତ୍ୟକୁ ଅସ୍ୱୀକାର ବା ନ୍ୟୂନ କରୁନାହାନ୍ତି । ଏବଂ ସତ୍ୟ ଅନ୍ୱେଷଣ କ୍ଷେତ୍ରରେ ନାସ୍ତିକବାଦୀମାନେ ସେମାନଙ୍କ ମାନଦଣ୍ଡରୁ ଈଶ୍ୱରଙ୍କ ଅସ୍ତିତ୍ୱକୁ ଅସ୍ୱୀକାର କରୁଛନ୍ତି । ଏଥିପାଇଁ ‘ଈଶ୍ୱର ସତ୍ୟ’ କହିବା ପରିବର୍ତ୍ତେ ‘ସତ୍ୟ ଈଶ୍ୱର’ ବୋଲି କହିବା ମୁଁ ଉଚିତ ମନେକରୁଛି ।

ଏହି ପରିପ୍ରେକ୍ଷୀରେ ନାସ୍ତିକବାଦୀ ଚାର୍ଲସ ବ୍ରାଡ଼ଲଫ୍‌ଙ୍କ କଥା ମନକୁ ଆସୁଛି । ତାଙ୍କ ବିଷୟରେ ମୁଁ ଯେତିକି ଜାଣିଛି ମୁଁ ତାଙ୍କୁ ଜଣେ ନାସ୍ତିକବାଦୀ ଭାବେ ଗ୍ରହଣ ନକରି ଈଶ୍ୱର ଭୟାଳୁ ବ୍ୟକ୍ତି ଭାବରେ ଗ୍ରହଣ କରୁଛି । ଅବଶ୍ୟ ସେ ମୋର ଏହି ଉକ୍ତିକୁ ପ୍ରତ୍ୟାଖ୍ୟାନ କରିବେ । ତାଙ୍କୁ ମୁଁ ଯଦି କହିବି, “ମିଃ. ବ୍ରାଡ଼ଲଫ୍, ଆପଣ ଜଣେ ସତ୍ୟ-ଭୟାଳୁ ବ୍ୟକ୍ତି, କିନ୍ତୁ ଈଶ୍ୱର-ଭୟାଳୁ ବ୍ୟକ୍ତି ନୁହନ୍ତି”, ତେବେ ତାଙ୍କର ମୁଖମଣ୍ଡଳ ହୁଏତ ରକ୍ତିମ ହୋଇଉଠିବ । ‘ସତ୍ୟ ହିଁ ଭଗବାନ’ କହିବା ଦ୍ୱାରା ତାଙ୍କର ସମାଲୋଚନାକୁ ମୁଁ ପ୍ରତିହତ କରିପାରିବି ଯେପରି ମୁଁ ଅନ୍ୟମାନଙ୍କର ସମାଲୋଚନାକୁ ପ୍ରତିହତ କରିପାରିଛି ।”

ଗାନ୍ଧୀଙ୍କ ଲେଖାରୁ ଏହି ବିସ୍ତୃତ ଉଦ୍ଧୃତି ମୁଁ ଦୁଇଟି କାରଣ ପାଇଁ ଦେଉଛି । ପ୍ରଥମତଃ ଗାନ୍ଧୀ କାହିଁକି ନିଜର ଈଶ୍ୱର ପ୍ରୀତିକୁ ପ୍ରେମଠାରୁ ସତ୍ୟ ପ୍ରତି ପରିବର୍ତ୍ତନ କରିଥିଲେ ତାହା ସେ ନିଜେ ଦର୍ଶାଇଛନ୍ତି । ଦ୍ୱିତୀୟତଃ ସେ ନାସ୍ତିକବାଦ ପ୍ରତି ବିମୁଖ ହେବା ପରିବର୍ତ୍ତେ ବରଂ ନାସ୍ତିକବାଦୀମାନଙ୍କର ସତ୍ୟବାଦିତାକୁ ଭୂୟସୀ ପ୍ରଶଂସା କରିଛନ୍ତି । ଚାର୍ଲସ ବ୍ରାଡ଼ଲଫ୍‌ଙ୍କୁ ଜଣେ ଈଶ୍ୱର-ଭୟାଳୁ ବ୍ୟକ୍ତି ଅପେକ୍ଷା ଜଣେ ସତ୍ୟ-ଭୟାଳୁ ବ୍ୟକ୍ତି କହିବା ଦ୍ୱାରା ସେ ଈଶ୍ୱର ଅପେକ୍ଷା ସତ୍ୟକୁ ଅଧିକ ପ୍ରାଧାନ୍ୟ ଦେଇଥିଲେ । ଯଦିବା ନାସ୍ତିକବାଦ ପ୍ରତି ଅନୁରକ୍ତ ଥିବା କେତେକ ଯୁବକଙ୍କର ସମାଲୋଚନାକୁ ସଫଳତାର ସହ ପ୍ରତିହତ କରିଥିଲେ, ତଥାପି ବାସ୍ତବପକ୍ଷେ ସେ ନାସ୍ତିକବାଦର ସମୀପବର୍ତ୍ତୀ ଥିଲେ । ‘ଈଶ୍ୱର ହିଁ ସତ୍ୟ’ଠାରୁ ‘ସତ୍ୟ ହିଁ ଈଶ୍ୱର’ ବୋଲି ମତ ପରିବର୍ତ୍ତନ କରିବା ଦ୍ୱାରା ତାଙ୍କର ଚିନ୍ତନ ସ୍ତରରେ ପରିବର୍ତ୍ତନ ଜଣାପଡ଼ୁଥାଏ । ‘ଈଶ୍ୱର ହିଁ ସତ୍ୟ’ ଓ ‘ସତ୍ୟ ହିଁ ଈଶ୍ୱର’

ଦୁଇଟି ସମାନ ଅର୍ଥପୂର୍ଣ୍ଣ ବଚନ ନୁହେଁ । ବରଂ ଗାନ୍ଧୀ ଶେଷଟିକୁ ପ୍ରଥମଟି ଉପରେ ଏକ ବିକାଶ ଭାବରେ ନେବା ଦେଖାଯାଏ ।

**ସଦା ବିକାଶ :**

ଗାନ୍ଧୀ ଏକ ମୁକ୍ତ ମନ ପୋଷଣ କରୁଥିଲେ । ସୁତରାଂ ତାଙ୍କର ବିଚାରଧାରା ବିକଶିତ ହେବାରେ ଲାଗିଥିଲା ଓ ସେ ନିଜର ମତ ପରିବର୍ତ୍ତନ କରୁଥିଲେ । ହରିଜନ ପତ୍ରିକାରେ ସେପ୍ଟେମ୍ବର ୩୦, ୧୯୩୯ରେ ସେ ଲେଖିଥିଲେ, "ମୁଁ ଲେଖିବା ସମୟରେ ପୂର୍ବରୁ କ'ଣ କହିଛି ସେ ବିଷୟରେ ଚିନ୍ତା କରେନାହିଁ । କୌଣସି ପ୍ରଶ୍ନ ଉପରେ ମୋର ପୂର୍ବ ମତ ସହିତ ସଙ୍ଗତି ରକ୍ଷା କରିବାକୁ ମୁଁ ଉଦ୍ୟମ କରେନାହିଁ । ବରଂ ସେହି ମୁହୂର୍ତ୍ତରେ ସତ୍ୟକୁ ମୁଁ ଯେପରି ଅନୁଭବ କରେ ତାହା ସହିତ ସାମଞ୍ଜସ୍ୟ ରକ୍ଷା କରିଥାଏ । ପରିଣାମତଃ ମୁଁ ସତ୍ୟରୁ ସତ୍ୟ ପ୍ରତି ବିକାଶ ଲାଭକରେ । ପୁନଶ୍ଚ ସେହି ହରିଜନ ପତ୍ରିକାରେ ଜୁଲାଇ ୨୮, ୧୯୪୭ରେ ସେ ଲେଖିଥିଲେ, "କୌଣସି ବିଷୟରେ ନିଜର ମତ ପୋଷଣ କରିବା ଗୋଟିଏ କଥା ଓ ସେହି ମତ ସାମଗ୍ରିକ ଭାବରେ ସମାଜରେ ଗ୍ରହଣୀୟ ହେବା ଏକ ଭିନ୍ନ କଥା । ମୁଁ ବିଶ୍ୱାସ କରୁଛି ଯେ ମୋର ଚିନ୍ତାଧାରା ନିତ୍ୟ ବିକଶିତ ହେବାରେ ଲାଗିଛି । ଅନ୍ୟମାନେ ହୁଏତ ଏହା ସହିତ ସମତାଳ ରକ୍ଷା କରିବା ସମ୍ଭବ ହୋଇନପାରେ । ତେଣୁ ମୋତେ ବହୁ ସମୟରେ ଧୈର୍ଯ୍ୟ ରକ୍ଷା କରିବାକୁ ହୋଇଥାଏ ଓ ମୋର ମନ୍ତ୍ରର ବିକାଶରେ ସନ୍ତୁଷ୍ଟ ହେବାକୁ ପଡ଼ିଥାଏ ।" ସୁତରାଂ ଗାନ୍ଧୀ ନିଜ ବିଚାରରେ ଅତ୍ୟନ୍ତ ଦୃଢ଼ ଥିଲେ । ନିଜର ମନ୍ତ୍ରର ବିକାଶକୁ ନିଜେ ସ୍ୱୀକାର କରୁଥିଲେ ବି ଅଗଣିତ ଲୋକମାନଙ୍କର ନେତା ଭାବରେ ସେ ଅଙ୍ଗୀକାରବଦ୍ଧ ଥିଲେ । ଫଳରେ କୌଣସି ଆହ୍ୱାନର ସମ୍ମୁଖୀନ ହେବା ବେଳେ ସେ ନିଜ ମତକୁ ଗୋପନ ନରଖି ଅତି ସ୍ପଷ୍ଟ ଭାବରେ ବ୍ୟକ୍ତ କରୁଥିଲେ ।

**ଧର୍ମନିରପେକ୍ଷତା :**

୧୯୪୬ ଓ ୪୭ ମସିହାରେ ଭାରତବର୍ଷରେ ସାମ୍ପ୍ରଦାୟିକ ଉତ୍ତେଜନା ତୀବ୍ର ଆକାର ଧାରଣ କରିଥିଲା । ଗାନ୍ଧୀ ଅନୁଭବ କଲେ ଯେ ସାମ୍ପ୍ରଦାୟିକ ସଦ୍ଭାବ ପ୍ରତିଷ୍ଠା ସହଜ ବ୍ୟାପାର ନୁହେଁ । ଏଣୁ ଅଗଷ୍ଟ ୨୩, ୧୯୪୭ ମସିହାର ପ୍ରାର୍ଥନା ସଭାରେ ସେ ଦୃଢ଼ତାର ସହିତ କହିଥିଲେ, "ଧର୍ମ ଏକ ବ୍ୟକ୍ତିଗତ ବିଶ୍ୱାସ; ସୁତରାଂ ଏହା ଆମର ବ୍ୟକ୍ତିଗତ ବିଶ୍ୱାସ ସ୍ତରରେ ସୀମାବଦ୍ଧ ରହିବା ଦ୍ୱାରା ଆମର ରାଜନୈତିକ ଜୀବନ ଶୃଙ୍ଖଳିତ ହେବ । ଯଦିଓ ସରକାରଙ୍କ କର୍ମଚାରୀଗଣ ଓ ସାଧାରଣ ଜୀବନ ସ୍ତରରେ କାର୍ଯ୍ୟ କରୁଥିବା ନେତୃବୃନ୍ଦ ଏକ ଧର୍ମ ନିରପେକ୍ଷ ରାଷ୍ଟ୍ର ଗଠନର ଦାୟିତ୍ୱ ବହନ କରି ଏପାଇଁ ନିଷ୍ଠାର ସହ କାର୍ଯ୍ୟ କରିବେ, ତା'ହେଲେ

ଯାଇ ଆମେ ଏକ ମହାନ୍ ଭାରତବର୍ଷ ଗଠନ କରିପାରିବା ।" ଜନସାଧାରଣଙ୍କ ଭିତରେ ଶାନ୍ତି ପ୍ରତିଷ୍ଠା ପାଇଁ ସେ ଏକ ଧର୍ମନିରପେକ୍ଷ ରାଷ୍ଟ୍ରର ସମର୍ଥକ ଥିଲେ । ସେ ମତାନ୍ଧ ଭାବରେ ବା ଭାବପ୍ରବଣ ହୋଇ ଧର୍ମଗତ ବିଶ୍ୱାସକୁ ଜାବୁଡ଼ି ଧରି ନଥିଲେ ।

ତାଙ୍କ ସହିତ ସେବାଗ୍ରାମ ଆଶ୍ରମରେ ରହୁଥିବା ବେଳେ ମୁଁ ଓ ମୋର ନାସ୍ତିକବାଦୀ ସହଯୋଗୀମାନେ ତାଙ୍କର ପ୍ରାର୍ଥନା ସଭାରେ ଯୋଗ ଦେଉନଥିଲୁ । ଏଥିପାଇଁ ଗାନ୍ଧୀ କେବେ ବି ଅଭିଯୋଗ କରିନଥିଲେ । ପରେ ଯେତେବେଳେ ମୋର ଝିଅର ବିବାହ ତାଙ୍କ ଦ୍ୱାରା କରିବାକୁ ସେ ସମ୍ମତ ହୋଇଥିଲେ, ସେତେବେଳେ ମୋର ଇଚ୍ଛାକୁ ସମ୍ମାନ ଦେବାକୁ ଯାଇ ବିବାହ ଉତ୍ସବ ସମ୍ପାଦନ କରିବାରେ 'ଈଶ୍ୱର' ନାମ ପ୍ରୟୋଗକୁ ସେ ବାଦ ଦେଇଥିଲେ । କିନ୍ତୁ ଯଦିବା ବିବାହ ସମ୍ପନ୍ନ ହେବା ବେଳକୁ ସେ ହତ୍ୟା ଦ୍ୱାରା ନିହତ ହୋଇଥିଲେ ତଥାପି ସେବାଗ୍ରାମରେ ରହୁଥିବା ତାଙ୍କର ସହଯୋଗୀ କିଶୋରଲାଲ ମୁଶ୍ରୁୱାଲା, କାକାସାହେବ କାଲେଲକର, ଆର୍ଯ୍ୟନାୟକମ୍, ଠକ୍କର ବାବା ଓ ବ୍ରିଜକିଶନ୍ ମୋ ଝିଅର ବିବାହ ସେଠାରେ ସମ୍ପନ୍ନ ହେବାବେଳେ ଗାନ୍ଧୀଙ୍କ ଇଚ୍ଛାନୁଯାୟୀ ବିବାହ ଶପଥରେ ଈଶ୍ୱରଙ୍କ ନାମ କୌଣସି କ୍ଷେତ୍ରରେ ଉଲ୍ଲେଖ କରିନଥିଲେ ।

**ମଣିଷ ପରି ମଣିଷ :**

ପୂର୍ବ ଉଦ୍ଧୃତ ଓ ବ୍ୟକ୍ତିଗତ ଘଟଣାରୁ ଏହା ସୂଚିତ ହୁଏ ଯେ ଗାନ୍ଧୀ ନାସ୍ତିକବାଦ ଆଡ଼କୁ ବିକାଶ କରୁଥିଲେ । ଈଶ୍ୱରବିଶ୍ୱାସୀ ବ୍ୟକ୍ତି ଅପେକ୍ଷା ତାଙ୍କୁ ଜଣେ ମାନବବାଦୀ କହିବା ଅଧିକ ସମୀଚୀନ ମନେହୁଏ । ସେ ପାରମ୍ପରିକ ଈଶ୍ୱର ବିଶ୍ୱାସ ସହ ସାଧାରଣ ଜୀବନସ୍ତରକୁ ଆଣିଥିଲେ । ଯଦି ଈଶ୍ୱର ବିଶ୍ୱାସଦ୍ୱାରା ମାନବଜାତିର ଶାନ୍ତି ଓ ସହିତ ବିପନ୍ନ ହେବାର ଆଶଙ୍କା ଥାଏ ତେବେ ସେ ନିଜର ଈଶ୍ୱର ବିଶ୍ୱାସକୁ ପରିହାର କରିବାକୁ କୁଣ୍ଠା ପ୍ରକାଶ କରିନଥାନ୍ତେ । ଧର୍ମବିଶ୍ୱାସର ଭାବପ୍ରବଣତା ଅପେକ୍ଷା ସେ ସତ୍ୟର ସାମାଜିକ ଆବଶ୍ୟକତା ପାଇଁ ଏହାକୁ ଗ୍ରହଣ କରିବା, ସମାଜରୁ ସାମ୍ପ୍ରଦାୟିକ ବିଦ୍ୱେଷର ବାତାବରଣକୁ ଦୂର କରିବା ପାଇଁ ଧର୍ମ ନିରପେକ୍ଷତାକୁ ସ୍ୱୀକାର କରିବା ଓ ମୋ ଝିଅର ବିବାହ ସମୟରେ ଈଶ୍ୱରଙ୍କ ନାମକୁ ବାଦ ଦେବା ପାଇଁ ସମ୍ମତ ହେବା ଘଟଣାରୁ ତାଙ୍କର ଧର୍ମ, ଈଶ୍ୱର ପ୍ରତି ଭାବପ୍ରବଣ ଅନୁରକ୍ତି ଅପେକ୍ଷା ସାହସିକ, ମୁକ୍ତ ଦୃଷ୍ଟିଭଙ୍ଗୀ ଓ ମହାନୁଭବତାର ପରିଚୟ ମିଳିଥାଏ । ପ୍ରାର୍ଥନା ବା ଧର୍ମ ପ୍ରତି ଅନୁରକ୍ତ ରହିବା ଅପେକ୍ଷା ନାସ୍ତିକବାଦ ଓ ଧର୍ମନିରପେକ୍ଷତାର ପ୍ରତିଷ୍ଠା କରିବା ଦ୍ୱାରା ଆମେ ତାଙ୍କର କାର୍ଯ୍ୟ କରିବା ସହିତ ତାଙ୍କର ଅମ୍ଳାନ ସ୍ମୃତି ପ୍ରତି ସମ୍ମାନ ପ୍ରଦର୍ଶନ କରିପାରିବା ।

# ଅହିଂସା

ଅହିଂସା କ'ଣ ଏକ ଆବେଗ ନା ଏହାର ଏପରି କିଛି ବସ୍ତୁଗତ ଭିତ୍ତି ରହିଛି ଯଦ୍ୱାରା ହିଂସା ଓ ଅହିଂସା ମଧ୍ୟରେ ପାର୍ଥକ୍ୟ ଅଣିହେବ ?

କୌଣସି ବିବାଦକୁ ସମାଧାନ କରିବାରେ ହିଂସାତ୍ମକ ଓ ଅହିଂସାତ୍ମକ ଦୁଇଟି ପନ୍ଥା ରହିଛି । ଏକ ହିଂସାତ୍ମକ ପନ୍ଥାରେ ପ୍ରତିପକ୍ଷକୁ ଶାରୀରିକ ଉତ୍ପୀଡ଼ନର ଭୟ ଦେଖାଇ ଦବାଇ ଦିଆଯାଏ; ସୁତରାଂ ଏ କ୍ଷେତ୍ରରେ ବିବାଦର ସମାଧାନ ନ୍ୟାୟ ମାନଦଣ୍ଡରୁ ନହୋଇ ବରଂ ବଳଶାଳୀ ପକ୍ଷର ଇଚ୍ଛାମୁତାବକ ହୋଇଥାଏ । କିନ୍ତୁ ଅହିଂସାତ୍ମକ ପନ୍ଥାରେ ହିଂସାକୁ ପ୍ରତିହତ କରିବା ଯୋଗୁଁ ବିବାଦର ସମାଧାନ ନ୍ୟାୟ ମାନଦଣ୍ଡରୁ ହିଁ ହୋଇଥାଏ; କାରଣ କୌଣସି ବାହ୍ୟ କାରଣ ଏ କ୍ଷେତ୍ରରେ ସମାଧାନକୁ ପ୍ରଭାବିତ କରିନଥାଏ ।

ଅହିଂସାର ଦୁଇଟି ବିଶିଷ୍ଟ ଲକ୍ଷଣ ରହିଛି । ପ୍ରଥମତଃ କୌଣସି କିଛି ଗୁପ୍ତରେ କରାଯାଇ ନଥାଏ । ସମସ୍ତ ବ୍ୟାପାରରେ ସବୁକିଛି ଖୋଲଖୋଲି ଭାବରେ କରାଯାଏ । ଗୁପ୍ତରେ କିଛି କରିବାଦ୍ୱାରା ସ୍ୱାର୍ଥପର ମନୋଭାବ ଅସିଥାଏ । କିନ୍ତୁ ଅହିଂସ ପନ୍ଥାରେ ପରିଚାଳିତ ବ୍ୟକ୍ତି ନିଜର ପ୍ରତିପକ୍ଷକୁ ବହୁ ପୂର୍ବରୁ ନିଜର ମନୋଭାବ ସ୍ପଷ୍ଟ କରି ଦେଇଥାଏ । ଫଳରେ ଲୋକମାନେ ଏ ବିଷୟରେ ବିଚାର ଆଲୋଚନା କରି ସହମତ ପ୍ରକାଶ କରିବାର ଅବକାଶ ପା'ନ୍ତି । ଦ୍ୱିତୀୟତଃ ପ୍ରତିପକ୍ଷ ହିଂସା ଆଚରଣ କଲେ ବି ତାର ପ୍ରତିହତ ହିଂସାତ୍ମକ ପନ୍ଥାରେ କରାଯାଏ ନାହିଁ । ବରଂ ନିଜ ଜୀବନ ବଦଳରେ ଅବିଚଳିତ ଭାବରେ ନ୍ୟାୟପଥରେ ଦୃଢ଼ ହୋଇ ରହିବାକୁ ହୁଏ । ଏହା ସହିତ ତାଙ୍କ ବିଚାରରେ କିଛି ତ୍ରୁଟି କେହି ଦର୍ଶାଇଲେ ଅହିଂସ ବ୍ୟକ୍ତି ନିଜକୁ ସଂଶୋଧନ କରିଥାଏ । ଏଣୁ ସେ ସର୍ବଦା ଏକ ମୁକ୍ତ ମନ ପୋଷଣ କରିଥାଏ । ପ୍ରତିପକ୍ଷର ହିଂସାତ୍ମକ କାର୍ଯ୍ୟକୁ ହିଂସାତ୍ମକ ପ୍ରତିରୋଧ କରାନଯିବା ଏକପାକ୍ଷିକ ଜଣାପଡ଼େ । କିନ୍ତୁ ତା'ଦ୍ୱାରା ବିଳମ୍ବରେ ହେଲେ ମଧ୍ୟ ପ୍ରତିପକ୍ଷକୁ ଅହିଂସାତ୍ମକ ପନ୍ଥାରେ ପରିବର୍ତ୍ତନ କରିହୁଏ ।

ମଣିଷର ଅନ୍ତର୍ନିହିତ ଉତ୍ତମତା ଓ ସଭ୍ୟତାର ବିକାଶ କ୍ଷେତ୍ରରେ ଅଭ୍ୟୁଦୟ-ଜନିତ ବିଶ୍ୱାସର ଆଧାର ଉପରେ ଅହିଂସାର ପ୍ରଣାଳୀ ନିର୍ଭର କରେ । ଯେଉଁମାନେ ଏହା ଉପରେ ବିଶ୍ୱାସ କରନ୍ତି ନାହିଁ ତାଙ୍କ ପ୍ରତି ଏଥିରେ କୌଣସି ମନ୍ଦ ଭାବନା ନଥାଏ । ଅପରପକ୍ଷରେ ଆତ୍ମସମୀକ୍ଷା ଦ୍ୱାରା ଅବିରତ ଓ କ୍ରମବର୍ଦ୍ଧିଷ୍ଣୁ ନ୍ୟାୟ ପ୍ରତିଷ୍ଠା ଓ ପ୍ରତିପକ୍ଷକୁ ପରିବର୍ତ୍ତନ କରିବା ଅହିଂସ ପନ୍ଥାରେ ଲକ୍ଷ୍ୟ ହୋଇଥାଏ । ଏହାକୁ କେବଳ ବ୍ୟକ୍ତିଗତ ସ୍ତରରେ ସୀମିତ ରଖିବାଦ୍ୱାରା ଏହା ନିଷ୍କ୍ରିୟ ଆଦର୍ଶରେ ପରିଣତ ହୁଏ । ଅବଶ୍ୟ ଧର୍ମଗତ ବିଶ୍ୱାସ ଉତ୍ତମ ବ୍ୟକ୍ତି ସୃଷ୍ଟି କରିବାରେ ପ୍ରେରଣା ଯୋଗାଇଛି । କିନ୍ତୁ ଏ କ୍ଷେତ୍ରରେ ଉତ୍ତମ ଜୀବନକୁ ଅନ୍ୟ ଏକ ଜଗତରେ ମୁକ୍ତି

ଲାଭ ପାଇଁ ନିଆଯାଏ । ଅଥଚ ଆଧୁନିକ ସଭ୍ୟତାରେ ବ୍ୟକ୍ତିଗତ ମୁକ୍ତି ଅପେକ୍ଷା ସାମାଜିକ ଶ୍ରେୟ ସାଧନକୁ ପ୍ରାଧାନ୍ୟ ଦିଆଯାଏ । ସୁତରାଂ ଅହିଂସା ସାମାଜିକ ତାତ୍ପର୍ଯ୍ୟ ବର୍ଦ୍ଧନ କରିବାଦ୍ୱାରା ଏହା ସତ୍ୟାଗ୍ରହ ଶକ୍ତିରେ ପରିଣତ ହୁଏ । ସତ୍ୟାଗ୍ରହର ବାନ୍ତ୍ରୀବଦ୍ଧ ଗାନ୍ଧୀ ଆଧୁନିକ ସମାଜରେ ମାନବିକ ସମ୍ବନ୍ଧକୁ ନ୍ୟାୟ ଓ ସତ୍ୟ ଉପରେ ପ୍ରତିଷ୍ଠା କରିବାକୁ ପ୍ରୟତ୍ନ କରିଛନ୍ତି । ସତ୍ୟାଗ୍ରହର ମୂଳମନ୍ତ୍ର ହେଉଛି, "ମୁଁ ଅନ୍ୟାୟ କରିବି ନାହିଁ କିମ୍ବା ତୁମକୁ ଅନ୍ୟାୟ କରିବାକୁ ଦେବିନାହିଁ ।" ସତ୍ୟାଗ୍ରହୀ ନିଜର ସାମାଜିକ ଅଭିମୁଖ୍ୟ ଭିତରେ ନିଜର ନୈତିକ ବିକାଶ ଘଟାଇଥାଏ ଓ ସମାଜର ଗୁଣାତ୍ମକ ଅଭିବୃଦ୍ଧି କ୍ଷେତ୍ରରେ ନିଜେ ଉଦାହରଣ ହୋଇଥାଏ । ଅପରପକ୍ଷରେ ଜଣେ ଧର୍ମପ୍ରାଣ ବ୍ୟକ୍ତି ନିଜର ବିକାଶକୁ ସମାଜରେ ଅନ୍ୟମାନଙ୍କର ବିକାଶଠାରୁ ଅସଲଗ୍ନ ରଖିଥାଏ । ଧର୍ମର ପ୍ରଭାବରୁ କେତେକ ଉତ୍ତମ ବ୍ୟକ୍ତି ସୃଷ୍ଟି ହୋଇଛନ୍ତି, କିନ୍ତୁ ସେମାନେ ସାମାଜିକ ପରିବର୍ତ୍ତନ ପାଇଁ କୌଣସି ଫଳପ୍ରଦ ଭୂମିକା ନେଇପାରି ନାହାନ୍ତି । ଅପରପକ୍ଷରେ ସତ୍ୟାଗ୍ରହ ଉତ୍ତମ ଓ ସବଳମନା ବ୍ୟକ୍ତି ସୃଷ୍ଟି କରିଥାଏ ଯେଉଁମାନେ ନିଜେ ଭଲହେବା ସହିତ ସମାଜର ମନ୍ଦ ବ୍ୟବସ୍ଥା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥାନ୍ତି ।

ନ୍ୟାୟ-ଅନ୍ୟାୟ ଏକ ନୈତିକ ପ୍ରଶ୍ନ ଯାହାର ମୂଲ୍ୟାୟନ ଲୋକମାନଙ୍କର ଆବଶ୍ୟକତା, ମାନସିକ ସ୍ତର ଓ ସାମାଜିକ ସମ୍ବନ୍ଧର ପରିସର ଉପରେ ନିର୍ଭର କରେ । ଖୋଲଖୋଲି ଭାବରେ କାର୍ଯ୍ୟସମ୍ପାଦନ ଓ ପ୍ରତିପକ୍ଷ ପ୍ରତି କୌଣସି ହିଂସା ଆଚରଣରୁ ନିବୃତ୍ତି ସାମାଜିକ ସମ୍ପର୍କକୁ ନ୍ୟାୟସଙ୍ଗତ କରିଥାଏ । ମୁକ୍ତ ମନୋଭାବ ଓ ଖୋଲା ଆଚରଣ ଦ୍ୱାରା ନ୍ୟାୟ ପ୍ରତିଷ୍ଠା ସମ୍ଭବ ହୁଏ । ଏହା ବ୍ୟତୀତ ଅନ୍ୟ କୌଣସି ନିରଙ୍କୁଶ ପନ୍ଥା ଏ କ୍ଷେତ୍ରରେ ଦୃଷ୍ଟିଗୋଚର ହୁଏନାହିଁ ।

ଅହିଂସାର ବିକାଶ ସମତା ପ୍ରତିଷ୍ଠା ଦିଗରେ ସହାୟକ ହୋଇଛି । ସମସ୍ତ ମଣିଷ ଶକ୍ତି, ସାମର୍ଥ୍ୟ, ରୁଚି ଓ ଆବଶ୍ୟକତା ଦୃଷ୍ଟିରୁ ସମାନ ହୋଇଥିବାରୁ ସମତା ପ୍ରତିଷ୍ଠାକୁ ସଭ୍ୟତାର ଏକ ଲକ୍ଷ୍ୟ ଭାବରେ ନିଆଯାଇଛି । ଅର୍ଥନୈତିକ ସୁବିଧା ସୁଯୋଗ, ସାମାଜିକ ସମ୍ମାନ ଓ ରାଜନୈତିକ କ୍ଷମତା ଇତ୍ୟାଦି ସାମାଜିକ ସମ୍ବନ୍ଧ କ୍ଷେତ୍ରରେ ସମତା ଅଧିକ ସ୍ୱାଭାବିକ ଓ ଯୁକ୍ତିସଙ୍ଗତ ମନେହେବା ବେଳେ ମଣିଷ ମଣିଷ ଭିତରେ ଥିବା ପାର୍ଥକ୍ୟକୁ ଆଧାର କରି ସାମାଜିକ ବୈଷମ୍ୟକୁ ସ୍ୱୀକାର କରାଯାଏ । କିନ୍ତୁ ଅହିଂସା ଏହାକୁ ଅସ୍ୱୀକାର କରି ମଣିଷ ଜାତି ଭିତରେ ସବୁ ସ୍ତରରେ ସମତା ପ୍ରତିଷ୍ଠା କରିବାକୁ ଲକ୍ଷ୍ୟ ପୋଷଣ କରେ । ଏହା ସହିତ ବର୍ଣ୍ଣ, ଜାତି, ସଂସ୍କୃତି ଓ ଜାତୀୟତାଜନିତ ବିଭେଦକୁ ଦୂର କରି ଗୋଟିଏ ମାନବଜାତିର ପରିକଳ୍ପନାକୁ ଗ୍ରହଣ କରେ । ଯୁଦ୍ଧ, ଅଭାବ ଓ ଘୃଣାରୁ ମଣିଷ ଜାତିକୁ ମୁକ୍ତ କରି ଏକ ବିଶ୍ୱ ପରିବାର ପ୍ରତିଷ୍ଠାକୁ ଅହିଂସ ସଂସ୍କୃତିର ମୂଳ ଲକ୍ଷ୍ୟ ଭାବରେ ନିଆଯାଏ ।

## ଧର୍ମ ସତ୍ୟରୁ ସତ୍ୟ ହିଁ ଧର୍ମ

ଜାତୀୟ ଜୀବନରେ ଗାନ୍ଧୀଙ୍କ ଆବିର୍ଭାବ ପୂର୍ବରୁ ବିଶୁଦ୍ଧ କଳ୍ପନା, ବୌଦ୍ଧିକ ପୂର୍ଣ୍ଣତା ଓ ମନୋହାରୀ ରଚନା ଆମର ଦର୍ଶନ, ନୀତିଶାସ୍ତ୍ର ଓ ଧର୍ମକୁ ଆଚ୍ଛାଦିତ କରି ରଖିଥିଲା । କଥା ଓ କାର୍ଯ୍ୟରେ ଥିବା ବିରାଟ ପାର୍ଥକ୍ୟ ଯୋଗୁଁ ନାନା କପଟତା ଓ ଅସାଧୁତା ଆମର ଜାତୀୟ ଜୀବନରେ ଭରି ରହିଥିଲା । କିନ୍ତୁ ଗାନ୍ଧୀଙ୍କର ସତ୍ୟର ପ୍ରୟୋଗ ନେଇ ପରୀକ୍ଷା ଅସାଧୁତାକୁ ପ୍ରତିହତ କରିବା ସହିତ ଦର୍ଶନ, ନୀତିଶାସ୍ତ୍ର ଓ ଧର୍ମକୁ ବାସ୍ତବଧର୍ମୀ ଏବଂ ନୈତିକ ନିୟମ ଉପରେ ଆଧାରିତ କଲା । କଳ୍ପନା-ବିଳାସୀ ବୁଦ୍ଧିବାଦୀଙ୍କ ଅପେକ୍ଷା କ୍ଷେତ୍ରରେ କାର୍ଯ୍ୟ କରୁଥିବା ଶ୍ରମିକ ଅଧିକ ଦୃଷ୍ଟି ଆକର୍ଷଣ କଲା । ଯାହା ବାସ୍ତବ ଜୀବନ ସହିତ ଅସଂଲଗ୍ନ ତାହା ଯେତେ ପ୍ରାଚୀନ ହେଲେ ବି ତାହାକୁ ପ୍ରତ୍ୟାଖ୍ୟାନ କରିବାର ମାନସିକତା ଆସିଲା । ଅସ୍ପୃଶ୍ୟତା ବିରୁଦ୍ଧରେ ତାଙ୍କର ଆନ୍ଦୋଳନ ଏହାର ଶାସ୍ତ୍ରାନୁମୋଦିତ ଆଧାରଶିଳାକୁ ଦୋହଲାଇ ଦେଲା ।

ଗାନ୍ଧୀ ନିଜକୁ ଜଣେ ସନାତନୀ ହିନ୍ଦୁ କହୁଥିଲେ ଏବଂ ବେଦ, ଉପନିଷଦ ଓ ପୁରାଣ ଉପରେ ଆସ୍ଥା ସ୍ଥାପନ କରିଥିଲେ । କିନ୍ତୁ ସେ କହୁଥିଲେ, "ମୋର ଏହି ବିଶ୍ୱାସର ଅର୍ଥ ନୁହେଁ ଯେ ଯାହା ଶାସ୍ତ୍ରରେ ଲେଖା ଅଛି ତାହା ମୁଁ ଗ୍ରହଣ କରେ । ଯାହା ମୌଳିକ ନୈତିକ ନିୟମଗୁଡ଼ିକୁ ବିରୋଧ କରେ ତାହା ଯେତେ ଶାସ୍ତ୍ରାନୁମୋଦିତ ହେଲେ ବି ମୁଁ ତାହା ପ୍ରତ୍ୟାଖ୍ୟାନ କରେ । ମୁଁ ପଣ୍ଡିତମାନଙ୍କର ବ୍ୟାଖ୍ୟାକୁ ଗ୍ରହଣ କରେ ନାହିଁ ।"

ଅସ୍ପୃଶ୍ୟତା ବିରୋଧୀ ଆନ୍ଦୋଳନ ବିରୁଦ୍ଧରେ ହୋଇଥିବା ସମ୍ମିଳନୀ ବିଷୟରେ ସେ କହିଥିଲେ, "ମୁଁ ଗୁଜୁରାଟର ହିନ୍ଦୁମାନଙ୍କୁ ଅସ୍ପୃଶ୍ୟତା ଦୂରୀକରଣ ଦିଗରେ ଚିନ୍ତା କରିବାକୁ ଓ ପଦକ୍ଷେପ ନେବାକୁ ନିବେଦନ କରୁଛି । ଶଙ୍କରାଚାର୍ଯ୍ୟଙ୍କ ସଭାପତିତ୍ୱରେ ହୋଇଥିବା ସମ୍ମିଳନୀରେ ଅସ୍ପୃଶ୍ୟତାକୁ ସମର୍ଥନ କରି ଯେଉଁ ନିଷ୍ପତ୍ତି କରାଯାଇଛି ସେଥିରେ ପ୍ରଭାବିତ ନହେବାକୁ ମୁଁ ଜନଗଣଙ୍କୁ ଅନୁରୋଧ କରୁଛି ।"

### ବିଶ୍ୱାସ ଓ ସତ୍ୟ :

କର୍ମର ନିୟମକୁ ନୀତିଶାସ୍ତ୍ରରେ ପ୍ରୟୋଗ ଦ୍ୱାରା ନୈତିକତାର ବିକାଶ ସହିତ ତାର ଆନୁଷଙ୍ଗିକ ମୂଲ୍ୟଭାବେ ସହନଶୀଳତାର ମଧ୍ୟ ଉଦ୍ଭବ ହୋଇଥାଏ । କିନ୍ତୁ କଥା ଓ କାର୍ଯ୍ୟରେ ସଙ୍ଗତି ରଖିବା ଦ୍ୱାରା ଅସହିଷ୍ଣୁତା ମଧ୍ୟ ଦୂର ହୋଇ-ଥାଏ । ଯାହା କୁହାଯାଏ ତାହାକୁ କାର୍ଯ୍ୟରେ ପରିଣତ କରିବା ଦ୍ୱାରା ଜଣେ ସତ୍ୟବାଦୀ ହୋଇଥାଏ । ସତ୍ୟବାଦୀ ହେବା ଫଳରେ ଜଣେ ସହନଶୀଳ ମଧ୍ୟ

ହୁଏ । ଯାହା କାର୍ଯ୍ୟରେ ପରିଣତ ହେବା ସମ୍ଭବ ନୁହେଁ ତାହା କେବଳ ବିଶ୍ୱାସ ମାତ୍ର ଓ ଏ କ୍ଷେତ୍ରରେ ମତ ପାର୍ଥକ୍ୟର ପ୍ରଶ୍ନ ହିଁ ଉଠିନଥାଏ । ବିଶ୍ୱାସ ଉପରେ ଆଧାରିତ ମତକୁ କାର୍ଯ୍ୟରେ ପରିଣତ ହୋଇପାରୁଥିବା ସତ୍ୟଠାରୁ ପୃଥକ୍ ବୋଲି ବିଚାର ନକରିବା ଦ୍ୱାରା ସମସ୍ୟା ଆସିଥାଏ । କିନ୍ତୁ ବିଶ୍ୱାସ ଓ ସତ୍ୟ ମଧ୍ୟରେ ପାର୍ଥକ୍ୟ ଆଣିବା ଦ୍ୱାରା ଅସହିଷ୍ଣୁତା ଓ ହିଂସାକୁ ପରିହାର କରାଯାଇପାରେ । ସୁତରାଂ ଜଣେ ସତ୍ୟବାଦୀ ବ୍ୟକ୍ତି ସହିଷ୍ଣୁ ଓ ଅହିଂସ ହୋଇଥାଏ ।

ଏହି ସହିଷ୍ଣୁତାର ମନୋଭାବ ସମସ୍ତ ସାମ୍ପ୍ରଦାୟିକତାର ଊର୍ଦ୍ଧ୍ୱକୁ ଯାଇ ଜଣେ ମାନବବାଦୀ ହେବାରେ ଗାନ୍ଧୀଙ୍କୁ ସାହାଯ୍ୟ କରିଥିଲା । ସେ ନିଜେ ଲେଖିଛନ୍ତି, "ମୋ ଧର୍ମର କୌଣସି ଭୌଗୋଳିକ ସୀମା ନାହିଁ । ମୋର ଏଥିରେ ବିଶ୍ୱାସ ମୋର ଦେଶପ୍ରୀତିର ଊର୍ଦ୍ଧ୍ୱରେ ।" ସେ ପୁନଶ୍ଚ କହିଥିଲେ, "ମୁଁ ଇଂରେଜ ବା ବ୍ରିଟିଶ ବିରୋଧୀ ନୁହେଁ । ମୁଁ ମଧ୍ୟ କୌଣସି ସରକାର ବିରୋଧୀ ନୁହେଁ । କିନ୍ତୁ ମୁଁ ଅସତ୍ୟ, ପ୍ରତାରଣା ଓ ଅନ୍ୟାୟର ବିରୋଧୀ ।"

ଜଣେ ମାନବବାଦୀ ଭାବରେ ସେ ପ୍ରାର୍ଥନା ଅପେକ୍ଷା ଜଣେ ଗରିବ ବ୍ୟକ୍ତିର ଦୁଃଖମୋଚନ କରିବାକୁ ଅଧିକ ଗୁରୁତ୍ୱ ଦେଉଥିଲେ । ସେ କହିଛନ୍ତି, "ମୁଁ ଯେତେବେଳ ପର୍ଯ୍ୟନ୍ତ ସକ୍ଷମ ରହିଛି ମୋତେ ଯଦି ଚରଖା ଚଲାଇବା ଓ ମାଳା ଜପିବା ମଧ୍ୟରୁ ଗୋଟିକୁ ବାଛିବାକୁ କୁହାଯାଏ, ତେବେ ମୁଁ ଚରଖା ଚଲାଇବାକୁ ସ୍ଥିର କରିବି । ଭାରତବର୍ଷରେ ଲୋକମାନେ ଦାରିଦ୍ର୍ୟ ଭିତରେ ଓ ଭୋକ ଉପାସରେ ସମସ୍ତ କାଟୁଥିବା ପର୍ଯ୍ୟନ୍ତ ମୁଁ କଦାପି ରାମ ନାମ ଜପ କରିବାକୁ ପସନ୍ଦ କରିବି ନାହିଁ ।"

କାରିଗରୀ ଓ ପ୍ରାର୍ଥନା ପରି କଳାକୁ ମଧ୍ୟ ମାନବିକ ବିକାଶ ତୁଳନାରେ ସେ ଉଚ୍ଚସ୍ଥାନ ଦେଇ ନାହାନ୍ତି । ଗୋଟିଏ ଫୁଲବଗିଚା ସୃଷ୍ଟି କରିବା ଅପେକ୍ଷା ପରିବା ଉତ୍ପାଦନ କରିବାକୁ ସେ ବେଶୀ ଗୁରୁତ୍ୱ ଦେଇଛନ୍ତି । ଫୁଲର ସୌନ୍ଦର୍ଯ୍ୟ ପରି ପରିବାର ସୌନ୍ଦର୍ଯ୍ୟକୁ ମଧ୍ୟ ଆମେ ଉପଭୋଗ କରିବା ଦରକାର ବୋଲି ମତ ପୋଷଣ କରିଛନ୍ତି । ତାଙ୍କର ଏକ ପ୍ରତିମୂର୍ତ୍ତି ଗଠନକୁ ବିରୋଧ କରି ସେ ଲେଖିଥିଲେ, "ଯେତେବେଳେ ଲୋକମାନଙ୍କର ଆବଶ୍ୟକତା ଅନୁଯାୟୀ ଖାଦ୍ୟ ଓ ବସ୍ତ୍ର ନାହିଁ, ସେତେବେଳେ କୌଣସି ପ୍ରତିମୂର୍ତ୍ତି ସ୍ଥାପନ କରି ଅର୍ଥ ବ୍ୟୟ କରିବାକୁ ମୁଁ କେବେ ପସନ୍ଦ କରିବି ନାହିଁ । ଏହି ଅର୍ଥରେ ଖାଦ୍ୟଶସ୍ୟ ଉତ୍ପାଦନ କଲେ କେତେ ଭୋକିଲା ମଣିଷଙ୍କର ପେଟକୁ ଦାନା ଗଣ୍ଡିଏ ଦିଆଯାଇ ପାରିବ ତାହା ଆମେ ଭାବିବା ଦରକାର ।"

## ଗୋମାଂସ ଭକ୍ଷଣକାରୀ ଓ ଅପରାଧୀ :

ଗାନ୍ଧୀଙ୍କର ଦୟା ଓ ସହନଶୀଳତା ସମସ୍ତଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ଗାନ୍ଧୀ ନିଜେ ଶାକାହାରୀ ଓ ଅତ୍ୟନ୍ତ ନୀତିବାଦୀ ଥିଲେ ବି ଗୋମାଂସ ଭକ୍ଷକୋରୀ ଓ ଅପରାଧୀମାନଙ୍କ ପ୍ରତି ମଧ୍ୟ ସେ ଉଦାର ଥିଲେ । ଦକ୍ଷିଣ ଆଫ୍ରିକାରେ ସେ ଯେତେବେଳେ ଗୋମାଂସ ଭକ୍ଷଣ ନେଇ ପ୍ରଶ୍ନର ସମ୍ମୁଖୀନ ହେଲେ ସେ ନିଜର ମତ ଏହିପରି ବ୍ୟକ୍ତ କରିଛନ୍ତି, "ମୁଁ ମାଂସ ଓ ଏପରିକି ଗୋମାଂସ ଭକ୍ଷଣକୁ ବିରୋଧ କରେ ନାହିଁ । ଯଦି ମାଂସାହାରୀମାନଙ୍କ ସାହାଯ୍ୟ ସହଯୋଗ ନକରିବାକୁ ମୁଁ ନିୟମ କରେ ତେବେ ମୋର ସତ୍ୟାଗ୍ରହ ଆନ୍ଦୋଳନ କେବଳ ଶାକାହାରୀମାନଙ୍କ ସହାୟତାରେ ହିଁ କରିବାକୁ ହେବ । ତାହା ଦ୍ୱାରା ଏହା ଅସମ୍ଭବ ହେବ । ସବୁ ଶ୍ରେଣୀର ଭାରତୀୟମାନଙ୍କ ସାହାଯ୍ୟରେ ହିଁ ଏହି ଆନ୍ଦୋଳନ ସମ୍ଭବ ହୋଇଥିଲା । ଏହି ପରିସ୍ଥିତିରେ ସମସ୍ତଙ୍କର ସହଯୋଗ ବିନା ସତ୍ୟାଗ୍ରହ ଆନ୍ଦୋଳନ ସମ୍ଭବ ନଥିଲା ।"

ସେହିପରି ଅପରାଧୀମାନଙ୍କ ସମ୍ପର୍କରେ ତାଙ୍କର ମତ ମଧ୍ୟ ସୁସ୍ପଷ୍ଟ ଥିଲା । ସେ କହିଛନ୍ତି, "ଦକ୍ଷିଣ ଆଫ୍ରିକାରେ ମୋ ସହିତ ଏପରି କେତେକ ବ୍ୟକ୍ତି ଥିଲେ ଯେଉଁମାନେ ହତ୍ୟା ବା ଚୋରି କରିବାକୁ ଉଦ୍ୟମ କରି କାରାବରଣ କରିଥିଲେ । କିନ୍ତୁ ମୋ ସହିତ ମିଶି ସେମାନେ ଅନ୍ୟ ସତ୍ୟାଗ୍ରହୀଙ୍କ ପରି ସମ୍ମାନର ସହିତ ଅହିଂସ ପନ୍ଥାରେ ଆନ୍ଦୋଳନ କରିବାକୁ ଆଗ୍ରହୀ ଥିଲେ ।" ଏଥିରୁ ନିଜ ଅନୁଭୂତି ବିଷୟରେ ସେ ଲେଖିଛନ୍ତି, "ଆମେମାନେ ଯେହେତୁ ନିଜେ ପୂର୍ଣ୍ଣତା ଲାଭ କରି ନାହୁଁ ଅନ୍ୟ ପ୍ରତି ଆମର ଦୃଷ୍ଟିକୋଣ ଉଦାର ହେବା ବାଞ୍ଛନୀୟ । ଅନ୍ୟ ପ୍ରତି ଉଦ୍ଦେଶ୍ୟ ଆରୋପ କରିବା କ୍ଷେତ୍ରରେ ଆମେ ଅତ୍ୟନ୍ତ ସଚେତନ ହେବା ଦରକାର ।"

ମାନବବାଦ ଗାନ୍ଧୀଙ୍କ ପାଇଁ ଏକ ନୈତିକ ଭାବାବେଗ ନଥିଲା; ଏହା ଥିଲା ଏକ ବାସ୍ତବ ସତ୍ୟ । ସବୁ ମଣିଷଙ୍କ ଭିତରେ ପ୍ରତ୍ୟେକ ସ୍ତରରେ ସମତା ରହିବା ଆବଶ୍ୟକ । ସାମାଜିକ ବ୍ୟବସ୍ଥାରେ ପରିବର୍ତ୍ତନ ବା ସଂସଦରେ ବିଧାନ ପ୍ରଣୟନ ଦ୍ୱାରା ଏହି ସମତା ଆସିବାକୁ ସେ ଅପେକ୍ଷା କରି ବସି ରହିନଥିଲେ । ସେ ରାଜନୈତିକ ସ୍ୱାଧୀନତା ପାଇଁ କାର୍ଯ୍ୟ କଲାବେଳେ ଜନଗଣଙ୍କ ସହଯୋଗରେ ତାଙ୍କର ରଚନାତ୍ମକ କାର୍ଯ୍ୟକ୍ରମର ସୂତ୍ରପାତ କରିଥିଲେ; କାରଣ ଏହାଦ୍ୱାରା ସମାଜରେ ସମତା ପ୍ରତିଷ୍ଠା କରିବା ସମ୍ଭବ ଥିଲା । ମିତବ୍ୟୟିତାକୁ କେବଳ ଏକ ବ୍ୟକ୍ତିଗତ ଗୁଣ ଭାବରେ ନନେଇ ସେ ଏକ ସାମାଜିକ କର୍ତ୍ତବ୍ୟ ଭାବରେ ଗ୍ରହଣ କରୁଥିଲେ । ସମାଜର ଅନ୍ୟମାନଙ୍କ ଅପେକ୍ଷା ଅଧିକ ଉପଭୋଗ କରିବା ଅନୁଚିତ

ବୋଲି ସେ ଗ୍ରହଣ କରୁଥିଲେ । ସୁତରାଂ ସେ ଖଦଡ଼ ଧୋତି ପରିଧାନ କଲେ । ଏହାଛଡ଼ା ଦକ୍ଷିଣ ଆଫ୍ରିକାରୁ ସେ ରେଳଡବାର ତୃତୀୟ ଶ୍ରେଣୀରେ ଯାତ୍ରା କରିବା ଆରମ୍ଭ କଲେ । ସେ ଲେଖିଛନ୍ତି, "ଆମ ଟଲଷ୍ଟୟ ଫାର୍ମର କୌଣସି କାର୍ଯ୍ୟରେ ଜୋହାନସ୍‌ବର୍ଗକୁ ଯିବାକୁ ହେଉଥିବା ବେଳେ ଆମେ ତୃତୀୟ ଶ୍ରେଣୀରେ ଯାତ୍ରା କରୁଥିଲୁ । ଜଣେ ଖୁସିରେ ବୁଲିଯିବାକୁ ଚାହିଁଲେ ସେ ଚାଲିକରି ଯାଉଥିଲେ ଓ ସାଥିରେ ନିଜର ବ୍ୟବହାର ପାଇଁ ଗୃହପ୍ରସ୍ତୁତ ଜିନିଷ ନେଉଥିଲେ ।" ଏହି ପ୍ରକାରର ସମତା ନୈତିକ ଶୃଙ୍ଖଳା ପ୍ରତିଷ୍ଠା କରିବାରେ ସହାୟକ ହୋଇଥିଲା ।

ଦର୍ଶନଶାସ୍ତ୍ର ଭଳି ନୀତିଶାସ୍ତ୍ର କ୍ଷେତ୍ରରେ ମଧ୍ୟ ଗାନ୍ଧୀ ସ୍ୱପ୍ନବିଳାସୀ ନହୋଇ ବାସ୍ତବବାଦୀ ଥିଲେ ।

ଗାନ୍ଧୀ ଥିଲେ କର୍ମଯୋଗୀ । ସେ ନିଜର ଧର୍ମର ବ୍ୟାଖ୍ୟା କରିବାକୁ ଯାଇ ଲେଖିଥିଲେ, "ତୁମେ ମୋର ଜୀବନକୁ ଅନୁଧ୍ୟାନ କର । ମୁଁ କିପରି ଖାଏ, ବସେ, କଥା କୁହେ, ବ୍ୟବହାର କରେ ଓ ଜୀବନ ବଞ୍ଚେ । ଏସବୁର ସାମଗ୍ରିକ ରୂପ ହେଉଛି ମୋର ଧର୍ମ ।" ଅବିରତ ଚେଷ୍ଟା ଦ୍ୱାରା ତାଙ୍କର ଧର୍ମ ହିନ୍ଦୁ ରକ୍ଷଣଶୀଳତାରୁ ନାସ୍ତିକବାଦରେ ରୂପାନ୍ତରିତ ହୋଇଯାଉଥିଲା । ଜଣେ ରକ୍ଷଣଶୀଳ ବୈଷ୍ଣବ ଧର୍ମାବଲମ୍ବୀ ଭାବରେ ସେ ତାଙ୍କ ଜୀବନ ଆରମ୍ଭ କରିଥିଲେ । ପାରମ୍ପରିକ ବିଶ୍ୱାସର ବଶବର୍ତ୍ତୀ ହୋଇ ସେ ଲେଖିଥିଲେ, "ତୁମେ ମୋର ଆଖି ତାଡ଼ି ନେଲେ ବି ମୋର ମୃତ୍ୟୁ ହେବ ନାହିଁ । ତୁମେ ମୋର ନାକ କାଟି ଦେଲେ ବି ମୁଁ ମୃତ୍ୟୁ ବରଣ କରିବି ନାହିଁ । କିନ୍ତୁ ତୁମେ ମୋର ଈଶ୍ୱର ବିଶ୍ୱାସକୁ ଦୋହଲାଇ ଦେଲେ ମୁଁ ମୃତ୍ୟୁବରଣ କରିବି ।"

କିନ୍ତୁ ସେ ସତ୍ୟର ପ୍ରୟୋଗ କରି ଚାଲିବା ଦ୍ୱାରା ରକ୍ଷଣଶୀଳ ଈଶ୍ୱର-ବିଶ୍ୱାସ ଓ ସାମାଜିକ ସମ୍ବନ୍ଧ କ୍ଷେତ୍ରରେ ଥିବା ଅସଙ୍ଗତି ଅନୁଭବ କଲେ । ସୁତରାଂ ସତ୍ୟାଧାରିତ ଜୀବନଯାପନ ପାଇଁ ସେ ନିଜ ବିଶ୍ୱାସକୁ ପରିବର୍ତ୍ତନ କରୁଥିଲେ ।

୧୯୩୧ ମସିହାରେ ସେ ଲେଖିଥିଲେ, "ମୁଁ ଏହି ସିଦ୍ଧାନ୍ତରେ ଉପନୀତ ହେଲିଣି ଯେ ମୋ ପାଇଁ ଈଶ୍ୱର ସତ୍ୟ । କିନ୍ତୁ ଦୁଇ ବର୍ଷ ତଳେ ମୁଁ ଆଉ ପାଦେ ଆଗେଇ ଯାଇ ଲେଖିଥିଲି 'ସତ୍ୟ ହିଁ ଈଶ୍ୱର' । 'ଈଶ୍ୱର ସତ୍ୟ' ଓ 'ସତ୍ୟ ହିଁ ଈଶ୍ୱର' ଦୁଇଟି ବାକ୍ୟ ମଧ୍ୟରେ ଥିବା ସୂକ୍ଷ୍ମ ପ୍ରଭେଦ ତୁମେ ଅନୁଭବ କରୁଥିବ । ଈଶ୍ୱର ସତ୍ୟ କହିବା ପରିବର୍ତ୍ତେ ସତ୍ୟ ହିଁ ଈଶ୍ୱର କହିବା ଅଧିକ ସମୀଚୀନ ମନେହୁଏ ।"

୧୯୪୭ ମସିହାରେ ସେ ସାମ୍ପ୍ରଦାୟିକ ବିଦ୍ୱେଷର ମୁକାବିଲା କରିବା ଭିତରେ ଅଧିକ ବାସ୍ତବବାଦୀ ହୋଇଥିଲେ । ଈଶ୍ୱରଙ୍କ ବ୍ୟାଖ୍ୟା ଭିନ୍ନ ଭିନ୍ନ ଧର୍ମରେ ଭିନ୍ନ ଭିନ୍ନ ହୋଇଥିବାରୁ ସମସ୍ତଙ୍କୁ ଗୋଟିଏ ବିଶ୍ୱାସରେ ଏକତ୍ର କରିବା ସମ୍ଭବ

ନୁହେଁ । କାରଣ ଈଶ୍ୱର ବ୍ୟାଖ୍ୟା ସତ୍ୟ ଉପରେ ନହୋଇ ବିଶ୍ୱାସ ଉପରେ ଆଧାରିତ । ମଣିଷର ପରମ୍ପରା ଭିତରେ ଏହି ବିଶ୍ୱାସ ବଦ୍ଧମୂଳ ହୋଇ ରହିଛି । ଏଣୁ ସାମ୍ପ୍ରଦାୟିକ ସଦ୍‌ଭାବ ରକ୍ଷା କରିବାକୁ ସେ ସବୁ ଧର୍ମର ଈଶ୍ୱରଙ୍କୁ ମିଶାଇ ତାଙ୍କର ପ୍ରାର୍ଥନା ବିଧାନ କରିଥିଲେ । ସୁତରାଂ ତାଙ୍କ ପ୍ରାର୍ଥନାରେ ସେ ଈଶ୍ୱର ଓ ଅଲ୍ଲାଙ୍କ ନାମ ଏକାଠି ଗାନ କରୁଥିଲେ ।

## ସତ୍ୟାଗ୍ରହ ପ୍ରତୀତି

### ଗାନ୍ଧୀ ରଚନାବଳୀର ଅଷ୍ଟମ ଓ ନବମ ଖଣ୍ଡର ସମୀକ୍ଷା :

ରୋମ ଗୋଟିଏ ଦିନରେ ଗଢ଼ା ହୋଇନଥିଲା ବା ମହାତ୍ମା ଗୋଟିଏ ଦିନରେ ଉଦ୍ଭବ ହୋଇନଥିଲେ । ସେମାନେ ଏହି ଖ୍ୟାତିର ଅଧିକାରୀ ହେବା ପଶ୍ଚାତରେ କେତେ ନିଷ୍ଠାପର ଉଦ୍ୟମ ଓ ପରିଶ୍ରମ ରହିଥିଲା । ଗୋଟିଏ ବୃକ୍ଷ ପ୍ରଥମେ ଅଙ୍କୁରିତ ହୋଇ ନାନା ଶାଖାପ୍ରଶାଖା ମେଲିବା ପରେ ଯାଇ ଫଳ-ପୁଷ୍ପରେ ଭରି ହୋଇଥାଏ । ୧୯୧୪ ମସିହାରେ ଗାନ୍ଧୀ ମୋତେ କହିଥିଲେ, "ଅନେକ ଯୁବକଙ୍କୁ ସମାଜସେବା ସ୍ତରକୁ ଆସିବା ମାତ୍ରେ ହଠାତ୍ ଯଶ ଓ ଜନପ୍ରିୟତା ହାସଲ କରିବାକୁ ବ୍ୟାକୁଳ ହେଉଛନ୍ତି । ମୁଁ ଦକ୍ଷିଣ ଆଫ୍ରିକାରେ ସାତ ବର୍ଷ ପାଇଖାନା ଓ ରୋଷାଇ କାର୍ଯ୍ୟରେ ବ୍ୟସ୍ତ କରିଛି ।"

ଆମ ଭିତରୁ ଅଧିକାଂଶ ଗାନ୍ଧୀଙ୍କୁ ମହାତ୍ମା ଭାବରେ ଜାଣିଛେ । ବଡ଼ ବଡ଼ ସଭା ସମିତିରେ ଭାଷଣ ଦେବା, ବେଳେବେଳେ ସ୍ପେସାଲ ରେଳ ଯୋଗେ ଯାତ୍ରା କରିବା, ଅଗଣିତ ଲୋକ ତାଙ୍କର ଦର୍ଶନ ପାଇଁ ବ୍ୟାକୁଳ ହୋଇ ଅପେକ୍ଷା କରିବା ଇତ୍ୟାଦିକୁ ମଧ୍ୟ ଦେଖିଛେ ।

ଖୁବ୍ କମ୍ ଲୋକ ୧୯୧୫ଠାରୁ ୧୯୧୯ ମସିହା ଭିତରେ ଗାନ୍ଧୀଙ୍କର ନାମ ଶୁଣିବାର ଅବକାଶ ପାଇଥିବେ । ସେତେବେଳେ ଏକ ତୃତୀୟ ଶ୍ରେଣୀ ଟିକେଟ ପାଇଁ ବହୁ ସମୟ ଧରି ତାଙ୍କୁ ଟିକେଟ ଝରକା ସ୍ଥାନରେ ଅପେକ୍ଷା କରିବାକୁ ପଡ଼ୁଥିଲା ଓ କୌଣସି ବଗିରେ ସ୍ଥାନଟିଏ ପାଇଁ ସେ ବହୁ କଷ୍ଟ ସ୍ୱୀକାର କରୁଥିଲେ । ବେଳେବେଳେ 'ଏଠାରେ ସ୍ଥାନ ନାହିଁ' ବୋଲି କହି ଯାତ୍ରୀମାନେ ତାଙ୍କୁ ଫେରାଇ ଦେଉଥିଲେ । ଏପରିକି ବର୍ଦ୍ଧମାନ ଷ୍ଟେସନରେ ଗାର୍ଡ଼ ନେଷ୍ଟାକରି ସାହାଯ୍ୟ କରିନପାରି ତାଙ୍କୁ କହିଥିଲେ, "ଆପଣ ଦେଖନ୍ତୁ, ଯଦି କୌଣସି ଉପାୟରେ ପ୍ରବେଶ କରି ଯାଇ-ପାରିବେ ଭଲକଥା, ନହେଲେ ପରବର୍ତ୍ତୀ ଟ୍ରେନ୍ ପାଇଁ ଅପେକ୍ଷା କରିବେ ।"

କିନ୍ତୁ ବାସ୍ତବପକ୍ଷେ ଯେଉଁ ଦକ୍ଷିଣ ଆଫ୍ରିକାରେ ସେ ୧୮୯୩ରୁ ୧୯୧୪ ପର୍ଯ୍ୟନ୍ତ ଏକୋଇଶ ବର୍ଷ ଧରି ରହିଥିଲେ ସେ ବିଷୟରେ ବିଶେଷ କିଛି ଜାଣିବାର ସୁଯୋଗ ଆମେ ପାଇନାହୁଁ । ଅବଶ୍ୟ ଜଣେ ଓକିଲ ଭାବରେ ଦାଦା ଅବଦୁଲ ଓ କମ୍ପାନି ସଂସ୍ଥାକୁ ଆଇନ୍ ପରାମର୍ଶ ଦେବାକୁ ସେ ସେଠାକୁ ଯାଇଥିଲେ । ତାଙ୍କୁ ଆମେ ଯେଉଁ ମହାତ୍ମା ପଦରେ ଭୂଷିତ କରୁଛୁ ତା'ର ମୂଳଦୁଆ ସେହିଠାରେ ହିଁ ପଡ଼ିଥିଲା । ଅବଶ୍ୟ ଅର୍ଥ ଉପାର୍ଜନ ବା ଓକିଲାତିରେ ଖ୍ୟାତି ଅର୍ଜନ ଯୋଗୁଁ ନୁହେଁ ବରଂ ସେଠାରେ ନାନା ପ୍ରତିଘାତ, ବନ୍ଦୀ ଜୀବନ ଓ ଜାତିଗତ ବିଭେଦର ଶିକାର ହେବା ଭିତରେ ତାଙ୍କର ବ୍ୟକ୍ତିତ୍ୱ ଗଢ଼ି ଉଠିଥିଲା । ଗାନ୍ଧୀଙ୍କର ଦକ୍ଷିଣ ଆଫ୍ରିକାରେ ଜୀବନ ପ୍ରବାହ ବିଷୟରେ ତାଙ୍କ ଉପରେ ସଂଗୃହୀତ ଓ ପ୍ରକାଶିତ ଗ୍ରନ୍ଥରୁ ଅନେକ ସୂଚନା ମିଳିପାରୁଛି ।

**କେତୋଟି ଘଟଣା :**

ଗାନ୍ଧୀ ରଚନାବଳୀ ପଢ଼ିବାବେଳେ ମିର୍ ଆଲମ୍ ଥରେ ଗୋଟିଏ ସଭାରେ ତାଙ୍କୁ କିପରି ବାଡ଼େଇଥିଲେ ଆମେ ପଢ଼ିବାକୁ ପାଉ । ଗାନ୍ଧୀଙ୍କ ନିଜ ଭାଷାରେ, "ମୋ ପଛରୁ ଗୋଟିଏ ଠେଙ୍ଗାରେ ମୋ ମୁଣ୍ଡ ଉପରେ ଏକ ବଡ଼ ପାହାର ହେଲା । ମୁଁ ହଠାତ୍ ଚେତାଶୂନ୍ୟ ହୋଇ ତଳେ ପଡ଼ିଗଲି ଓ ତା'ପରେ କ'ଣ ହେଲା ମୁଁ ଜାଣି ନାହିଁ । ଯେତେବେଳେ ସେ ଚେତା ପାଇଲେ ସେ ନିଜକୁ ଗିବସନ୍‌ଙ୍କର ବ୍ୟକ୍ତିଗତ ଅଫିସ୍ କୋଠରିରେ ଥିବାର ଦେଖିଲେ । ଡୋକ ମହାଶୟ ତାଙ୍କର ସେବା କରୁଥିଲେ ।

ଏହି ଶାରୀରିକ ଆଘାତ ପରେ ସେ ସୁସ୍ଥ ହେବାକୁ କିଛିଦିନ ନେଲେ । ସେ ସେହି କୋଠରିରେ ଏକା ରହିଥିଲେ । ସେ ନୂଆଖାଲିରେ ମଧ୍ୟ ଏକା ରହିଥିଲେ । କିନ୍ତୁ ଅହିଂସାର ଅଗ୍ନିଶିଖାଦ୍ୱାରା ନୀରବରେ ସେ ସାଂପ୍ରଦାୟିକ ହିଂସାର ପ୍ରାଚୀରକୁ ଭେଦ ପାରିଥିଲେ । ଦକ୍ଷିଣ ଆଫ୍ରିକାର ସେହି କୋଠରିଟି ଭିତରେ ସେ ମଧ୍ୟ ମଣିଷର ହୃଦୟକୁ ଅହିଂସାରେ କିପରି ପରିବର୍ତ୍ତନ କରିହେବ ସେହି ଚିନ୍ତାରେ ନିମଗ୍ନ ରହିଥିଲେ ।

ଦକ୍ଷିଣ ଆଫ୍ରିକାକୁ ଯେତେବେଳେ ସେ ଦ୍ୱିତୀୟଥର ଗଲେ ସେତେବେଳେ କେତେକ ଗୋରାଲୋକ ତାଙ୍କୁ ଆକ୍ରମଣ କରି ତାଙ୍କ ଉପରକୁ ଟେକାପଥର ଫିଙ୍ଗି-ଥିଲେ । ଅଚେତ ହେବା ପର୍ଯ୍ୟନ୍ତ ସେମାନେ ତାଙ୍କୁ ଆଘାତ କରି ଚାଲିଥିଲେ ଓ ଗାନ୍ଧୀ କୌଣସିମତେ ଗୋଟିଏ ଘରକାର ରେଲିଂକୁ ଧରି ଆଘାତ ସହିଥିଲେ । ଦୈବାତ୍ ପୁଲିସ ଅଧୀକ୍ଷକ ଶ୍ରୀ ଆଲେକଜାଣ୍ଡରଙ୍କ ପତ୍ନୀ ସେହି ବାଟ ଦେଇ

ଯିବାବେଳେ ଗାନ୍ଧୀଙ୍କ ଉପରେ ହେଉଥିବା ଆକ୍ରମଣକୁ ଦେଖି ନିଜର ଛତାଟି ଖୋଲି ତାଙ୍କୁ ଅନ୍ତ୍ରାଳ କରି ରକ୍ଷା କରିଥିଲେ ଓ ଲୋକଙ୍କ ଆକ୍ରମଣରୁ ତାଙ୍କୁ ଗୋଟିଏ ନିରାପଦ ସ୍ଥାନକୁ ନେଇଯାଇଥିଲେ ।

ଦକ୍ଷିଣ ଆଫ୍ରିକାରେ ସେ ବହୁବାର କାରାରୁଦ୍ଧ ହୋଇଥିଲେ । ଅବଶ୍ୟ ୧୯୪୨ ମସିହାରେ ଆଗା ଖାଁ ବଙ୍ଗଳାରେ ବନ୍ଦୀ ଜୀବନଠାରୁ ଏହା ସମ୍ପୂର୍ଣ୍ଣ ଭିନ୍ନ ଥିଲା । ଦକ୍ଷିଣ ଆଫ୍ରିକାରେ ବନ୍ଦୀ ଥିବାବେଳେ ସେ ସଶ୍ରମ କାରାଦଣ୍ଡ ଭୋଗ କରୁଥିଲେ । ରାସ୍ତାଘାଟ, ମ୍ୟୁନିସିପାଲିଟି ଜଳ ନିଷ୍କାସନ ବ୍ୟବସ୍ଥାକୁ ସଫା, ସୈନିକମାନଙ୍କର କବରଖାନା ନିର୍ମାଣ, ବନ୍ଧଶାଳାର କବାଟ ଝରକାକୁ ରଙ୍ଗଦେବା ଭଳି କାର୍ଯ୍ୟ ତାଙ୍କୁ କରିବାକୁ ପଡ଼ୁଥିଲା । ଏକଦା ଜୋହାନ୍ସବର୍ଗ ରେଳ ଷ୍ଟେସନଠାରୁ କଚେରୀ ପର୍ଯ୍ୟନ୍ତ ବନ୍ଦୀ ପୋଷାକରେ ନିଜର ଜିନିଷପତ୍ର ଧରି ଚାଲିକରି ଯିବାକୁ ତାଙ୍କୁ ପଡ଼ିଥିଲା । ଅନ୍ୟଥରେ ହାତକଡ଼ି ପିନ୍ଧି ପ୍ରେଟୋରିଆ ଜେଲଠାରୁ କଚେରି ପର୍ଯ୍ୟନ୍ତ ତାଙ୍କୁ ପାଦରେ ଆସି ସାକ୍ଷ୍ୟ ଦେବାକୁ ପଡ଼ିଥିଲା । ତାଙ୍କ ପ୍ରତି ଏହି ଖରାପ ବ୍ୟବହାର ଅବଶ୍ୟ ଦକ୍ଷିଣ ଆଫ୍ରିକାର ସମ୍ବାଦପତ୍ରରେ ପ୍ରକାଶ ପାଇ ଆନ୍ଦୋଳନ ସୃଷ୍ଟି କରିଥିଲା ଓ ପରେ ବିଲାତର ସଂସଦରେ ମଧ୍ୟ ପ୍ରଶ୍ନ ଉଠିଥିଲା ।

**ଶିକ୍ଷା :**

ସମସ୍ତଙ୍କ ଭିତରେ ବଡ଼ ହେବାର ଆକାଂକ୍ଷା ଥାଏ । କିନ୍ତୁ ଶିକ୍ଷୟିତ୍ରର ସନ୍ଧାନ ନ ଜାଣିବାରୁ କିମ୍ବା ଜୀବନରେ ଉଚ୍ଚ ହେବାକୁ ଉପଯୁକ୍ତ ରାସ୍ତା ନପାଇ ଅନେକ ନୈରାଶ୍ୟ ଭିତରେ ରହିଥାନ୍ତି । ବହୁ ବଡ଼ଲୋକଙ୍କର ପିଲାଦିନର ଘଟଣା ପ୍ରବାହ ଆମ ପାଇଁ ପଥପ୍ରଦର୍ଶକ ହେବା ଆବଶ୍ୟକ । ସବୁ ବଡ଼ଲୋକ ପ୍ରଥମରୁ ସାଧାରଣ ମଣିଷ ଭଳି ଥା'ନ୍ତି । ସେମାନଙ୍କର ଦୃଢ଼ ଲକ୍ଷ୍ୟ ଓ ପ୍ରତିକୂଳ ଅବସ୍ଥାରେ ଧୈର୍ଯ୍ୟଦ୍ୱାରା ସେମାନେ ଆଗକୁ ଯିବାରେ ସମର୍ଥ ହୁଅନ୍ତି । ପ୍ରଚେଷ୍ଟା ଓ ସାହସ ଇତ୍ୟାଦି ଗୁଣକୁ ଜୀବନରେ ଅର୍ଜନ କରିବାକୁ ହୋଇଥାଏ, ଏହା କୌଣସି ସହଜାତ ସାମର୍ଥ୍ୟ ନୁହେଁ ।

ଏହି ପରିପ୍ରେକ୍ଷୀରେ ଗାନ୍ଧୀଙ୍କ ଜୀବନୀ ଆମ ପାଇଁ ଏକ ଆଦର୍ଶ ଅଟେ । କାରଣ ଆଧୁନିକ ଯୁଗରେ ତାଙ୍କ ପରି କେହି ଏତେ ମହାନ୍ ହୋଇନାହାନ୍ତି । ତଥାପି ତାଙ୍କ ଜୀବନର ପ୍ରଥମ ସୋପାନରେ ସେ ଥିଲେ ଯେକୌଣସି ବ୍ୟକ୍ତି ପରି ଅତି ସାଧାରଣ । ଗୋଟିଏ ସାଧାରଣ ଜୀବନ ସ୍ତରରୁ ସେ ଅସାଧାରଣ ସ୍ତରକୁ ଯାଇପାରିଥିଲେ ।

ଗାନ୍ଧୀ ରଚନାବଳୀର ଅଷ୍ଟମ ଓ ନବମ ଖଣ୍ଡରେ ଯଥାକ୍ରମେ ୧୯୦୮ ମସିହାର ଜାନୁଆରୀଠାରୁ ଅଗଷ୍ଟ ପର୍ଯ୍ୟନ୍ତ ଓ ସେପ୍ଟେମ୍ବର ୧୯୦୮ ଠାରୁ ୧୯୦୯

ପର୍ଯ୍ୟନ୍ତ ଘଟଣାପ୍ରବାହ ରହିଛି । ଅଷ୍ଟମ ଖଣ୍ଡରେ ଦକ୍ଷିଣ ଆଫ୍ରିକାରେ ପ୍ରଥମ ସତ୍ୟାଗ୍ରହ, ତାଙ୍କର ଅନିଶ୍ଚିତ ଲକ୍ଷ୍ୟ ଏବଂ ସଫଳତା ଓ ବିଫଳତାର ଚିତ୍ର ରହିଛି । ନବମ ଖଣ୍ଡରେ ଟ୍ରାନ୍ସଭାଲଠାରେ ତାଙ୍କର ସତ୍ୟାଗ୍ରହ ଆନ୍ଦୋଳନର ଦୃଢ଼ତା ବିଷୟରେ ଦେଖିବାକୁ ମିଳେ । ଏ ଭଲ୍ୟୁମ ତାତ୍ପର୍ଯ୍ୟପୂର୍ଣ୍ଣ କାରଣ ଏହିଠାରେ ହିଁ ତାଙ୍କର ସତ୍ୟାଗ୍ରହ ଜନ୍ମ ନେଇ ନିର୍ଦ୍ଦିଷ୍ଟ ରୂପରେଖ ନେଇଥିଲା । ନୂତନ ପନ୍ଥାରେ ଛ'ବର୍ଷ ଧରି ପ୍ରୟୋଗ ପରେ ଏହା ଏକ ପନ୍ଥା ଭାବରେ ଉଦ୍ଭବ ହୋଇଥିଲା । ଏହି ପନ୍ଥାଟି ଯେତିକି ଅଭିନବ ସେତିକି ଶକ୍ତିଶାଳୀ ଥିଲା କାରଣ ଏହା ମାଧ୍ୟମରେ ଭାରତବର୍ଷରୁ ବ୍ରିଟିଶ ଶାସନର ଯବନିକା ପଡ଼ିଥିଲା । ଛ'ଶହ ପୃଷ୍ଠା ସମ୍ବଳିତ ପ୍ରତ୍ୟେକଟି ଖଣ୍ଡରେ ତତ୍କାଳୀନ ସମ୍ବାଦପତ୍ର, ସରକାରୀ ନଥି ଓ ବ୍ୟକ୍ତିଗତ ଲେଖା ଓ ପତ୍ରର ପ୍ରମାଣ ସହ ସମସ୍ତ ବିଷୟଗୁଡ଼ିକର ଯଥାର୍ଥ ଅବତାରଣା କରାଯାଇଥିବା ଦେଖାଯାଏ ।

**ସତ୍ୟାଗ୍ରହ :**

'ସତ୍ୟାଗ୍ରହ'ର ଉତ୍ପତ୍ତି ଏକ କୌତୂହଳର ବିଷୟ ଯାହାକି ଜାନୁଆରି ୧୦, ୧୯୦୮ ମସିହାରେ ଲେଖାଥିବା ପତ୍ରରୁ ଜଣାପଡ଼େ । ଅହିଂସ କାର୍ଯ୍ୟକ୍ରମକୁ ବୁଝାଉଥିବା Passive resistance ଇଂରାଜୀ ଶବ୍ଦର ଏକ ସମାର୍ଥବୋଧକ ଗୁଜୁରାଟୀ ପ୍ରତିଶବ୍ଦ ପାଇଁ 'ଇଣ୍ଡିଆନ ଓପିନିଅନ୍' ପତ୍ରିକାରେ ଏକ ଚିଠି ପ୍ରକାଶ ପାଇଲା । ଉତ୍ତରରେ 'ସଦାଗ୍ରହ' ଶବ୍ଦଟି ଜଣେ ପାଠକ ଜଣାଇଲେ । କିନ୍ତୁ ଏହି ଶବ୍ଦର ଅର୍ଥକୁ ଯଥାର୍ଥ ନଭାବି ଏହାକୁ ପରିବର୍ତ୍ତନ କରି ଗାନ୍ଧୀ 'ସତ୍ୟାଗ୍ରହ' ବ୍ୟବହାର କଲେ । ସତ୍ୟାଗ୍ରହର ଅର୍ଥ ସାଧାରଣରେ କହିଲେ ସତ୍ୟ ଉପରେ ଗୁରୁତ୍ୱ ବା ଏକ ଯଥାର୍ଥ ଲକ୍ଷ୍ୟ ପାଇଁ ପ୍ରସ୍ତୁତ କାର୍ଯ୍ୟକ୍ରମ ।

ଏହି ରଚନାବଳୀ ଦ୍ୱୟରେ ଗାନ୍ଧୀ ସତ୍ୟାଗ୍ରହର ଭବିଷ୍ୟତ ବିଷୟରେ ତାଙ୍କର ଭାବନାକୁ ବ୍ୟକ୍ତ କରିଛନ୍ତି । ସତ୍ୟାଗ୍ରହକୁ ଏକ ଆତ୍ମ-ଶକ୍ତି ଭାବରେ ସେ ବ୍ୟାଖ୍ୟା କରିଛନ୍ତି । ଏହା ମନ୍ଦିରକୁ ଯିବା ଭଳି କୌଣସି ଔପଚାରିକତାକୁ ନବୁଝାଇ ବରଂ ସତ୍ୟ ଓ ଭଦ୍ରଶୂନ୍ୟତାକୁ ହିଁ ବୁଝାଏ । ଗୋଟିଏ ନ୍ୟାୟପୂର୍ଣ୍ଣ ଲକ୍ଷ୍ୟ ହାସଲ ପାଇଁ ଜଣେ ସତ୍ୟାଗ୍ରହୀ ଯେକୌଣସି ପରିଣାମ ବା କଷ୍ଟ ସହିବାକୁ ପ୍ରସ୍ତୁତ ହେବା ଦରକାର ।

ଆଇନ ଦୃଷ୍ଟିରେ ସମସ୍ତଙ୍କ ସମାନ ଭାବରେ ହେବା ପାଇଁ ଭାରତୀୟମାନେ ଗାନ୍ଧୀଙ୍କ ନେତୃତ୍ୱରେ ଦକ୍ଷିଣ ଆଫ୍ରିକାରେ ପ୍ରଥମେ ସତ୍ୟାଗ୍ରହ ଆରମ୍ଭ କରିଥିଲେ । ଟ୍ରାନ୍ସଭାଲ ଏସୀୟ ପଞ୍ଜୀକରଣ ନିୟମାନୁଯାୟୀ ପ୍ରତ୍ୟେକ ଭାରତୀୟ ଓ ଚୀନ୍

ଅଧିବାସୀଙ୍କ ନାମ ପଞ୍ଜୀକରଣ ପାଇଁ ସାକ୍ଷର ହେଲେ ବି, ପ୍ରମାଣପତ୍ରରେ ସମସ୍ତ ଅଙ୍ଗୁଳିର ଚିହ୍ନ ଦେବାକୁ ପଡୁଥିଲା । ଗାନ୍ଧୀଙ୍କ ମତ ଥିଲା ଯେ ଟିପଚିହ୍ନ ନେବା ଓ ସମସ୍ତ ଅଙ୍ଗୁଳି ଚିହ୍ନ ନେବା ଅପରାଧୀମାନଙ୍କ ପାଇଁ ସମୀଚୀନ ହୋଇପାରେ, ଯେହେତୁ ସେମାନେ ନିଜକୁ ଲୁଚାଇଥାନ୍ତି, କିନ୍ତୁ ପ୍ରତ୍ୟେକ ବ୍ୟକ୍ତିଙ୍କର ଦଶ ଅଙ୍ଗୁଳିର ଚିହ୍ନ ନେବା ଭାରତ ଓ ଏସିଆର ଲୋକମାନଙ୍କ ପାଇଁ ଏକ ଅସମ୍ମାନଜନକ ବ୍ୟାପାର ଅଟେ ।

ଅଙ୍ଗୁଳି ଚିହ୍ନ ନଦେବା ଭାରତୀୟମାନଙ୍କ ପାଇଁ ସମ୍ମାନଜନକ ଘଟଣା ଥିଲା ଓ ଅନ୍ୟାୟ ବ୍ୟବସ୍ଥାର ଉଚ୍ଛେଦ ପାଇଁ ସତ୍ୟାଗ୍ରହ କରିବାକୁ ତାଙ୍କର ଆହ୍ୱାନରେ ହଜାର ହଜାର ଭାରତୀୟ ଆଗଭର ହୋଇ ବନ୍ଦୀ ହୋଇଥିଲେ । ୧୯୨୧ ମସିହାରେ ଭାରତବର୍ଷରେ ବିଦେଶୀ କପଡ଼ା ବର୍ଜନ ପାଇଁ ହୋଇଥିବା ସତ୍ୟାଗ୍ରହରେ ବିଦେଶୀ ଲୁଗା ଯେପରି ଦାହ କରାଯାଇଥିଲା ତାର ପ୍ରଥମ ରୂପରେଖ ସତ୍ୟାଗ୍ରହ ମାଧ୍ୟମରେ ଦକ୍ଷିଣ ଆଫ୍ରିକାରେ ଆରମ୍ଭ ହୋଇଥିଲା । ଗାନ୍ଧୀଙ୍କ ନେତୃତ୍ୱରେ ଭାରତୀୟମାନେ ଦଶ ଅଙ୍ଗୁଳି ଚିହ୍ନ ବହନ କରିଥିବା ପଞ୍ଜୀକରଣ ପ୍ରମାଣପତ୍ରକୁ ପୋଡ଼ି ଆଇନର ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ଆଇନ ଦୃଷ୍ଟିରେ ଭାରତୀୟମାନଙ୍କୁ ସମାନ ବୋଲି ଗ୍ରହଣ କରୁନଥିବା ଟ୍ରାନ୍ସଭାଲ ପଞ୍ଜୀକରଣ ବ୍ୟବସ୍ଥା ବିରୁଦ୍ଧରେ ଏହା ଏକ ଉଲ୍ଲେଖନୀୟ ସତ୍ୟାଗ୍ରହ ଥିଲା ।

## ଜୀବନ୍ତ ନିୟମ

ଗାନ୍ଧୀ ସତ୍ୟାଗ୍ରହର ଆଦର୍ଶକୁ ନିଜ ଜୀବନରେ ପ୍ରୟୋଗ କରିଥିଲେ । ଯେତେବେଳେ କୌଣସି ଅନ୍ୟାୟ ବିରୁଦ୍ଧରେ ସେ ସତ୍ୟାଗ୍ରହ ପନ୍ଥାରେ ସଂଗ୍ରାମ କରୁଥିଲେ ସେତେବେଳେ ସତ୍ୟାଗ୍ରହକୁ ଏକ ଜୀବନ୍ତ ଆଦର୍ଶ ଭାବରେ ସେ ନେଉଥିଲେ । ସତ୍ୟାଗ୍ରହ ଆନ୍ଦୋଳନର ଏକ ମୁଖ୍ୟ ଲକ୍ଷଣ ହେଉଛି, ପ୍ରତିପକ୍ଷକୁ ସମସ୍ୟାଟିର ସମାଧାନ ସୂତ୍ର ବତାଇବା ଓ ପ୍ରତ୍ୟେକ ସ୍ତରରେ ଏକ ଆପୋଷ ମିଳାମିଶା ପାଇଁ ପ୍ରସ୍ତୁତ ହୋଇ ରହିବା । ସୁତରାଂ ଦକ୍ଷିଣ ଆଫ୍ରିକାରେ ଅଙ୍ଗୁଳି ଚିହ୍ନଜନିତ ଅସମ୍ମାନଜନକ ନିୟମ ବିରୁଦ୍ଧରେ ସେ ଅହିଂସ ଆନ୍ଦୋଳନ ଚଳାଇଥିଲେ ଓ ପ୍ରଧାନମନ୍ତ୍ରୀ ଜେନେରାଲ ସ୍ମଟସଙ୍କୁ ଏହାକୁ ବାଧ୍ୟତାମୂଳକ କରିବା ପରିବର୍ତ୍ତେ ଇଚ୍ଛାକୃତ କରିବାକୁ ପରାମର୍ଶ ଦେଇଥିଲେ । ଯେତେବେଳେ ସରକାର ତାଙ୍କର ସର୍ତ୍ତରେ ରାଜି ହୋଇ ସମସ୍ୟାର ସମାଧାନ କଲେ ସେତେବେଳେ ଗାନ୍ଧୀ ପ୍ରଥମେ ଯାଇ ନାମ ପଞ୍ଜୀକରଣ ପ୍ରମାଣପତ୍ରରେ ନିଜର ଦଶ ଅଙ୍ଗୁଳିର ଚିହ୍ନ ଦେଇଥିଲେ ।

ଗାନ୍ଧୀଙ୍କର ଏହି ବ୍ୟବହାରରେ ଅନ୍ୟମାନେ ଆଶ୍ଚର୍ଯ୍ୟ ହୋଇଥିଲେ ଯେହେତୁ ସେମାନେ ସତ୍ୟାଗ୍ରହର ମୂଳ ତାତ୍ପର୍ଯ୍ୟକୁ ଅନୁଭବ କରି ନଥିଲେ । ବିଶେଷକରି

ମିର ଆଲମ ଭାବିଲେ ଯେ ଏହି ଅଙ୍ଗ୍ଲୋ-ଚାଇନା ବିରୁଦ୍ଧରେ ସର୍ବଦା ସ୍ୱର ଉଠାଇଥିବା ଗାନ୍ଧୀ ଶେଷରେ ବିଶ୍ୱାସଘାତକତା କରିଛନ୍ତି । ଫଳରେ ସମାଧାନର ସୂତ୍ର ବୁଝାଇବାକୁ ଡକାଯାଇଥିବା ସଭାରେ ସେ ଗାନ୍ଧୀଙ୍କୁ ଶାରୀରିକ ଆଘାତ ଦେଇ-ଥିଲେ । ସତ୍ୟାଗ୍ରହ ଆନ୍ଦୋଳନର ଅଭିମୁଖ୍ୟ ଭିତରେ ଖୋଲା ମନୋଭାବ ଓ ଶିକ୍ଷାକୁ ପ୍ରାଧାନ୍ୟ ଦିଆଯାଇଥିବାରୁ "ସମାଧାନର ଆଲୋଚନା" ଶୀର୍ଷକରେ ଫେବୃଆରି ୧୫, ୧୯୦୮ ସଂଖ୍ୟା 'ଇଣ୍ଡିଆନ ଓପିନିଅନ' ପତ୍ରିକାରେ ସତ୍ୟାଗ୍ରହ ପ୍ରସଙ୍ଗରେ ସେ ବିସ୍ତୃତ ଆଲୋଚନା କରିଥିଲେ । ଏହି ଲେଖା ଯେକୌଣସି ସତ୍ୟାଗ୍ରହୀଙ୍କ ପାଇଁ ଆତ୍ମସମୀକ୍ଷା ଦିଗରେ ଯଥେଷ୍ଟ ପ୍ରେରଣା ଦେଇଥିଲା ।

ପ୍ରଥମେ ଭୟଶୂନ୍ୟ ହେବାକୁ ସତ୍ୟାଗ୍ରହରେ ପରାମର୍ଶ ଦିଆଯାଇଥାଏ । ଏହି ଭୟ ଯୋଗୁଁ ଅନେକ ବ୍ୟକ୍ତି ନାନା ଦିଗରୁ ବଞ୍ଚିତ ହୋଇ ରହିଥାନ୍ତି । ସମତା ସ୍ଥାପନ ପାଇଁ କାର୍ଯ୍ୟ କରିବା ଜଣଙ୍କର କର୍ତ୍ତବ୍ୟ ଓ ଅଧିକାର ଅଟେ । କାରଣ ପରସ୍ପରକୁ ସମାନ ବୋଲି ନ ଭାବିବା ଦ୍ୱାରା ପରସ୍ପର ଭିତରେ ପ୍ରେମ ଓ ବନ୍ଧୁତା ପ୍ରତିଷ୍ଠା ସମ୍ଭବ ହୁଏନାହିଁ । ଯେତେବେଳେ ସତ୍ୟାଗ୍ରହର ପ୍ରୟୋଗ ପାଇଁ ଆବଶ୍ୟକ ସାହସ ଓ ସଙ୍କଳ୍ପ ପ୍ରକାଶ ପାଏ ନାହିଁ ସେ କ୍ଷେତ୍ରରେ ଅନ୍ୟାୟ ଓ ଅନ୍ୟର ଆଧିପତ୍ୟକୁ ସହିବାକୁ ହୋଇଥାଏ । କିନ୍ତୁ ସତ୍ୟାଗ୍ରହ କରିପାରୁନଥିବା ବ୍ୟକ୍ତି ବରଂ ହିଂସାର ପନ୍ଥା ଗ୍ରହଣ କରିବା ବାଞ୍ଛନୀୟ । ଭୟାକ୍ରାନ୍ତ ହୋଇ ଅନ୍ୟାୟକୁ ସହ୍ୟ କରିବା ଅପେକ୍ଷା ବରଂ ହିଂସାତ୍ମକ ପନ୍ଥାରେ ଅନ୍ୟାୟର ପ୍ରତିରୋଧ କରିବାକୁ ଗାନ୍ଧୀ କହିଛନ୍ତି । ୧୯୪୬ରେ ସେହି ମତକୁ ସେ ପ୍ରକାଶ କରିଥିଲେ, "ହିଂସା ଅପେକ୍ଷା ଅହିଂସା ଶ୍ରେୟସ୍କର; କିନ୍ତୁ ଭୟ ଅପେକ୍ଷା ହିଂସା ଶ୍ରେୟସ୍କର ।"

## ଉଦାର ଦୃଷ୍ଟିଭଙ୍ଗୀ :

ଗାନ୍ଧୀ ସର୍ବଦା ଉଦାର ଓ ମାନବିକ ଦୃଷ୍ଟିଭଙ୍ଗୀ ପୋଷଣ କରୁଥିଲେ । ତାଙ୍କ ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗ ଦେଇନଥିବା ବନ୍ଧୁମାନଙ୍କ ଉଦ୍ଦେଶ୍ୟରେ ଫେବୃଆରି ୮, ୧୯୦୮ରେ ସେ ଲେଖିଥିଲେ ଯେ ସେମାନଙ୍କ ପ୍ରତି ତାଙ୍କର କୌଣସି ମନ୍ଦ ମନୋଭାବ ନାହିଁ । କିନ୍ତୁ ସେମାନଙ୍କ ପ୍ରତି ଥିବା ତାଙ୍କର ସ୍ନେହ ଓ ଶ୍ରଦ୍ଧା ଯୋଗୁଁ ସେମାନଙ୍କ ଅସହଯୋଗରେ ତାଙ୍କୁ ଦୁଃଖ ଲାଗିଛି । ଅଧିକାଂଶ ଭାରତୀୟ-ମାନେ ଗୋଟିଏ ଅସମ୍ମାନଜନକ ନିୟମର ବିରୋଧ କରିବାକୁ ଯାଇ ନାନା ପ୍ରତିବନ୍ଧକର ସମ୍ମୁଖୀନ ହେବା ସହିତ ଆର୍ଥିକ କ୍ଷତି ସହ୍ୟ କରୁଥିବା ବେଳେ କେତେକ ଭାରତୀୟ ବନ୍ଧୁ ଆନ୍ଦୋଳନରେ ଯୋଗ ନଦେଇ ଅର୍ଥ ଉପାର୍ଜନରେ ବ୍ୟସ୍ତ ରହିଥିଲେ । ସେମାନେ ସେହି ଅନ୍ୟାୟ ଓ ଅସମ୍ମାନର ଶିକାର ହେଉଥିଲେ ମଧ୍ୟ ନିଜ ଦେଶର ଲୋକମାନଙ୍କ ସହିତ ସାମିଲ ହୋଇ ନଥିଲେ । ସୁତରାଂ

ଆନ୍ଦୋଳନରେ ମିଶିନଥିବା ବ୍ୟକ୍ତିମାନେ ନିର୍ମାଣ ହେବାକୁ ଯାଉଥିବା ସଭ୍ୟତା ପାଇଁ ଅନ୍ୟମାନଙ୍କ ତୁଳନାରେ ଖୁସିରେ ଅଧିକ ଶ୍ରଦ୍ଧା ଦେବା ଆବଶ୍ୟକ । ଯେତେବେଳେ ଆନ୍ଦୋଳନରେ ଯୋଗ ଦେଇନଥିବା ପଣ୍ଡିତ ରାମସୁନ୍ଦର ନାମକ ଜଣେ ବ୍ୟକ୍ତିଙ୍କ ବିଷୟରେ ଗାନ୍ଧୀଙ୍କୁ ପଚରାଗଲା ସେ ଟିକିଏ କଠୋର ମନ୍ତବ୍ୟ ଦେଇଥିଲେ । ପଣ୍ଡିତ ରାମସୁନ୍ଦରଙ୍କ ପ୍ରତି ତାଙ୍କର ସ୍ନେହ ଥିଲେ ବି ଯୁବକମାନଙ୍କ ପାଖରେ ତାଙ୍କର ତ୍ରୁଟି ଦେଖାଇ ଅନ୍ୟମାନଙ୍କୁ ସତର୍କ କରାଇବାକୁ ସେ ଏମିତ କହିଥିଲେ ।

ଏହି ସମୟରେ ଅହିଂସା ପ୍ରସଙ୍ଗ ଉପରେ ଗାନ୍ଧୀ ଟଲ୍‌ଷ୍ଟୟଙ୍କ ସହିତ ପତ୍ରାଳାପ କରିଥିଲେ । ଗାନ୍ଧୀ ତାଙ୍କୁ ପ୍ରଥମ ପତ୍ର ଅକ୍ଟୋବର ୧, ୧୯୦୯ରେ ଲେଖିଥିଲେ । ସ୍ୱାମୀ ଶଙ୍କରାନନ୍ଦଙ୍କ ଇସଲାମ ଧର୍ମ ବିରୁଦ୍ଧରେ ବକ୍ତବ୍ୟ ପାଇଁ ଗାନ୍ଧୀ ତୀବ୍ର ପ୍ରତିକ୍ରିୟା ପ୍ରକାଶ କରିଥିଲେ । ସେ ସ୍ୱାମୀ ଶଙ୍କରାନନ୍ଦଙ୍କୁ ପତ୍ର ଲେଖିଥିଲେ ଓ ପତ୍ରର ଶେଷଧାଡ଼ି ଦୁଇଟି ଥିଲା, "ଆପଣଙ୍କର ଜ୍ଞାନ ପାଇଁ ଆପଣଙ୍କ ପ୍ରତି ମୋର ସମ୍ମାନ ଅଛି । କିନ୍ତୁ ଆପଣଙ୍କର ବ୍ୟବହାର ମୋତେ ଆଘାତ ଦେଇଛି ।"

ଗାନ୍ଧୀ ଯେଉଁ ଆଗାମୀ ସମାଜ କଥା ଚିନ୍ତା କରୁଥିଲେ ଯେଉଁଠି ପ୍ରତ୍ୟେକ ବ୍ୟକ୍ତି ଅନ୍ୟମାନଙ୍କ ସହ ସମାନ ଓ ସ୍ୱାଧୀନ ହୋଇ ବଞ୍ଚିବ, ସେହି ଆଦର୍ଶକୁ ନେଇ ନିଜର ପିଲାମାନଙ୍କୁ ଶିକ୍ଷାଦାନ କରୁଥିଲେ । ସେ ନିଜର ପତ୍ନୀ ଓ ପିଲାମାନଙ୍କୁ ସତ୍ୟାଗ୍ରହରେ ଅଂଶଗ୍ରହଣ କରିବାକୁ ତାଲିମ ଦେଇଥିଲେ । ନିଜ ବଡ଼ପୁଅ ବିଷୟରେ ସେ କହିଥିଲେ, "ହରିଲାଲ ନିଜ ଦେଶ ପାଇଁ କାରାବରଣ କରିବାକୁ ଶିକ୍ଷା ପାଇଥିଲେ ।"

## ଗାନ୍ଧୀ ଯେଉଁ ମଣିଷ ଥିଲେ

### ଗାନ୍ଧୀ ରଚନାବଳୀର ଦଶମ ଖଣ୍ଡର ସମୀକ୍ଷା :

ସପ୍ରତି କ୍ଷମତା ରାଜନୀତିର ବିଟକ୍ଷଣକ ପ୍ରଭାବରୁ ପୃଥିବୀକୁ ରକ୍ଷା କରିବା ପାଇଁ ଆଧ୍ୟାତ୍ମିକତାର ପୁନରୁତ୍ଥାନ ଆବଶ୍ୟକ ବୋଲି କେତେକ ମତ ଦେଉଛନ୍ତି । ଆଧୁନିକ ସମୟକୁ ପ୍ରଭାବିତ କରିଥିବା ଗାନ୍ଧୀ ଜଣେ ରାଜନୀତିଜ୍ଞ ନା ଆଧ୍ୟାତ୍ମବାଦୀ ଥିଲେ ତାହା ଆଲୋଚନା କରିବା ଉଚିତ ମନେହୁଏ । ଯେଉଁମାନେ ତାଙ୍କୁ ମୁଖ୍ୟତଃ ଏକ କ୍ରାନ୍ତିକାରୀ ରାଜନୈତିକ ନେତା ଭାବରେ ଦେଖିଛନ୍ତି ସେମାନେ ତାଙ୍କର ଆଧ୍ୟାତ୍ମିକ ଅନୁରକ୍ତିକୁ ତାଙ୍କ ବାଲ୍ୟାବସ୍ଥାରେ ନିଜ ରକ୍ଷଣଶୀଳ ମା'ଙ୍କଠାରୁ ପାଇଥିବା ଧର୍ମୀୟ ଉପାସନା ଓ ଭାବନାର ଏକ ଅବଚେତନ ଅଭିବ୍ୟକ୍ତି ବୋଲି ଗ୍ରହଣ କରିଥାନ୍ତି । ଆଧୁନିକ ରାଜନୈତିକ ବିଚାରକୁ ତାଙ୍କର ଅବଦାନ ଯୋଗୁଁ ସେମାନେ

ଗାନ୍ଧୀଙ୍କର 'ଅସ୍ତ୍ର-ଶସ୍ତ୍ର' ପରି ବକ୍ତବ୍ୟକୁ ଏଡ଼ାଇ ଯାଇଥାନ୍ତି । ଡବ୍ଲ୍ୟୁ. ଜେ. ଓ୍ୱାଇବର୍ଗ ମେ ୩, ୧୯୧୦ରେ ଗାନ୍ଧୀଙ୍କୁ ପତ୍ର ଲେଖିଥିଲେ, ଆପଣଙ୍କର ରାଜନୈତିକ ପ୍ରଶ୍ନଗୁଡ଼ିକ ସହିତ ମୁଁ ଏକମତ ହେଲେ ବି ଆପଣ କୌଣସି ଲକ୍ଷ୍ୟସାଧନ ପାଇଁ ଯେଉଁ 'ଅସ୍ତ୍ର-ଶସ୍ତ୍ର' କଥା କହୁଛନ୍ତି ତାହାର ଶେଷୋକ୍ତ ପରିଣାମ ବିପଜ୍ଜନକ ହୋଇପାରେ ବୋଲି ମୁଁ ଭାବୁଛି । ଅବଶ୍ୟ ଆପଣ ଯଦି ଏହା କେବଳ ରାଜନୈତିକ ଉଦ୍ଦେଶ୍ୟ ସାଧନ ପାଇଁ କହୁଥାନ୍ତି ତେବେ ଏସବୁକୁ ଭିନ୍ନ ଭିନ୍ନ ପରିସ୍ଥିତିରେ ଭିନ୍ନ ଭିନ୍ନ ଲକ୍ଷ୍ୟ ହାସଲ ପାଇଁ କେବଳ ନୂଆ ନୂଆ କୌଶଳ ଭାବରେ ନିଆଯାଇ ପାରିବ ।"

ଅପର ପକ୍ଷରେ ସେ ଜଣେ ରାଜନୀତିଜ୍ଞ ନୁହନ୍ତି ବୋଲି ଗାନ୍ଧୀ ନିଜେ କହିଛନ୍ତି । ସେ ମୁଖ୍ୟତଃ ଜଣେ ଧର୍ମପ୍ରାଣ ଓ ସମାଜସଂସ୍କାରକ ବ୍ୟକ୍ତି । କିନ୍ତୁ ଯେତେବେଳେ ତାଙ୍କ ସମ୍ମୁଖକୁ ରାଜନୈତିକ ସମସ୍ୟା ଆସିଛି ସେ ଅନିଚ୍ଛାକୃତ ଭାବେ ସେ କ୍ଷେତ୍ରକୁ ଟାଣିହୋଇ ଯାଇଛନ୍ତି । ଧର୍ମ ବା ସମାଜସଂସ୍କାର ବ୍ୟତୀତ ରାଜନୀତି ତାଙ୍କ ପାଇଁ ମହତ୍ତ୍ୱପୂର୍ଣ୍ଣ ନୁହେଁ । କିନ୍ତୁ ବାସ୍ତବପକ୍ଷେ ଗାନ୍ଧୀଙ୍କର ଧର୍ମ ଭାବନା କ'ଣ ଥିଲା ?

## ଗାନ୍ଧୀଙ୍କର ଧର୍ମ :

ରେଭରେଣ୍ଡ ଜେ. ଜେ. ଡୋକ ଦକ୍ଷିଣ ଆଫ୍ରିକାରେ ଗାନ୍ଧୀଙ୍କର ଅତି ନିକଟତମ ସହଯୋଗୀ ଥିଲେ ଓ ୧୯୦୯ ମସିହାରେ ଗାନ୍ଧୀଙ୍କର ଜୀବନୀ ଲେଖିଥିଲେ । ସେ ବର୍ଣ୍ଣନା କରିଛନ୍ତି ଯେ ତାଙ୍କ ଛାତ୍ରାବସ୍ଥାରେ କ୍ଷଣକାଳ ପାଇଁ ଗାନ୍ଧୀ ନିରୀଶ୍ୱରବାଦୀ ଥିଲେ । ପ୍ରତିମା ପୂଜା ଜନିତ ହିନ୍ଦୁ ଧର୍ମ ଓ ନିରୀଶ୍ୱରବାଦ ବାହାରେ ଅନ୍ୟ କିଛି ସେ ସେତେବେଳେ ଜାଣିନଥିଲେ । ଦକ୍ଷିଣ ଆଫ୍ରିକାରେ ତାଙ୍କର ବୟସ ବୃଦ୍ଧି ସହିତ ତାଙ୍କର ଧର୍ମ ଭାବନା ବିଷୟରେ ଡୋକ ଲେଖିଛନ୍ତି, "ଗାନ୍ଧୀଙ୍କର ଧର୍ମଭାବନା ଓ ଧର୍ମ ଜଗତରେ ତାଙ୍କର ସ୍ଥାନ ନେଇ ଏଠାରେ ବହୁତ ଆଲୋଚନା ହୋଇଛି । ଅଳ୍ପଦିନ ତଳେ ସେ ଜଣେ ବୌଦ୍ଧ ବୋଲି ମୋତେ କୁହାଯାଇଥିଲା । କେତେଦିନ ତଳେ ଗୋଟିଏ ସମ୍ବାଦପତ୍ରରେ ସେ ଖ୍ରୀଷ୍ଟିଆନ୍ ମୁସଲମାନ ଧର୍ମର ଏକ ଅସାଧାରଣ ସମନ୍ୱୟ ବୋଲି ଖବର ପ୍ରକାଶ ପାଇଥିଲା । କିନ୍ତୁ ତାଙ୍କୁ କୌଣସି ଧର୍ମର ଅବଧି ଭିତରେ ରଖିଥିବା ସମ୍ଭବ କି ? ତାଙ୍କର ମତ ଖ୍ରୀଷ୍ଟିଆନ ଧର୍ମର ବିଶ୍ୱର ସହିତ ଏତେ ମେଳ ଖାଏ ଯେ ତାଙ୍କୁ ଜଣେ ହିନ୍ଦୁ କହିବା ସମୀଚୀନ ହୁଏନାହିଁ । ଅପର ପକ୍ଷରେ ସେ ହିନ୍ଦୁ ଜୀବନ ମାର୍ଗରେ ଏପରି ଲିପ୍ତ ଯେ ତାଙ୍କୁ ଖ୍ରୀଷ୍ଟିଆନ କହିହେବ ନାହିଁ ।"

ଉପସଂହାରରେ ରେଭରେଣ୍ଡ ଡୋକ ମତ ପୋଷଣ କରିଛନ୍ତି ଯେ ଗାନ୍ଧୀଙ୍କର ଆନ୍ତରିକତା ଏତେ ବ୍ୟାପକ, ହୃଦୟ ଏପରି ଉଦାର ଥିଲା ଯେ ତାଙ୍କୁ କୌଣସି ନିର୍ଦ୍ଦିଷ୍ଟ ଧର୍ମ ସମ୍ପ୍ରଦାୟର ପରିଧି ଭିତରେ ସୀମାବଦ୍ଧ କରିହେବ ନାହିଁ । କେବଳ ଧର୍ମଗତ ଭିନ୍ନତା ଦୃଷ୍ଟିରୁ ନୁହେଁ, ଏପରିକି ଧର୍ମ ଓ ରାଜନୀତି ଏବଂ ଅର୍ଥନୀତି ଓ ନୈତିକତା ଭିତରେ ଥିବା ପାର୍ଥକ୍ୟ ମଧ୍ୟ ଗାନ୍ଧୀଙ୍କ ପ୍ରତି ପ୍ରଯୁକ୍ତ ହୋଇପାରେ ନାହିଁ । ସେ ଥିଲେ ମୁଖ୍ୟତଃ ଜଣେ ମାନବବାଦୀ । ତାଙ୍କ ରଚନାବଳୀର ପୃଷ୍ଠାଗୁଡ଼ିକରୁ ବ୍ୟକ୍ତି ଓ ଘଟଣା ପ୍ରବାହକୁ ସେ କପରି ନିରପେକ୍ଷ ଭାବରେ ଗ୍ରହଣ କରିଛନ୍ତି ଜଣାପଡ଼େ । ସେ ସମ୍ପୂର୍ଣ୍ଣ ରାଜନୀତିଜ୍ଞ ନଥିଲେ ବା ନିରବଚ୍ଛିନ୍ନ ଭାବରେ ଧର୍ମପ୍ରାଣ ବ୍ୟକ୍ତି ମଧ୍ୟ ନଥିଲେ । ସେ ଉଭୟ କ୍ଷେତ୍ରକୁ ଜୀବନରେ ଗ୍ରହଣ କରିଥିଲେ ଓ ଉଭୟଠାରୁ ବହୁ ଉଚ୍ଚରେ ଥିଲେ । ଦକ୍ଷିଣ ଆଫ୍ରିକାରେ ତାଙ୍କ କେନ୍ଦ୍ରର କାର୍ଯ୍ୟକ୍ରମକୁ ଯେତେବେଳେ ଗୋଟିଏ ନାମ ଦେବା ଆବଶ୍ୟକ ହେଲା ସେହି ପ୍ରସଙ୍ଗରେ ଜାନୁଆରି, ୨୪, ୧୯୦୯ରେ ମଗନଲାଲଙ୍କୁ ପତ୍ର ଲେଖିଥିଲେ, "ଆମେ ଏପରି ଏକ ନାମ ବାଛିବା ଯାହା ସମସ୍ତଙ୍କ ପାଇଁ ଗ୍ରହଣୀୟ ହୋଇଥିବ ଓ ହିନ୍ଦୁ ବା ମୁସଲମାନ ନାମ ଏଥିରେ ନଥିବ ।" 'ମଠ' ବା 'ଆଶ୍ରମ' ଇତ୍ୟାଦି ଶବ୍ଦରୁ ହିନ୍ଦୁ ଲକ୍ଷଣାର୍ଥ ଆସୁଥିବାରୁ ସେସବୁ ବ୍ୟବହାର କରିବା ଠିକ ହେବନାହିଁ । ବରଂ ଇଂରାଜୀ ଶବ୍ଦ 'ଫୋନିକ୍ସ' ଶବ୍ଦଟିର ନିରପେକ୍ଷତା ଯୋଗୁଁ ଏହା ଗ୍ରହଣୀୟ ମନେହୁଏ । ଏହାର ଅର୍ଥ ହେଉଛି ତୁମେ ଯେଉଁ ଜାଗାରେ ରହୁଛ ସେ ସ୍ଥାନଟି ପ୍ରତି ତୁମର ଶ୍ରଦ୍ଧା ରହିବା ଅବଶ୍ୟକ ।

ଗାନ୍ଧୀ ରଚନାବଳୀର ଦଶମ ଖଣ୍ଡରେ ୪୮୯ଟି ଦଲିଲ ଓ ୧୨ଟି ପରିଶିଷ୍ଟ ରହିଛି । ଏହି ଖଣ୍ଡରେ ନଭେମ୍ବର ୧୯୦୯ରୁ ମାର୍ଚ୍ଚ ୧୯୧୧ ପର୍ଯ୍ୟନ୍ତ ସତର ମାସର ଘଟଣାବଳୀ ରହିଛି । ଏହି ସମୟ ଭିତରେ ସେ ଦକ୍ଷିଣ ଆଫ୍ରିକାରେ ପ୍ରଚଳିତ ଥିବା ବିଦେଶୀ ନାଗରିକଙ୍କ ପାଇଁ ପଞ୍ଜୀକରଣ ନିୟମ ଓ ସେଥିରେ ଏସିଆର ଲୋକମାନଙ୍କ ପାଇଁ ପ୍ରଚଳିତ ଅସମ୍ମାନଜନକ ବ୍ୟବସ୍ଥା ବିରୁଦ୍ଧରେ ଆଇନ୍ ଅମାନ୍ୟ ଆନ୍ଦୋଳନ ଦୃଢ଼ ଭାବରେ ସଙ୍ଗଠିତ କରିଥିଲେ । ଟ୍ରାନ୍ସଭାଲ ଗଭର୍ଣ୍ଣରଙ୍କ ବ୍ୟକ୍ତିଗତ ସଚିବ, ସେଠିକାର ସମ୍ବାଦପତ୍ରର ସମ୍ପାଦକ ଓ ଜେଲର ପରିଚାଳକଙ୍କୁ ସତ୍ୟାଗ୍ରହ ଆନ୍ଦୋଳନ ଓ ବର୍ଣ୍ଣ କୁସଂସ୍କାର ବିଷୟରେ ଲେଖିଥିବା ପତ୍ର ସବୁ ଏହି ଖଣ୍ଡରେ ଦେଖିବାକୁ ମିଳେ । ଏହାଛଡ଼ା ସେ ମଗନଲାଲ ଓ ଅନ୍ୟାନ୍ୟ ସହକର୍ମୀମାନଙ୍କୁ ବ୍ରହ୍ମଚର୍ଯ୍ୟ, ନୈତିକତା, ଶ୍ରମର ମର୍ଯ୍ୟାଦା, ସହନଶୀଳତା ଇତ୍ୟାଦି ବହୁ ଛୋଟବଡ଼ ବିଷୟରେ ଯେଉଁ ପତ୍ର ଲେଖିଥିଲେ, ତାହା ଏଥିରେ ରହିଛି ।

ଫେବୃଆରି ୧୪, ୧୯୧୧ରେ ସେ ମଗନଲାଲଙ୍କ ପାଖକୁ ଗୋଟିଏ ପତ୍ର ଶେଷରେ ଲେଖିଥିଲେ, "ମୁଁ ଆଜିକାଲି ସ୍ୟାଣ୍ଡେଲ ଜୋତା ପ୍ରସ୍ତୁତ କରିବାରେ ବ୍ୟସ୍ତ

ରହୁଛି । ମୋତେ ଏହି କାର୍ଯ୍ୟ ବି ବହୁତ ଭଲଲାଗୁଛି । ଏହା ଭିତରେ ମୁଁ ପନ୍ଦର ହଳ ତିଆରି କଲିଣି । ତୁମର ଯଦି ଦରକାର ଥାଏ ତେବେ ମୋତେ ଲେଖିବ ଓ ତୁମ ଗୋଡ଼ର ମାପ ପଠାଇବ । ଜୋତାର କେଉଁ ଜାଗାରେ ଚମଡ଼ା ପଟି ଲଗାଇଲେ ତୁମକୁ ଭଲଲାଗିବ ମଧ୍ୟ ଜଣାଇବ ।"

ଏହାପରେ ଚାରି ଦକ୍ଷିଣ ଅଫ୍ରିକାର ଅଫିସିଆଲ ଟ୍ରାଫିକ୍ ବୁକ୍ ନମ୍ବର ୧ରେ ରେଲୱେ ନିୟମାବଳୀ ଭିତରେ ଥିବା ଏକ ଅସଙ୍ଗତି ସମ୍ପର୍କରେ ସେ ରେଲୱେ ମ୍ୟାନେଜରଙ୍କୁ ଲେଖି ତାଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ଏହା ସହିତ ଆଫ୍ରିକାର କେନ୍ଦ୍ର ସରକାରଙ୍କ ମନ୍ତ୍ରୀ ପରିଷଦଙ୍କୁ ପଠାଇଥିବା ଅଭିଯୋଗ ଓ ଟେଲିଗ୍ରାମ ଇତ୍ୟାଦିରେ ସେ ଯେଉଁ ସତ୍ୟାଗ୍ରହ ଆନ୍ଦୋଳନ କରିବାକୁ ଚାହୁଁଛନ୍ତି ସେ ସମ୍ପର୍କରେ ସରକାର ଚାହିଁଲେ ସେମାନେ ଆଲୋଚନା କରିବାକୁ ପ୍ରସ୍ତୁତ ବୋଲି ଜଣାଇଥିଲେ । ଏହି ଉଭୟ ପତ୍ର ମଝିରେ ସେ ନିଜ ସମୟ ଦେଇ ଜଣେ ରୋଗୀଙ୍କ ସମ୍ପର୍କରେ ଏହି ପରାମର୍ଶ ଦେଇ ପତ୍ର ଲେଖିଥିଲେ, "ସେ ପରିବା ଓ ଲୁଣ ଛାଡ଼ି-ଦେବା ଉଚିତ । ସେ କେବଳ ଗହମ ତିଆରି ଜିନିଷ ଓ ଫଳ ଖାଇବା ଦରକାର । ଯଦି ଚାହାନ୍ତି ତେବେ ଲୁଣ ନମିଶାଇ ଭାତ ଓ ସାମାନ୍ୟ ଘିଅ ଖାଇ ପାରନ୍ତି । ଲୁଣ ଗୋଟିଏ ଶକ୍ତିଶାଳୀ ରାସାୟନିକ ଜିନିଷ । ଏଥିରୁ ସାମାନ୍ୟ ଟିକିଏ କେଉଁଥିରେ ମିଶିବାଦ୍ୱାରା ଖାଦ୍ୟର ଗୁଣ ଓ ସ୍ୱାଦ ପରିବର୍ତ୍ତନ ହୋଇଯାଏ । ଏହାର ପରିଣାମ ରକ୍ତକୁ ପତଳା କରିଦିଏ । ମୁଁ ଯେତେଦୂର ଜାଣୁଛି ଲୁଣର ତତ୍‌କ୍ଷଣାତ୍ ପ୍ରଭାବ ଓ ବିଶେଷକରି କୁପ୍ରଭାବ ରୋଗୀ ଉପରେ ପଡ଼ିଥାଏ ।" ବାସ୍ତବରେ ଗାନ୍ଧୀ ଗୋଟିଏ ବିଷୟରେ ନିଜକୁ ଆବଦ୍ଧ ନରଖି ବହୁ ବିଷୟରେ ନିଜର ଅଭିଜ୍ଞତା ଆଣିପାରିଥିଲେ । ସେ ରାଷ୍ଟ୍ରନାୟକଙ୍କ ହେବା ସହିତ ଜଣେ ସେବକ ମଧ୍ୟ ଆବଶ୍ୟକ ସମୟରେ ହୋଇ-ପାରୁଥିଲେ । ଏହାହିଁ ତାଙ୍କ ବ୍ୟକ୍ତିତ୍ୱର ଉଲ୍ଲେଖନୀୟ ବିଷୟ ।

**ଆର୍ଥିକ ଦୁରବସ୍ଥା :**

ଗାନ୍ଧୀ ଜୀବନରେ ବହୁ କ୍ଷେତ୍ରକୁ ସ୍ପର୍ଶ କରିଥିଲେ । ଅବଶ୍ୟ ତାଙ୍କର ଅବସର ବା ଆର୍ଥିକ ସ୍ୱଚ୍ଛଳତା ଥିବାରୁ ଯେ ଏହା କରିଥିଲେ ତାହା ନୁହଁ ବରଂ ସେ ବହୁ ପ୍ରତିବନ୍ଧକ ଭିତରେ ରହିଥିଲେ । ଦକ୍ଷିଣ ଆଫ୍ରିକାରେ ଫୋନିକ୍ସ ଅନୁଷ୍ଠାନ ଅନେକ ଆର୍ଥିକ ଦୁରବସ୍ଥା ଦେଇ ଚାଲୁଥାଏ । ଡିସେମ୍ବର ୨୪, ୧୯୦୯ରେ ସେ 'ଇଣ୍ଡିଆନ ଓପିନିଅନ୍' ପତ୍ରିକାର ସମ୍ପାଦକ ଶ୍ରୀ ୱେଷ୍ଟଙ୍କୁ ଏହି ପତ୍ର ଲେଖିଥିଲେ, "ଯଦି ପାରିଶ୍ରମିକ ଦେବା ପର୍ଯ୍ୟାପ୍ତ ହେଉନାହିଁ, ତେବେ ଟ୍ରଷ୍ଟର ପରିଚାଳକ ଭାବରେ ମୋର ଏଥିପାଇଁ ବ୍ୟବସ୍ଥା କରିବା ଦରକାର । ଏ ସମସ୍ତ ଜମି ପାଇଁ ଆମକୁ ମଧ୍ୟ ପାଉଣା ଦେବାକୁ ହେବ । ଏହା ହେଉଛି ଏହାର ଆଇନଗତ ଦିଗ । ଏହାର

ନୈତିକ ଦିଗଟି ହେଉଛି—ଦୁଇଟି ଲକ୍ଷ୍ୟକୁ ଏକାଠି ମିଶାଇ ହେବନାହିଁ । ମୁଁ ଅର୍ଥ ଯୋଗାଡ଼ କରିପାରିନାହିଁ । ଆମେ ପ୍ରେସ୍‌କୁ ବନ୍ଦ କରିଦେବା ଓ ଅନ୍ୟ ଚନ୍ଦା ବାହାର କରିବା । ଯଦି ଆମେ ସଫଳ ହୋଇପାରିବା ନାହିଁ ଓ ଆମେ ଏହି ଭୂଇଁରେ ମୃତ୍ୟୁବରଣ କରିବାକୁ ଚାହିଁବା ନାହିଁ ତେବେ ଆମେ ଏଠାରୁ ଚାଲିଯିବା ବା ଯେଉଁମାନେ ଏଠାରେ ଅସନ୍ତୁଷ୍ଟ ହୋଇ ରହିବେ ସେମାନେ ଏଠାରୁ ଚାଲିଯିବା ଦରକାର ।'' ଗାନ୍ଧୀ କେତେ ପ୍ରତିବନ୍ଧକ ଦେଇ କାର୍ଯ୍ୟ କରୁଥିଲେ ତାହା ଏଥିରୁ ଜଣାପଡ଼େ । ତେଣୁ ପତ୍ରିକାଟିର କଳେବରକୁ ଶ୍ରେଷ୍ଠ କରିଦେବାକୁ ଶ୍ରୀ ଓ୍ୱେଷ୍ଟଙ୍କୁ ପରାମର୍ଶ ଦେଇଥିଲେ । "ସବୁ ବିଷୟକୁ ସଂକ୍ଷିପ୍ତ କରି ପ୍ରକାଶ କରିବା ଦରକାର । ଗୋଟିଏ ବିଷୟକୁ କପରି ସଂକ୍ଷିପ୍ତ କରିହେବ ସେହି କଳା ହାସଲ ଦିଗରେ ଉଦ୍ୟମ କରିବା ଆବଶ୍ୟକ ।''

ଇଣ୍ଡିଆନ ଓପିନିଅନ ପତ୍ରିକାର କଳେବରକୁ କ୍ଷୁଦ୍ର କରାଯାଇଥିଲେ ବି ସତ୍ୟାଗ୍ରହୀମାନଙ୍କର କାର୍ଯ୍ୟ ଓ ତ୍ୟାଗକୁ ପ୍ରକାଶ କରିବାରେ ଏହା କୁଣ୍ଠା ପ୍ରକାଶ କରିନଥିଲା । ବାରିଷ୍ଟର ରୋୟାପ୍‌ପାନଙ୍କ ବିଷୟରେ ଗାନ୍ଧୀ ଲେଖିଥିଲେ, "ସମସ୍ତେ ସ୍ୱୀକାର କରିବେ ଯେ ରୋୟାପ୍‌ପାନ ଓ ତାଙ୍କର ସହଯୋଗୀଗଣ ଅତି ଉଲ୍ଲେଖନୀୟ କାର୍ଯ୍ୟ କରିଛନ୍ତି । ଶ୍ରୀ ଯୋଶେଫ ରୋୟାପପନ ତାଙ୍କ ଶିକ୍ଷାର ଉପଯୁକ୍ତ ବିନିଯୋଗ କରିଛନ୍ତି । ଜେଲ୍ ଭିତରେ ସେ ଯେପରି ରହନ୍ତି ତାହା ଜଣେ ସତ୍ୟାଗ୍ରହୀ ପାଇଁ ଅତ୍ୟନ୍ତ ସମ୍ମାନଜନକ ମନେହୁଏ । ତାଙ୍କର ସରଳତା ପ୍ରକୃତରେ ପ୍ରଶଂସନୀୟ । ସେଠାରେ ଥିବା ଚୁକ୍ତିବଦ୍ଧ ତାମିଲ ଶ୍ରମିକମାନଙ୍କର ସାହସିକତା ଓ ଆତ୍ମତ୍ୟାଗ ଗାନ୍ଧୀଙ୍କୁ ବହୁତ ପ୍ରଭାବିତ କରିଥିଲା ।

ଗାନ୍ଧୀ କହିଛନ୍ତି, "ମୁଁ ପ୍ରଥମେ ଯେତେବେଳେ ଦକ୍ଷିଣ ଆଫ୍ରିକାରେ ପାଦ ଦେଲି ତାମିଲମାନଙ୍କର ବ୍ୟବହାରରେ ମୁଁ ସେମାନଙ୍କର ନିକଟତର ହୋଇଗଲି । ମୁଁ ସେତେବେଳେ କଳ୍ପନା କରିପାରିନଥିଲି ଯେ ଜାତୀୟ କାର୍ଯ୍ୟ ପାଇଁ ସେମାନେ ଏପରି ଦୃଢ଼ ହୋଇ ଯେକୌଣସି ପ୍ରକାର କଷ୍ଟ ସ୍ୱୀକାର କରିପାରିବେ । ତାମିଲ ସମାଜର ସଭାପତି ପଞ୍ଚାବନ ବର୍ଷ ବୟସ୍କ ଶ୍ରୀ ଚେଟିଆର ତୃତୀୟ ଥର ପାଇଁ ଓ ତାଙ୍କର ପୁଅ ସପ୍ତମ ଥର ପାଇଁ ଗିରଫ ହୋଇଥିଲେ । ତାଙ୍କ ଦେହର ପ୍ରତ୍ୟେକଟି ଅଣୁ ଆତ୍ମସମ୍ମାନ ଓ ମାତୃଭୂମିର ମର୍ଯ୍ୟାଦାରେ ଗଢ଼ି ଉଠିଥିଲା । ନିଜର ଆତ୍ମସମ୍ମାନ ଓ ଦେଶର ମର୍ଯ୍ୟାଦା ପାଇଁ ସେ ଆତ୍ମସମର୍ପଣ କରିବା ଅପେକ୍ଷା ମୃତ୍ୟୁବରଣ କରିବାକୁ ଶ୍ରେୟସ୍କର ମନେକରୁଥିଲେ । ଯୁବକ ବା ବୃଦ୍ଧ ଓ ସାନ ବା ବଡ଼ ନିର୍ବିଶେଷରେ ଭାରତୀୟମାନେ ଚେଟିଆରଙ୍କର ଉତ୍ସାହ ଓ ପ୍ରେରଣାରେ ପ୍ରଭାବିତ ହେବା ଉଚିତ ।'' ଭାରତକୁ ଫେରିବା ବାଟରେ ସମୁଦ୍ର ଯାତ୍ରାରେ ଅସୁସ୍ଥ ହୋଇ ମୃତ୍ୟୁବରଣ କରିଥିବା

ଶ୍ରମିକ ନାରାୟଣସ୍ୱାମୀଙ୍କ ସରଳ ଓ ନିଷ୍କପଟ ବ୍ୟବହାର ସମ୍ପର୍କରେ ମଧ୍ୟ ଲେଖି ଗାନ୍ଧୀ ତାଙ୍କୁ ଲୋକଲୋଚନକୁ ଆଣିବାକୁ ଉଦ୍ୟମ କରିଛନ୍ତି ।

ଗାନ୍ଧୀ ଫୋନିକ୍ସର ପ୍ରତିବେଶୀମାନଙ୍କଠାରୁ ଅଭିଯୋଗ ପତ୍ର ପାଇଲେ ଧୈର୍ଯ୍ୟର ସହ ସେସବୁ ଉତ୍ତର ଦେଉଥିଲେ । ଏକଦା ସେ ଲେଖିଥିଲେ, "ଆମ ଭିତରୁ କାର୍ଯ୍ୟ କରିବାରେ କେହି ଆନ୍ତରିକତା ପ୍ରଦର୍ଶନ କରୁନଥିଲେ, ଆମର ସମ୍ପତ୍ତି ନଷ୍ଟ କରୁଥିଲେ ବା ପରସ୍ପର ଭିତରେ ବିବାଦରେ ସମ୍ପୃକ୍ତ ହେଉଥିଲେ ଆମେ ନିରୁତ୍ସାହିତ ହେବା ଉଚିତ ନୁହେଁ । ଆମେ ବରଂ ଦ୍ୱିଗୁଣ ଉତ୍ସାହର ସହ କାର୍ଯ୍ୟ କଲେ ଆମେ ଅନ୍ୟକୁ ପ୍ରଭାବିତ କରିପାରିବା । ଆପଣ ମିଃ. ଷ୍ଟି.ଙ୍କ ସମ୍ପର୍କରେ ଯାହା ଲେଖିଛନ୍ତି ମୁଁ ଜାଣୁଛି ଓ ଏକଥା ମଧ୍ୟ ସ୍ୱୀକାର କରୁଛି ଯେ ଆପଣ ତାଙ୍କର ଦୁର୍ବଳତା ଭଲଭାବେ ଜାଣନ୍ତି । କିନ୍ତୁ ଏହା ସହିତ ମୁଁ କହିବାକୁ ଚାହେଁ ଯେ ତାଙ୍କର ଦୁର୍ବଳତା ସତ୍ତ୍ୱେ ସେ ଜଣେ ଉତ୍ତମ ବ୍ୟକ୍ତି । ଆପଣ ତାଙ୍କର ସୁଗୁଣଗୁଡ଼ିକ କେବଳ ଦେଖନ୍ତୁ···। ଆମେ ଜାଣୁ ଇନ୍ଦ୍ରଙ୍କ ଦେହରେ ଅନେକ ଦାଗ, ବଶିଷ୍ଠ ଜଣେ ବାରନାରୀଙ୍କର ପୁତ୍ର ଓ ସମୁଦ୍ର ହେଉଛି ଲୁଣିଆ···। ସୁତରାଂ କିଏ ତ୍ରୁଟିଶୂନ୍ୟ !"

## ସେ କାହିଁକ ତୃତୀୟ ଶ୍ରେଣୀରେ ଯାଉଥିଲେ :

ତାଙ୍କ ସହିତ କାର୍ଯ୍ୟ କରୁଥିବା ବ୍ୟକ୍ତିମାନଙ୍କ ଭିତରେ ବନ୍ଧୁତା, ତ୍ୟାଗ ଓ ସରଳତା ସୃଷ୍ଟି କରିବାରେ ଗାନ୍ଧୀ ସମର୍ଥ ହେଉଥିଲେ ଯେହେତୁ ସେ ନିଜେ ଏହି ଆଦର୍ଶଗୁଡ଼ିକ ନିଜ ଜୀବନରେ ରଖିଥିଲେ । କେପ୍‌ରେ ତୃତୀୟ ଶ୍ରେଣୀ ଡବାରେ ଯାଉଥିବା କାଫିରମାନେ କି ପ୍ରକାର ଅସୁବିଧାର ସମ୍ମୁଖୀନ ହେଉଛନ୍ତି ତାହା ପ୍ରତ୍ୟକ୍ଷ ଭାବରେ ଅନୁଭବ କରିବାକୁ ସେ ନିଜେ ତୃତୀୟ ଶ୍ରେଣୀ ଡବାରେ ଯାଉଥିଲେ । ନିର୍ବାଚନ କର ସମ୍ପର୍କରେ ନାଟାଲ୍‌ଠାରେ ଯେତେବେଳେ ସେ ଗିରଫ ହେଲେ, ସେ ଭାବିଥିଲେ ଯେ ଜଣେ ଗରିବ ଭାରତୀୟଭାବେ ବନ୍ଦୀବାଦ୍ୱାରା ସେ ନିଜ ଗୋଷ୍ଠୀର ସେବା ଭଲଭାବରେ କରିପାରିବେ ।

ଟଲଷ୍ଟୟ, ରସ୍କିନ୍, ଥୋରୋ, ଇମର୍ସନ ଓ ଭାରତୀୟ ଦର୍ଶନର ପ୍ରବକ୍ତାମାନଙ୍କୁ ଅନୁସରଣ କରିବାକୁ ପ୍ରୟାସ କରିଥିବା ବିଷୟ ଗାନ୍ଧୀ ଏକ ପୁସ୍ତକର ମୁଖବନ୍ଧରେ ଉଲ୍ଲେଖ କରିଛନ୍ତି । ଟଲଷ୍ଟୟଙ୍କୁ ଅନେକ ବର୍ଷ ଧରି ସେ ନିଜର ଗୁରୁ ବୋଲି ଭାବିଥିଲେ ଓ ତାଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ ପୂର୍ବକ ଫୋନିକ୍ସଠାରେ ଥିବା ତାଙ୍କ ଫାର୍ମକୁ ଟଲଷ୍ଟୟଙ୍କ ନାମରେ ନାମିତ କରିଥିଲେ । ଗାନ୍ଧୀ ରଚନାବଳୀର ଦଶମ ଖଣ୍ଡରେ ତାଙ୍କର ଟଲଷ୍ଟୟଙ୍କ ସହିତ ହୋଇଥିବା ଯୋଗାଯୋଗ ସମ୍ବନ୍ଧୀୟ ଚିଠିପତ୍ରଗୁଡ଼ିକ ସ୍ଥାନ ପାଇଛି । ଦୁଃଖର ବିଷୟ ଏହି ସମୟରେ ନଭେମ୍ବର ୨୦, ୧୯୧୦ ମସିହାରେ ଟଲଷ୍ଟୟଙ୍କର ବିୟୋଗ ହେଲା । ଗାନ୍ଧୀ ଟଲଷ୍ଟୟଙ୍କ ପ୍ରତି

ଶ୍ରଦ୍ଧାଞ୍ଜଳି ଅର୍ପଣ କରିବାକୁ ଯାଇ ଯାହା ଲେଖିଥିଲେ ତାହା ତାଙ୍କ ରଚନାବଳୀର ୩୨୭ ନମ୍ବର ଦଲିଲ ଭାବରେ ପ୍ରକାଶ ପାଇଛି । "ଟଲଷ୍ଟୟ ସମଗ୍ର ପୃଥିବୀରେ ସୁପରିଚିତ; ସେ ଜଣେ ଯୋଦ୍ଧା ଭାବରେ ଦଶଶତ ନୁହନ୍ତି ଯଦିବା ଏକଦା ଜଣେ କୁଶଳୀ ସୈନିକ ଭାବରେ ସେ ଖ୍ୟାତି ଅର୍ଜନ କରିଥିଲେ; ସେ ଜଣେ ସୁଲେଖକ ଭାବରେ ପରିଚିତ ନୁହନ୍ତି ଯଦିବା ଜଣେ ଲେଖକ ଭାବରେ ବହୁ ସମ୍ମାନର ସେ ଅଧିକାରୀ ହୋଇଛନ୍ତି; ଜଣେ ସମ୍ଭ୍ରାନ୍ତ ଭାବରେ ପରିଚିତ ନୁହନ୍ତି ଯଦିବା ଏକଦା ସେ ବହୁ ସମ୍ପତ୍ତିର ମାଲିକ ଥିଲେ । ବରଂ ଜଣେ ଉତ୍ତମ ମଣିଷ ଭାବରେ ସେ ସମସ୍ତଙ୍କ ପାଖରେ ପରିଚିତ ।" ଗାନ୍ଧୀ ଟଲଷ୍ଟୟଙ୍କର ଗୁଣ ବର୍ଣ୍ଣନା କଲାବେଳେ ତାଙ୍କୁ ସୈନିକ, ଲେଖକ ବା ସମ୍ଭ୍ରାନ୍ତ ଭାବରେ ବିଚାର ନକରି ଜଣେ ଉଚ୍ଚମାନର ମଣିଷ ଭାବରେ ଗ୍ରହଣ କରିଛନ୍ତି ଓ ମନୁଷ୍ୟତ୍ୱ ଉପରେ ଗୁରୁତ୍ୱ ଦେଇଛନ୍ତି । ଏହି ଅଭିବ୍ୟକ୍ତିରୁ ଗାନ୍ଧୀ ନିଜ ଜୀବନରେ ଜଣେ ଉତ୍ତମ ମଣିଷ ହେବାର ଅଭିଳାଷ ବ୍ୟକ୍ତ କରିଛନ୍ତି ।

ଅନ୍ୟମାନଙ୍କ ସହିତ ନିଜକୁ ସେ ସର୍ବଦା ସମାନ ବୋଲି ଗ୍ରହଣ କରିଛନ୍ତି । ରାଜନୈତିକ ବା ଅର୍ଥନୈତିକ ବିଭେଦଜନିତ ଭାବନାର ଊର୍ଦ୍ଧ୍ୱକୁ ଯାଇ ଏକ ନୈତିକ ଭୂମିରେ ସେ ନିଜକୁ ଅନ୍ୟମାନଙ୍କ ସହ ସାମିଲ କରିଛନ୍ତି । ଗାନ୍ଧୀଙ୍କର ଏହି ଦୃଷ୍ଟିଭଙ୍ଗୀ ତାଙ୍କର କ୍ଷୁଦ୍ର ପୁସ୍ତିକା 'ହିନ୍ଦ୍ ସ୍ୱରାଜ'ରେ ପ୍ରତିଫଳିତ ହୋଇଛି । ରଚନାବଳୀର ଦଶମ ଖଣ୍ଡରେ ଏହି ଲେଖାଟି ପ୍ରକାଶ ପାଇଛି କାରଣ ତାହା ସେହି ସମୟରେ 'ଇଣ୍ଡିଅନ୍ ଓପିନିଅନ'ରେ ପ୍ରକାଶ ପାଇଁ ଲେଖାଯାଇଥିଲା । ହିନ୍ଦ୍ ସ୍ୱରାଜରେ ବ୍ୟକ୍ତ ହୋଇଥିବା ଭାବନା ସହିତ ସଙ୍ଗତି ରକ୍ଷାକରି ସେ ପୁସ୍ତକର ଆରମ୍ଭରେ 'କୌଣସି ସ୍ୱତ୍ତ୍ୱାଧିକାରୀ ନାହିଁ' ବୋଲି ଲେଖିଥିଲେ । ସମସ୍ତ ଲେଖକ-ମାନେ ନିଜ ପୁସ୍ତକର ସ୍ୱତ୍ତ୍ୱାଧିକାର ନିଜ ମାଡ଼ଫତରେ ରଖି ନିଜ ଲେଖାରୁ ଅର୍ଥ ପାଇବାକୁ ଆଗ୍ରହୀ ହେଉଥିବାବେଳେ ଗାନ୍ଧୀ ନିଜ ଲେଖାର ସ୍ୱତ୍ତ୍ୱାଧିକାର ନରଖିବା ଆଶ୍ଚର୍ଯ୍ୟ ମନେହୋଇପାରେ । କିନ୍ତୁ ତାହାହିଁ ହେଉଛି ଗାନ୍ଧୀଙ୍କର ମହନୀୟତା, ଯେଉଁଥିପାଇଁ ଆମେ ତାଙ୍କୁ ମହାତ୍ମାର ସ୍ଥାନ ଦେଇଛେ । ଜୋହାନ୍ସବର୍ଗରେ ତାଙ୍କର ରାଜନୈତିକ ବିରୋଧୀମାନେ ବି ତାଙ୍କୁ ଜଣେ ଅତି ଭଦ୍ର, ସୁସଂସ୍କୃତ, ବିବେକୀ, ଶିକ୍ଷିତ ଓ ନିଜ ମତରେ ଜଣେ ଦୃଢ଼ମନା ବ୍ୟକ୍ତି ଭାବରେ ଗ୍ରହଣ କରିଥିଲେ ।

## ସ୍ୱାସ୍ଥ୍ୟ ଉପରେ ଗାନ୍ଧୀଙ୍କ ପରୀକ୍ଷଣ

### ଗାନ୍ଧୀ ରଚନାବଳୀର ଏକାଦଶ ଖଣ୍ଡର ସମୀକ୍ଷା :

'ସ୍ୱାସ୍ଥ୍ୟରକ୍ଷା ସମ୍ବନ୍ଧରେ ସାଧାରଣଜ୍ଞାନ' ଶିରୋନାମାରେ ଗାନ୍ଧୀ ତେରଟି ପ୍ରବନ୍ଧ ଲେଖିଥିଲେ ଓ ଗାନ୍ଧୀ ରଚନାବଳୀର ଏକାଦଶ ଖଣ୍ଡରେ ତାହା ସ୍ଥାନ

ପାଇଛୁ । ଏହି ଲେଖା ସମ୍ବନ୍ଧରେ ସେ ନିଜେ କହିଛନ୍ତି ଯେ ତାଙ୍କ ଲେଖା ମଧ୍ୟରେ ସ୍ୱାସ୍ଥ୍ୟରକ୍ଷା ସଂକ୍ରାନ୍ତୀୟ ଏହି ଲେଖା ବେଶ୍ ଜନପ୍ରିୟ ହୋଇଛି । ସେହି ଲେଖାଗୁଡ଼ିକ ଭାରତୀୟ ଓ ୟୁରୋପୀୟ ଭାଷାମାନଙ୍କରେ ଅନୁବାଦ ମଧ୍ୟ ହୋଇଛି । ଚିକିତ୍ସକ-ମାନଙ୍କର ଚିରାଚରିତ ପନ୍ଥାଠାରୁ ଭିନ୍ନ ଏକ ଦୃଷ୍ଟିକୋଣରୁ ସେ ସ୍ୱାସ୍ଥ୍ୟ ସମସ୍ୟାକୁ ଦେଖିଥିବାରୁ ତାଙ୍କ ଲେଖା ଲୋକପ୍ରିୟତା ହାସଲ କରିଥିବା ବିଷୟ ସେ ଉଲ୍ଲେଖ କରିଛନ୍ତି ।

ଗାନ୍ଧୀଙ୍କ ମତରେ ରୋଗରେ ପଡ଼ି ମରିବା ଲୋକଙ୍କଠାରୁ ଔଷଧ ସେବନ କରି ମରିବା ଲୋକଙ୍କର ସଂଖ୍ୟା ବେଶି ହେବ । ସୁତରାଂ ଭଲ ସ୍ୱାସ୍ଥ୍ୟ ପାଇଁ ସେ ମାଟି, ପାଣି, ପବନ, ସୂର୍ଯ୍ୟାଲୋକ ଓ ମୁକ୍ତ ପରିବେଶର ବିନିଯୋଗ ଉପରେ ଗୁରୁତ୍ୱ ଦେଇଛନ୍ତି । ପ୍ରକୃତିର ଏହି ଉପାଦାନଗୁଡ଼ିକୁ ନେଇ ସ୍ୱାସ୍ଥ୍ୟ ଉପରେ ବିଭିନ୍ନ ପରୀକ୍ଷା କରି ସେ ସିଦ୍ଧାନ୍ତକୁ ଆସିଥିଲେ ଯେ ଲୁଣବିହୀନ ଖାଦ୍ୟ ଦ୍ୱାରା କାଶ, ଶ୍ୱାସ, ଅର୍ଶ ଓ ରକ୍ତ କ୍ଷରଣକୁ ଭଲ କରାଯାଇ ପାରିବ । କ୍ଷୀର ଓ ଡାଲି ଜାତୀୟ ଖାଦ୍ୟ ସ୍ୱାସ୍ଥ୍ୟ ପାଇଁ ମଧ୍ୟ ନିହାତି ଆବଶ୍ୟକ ନୁହେଁ । ଏହି ଲେଖାଗୁଡ଼ିକରେ ସେ ନିଜର ଅନୁଭୂତିକୁ ଏପରି ବିସ୍ତୃତ ଓ ଖୋଲାଖୋଲି ଭାବରେ ଉଲ୍ଲେଖ କରିଛନ୍ତି ଯଦ୍ୱାରା କେତେକ କ୍ଷେତ୍ରରେ ଜଣେ ପାଠକ ନିଜେ ଚେଷ୍ଟା କରିବାକୁ ପ୍ରେରଣା ପାଇଥାଏ । ଗାନ୍ଧୀ ଅବସର ସମୟରେ ସେଗୁଡ଼ିକ ଯେ ପ୍ରୟୋଗ କରିଛନ୍ତି ତା' ନୁହେଁ, ବରଂ ତାଙ୍କର କର୍ମବହୁଳ ଜୀବନ ଓ ଜେଲ ଭିତରେ ସେ ଏହାର ପରୀକ୍ଷା କରିଛନ୍ତି । ଗାନ୍ଧୀଙ୍କ ପରି କର୍ମବହୁଳ ଜୀବନ ଖୁବ୍ କ୍ୱଚିତ୍ ବ୍ୟକ୍ତି ବଞ୍ଚିପାରିବେ ଓ ଏତେ ସୁନ୍ଦର ସ୍ୱାସ୍ଥ୍ୟ ଶେଷ ପର୍ଯ୍ୟନ୍ତ ରକ୍ଷାକରି ପାରିବେ ।

ଗାନ୍ଧୀ ରଚନାବଳୀର ଏକାଦଶ ଖଣ୍ଡଟି ଏପ୍ରିଲ ୧୯୧୧ରୁ ଦୁଇବର୍ଷ ପର୍ଯ୍ୟନ୍ତ ଘଟଣା ଉପରେ ଆଧାରିତ । ବର୍ଣ୍ଣବୈଷମ୍ୟ ନୀତି ବିରୁଦ୍ଧରେ ପରିକଳ୍ପିତ ଆନ୍ଦୋଳନ ନେଇ ଦକ୍ଷିଣ ଆଫ୍ରିକା ସରକାରଙ୍କ ସହିତ ଗାନ୍ଧୀ ବହୁବାର ଆଲୋଚନା କରିଛନ୍ତି । ସରକାରଙ୍କ ଉପରେ ନୈତିକ ଚାପ ପ୍ରୟୋଗ କରି ଧୈର୍ଯ୍ୟର ସହ ଅହିଂସ ପନ୍ଥାରେ ଲୋକମାନଙ୍କୁ ସଙ୍ଗଠିତ କରାଇ ଓ କୌଣସି କ୍ଷେତ୍ରରେ ନିଜର ଲକ୍ଷ୍ୟରୁ ବିଚ୍ୟୁତ ନହେବା ନେଇ ସେ ଯେଉଁ ପରାକାଷ୍ଠା ଦେଖାଇଥିଲେ ତାହା ଅନେକ ୟୁରୋପୀୟ ଲୋକଙ୍କର ମଧ୍ୟ ଦୃଷ୍ଟି ଆକର୍ଷଣ କରିଥିଲା ଓ ସେମାନେ ତାଙ୍କୁ ସମର୍ଥନ ଦେଇଥିଲେ । ଏପରିକି ସାଂସଦ ମିଃ ଉଇଲିୟମ ହିସ୍କର ସତ୍ୟାଗ୍ରହୀମାନଙ୍କର ଆଇନଅମାନ୍ୟ ଆନ୍ଦୋଳନକୁ ସମର୍ଥନ କରି ଏକ ଜ୍ୱାଳାମୟୀ ଭାଷଣ ପ୍ରଦାନ କରିଥିଲେ ଯେଉଁଥିପାଇଁ ତାଙ୍କୁ ଅନ୍ୟମାନଙ୍କର ବ୍ୟଙ୍ଗ-ବିଦ୍ରୂପ ସହିବାକୁ ପଡ଼ିଥିଲା ।

୧୯୧୧ରେ ରାଜା ପଞ୍ଚମ ଜର୍ଜଙ୍କର ଅଭିଷେକ ଉତ୍ସବ ଭାରତରେ ପାଳିତ ହୋଇଥିଲା । ଦକ୍ଷିଣ ଆଫ୍ରିକାରେ ଥିବା ଭାରତୀୟମାନେ ସାଧାରଣ ନାଗରିକ ଅଧିକାରରୁ ବଞ୍ଚିତ ଥିବା ଯୋଗୁଁ ସେଉଁମାନେ ଏହି ଅଭିଷେକ ଉତ୍ସବ ଉପଲକ୍ଷେ ଶୁଭକାମନା ଜଣାଇଥିଲେ ସେମାନଙ୍କୁ ଅନ୍ୟମାନେ ସମାଲୋଚନା କରିଥିଲେ । ଗାନ୍ଧୀ ଏହି ପ୍ରସଙ୍ଗ ଉପରେ ଦୁଇଟି ଲେଖା ଲେଖି ଶୁଭେଚ୍ଛା ଜ୍ଞାପନକୁ ଅନୁମୋଦନ କରିଥିଲେ । ଏଥିରୁ ବ୍ରିଟିଶ ଶାସନ ଓ ନ୍ୟାୟ ବ୍ୟବସ୍ଥା ଉପରେ ଗାନ୍ଧୀଙ୍କର ଥିବା ବିଶ୍ୱାସ ସୂଚିତ ହୁଏ । ଦଶବର୍ଷ ପରେ ବ୍ରିଟିଶମାନଙ୍କ ଉପରେ ଭାରତୀୟମାନଙ୍କର ଥିବା ଆନୁଗତ୍ୟକୁ ଅନ୍ତାନ ଜଣାଇ ସେ ବ୍ରିଟିଶ ଶାସନ ବ୍ୟବସ୍ଥାକୁ କଠୋର ସମାଲୋଚନା କରିବା ଯୋଗୁଁ ଦୁଇବର୍ଷ କାରାଦଣ୍ଡ ଭୋଗିଥିଲେ । ଏହି ଦୁଇ ଲେଖାରେ ତାଙ୍କର ବିରୋଧାଭାସ ସ୍ପଷ୍ଟ ଜଣାପଡ଼େ । କିନ୍ତୁ ଅହିଂସାର ପ୍ରବର୍ତ୍ତକ ଗାନ୍ଧୀଙ୍କ ପାଖରେ ଭିନ୍ନ ଭିନ୍ନ ଦୃଷ୍ଟିଭଙ୍ଗୀ ନେବା ପଶ୍ଚାତରେ ତାଙ୍କର ମାନସିକ ବିକାଶ ଯଥାର୍ଥରେ ଦୃଷ୍ଟିଗୋଚର ହୋଇଥାଏ ।

## ଜଣେ ପୁତ୍ରଙ୍କର ଅଭିଯୋଗ

ଗାନ୍ଧୀଙ୍କର ବଡ଼ପୁଅ ହରିଲାଲ ଦକ୍ଷିଣ ଆଫ୍ରିକାରେ ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗ ଦେଇ କାରାବରଣ କଲାପରେ ପୈତୃକ ଗୃହ ଛାଡ଼ି ଚାଲିଯିବାକୁ ସ୍ଥିର କଲେ । ତାଙ୍କର ଅଭିଯୋଗ ଥିଲା ଯେ ତାଙ୍କ ବାପା ସେମାନଙ୍କର କୌଣସି ଯତ୍ନ ନେଉନାହାନ୍ତି ଯାହା ପ୍ରତିବାଦରେ ସେ ଗୃହ ଛାଡ଼ିବାକୁ ବାଧ ହେଉଛନ୍ତି । ହରିଲାଲଙ୍କର ଏହି ଅଭିଯୋଗ ସମ୍ପର୍କରେ ଗାନ୍ଧୀ ମଗନଲାଲଙ୍କୁ ଲେଖିଥିଲେ, "ହରିଲାଲ ମୋ ଉପରେ ବାସ୍ତବରେ କ୍ଷୁବ୍ଧ ହୋଇଛି । ତାର ଏହି ଅସନ୍ତୋଷ ସେ ଗତ ସୋମବାର ସନ୍ଧ୍ୟାରେ ବ୍ୟକ୍ତ କରିଛି । ସେ ଅନୁଭବ କରୁଛି ଯେ ମୁଁ ଚାରି ପୁଅଙ୍କୁ ସର୍ବଦା ଦବାଇ କରି ରଖିଛି, କୌଣସି ସମୟରେ ସେମାନଙ୍କର ଇଚ୍ଛା ପ୍ରତି ଶ୍ରଦ୍ଧା ଦେଖାଇ ନାହିଁ ଓ ବହୁ ସମୟରେ ସେମାନଙ୍କ ପ୍ରତି ଅନ୍ତରରେ ରୁକ୍ଷ ହୋଇଛି । ସେ ଏହି ଅଭିଯୋଗ ଅତି ଭଦ୍ର ଓ ଶଙ୍କିତ ଭାବରେ ବ୍ୟକ୍ତ କରିଛି । ଅବଶ୍ୟ ସେ ଟଙ୍କାପଇସା ନେବାକୁ ଏପରି କରିନାହିଁ । ସେ କେବଳ ମୋର ସାଧାରଣ ବ୍ୟବହାର ବିଷୟରେ କହିଛି । ଅନ୍ୟ ବାପାମାନଙ୍କ ଭଳି ମୁଁ ମୋର ପୁତ୍ରମାନଙ୍କୁ ପ୍ରଶଂସା କରେନାହିଁ ବା ସେମାନଙ୍କ ପାଇଁ କିଛି ଉଲ୍ଲେଖନୀୟ କାର୍ଯ୍ୟ କରିନାହିଁ । ମୁଁ ସେମାନଙ୍କୁ ଓ କସ୍ତୁରବାଙ୍କୁ ସର୍ବଦା ଶେଷରେ ରଖିଛି । ଏହାହିଁ ହେଉଛି ତାର ଅଭିଯୋଗ ।" ହରିଲାଲ ମାଟ୍ରିକ୍ୟୁଲେସନ ପରୀକ୍ଷା ଦେବାକୁ ଦକ୍ଷିଣ ଅଫ୍ରିକା ଛାଡ଼ି ଭାରତର ଅହମଦାବାଦ ଚାଲିଆସିଲେ । ଗାନ୍ଧୀ ମନ୍ତବ୍ୟ ଦେଲେ, "ହରିଲାଲ ଏକ ଅସାଧାରଣ କାର୍ଯ୍ୟ କରିବାକୁ ଯାଉଛି । ଏଥିପାଇଁ ମୁଁ ଦାୟୀ । ସମ୍ଭବତଃ ପରିସ୍ଥିତିକୁ ଦାୟୀ କରାଯାଇପାରେ, କିନ୍ତୁ ହରିଲାଲକୁ କୌଣସି କିଛି ପାଇଁ ଦାୟୀ କରାଯାଇ ପାରିବ ନାହିଁ ।"

ନିଜ ପୁତ୍ରମାନଙ୍କ ପ୍ରତି ଅବହେଳା ନେଇ ପାରିବାରିକ ଉତ୍ତରଦାୟିତ୍ୱ ଓ ସମାଜସେବା ଭିତରେ ସମନ୍ୱୟ ଯେ ରହିପାରିବ ଏଥିରେ ଗାନ୍ଧୀଙ୍କର ସନ୍ଦେହ ରହିଥିଲା । ତେଣୁ ସେ କର୍ମୀମାନଙ୍କୁ ବ୍ରହ୍ମଚର୍ଯ୍ୟ ପାଳନ ପାଇଁ ପରାମର୍ଶ ଦେଉଥିଲେ । ଅବଶ୍ୟ ବ୍ରହ୍ମଚର୍ଯ୍ୟ ପାଳନ କ୍ଷେତ୍ରରେ ଥିବା ପ୍ରତିବନ୍ଧକ ବିଷୟରେ ସେ ଅବଗତ ଥିଲେ । ତଥାପି ଯେଉଁମାନେ ତାଙ୍କ ଆଶ୍ରମରେ ରହିବାକୁ ଆସୁଥିଲେ ସେମାନଙ୍କ ପାଇଁ ସେ ଏହାକୁ ଶୃଙ୍ଖଳା ଭାବରେ ନେଉଥିଲେ । ତାଙ୍କର ଅନନୁକରଣୀୟ ପରିହାସ ଭିତରେ ତାଙ୍କ ଆଶ୍ରମରେ ରହିବାକୁ ଆସିଥିବା କୌଣସି ନବାଗତ ଅନ୍ତେବାସୀଙ୍କୁ ଥରେ କହିଥିଲେ, "ତୁମେ ମୋ ସହିତ ରାଜି ହେବ ଯେ ଆଶ୍ରମରେ କୌଣସି ମାତୃମଙ୍ଗଳ କେନ୍ଦ୍ର ରହିବ ନାହିଁ ।"

## ଦକ୍ଷିଣ ଆଫ୍ରିକାରେ ସତ୍ୟାଗ୍ରହର ସଫଳତା

### ଗାନ୍ଧୀ ରଚନାବଳୀର ଦ୍ୱାଦଶ ଖଣ୍ଡର ସମୀକ୍ଷା :

"ମୁଁ ଅନୁଭବ କରୁଛି ମୋର ଜଣେ ମଣିଷ ପରି ବଞ୍ଚିବାର ଅଧିକାର ନାହିଁ; କାରଣ ମୁଁ ଜଣେ ଭାରତୀୟ"—ଦକ୍ଷିଣ ଆଫ୍ରିକାରେ କରିଥିବା କାର୍ଯ୍ୟ ସମ୍ପର୍କରେ ଏହା କୋର୍ଟରେ ୧୯୨୨ ମସିହାରେ ଗାନ୍ଧୀଙ୍କର ବକ୍ତବ୍ୟ ଥିଲା । ଆଜି ମଧ୍ୟ ଅନେକ ମଣିଷ ମାନବିକ ଅଧିକାରରୁ ବଞ୍ଚିତ ବୋଲି ଅନୁଭବ କରୁଛନ୍ତି; କାରଣ ସେମାନେ ଗରିବ ବା ସେମାନଙ୍କ ଉପରେ କୌଣସି ଜାତି ବା ଗୋଷ୍ଠୀର ଛାପ ଲଗିଛି । କିନ୍ତୁ ଗାନ୍ଧୀ ଓ ସେମାନଙ୍କ ଭିତରେ ଏକ ବଡ଼ ପାର୍ଥକ୍ୟ ରହିଛି । କାରଣ ଗାନ୍ଧୀ ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ କରି ନିଜର ଅଧିକାର ସାବ୍ୟସ୍ତ କରିଛନ୍ତି । ଏହି ସଂଗ୍ରାମରେ ଅବଶ୍ୟ ସେ ଏକା ନଥିଲେ । ଦକ୍ଷିଣ ଆଫ୍ରିକାରେ ଥିବା ହଜାର ହଜାର ଏସିଆର ଲୋକ—ଯେଉଁଥିରେ ଭାରତୀୟ ଓ ଚାଇନିଜ ଥିଲେ, ହିନ୍ଦୁ, ମୁସଲମ, ପାର୍ସି ଓ ବୌଦ୍ଧ ଥିଲେ; ତାମିଲ, ଗୁଜୁରାଟୀ ଓ ପଠାଣ ଥିଲେ—ମାନବିକ ଅଧିକାର ଓ ସମ୍ମାନବୋଧରୁ ବଞ୍ଚିତ ହୋଇ ଗାନ୍ଧୀଙ୍କ ଆନ୍ଦୋଳନରେ ଅଂଶ ଗ୍ରହଣ କରିଥିଲେ । ଦକ୍ଷିଣ ଆଫ୍ରିକାରେ ସେ ଏକୋଇଶ ବର୍ଷ ଅତିବାହିତ କରିଥିଲେ ଓ ବିଶେଷକରି ଶେଷ ଆଠ ବର୍ଷ ନାନା ତ୍ୟାଗ, ଦୃଢ଼ତା ଓ ସଂକଳ୍ପ ନେଇ ସେ ଆନ୍ଦୋଳନ କରିଥିଲେ । ଲୋକମାନେ ମଧ୍ୟ ଅନୁରୂପ ତ୍ୟାଗ ସ୍ୱୀକାର କରି ଓ ସଂକଳ୍ପ ନେଇ ଆତ୍ମମର୍ଯ୍ୟାଦା ଆଣି ପାରିଥିଲେ । କୌଣସି ଅସମ୍ମାନଜନକ ବ୍ୟବସ୍ଥା ପାଖରେ ମୁଣ୍ଡ ନ ନୁଆଁଇବା ପାଇଁ ଲୋକମାନଙ୍କ ଭିତରେ ଏକ ନୂତନ ଚେତନା ସୃଷ୍ଟି ହୋଇପାରିଥିଲା ।

ଦେଶାନ୍ତର କରି ଆସିଥିବା ବିଦେଶୀ ନାଗରିକମାନଙ୍କ ପ୍ରତି ଆଇନ୍‌ରେ ରହିଥିବା ବୈଷମ୍ୟ, ନିର୍ବାଚନ ପାଇଁ ଅଦାୟ ହେଉଥିବା ଟିକସ ଓ ଅଣ-

ଖ୍ରୀଷ୍ଟିଆନମାନଙ୍କ ବିବାହକୁ ଅସ୍ୱୀକୃତିଜନିତ ବ୍ୟବସ୍ଥା ବିରୁଦ୍ଧରେ ଏହି ଆନ୍ଦୋଳନ ଉଦ୍ଦିଷ୍ଟ ଥିଲେ ବି ଏହା ପଶ୍ଚାତରେ ରହିଥିବା ମାନବିକ ନ୍ୟାୟଜନିତ ଦୃଷ୍ଟିଭଙ୍ଗୀ କାଲେନବାଚ, ପୋଲକ ଓ ସି. ଏଫ. ଆଣ୍ଡ୍ରୁଜଙ୍କ ପରି ୟୁରୋପର ବିଶିଷ୍ଟ ଚିନ୍ତାଶୀଳ ବ୍ୟକ୍ତିମାନଙ୍କୁ ଏପରି ଆକୃଷ୍ଟ କରିଥିଲା ଯେ ସେମାନେ ଏହି ଆନ୍ଦୋଳନ ସହିତ ନିଜକୁ ସାମିଲ କରିଥିଲେ । ଗାନ୍ଧୀ ଲେଖିଛନ୍ତି, "ମଣିଷର ଆତ୍ମା ୟୁରୋପୀୟ ବା ଭାରତୀୟ, ପାଶ୍ଚାତ୍ୟ ବା ପୂର୍ବ ଯେଉଁ ଆକାଶ ତଳେ ଗଢ଼ି ଉଠିଥାଉ ନା କାହିଁକି ମାନବିକତାର ମୂର୍ଚ୍ଛନାକୁ ନିଶ୍ଚୟ ଶୁଣିପାରିବ ।"

**ସଫଳତା :**

ଗାନ୍ଧୀଙ୍କ ଆନ୍ଦୋଳନର ପନ୍ଥା ଥିଲା ଅହିଂସ ପ୍ରତିରୋଧ ଯାହା ପରେ ଭାରତୀୟ ଜାତୀୟ ଆନ୍ଦୋଳନରେ ସତ୍ୟାଗ୍ରହ ବୋଲି କୁହାଗଲା । ଏହି ଅହିଂସ ଗଣ ଆନ୍ଦୋଳନ ଜନ୍ମ ପ୍ରଥମେ ଦକ୍ଷିଣ ଆଫ୍ରିକାରେ ରୂପରେଖ ନେଇ ଉତ୍ସାହଜନକ ସଫଳତା ଆଣିଥିଲା । ଏହି ସଫଳତାର ସ୍ମୃତିଚାରଣ କରି 'ଇଣ୍ଡିଅନ୍ ଓପିନିଅନ' ପତ୍ରିକାର ସୁବର୍ଣ୍ଣ ସଂଖ୍ୟାରେ ଲେଖାଯାଇଥିଲା, "ଅହିଂସ ବିରୋଧ ଯେତିକି ଦୃଢ଼ ଓ ଶୁଦ୍ଧ ହେବାକୁ ଲାଗିଲା ଭାରତୀୟ ଓ ୟୁରୋପୀୟ ଗୋଷ୍ଠୀର ପ୍ରତିନିଧିଗଣ ସେତିକି ନିକଟତର ହୋଇପାରିଲେ । ପ୍ରତ୍ୟେକଟି ନୂଆ ପଦକ୍ଷେପରେ ନୂତନ ସଫଳତା ମିଳିବା ସହିତ ଅଧିକ ବନ୍ଧୁ ଏହା ସହିତ ସାମିଲ ହେଲେ । ଭାରତୀୟମାନଙ୍କ ପ୍ରତି ଥିବା ସାର୍ବଜନୀନ ଘୃଣା ଓ ଅବିଶ୍ୱାସ ଶ୍ରଦ୍ଧା ଓ ବିଶ୍ୱାସରେ ରୂପାନ୍ତରିତ ହେଲା । ରାଜନୈତିକ ଓ ମାନବିକ ଅଧିକାରରୁ ବଞ୍ଚିତ ହୋଇ ରହିଥିବା ଗୋଟିଏ ଜାତିର ସମ୍ମାନବୋଧକୁ ଏହି ଆନ୍ଦୋଳନ ପ୍ରତିଷ୍ଠା କରିପାରିଥିଲା । ଏହା ମଧ୍ୟ ଭାରତକୁ ଗୋଟିଏ ଦେଶର ମର୍ଯ୍ୟାଦା ଆଣି ଦେଇଥିଲା ଓ ଦକ୍ଷିଣ ଆଫ୍ରିକାରେ ଥିବା ଭାରତୀୟମାନେ ସମ୍ମାନର ସ୍ତରକୁ ଉନ୍ନୀତ ହୋଇ ପାରିଥିଲେ ।"

ଗାନ୍ଧୀ ରଚନାବଳୀଗୁଡ଼ିକରେ ତାଙ୍କର ଅନେକ ପତ୍ର, ଟେଲିଗ୍ରାମ, ସମ୍ବାଦପତ୍ରଜନିତ ଲେଖା, ପ୍ରେସବିବୃତି ଇତ୍ୟାଦିକୁ ସମୟାନୁକ୍ରମରେ ସଜା ଯାଇ ପ୍ରକାଶ କରାଯାଇଛି । ବର୍ତ୍ତମାନ ସୁଦ୍ଧା ପ୍ରକାଶ ପାଇଥିବା ବାରଖଣ୍ଡ ମଧ୍ୟରୁ ଦ୍ୱାଦଶ ଖଣ୍ଡଟିରେ ଏପ୍ରିଲ ୧୯୧୩ଠାରୁ ଡିସେମ୍ବର ୧୯୧୪ ପର୍ଯ୍ୟନ୍ତ ଘଟଣାବଳୀ ଉଲ୍ଲେଖ ରହିଛି । ଦକ୍ଷିଣ ଆଫ୍ରିକାରେ ଗାନ୍ଧୀଙ୍କ ଦ୍ୱାରା ହୋଇଥିବା ଶେଷ ସତ୍ୟାଗ୍ରହ, ଅହିଂସ ପ୍ରତିରୋଧକାରୀମାନଙ୍କର ପଦଯାତ୍ରା ଓ ତାର ପରିଣାମ ସ୍ୱରୂପ ଭାରତୀୟ ବିପଦକାଳୀନ ସାହାଯ୍ୟ ଆଇନ ପ୍ରଣୟନ ବିଷୟରେ ବର୍ଣ୍ଣନା ରହିଛି । ଏହାପରେ ଗାନ୍ଧୀ ଭାରତ ପ୍ରତ୍ୟାବର୍ତ୍ତନ କଲେ । ଭାରତ ଫେରିବା ବାଟରେ ଇଂଲଣ୍ଡରେ ସେ ୧୯୧୪ ମସିହା ଜୁଲାଇଠାରୁ ଡିସେମ୍ବର ପର୍ଯ୍ୟନ୍ତ ରହିଥିଲେ । ଏହି ଖଣ୍ଡରେ ଏପରି

କେତେକ ଦଲିଲ ଅଛି ଯେଉଁଥିରୁ ଏହା ସ୍ପଷ୍ଟ ହୁଏ ଯେ ଇଂଲଣ୍ଡରେ ଥିବା ଭାରତୀୟ-ମାନଙ୍କର ସ୍ୱେଚ୍ଛାସେବୀ ଅନୁଷ୍ଠାନ ସହିତ ମିଶି ସେ ପ୍ରଥମ ବିଶ୍ୱଯୁଦ୍ଧ ସମୟରେ-ଇଂଲଣ୍ଡକୁ ନିଃସର୍ତ୍ତ ସାହାଯ୍ୟ କରିଥିଲେ । ବ୍ରିଟିଶ ପ୍ରତି ଅନୁରକ୍ତ ଥିବା ଓ ବ୍ରିଟେନକୁ ସାହାଯ୍ୟ କରୁଥିବା ଗାନ୍ଧୀ ପରେ ବ୍ରିଟିଶ ଜାତି ବିରୁଦ୍ଧରେ ଅସହଯୋଗ ପରି ଏତେବଡ଼ ଆନ୍ଦୋଳନ କରିଥିଲେ ଏହା କେତେକଙ୍କୁ ଆଶ୍ଚର୍ଯ୍ୟ ଲାଗିପାରେ ।

ଦ୍ୱାଦଶ ଖଣ୍ଡରେ ଥିବା ପ୍ରଥମ ପରିଶିଷ୍ଟରେ କେପ୍‌ର ସୁପ୍ରିମକୋର୍ଟର ବିଚାରପତି ଶ୍ରୀ ଶର୍ଲଙ୍କର ଏକ ରାୟ ରହିଛି । ଏହି ରାୟରେ ଅଖ୍ରୀଷ୍ଟିଆନ ବିବାହକୁ ଦକ୍ଷିଣ ଆଫ୍ରିକାରେ ସ୍ୱୀକୃତି ଦିଆଯାଇ ନାହିଁ । ଏହି ରାୟର ପରିଣାମ ସ୍ୱରୂପ ହିନ୍ଦୁ ଓ ମୁସଲମାନ ମହିଳାମାନଙ୍କୁ କେବଳ ପୁରୁଷମାନଙ୍କ ସହିତ ଏକାଠି ରହୁଥିବା ବ୍ୟକ୍ତି ଭାବରେ ନିଆଯାଉଥାଏ ଅଥଚ ସେମାନଙ୍କର ପତ୍ନୀର ମର୍ଯ୍ୟାଦା ନଥାଏ ଓ ସେମାନଙ୍କର ପିଲାମାନଙ୍କୁ ଜାରଜ ବୋଲି ଗ୍ରହଣ କରାଯାଉଥାଏ । ଯେତେବେଳେ କସ୍ତୁରବା ଏହା ଜାଣିଲେ, ସେ ଉତ୍ତେଜିତ ହୋଇ ଗାନ୍ଧୀଙ୍କୁ କହିଲେ, "ତା'ହେଲେ ଏ ଦେଶର ନିୟମାନୁଯାୟୀ ମୁଁ ତୁମର ପତ୍ନୀ ନୁହେଁ ।" ବା'ଙ୍କ ନେତୃତ୍ୱରେ ଅଣ-ଖ୍ରୀଷ୍ଟିଆନ ମହିଳାମାନେ ସେହି ରାୟ ବିରୁଦ୍ଧରେ ଅବିରତ ଆନ୍ଦୋଳନ ଚଳାଇ ନିଜର ମର୍ଯ୍ୟାଦାକୁ ରକ୍ଷା କରିଥିଲେ ।

ଗାନ୍ଧୀ ସର୍ବଦା ତୃତୀୟ ଶ୍ରେଣୀ ରେଳଡବାରେ ଯାତ୍ରା କରୁଥିଲେ । ଜୁଲାଇ ୨୩, ୧୯୧୪ରେ ସେ ଲେଖିଥିଲେ, "ମିଃ କାଲେନବାଚ, ମୁଁ ଓ ମୋ ସ୍ତ୍ରୀ ଆମେ ତୃତୀୟ ଶ୍ରେଣୀରେ ଯାତ୍ରା କରୁ । ଆମେ ଏଥିରେ ଯେଉଁ ଆନନ୍ଦ ପାଉ ପ୍ରଥମ ଶ୍ରେଣୀ ଡବାରେ ପ୍ରାୟ ତାହା ପା'ନ୍ତୁ ନାହିଁ । ଆମେ ସ୍ୱତନ୍ତ୍ର ଭାବରେ ବଞ୍ଚୁଛୁ ଓ ଗରିବଙ୍କଠାରୁ ଦୂରରେ ଅଛୁ ଏହି ପ୍ରକାର ବିବେକ ଦଂଶନରୁ ନିଜକୁ ରକ୍ଷା କରୁଛୁ । ମୋ ପରି ଯେଉଁମାନେ ସର୍ବସାଧାରଣଙ୍କ ଅର୍ଥରେ ଯାତ୍ରା କରୁଛନ୍ତି ଓ ଏ ପ୍ରକାର ଯାତ୍ରା ନିଜ ଗୋଷ୍ଠୀର ସ୍ୱାଭିମାନରେ କିଛି ଆଞ୍ଚ ଆଣୁନାହିଁ, ସର୍ବଦା ତୃତୀୟ ଶ୍ରେଣୀରେ ବା ତା'ଠାରୁ ତଳ ଶ୍ରେଣୀରେ—ଯଦି ସେପରି ଥାଏ—ଯାତ୍ରା କରିବା ଦରକାର ।"

ଗାନ୍ଧୀ ଗୁରୁତ୍ୱପୂର୍ଣ୍ଣ ରାଜନୈତିକ ବା ସାଧାରଣ ସମସ୍ୟା ଉପରେ ଅନ୍ୟମାନଙ୍କ ସହିତ ପତ୍ରାଳାପ କରୁଥିଲେ ବି ଯେଉଁମାନେ ବ୍ୟକ୍ତିଗତ, ଦାର୍ଶନିକ ଓ ଏପରିକି ପାରିବାରିକ ସମସ୍ୟା ଉପରେ ତାଙ୍କୁ ପତ୍ର ଲେଖି ତାଙ୍କର ପରାମର୍ଶ ଚାହୁଁଥିଲେ ସେ ନିଷ୍ଠାର ସହ ସେମାନଙ୍କ ପତ୍ରକୁ ପାଠକରି ନିଜର ମତାମତ ପତ୍ର ଦ୍ୱାରା ଜଣାଉଥିଲେ । ମଣିଲାଲଙ୍କ ପାଖକୁ ଲେଖିଥିବା ଏକ ପତ୍ରରୁ ସେ ସମସ୍ତ ବିଷୟଟିକୁ ଯେ ପୂର୍ଣ୍ଣ ହୃଦୟଙ୍ଗମ କରି ପରାମର୍ଶ ଦେଉଥାନ୍ତି ତାହା ଜଣାଯାଏ ।

ଅନ୍ୟ ଏକ ପ୍ରସଙ୍ଗରେ ଯମୁନା ଦାସଙ୍କ ପାଖକୁ ଲେଖିଥିବା ପତ୍ରରୁ ମଧ୍ୟ ତାଙ୍କର ଏହି ଆଗ୍ରହ ସ୍ପଷ୍ଟ ହୁଏ । ଯମୁନା ଦାସ 'ଅଶ୍ୱତ୍ଥାମା ହତ କହିବା ଦ୍ୱାରା ଧର୍ମରାଜ ଯୁଧିଷ୍ଠିର କିଛି ପାପ କରିଛନ୍ତି ବୋଲି ସେ ଭାବୁଛନ୍ତି କି' ଯେଉଁ ପ୍ରଶ୍ନ କରିଥିଲେ ତାର ଉତ୍ତରରେ ଗାନ୍ଧୀ ଲେଖିଥିଲେ, "ଯଦି ଆମେ କହିବା ଶ୍ରୀକୃଷ୍ଣ ଯୁଧିଷ୍ଠିରଙ୍କୁ ସେପରି କହିବା ପାଇଁ ତାଙ୍କ ଶରୀର ଭିତରେ ରହି ପରାମର୍ଶ ଦେଇଥିଲେ ତେବେ ଶ୍ରୀକୃଷ୍ଣ ଯେ ତ୍ରୁଟିଶୂନ୍ୟ ଏହା କହିପାରିବା ନାହିଁ । ଯଦି ଆମେ ଶ୍ରୀକୃଷ୍ଣଙ୍କୁ ପରମ ପୁରୁଷ ବୋଲି କହୁ ତେବେ ଏହି ପ୍ରସଙ୍ଗଟିକୁ ସାଙ୍କେତିକ ଭାବରେ ବ୍ୟାଖ୍ୟା କରିବା ଆବଶ୍ୟକ··· । ଶାସ୍ତ୍ରର ମତକୁ ଚିରନ୍ତନ ବୋଲି ଗ୍ରହଣ କରିବାର ଆବଶ୍ୟକତା ନାହିଁ ।"

ଦ୍ୱାଦଶ ଖଣ୍ଡଟି ଗୋଟିଏ ଦୃଷ୍ଟିରୁ ତାତ୍ପର୍ଯ୍ୟପୂର୍ଣ୍ଣ ଯେ ଏଥିରେ ଥିବା ଦଲିଲ-ଗୁଡ଼ିକରୁ ଦକ୍ଷିଣ ଆଫ୍ରିକାରେ ତାଙ୍କ ସତ୍ୟାଗ୍ରହର ବିଫଳତା, ସଫଳତା ଓ ଅନୁଭୂତି ବିଷୟରେ ବିସ୍ତୃତ ଭାବରେ ଜଣାପଡ଼େ । କିନ୍ତୁ ଏହି ଖଣ୍ଡରେ ଥିବା ମୁଖବନ୍ଧର ଶେଷ ବାକ୍ୟଟି ଗୁରୁତ୍ୱପୂର୍ଣ୍ଣ । ଏଥିରେ ଲେଖାଅଛି, "ପରବର୍ତ୍ତୀ ଇତିହାସରୁ ଏହା ଜଣାଯାଏ ଯେ ଦକ୍ଷିଣ ଆଫ୍ରିକାରେ ଥିବା ବର୍ଣ୍ଣବୈଷମ୍ୟଜନିତ ସମସ୍ୟା ଏପର୍ଯ୍ୟନ୍ତ ମଧ୍ୟ ପୂର୍ଣ୍ଣ ରୂପରେ ସମାଧାନ ହୋଇନାହିଁ । କିନ୍ତୁ ଗାନ୍ଧୀ ସେଠାରେ ସତ୍ୟାଗ୍ରହର ଯେଉଁ ଅଭିନବ ପନ୍ଥାଟି ପ୍ରୟୋଗକରି ସେଥିରେ ଶୁଭତା ଆଣିଥିଲେ ତାହା ଦିନେ ନା ଦିନେ ଲୋକମାନଙ୍କୁ ମୁକ୍ତି ଦେବ ଓ ଭାରତବର୍ଷରୁ ସାମ୍ରାଜ୍ୟବାଦର ବିଲୋପ ଘଟାଇବ ।"

## ସ୍ୱାର୍ଥପରତା ଉପରେ ଗାନ୍ଧୀଙ୍କ ଦୃଷ୍ଟିକୋଣ

### ଗାନ୍ଧୀ ରଚନାବଳୀର ସପ୍ତଦଶ ଓ ଅଷ୍ଟାଦଶ ଖଣ୍ଡଦ୍ୱୟର ସମୀକ୍ଷା :

ଗାନ୍ଧୀ ଅହିଂସାର ପ୍ରୟୋଗ ଚାହୁଁଥିଲେ ଯଦିବା ସେ ହିଂସାକୁ ଭୟ କରୁନଥିଲେ । ଆଦର୍ଶ ଯେ ବାସ୍ତବତାଠାରୁ ଦୂର ତାହା ସେ ବେଶ୍ ହୃଦୟଙ୍ଗମ କରିଥିଲେ । କିନ୍ତୁ ଜଣେ ଅହିଂସକର୍ମୀଙ୍କର କର୍ତ୍ତବ୍ୟ ହେଉଛି ବାସ୍ତବତାକୁ ଆଦର୍ଶ ଦିଗରେ ପରିବର୍ତ୍ତନ କରିବାକୁ ଉଦ୍ୟମ କରିବା । ଅବଶ୍ୟ ଅହିଂସ କାର୍ଯ୍ୟକ୍ରମ ଯେ ହିଂସାର ସମ୍ପୂର୍ଣ୍ଣ ବିଲୋପ କରିପାରିବ ଏହା ସେ ଦାବି କରୁନଥିଲେ । କିନ୍ତୁ ଲକ୍ଷ୍ୟ ହାସଲ ଦିଗରେ ହିଂସାତ୍ମକ ଅଭିବ୍ୟକ୍ତିର ଉଦ୍ରେକ ଯେପରି ନହୁଏ ସେ ପାଇଁ ଅହିଂସକର୍ମୀମାନେ ସମସ୍ତ ସତର୍କତା ଅବଲମ୍ବନ କରିବା ଦରକାର । କୌଣସି ଦୁର୍ଘଟଣାକୁ ପ୍ରତିରୋଧ କରିବା ପାଇଁ କର୍ମୀମାନେ ସାମର୍ଥ୍ୟ ଓ ଶୃଙ୍ଖଳା ହାସଲ କରିବା ପୂର୍ବରୁ ସେମାନେ ହୁଏତ ଭୁଲ୍ କରିପାରନ୍ତି କିନ୍ତୁ ନିଜର ତ୍ରୁଟିକୁ ସଂଶୋଧନ କରିବାକୁ ଚେଷ୍ଟା ରହିବା ଆବଶ୍ୟକ ।

ସାମର୍ଥ୍ୟ ଓ ଶୃଙ୍ଖଳା ସୃଷ୍ଟି କରିବାରେ ଗୋଟିଏ ଆନ୍ଦୋଳନ ସୁଯୋଗ ଆଣିଥାଏ । ଗାନ୍ଧୀ ଲେଖିଛନ୍ତି, "ସରକାର ଯଦି ହିଂସାତ୍ମକ ପନ୍ଥାରେ ରକ୍ତନଦୀ ସୃଷ୍ଟି କରନ୍ତି ମୁଁ ସେତିକି ଭୟଭୀତ ହେବିନାହିଁ, ଯଦି ଲୋକମାନେ ମୋ ପାଇଁ ବା ମୋ ନାମରେ ସରକାରଙ୍କ ଉପରେ ପ୍ରତିହିଂସା କାହିର କରନ୍ତି ତେବେ ମୁଁ ବହୁତ ଆଘାତ ପାଇବି ।" କୌଣସି ଅନ୍ୟାୟକାରୀ ପାଖରେ ସମର୍ପଣ କରିବା ପରିବର୍ତ୍ତେ ବରଂ ଜଣେ ଅତ୍ୟାଚାରୀଙ୍କୁ ପରିବର୍ତ୍ତିନ କରିବାକୁ ଜଣେ ଅହିଂସକର୍ମୀ ଜୀବନର ବ୍ରତ ଭାବରେ ଗ୍ରହଣ କରିବା ଦରକାର । ସୁତରାଂ ଗାନ୍ଧୀ ଅହିଂସାକୁ ଏକ କ୍ରିୟାଶୀଳ ଶକ୍ତିରେ ପରିବର୍ତ୍ତିନ କରିଥିଲେ । ଅହିଂସାକୁ ଜଣେ ସାହସୀ ବ୍ୟକ୍ତି ହିଁ ପ୍ରୟୋଗ କରିପାରିବେ, ଏହା ଭୀରୁର ଅସ୍ତ୍ର ହୋଇପାରିବ ନାହିଁ । ସେ ତାଙ୍କ ପୁଅଙ୍କ ପାଖକୁ ଲେଖିଥିଲେ, "ଭୟାଳୁ ହୋଇ ଅନ୍ୟାୟକୁ ମାନିନେବା ଅପେକ୍ଷା ହିଂସା ପ୍ରୟୋଗ କରିବାକୁ ମୁଁ ଶ୍ରେୟସ୍କର ମନେକରୁଛି ।"

ସେ ରାଜନୈତିକ କାର୍ଯ୍ୟକଳାପ ସହିତ ଓତପ୍ରୋତ ଭାବରେ ସଂଶ୍ଳିଷ୍ଟ ଥିଲେ । ତାଙ୍କର ଜୀବନଧାରା ଓ ବକ୍ତବ୍ୟରୁ ଲୋକମାନେ ତାଙ୍କୁ ଜଣେ ରାଜନୈତିକ ବ୍ୟକ୍ତି ଅପେକ୍ଷା ଜଣେ ସନ୍ଥ ବୋଲି ଗ୍ରହଣ କରିବାକୁ ଅଧିକ ସମୀଚୀନ ମନେକରୁଥିଲେ । ଏକଦା ଗୋଟିଏ ସଭାରେ ସେ ନିଜ ବିଷୟରେ କହିଥିଲେ, "ଅତୀତରେ ଜଣେ ରାଜା କ'ଣ କରୁଛନ୍ତି ତାହା ଜାଣିବା ଆମର ଆବଶ୍ୟକ ନଥିଲା । ଜଣେ କେବଳ ନିଜର ଖଜଣା ଦେଇସାରିବା ପରେ ସନ୍ତୁଷ୍ଟ ହୋଇ ରହୁଥିଲା । କିନ୍ତୁ ଏବେ ସମସ୍ତ ବଦଳି ଯାଇଛି । ବର୍ତ୍ତମାନ ଆମେ ଚାହୁଁ ବା ନଚାହୁଁ ଶାସନ ବ୍ୟବସ୍ଥା ସହିତ ଆମେ ଓତପ୍ରୋତ ଭାବରେ ସମ୍ପୃକ୍ତ ହୋଇଯାଉଛେ । ଆମେ ଯଦି ନିକଟରୁ ଏହାକୁ ନଦେଖି ବା ଆମର ମଙ୍ଗଳ ଦିଗରେ ଏହାକୁ କାର୍ଯ୍ୟ କରିବାକୁ ବାଧ୍ୟ ନକରୁ ତେବେ ଆମେ ଶୋଷିତ ହୋଇ ରହିବୁ । ଏହି କାରଣରୁ ମୋର ରାଜନୀତି ପରିବର୍ତ୍ତେ ଧର୍ମ ପ୍ରତି ଯଥେଷ୍ଟ ଅନୁରକ୍ତ ଥିଲେ ବି ମୁଁ ରାଜନୈତିକ ଘଟଣାପ୍ରବାହ ସହିତ ନିଜକୁ ସମ୍ପୃକ୍ତ କରି ରଖିଛି । ମୁଁ ରାଜନୀତିରେ ସମ୍ପୃକ୍ତ ନହୋଇ ଯେ ଧର୍ମ ପାଳନ କରିପାରିବି ଏ ନେଇ ମୋର ଅନେକ ସନ୍ଦେହ ରହିଛି ।" ସେ କର୍ମୀମାନଙ୍କୁ ରାଜନୀତିରେ ଅଂଶ ନେବାକୁ ଅନୁପ୍ରାଣିତ କରିଥିଲେ ।

**ପରିବର୍ତ୍ତିତ ପରିସ୍ଥିତି :**

ଅସହଯୋଗର ଧାର୍ମିକ ଭିତ୍ତି ପ୍ରସଙ୍ଗରେ ଗାନ୍ଧୀ ଯୀଶୁଙ୍କର ଉଦାହରଣ ଦେଇ କହିଥିଲେ ଯେ 'ଯାହା ସମ୍ରାଟ ସିଜରଙ୍କର ପ୍ରାପ୍ୟ ତାହା ତାଙ୍କୁ ଦେବାକୁ ଓ ଯାହା ଭଗବାନଙ୍କର ପ୍ରାପ୍ୟ ତାହା ଈଶ୍ୱରଙ୍କୁ ଦେବାକୁ' ଯୀଶୁ ଲୋକମାନଙ୍କୁ ପରାମର୍ଶ ଦେଇଥିଲେ । କିନ୍ତୁ ଏବେ ପରିସ୍ଥିତି ବଦଳି ଯାଇଛି । ସମ୍ପ୍ରତି ସରକାରୀ

ବ୍ୟବସ୍ଥା ଆମ ଜୀବନର ପ୍ରତ୍ୟେକ କ୍ଷେତ୍ରକୁ ପ୍ରଭାବିତ କରୁଛି । ଆମର ଅସ୍ତିତ୍ୱକୁ ମଧ୍ୟ ଏହା ବିପନ୍ନ କରିବାର ସମ୍ଭାବନା ଅଛି । ଆମେ ଯଦି ରାଷ୍ଟ୍ରର ମଙ୍ଗଳ କାମନା କରୁ ଆମେ ରାଜନୀତିରେ ଧର୍ମ ଭଳି ନିଷ୍ଠା ରଖିବା ଅବଶ୍ୟକ । ଏହା ସହିତ ରାଜନୈତିକ ବ୍ୟକ୍ତିଗଣ ଯେପରି ନୈତିକ ନିୟମାନୁସାରେ ଶାସନ ବ୍ୟବସ୍ଥାକୁ ପରିଚାଳିତ କରନ୍ତି ସେ ପାଇଁ ସେମାନଙ୍କ ଉପରେ ଆମର ନୈତିକ ପ୍ରଭାବ ଜାହିର କରିବା ଦରକାର ।"

୧୯୨୦ ମସିହାରେ ଗାନ୍ଧୀ ଏହି ମତ ପୋଷଣ କରିଥିଲେ । ଭାରତ ଇତିହାସରେ ୧୯୨୦ ଏକ ସ୍ମରଣୀୟ ବର୍ଷ କାରଣ ସ୍ୱରାଜ୍ୟ ପ୍ରାପ୍ତି ପାଇଁ ଏହି ବର୍ଷ କଂଗ୍ରେସ ଗାନ୍ଧୀଙ୍କର ଅହିଂସା ଓ ଅସହଯୋଗ ପନ୍ଥାକୁ ଗ୍ରହଣ କରିଥିଲା । ଏହି ସମୟରେ ଗାନ୍ଧୀଙ୍କର ଅନେକ ଭାଷଣ ଓ ଲେଖା ରଚନାବଳୀର ସପ୍ତଦଶ ଓ ଅଷ୍ଟାଦଶ ଖଣ୍ଡରେ ସ୍ଥାନ ପାଇଛି । ସପ୍ତଦଶ ଖଣ୍ଡଟି ୧୯୨୦ ମସିହାର ଫେବୃଆରି-ଠାରୁ ଜୁନ୍ ପର୍ଯ୍ୟନ୍ତ ଓ ଅଷ୍ଟାଦଶ ଖଣ୍ଡଟି ଜୁଲାଇଠାରୁ ନଭେମ୍ବର ପର୍ଯ୍ୟନ୍ତ ଘଟଣାବଳୀ ଉପରେ ଆଧାରିତ ହୋଇଛି ।

୧୯୪୭ ମସିହାରେ ଭାରତ ସ୍ୱାଧୀନତା ଲାଭ କରିବାରେ 'ଅସହଯୋଗ' ଆମ ରାଜନୈତିକ ବ୍ୟବସ୍ଥାରେ ଅନାବଶ୍ୟକ ହୋଇପଡ଼ିଛି । କାରଣ ଆମେ ଆମ ସରକାରକୁ ନିର୍ବାଚିତ କରୁଛେ । ତେଣୁ ଏହାକୁ ଅସହଯୋଗ ନକରି କିପରି ନିୟନ୍ତ୍ରଣ କରିବାକୁ ହେବ ସେ ପାଇଁ ଆମେ ପନ୍ଥା ବାହାର କରିବା ଦରକାର । କିନ୍ତୁ ଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନ ଓ ତତ୍‌ଜନିତ ରାଜନୈତିକ କାର୍ଯ୍ୟକ୍ରମ ପଶ୍ଚାତରେ ଯେଉଁ ନିୟମ ରହିଛି ସେଥିରୁ ଏପାଇଁ ପ୍ରେରଣା ମିଳିଥାଏ । ଗାନ୍ଧୀ କହିଥିଲେ, "ମୁଁ ଇଂରେଜ, ବ୍ରିଟିଶ ବା ସରକାରୀ ବିରୋଧୀ ନୁହେଁ; କିନ୍ତୁ ମୁଁ ଅସତ୍ୟ, ଛଳନା ଓ ଅନ୍ୟାୟକୁ ବିରୋଧ କରେ । ଯେଉଁ ପର୍ଯ୍ୟନ୍ତ ସରକାର ଅନ୍ୟାୟ କାର୍ଯ୍ୟରେ ଲିପ୍ତ ହେଉଥିବ, ସେପର୍ଯ୍ୟନ୍ତ ମୁଁ ଏହାର ବିରୋଧ କରିବି । ଯେଉଁ ପର୍ଯ୍ୟନ୍ତ ସରକାର ତୁମର ଆତ୍ମସମ୍ମାନକୁ ରକ୍ଷା କରୁଥିବ ସେପର୍ଯ୍ୟନ୍ତ ଏହାକୁ ସହଯୋଗ କରିବା ତୁମର ନୈତିକ କର୍ତ୍ତବ୍ୟ, ସେହିପରି ଯେତେବେଳେ ସରକାର ତୁମର ଆତ୍ମସମ୍ମାନରୁ ତୁମକୁ ବଞ୍ଚିତ କରିବ ସେତେବେଳେ ତାହା ସହିତ ଅସହଯୋଗ କରିବା ମଧ୍ୟ ତୁମର ଅନୁରୂପ କର୍ତ୍ତବ୍ୟ । ତାହା ହିଁ ହେଉଛି ଅସହଯୋଗର ମୀତ । ମୁଁ ଯାହା ସ୍ୱଦେଶୀ ସରକାର ପାଖରେ କରିବି ନାହିଁ ମୁଁ ମଧ୍ୟ ତାହା ବିଦେଶୀ ସରକାର ପାଖରେ କରିବି ନାହିଁ ।" ଆନି ବେସାନ୍ତ ଯେ ଅସହଯୋଗ ଆନ୍ଦୋଳନର ପରିକଳ୍ପନାକୁ ବିରୋଧ କରୁଥିଲେ ଗାନ୍ଧୀ ତାଙ୍କୁ ଓ ଭାରତରେ ଥିବା ପ୍ରତ୍ୟେକ ଇଂରେଜଙ୍କୁ ଏକ ଖୋଲା ଚିଠି ମାଧ୍ୟମରେ ଏହା ଜଣାଇଥିଲେ । ସେହିପରି ଗାନ୍ଧୀ ବଡ଼ଲାଟଙ୍କୁ ବେଶିଷ୍ଟ ହିନ୍ଦ୍

ସ୍ୱର୍ଣ୍ଣପଦକ ଫେରାଇ ଦେବା ଅବସରରେ ମଧ୍ୟ ଏହା ଲେଖିଥିଲେ । ନିଜର ସ୍ୱଭାବରେ ଅତି ବିନୟୀ ଭାବପ୍ରକାଶ କରିଥିବା ଗାନ୍ଧୀ ନିଜ ବିଶ୍ୱାସ ସ୍ତରରେ ଅତ୍ୟନ୍ତ ଦୃଢ଼ ଥିଲେ ।

**ଅନ୍ୟ ପ୍ରତି ଦରଦ :**

ଖିଲାପତ ଓ ସ୍ୱଦେଶୀ ଆନ୍ଦୋଳନ, ଅସହଯୋଗ କାର୍ଯ୍ୟକ୍ରମ ଓ ଅହିଂସା ନୀତି ସମ୍ବନ୍ଧୀୟ ଅନେକ ଲେଖା, ଭାଷଣ ଓ ଚିଠିପତ୍ର ପଢ଼ିବା ସହିତ ଅନେକ ବନ୍ଧୁ ଓ ସହାଲାପକାରୀଙ୍କର ବ୍ୟକ୍ତିଗତ ବ୍ୟାପାରରେ ଦେଇଥିବା ସୁଚିନ୍ତିତ ପରାମର୍ଶ ଜନିତ ଚିଠିପତ୍ର ମଧ୍ୟ ଦେଖିବାକୁ ପାଉ । ଗାନ୍ଧୀଙ୍କର ଏହି ଅନନ୍ୟ ବ୍ୟକ୍ତିତ୍ୱ ପାଇଁ ସେ ବହୁ ଲୋକଙ୍କର ସମସ୍ୟା ସହିତ ସଂଶ୍ଳିଷ୍ଟ ହେବା ହେତୁ ଲୋକେ ତାଙ୍କୁ ଶ୍ରଦ୍ଧାରେ 'ବାପୁ' ବୋଲି ସମ୍ବୋଧନ କରୁଥିଲେ । ସେ ଲୋକମାନଙ୍କୁ ଉତ୍ସାହ ଦେବାରେ ବା ତିରସ୍କାର କରିବାରେ ବି ସମସ୍ତଙ୍କ ପ୍ରତି ମମତା ପ୍ରକାଶ କରୁଥିଲେ । ନିଜର ପତ୍ନୀ ହରାଇ ସହସା ବିବାହ କରିବାକୁ ଯାଉଥିବା ଜଣେ ବ୍ୟକ୍ତିଙ୍କୁ ସେ ଲେଖିଥିଲେ, "ତୁମେ ବିବାହ କରିବାକୁ ଯାଉଥିବା ବିଷୟ ମୁଁ ଗତକାଲି ଶୁଣିଲି । ମୁଁ ଏହାକୁ ଗ୍ରହଣ କରିପାରୁ ନାହିଁ । ତୁମେ କ'ଣ ଗୋଟିଏ ବର୍ଷ ତୁମ ପତ୍ନୀଙ୍କର ବିୟୋଗରେ ଦୁଃଖପ୍ରକାଶ କରିବ ନାହିଁ ? ଯାହାଙ୍କୁ ତୁମେ ଅର୍ଦ୍ଧାଙ୍ଗିନୀ କହୁଥିଲ ତାଙ୍କର ସ୍ମୃତି ଏତେ ଶୀଘ୍ର କିପରି ଭୁଲିଗଲ ? ନିଜକୁ ସଂଯତ କରି ରଖିବା ପାଇଁ ଆମର କ'ଣ କିଛି କର୍ତ୍ତବ୍ୟ ନାହିଁ ? ମୁଁ ଶୁଣିବାକୁ ପାଇଲି ତୁମର ମା' ତୁମକୁ କ୍ୱଅାଡ଼େ ବାଧ୍ୟ କରୁଛନ୍ତି । କିନ୍ତୁ ଏ କ୍ଷେତ୍ରରେ ମା'ଙ୍କର ମତକୁ ସମ୍ମାନ ଦେବାର କ'ଣ ଅଛି ? ଯାହା ଆମ ପାଇଁ ଅସମ୍ମାନଜନକ ତାହା ଆମେ କାହିଁକି କରିବା ? ଆମେ ଯେଉଁ ଶିକ୍ଷାଲାଭ କରିଛେ ସେଥିରୁ କ'ଣ ଶିଖିଛେ ? ଈଶ୍ୱର ତୁମକୁ ସଦ୍‌ବୁଦ୍ଧି ଦିଅନ୍ତୁ ।" ଜଣେ ବନ୍ଧୁ ହିସାବରେ ତୁମକୁ ପରାମର୍ଶ ଦେବା ମୋର କର୍ତ୍ତବ୍ୟ ଭାବି ତୁମକୁ ଏହା ଲେଖିଲି ।

ଆମର ଅତୀତ ଗୌରବକୁ ନେଇ ଗର୍ବ କରିବାରେ ଗାନ୍ଧୀ ବୀତସ୍ପୃହ ଥିଲେ । ସେ କହୁଥିଲେ, "ଆମର ବର୍ତ୍ତମାନର ସ୍ଥିତି କ'ଣ ? ଆମେ କାହିଁକି ଅସହାୟ ଅନୁଭବ କରୁଛୁ ? ଆମର ଅତ୍ୟଧିକ ସ୍ୱାର୍ଥପରତା, ଦେଶ ପାଇଁ କୌଣସି ତ୍ୟାଗ ସ୍ୱୀକାର କରିବା ପାଇଁ ମନୋଭାବର ଅଭାବ, ଆମର ଅସାଧୁତା, ଭୟାତୁର ମନୋଭାବ, ଛଳନା ଓ ଅଜ୍ଞତା ଆମକୁ ଆଜି ଏହି ସ୍ଥିତିରେ ପହଞ୍ଚାଇଛି । ଅବଶ୍ୟ ପ୍ରତ୍ୟେକ ମଣିଷ ଅଳ୍ପେ ବହୁତେ ସ୍ୱାର୍ଥପର, କିନ୍ତୁ ଆମର ସ୍ୱାର୍ଥପରତା ଅନ୍ୟମାନଙ୍କଠାରୁ ବେଶୀ । ହୁଏତ ପାରିବାରିକ ଜୀବନ ପାଇଁ ଆମେ କିଛିତ୍ ତ୍ୟାଗ ସ୍ୱୀକାର କରିପାରୁ; କିନ୍ତୁ ଜାତୀୟ କାର୍ଯ୍ୟ ପାଇଁ ଆମେ ତ୍ୟାଗ ସ୍ୱୀକାର କରିବାକୁ

ପ୍ରସ୍ତୁତ ନୁହେଁ । ଆମର ରାସ୍ତାଘାଟ, ସହର ଓ ରେଳଡବା ଭିତରୁ ଆମେ ଆମ ଦେଶର ଚିହ୍ନ ପାଇପାରିବା । ଆମେ ଆମ ପିଣ୍ଡାରେ ବା ବାଲକୋନିରେ ଛିଡ଼ା ହୋଇ ରାସ୍ତା ଉପରକୁ ମଇଳା ଆବର୍ଜନା ଫିଙ୍ଗିଥାଉ ଓ ଛେପ ପକାଇଥାଉ । ରାସ୍ତାରେ ଯାଉଥିବା ବ୍ୟକ୍ତିମାନଙ୍କର ଅସୁବିଧାକୁ ଆମେ ଦୃଷ୍ଟି ଦେଉନା । ଆମେ ଘରଟିଏ ତୋଳିଲାବେଳେ ଆମର ପଡ଼ୋଶୀଙ୍କର ସୁବିଧା ଅସୁବିଧାକୁ ନଜର ଦେଇନଥାଉ । ବଜାର ସହରରେ ପାଣିକଲରୁ ପାଣି ନେବାପରେ ଏହାକୁ ବନ୍ଦ କରିବାର ଆବଶ୍ୟକତା ଆମେ ଅନୁଭବ କରିପାରୁନା । ସେହିପରି ମଧ୍ୟ ଟ୍ରେନ୍‌ରେ ଆମେ କରିଥାଉ ।''

ଆଜି ବିଂଶତିତମ ସ୍ୱାଧୀନତା ଦିବସରେ ଆମେ ଆମ ଜାତିର ପିତାଙ୍କର କଥା ଶୁଣିବା ଦରକାର ।

## ଧର୍ମ ଓ ରାଜନୀତିର ସମନ୍ୱୟ

### ଗାନ୍ଧୀ ରଚନାବଳୀ ଊନବିଂଶ ଖଣ୍ଡର ସମୀକ୍ଷା :

ଭାରତୀୟ ରାଜନୈତିକ ଦୃଶ୍ୟପଟ୍ଟରେ ଗାନ୍ଧୀ ଯେତେବେଳେ କେନ୍ଦ୍ରବିନ୍ଦୁ ହୋଇଗଲେ ଓ ଲୋକମାନେ ତାଙ୍କୁ ମହାତ୍ମା ଭାବରେ ସମ୍ମାନ କଲେ ସେହି ସମୟରେ ୧୯୨୧ରେ ଗାନ୍ଧୀ ନିଜ ବିଷୟରେ କହିଥିଲେ, ''ଲୋକମାନେ ମୋ ପ୍ରତି ଦୈବୀଶକ୍ତି ଆରୋପ କରୁଛନ୍ତି, କିନ୍ତୁ ବାସ୍ତବରେ ମୋର ସତ୍ୟ ପ୍ରତି ଅନୁରକ୍ତି, କଠିନ ପରିଶ୍ରମ, ବିପକ୍ଷ ଲୋକମାନଙ୍କ ପ୍ରତି ଶ୍ରଦ୍ଧା, ମୋର ଦୋଷତ୍ରୁଟିକୁ ସ୍ୱୀକାର କରିବାର ମନୋଭାବ ଓ ବିବେକ ଉପରେ ଆସ୍ଥା ଭିତରୁ ମୋର ଶକ୍ତି ଆସିଥାଏ ।'' ପୂର୍ବରୁ ଧର୍ମ ଓ ରାଜନୀତିକୁ ମିଶାଇବାରୁ ଯେତେବେଳେ ତାଙ୍କୁ ସମାଲୋଚନା କରାଯାଇଛି ତା'ର ଉତ୍ତରରେ ସେ ଲେଖିଥିଲେ, ''ମୁଁ ମୋର ଜୀବନକୁ ରାଜନୈତିକ କାର୍ଯ୍ୟକଳାପ ଭିତରେ ସମ୍ପୃକ୍ତ କରିବାରେ ଧର୍ମକୁ ରାଜନୀତିଠାରୁ ପୃଥକ୍ କରିନାହିଁ । ଗୋଖ୍‌ଲେ ରାଜନୀତିର ଅଧ୍ୟାତ୍ମିକୀକରଣ ବିଷୟରେ ଯାହା କହିଛନ୍ତି ମୁଁ ସେଥିରେ ବିଶ୍ୱାସ କରି ସେ ଢଙ୍ଗରେ ମୋର ସାମର୍ଥ୍ୟାନୁସାରେ କାର୍ଯ୍ୟ କରିଛି ।''

ଗାନ୍ଧୀ ଜଣେ ସନ୍ଥଙ୍କ ପରି ଶୃଙ୍ଖଳିତ ଓ ରାଜନୀତିରେ କ୍ରିୟାଶୀଳ ରହିଥିଲେ । ଏହି ଦୁଇଗୁଣ ପରସ୍ପର ଅସଙ୍ଗତ ନୁହନ୍ତି । ଅପରପକ୍ଷରେ ସାଧୁତା ଓ ରାଜନୀତିକୁ ପୃଥକ୍ କରିବା ଦ୍ୱାରା ଗୋଟିଏ ନିଷ୍ଫଳ ଓ ଅନ୍ୟଟି ଅନିଷ୍ଟକର ହୋଇଥାଏ । ବରଂ ଧର୍ମର ନୈତିକ ମୂଲ୍ୟବୋଧ ସହିତ ରାଜନୈତିକ ବାସ୍ତବତାର ମିଶ୍ରଣ ଗାନ୍ଧୀଙ୍କର ଏକ ଅଭିନବ ଅବଦାନ ମନେହୁଏ । ଏହି ପ୍ରକ୍ରିୟାରେ ସେ ଧର୍ମରୁ କୁସଂସ୍କାରକୁ ଓ ରାଜନୀତିରୁ କ୍ଷମତାଲୋଭକୁ ଦୂର କରିବାରେ ବରଂ ସମର୍ଥ ହୋଇଛନ୍ତି ।

ଗାନ୍ଧୀ ରଚନାବଳୀର ଊନବିଂଶ ଖଣ୍ଡରେ ନଭେମ୍ବର ୧୯୨୦ରୁ ଏପ୍ରିଲ ୧୯୨୧ ପର୍ଯ୍ୟନ୍ତ ଘଟଣାବଳୀ ରହିଛି । ଏଥିରେ ମୁଖ୍ୟତଃ ଧର୍ମ ଓ ରାଜନୀତି ଭିତରେ ସମନ୍ୱୟ ଆଣିବାକୁ ତାଙ୍କର ଉଦ୍ୟମ ଦେଖିବାକୁ ମିଳିଥାଏ ।

**ଅସହଯୋଗ :**

ଏହି ସମୟରେ ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ଜନଗଣଙ୍କର ଅସହଯୋଗ ଆନ୍ଦୋଳନ ତୀବ୍ର ଆକାର ଧାରଣ କରିଥିଲା । ନୈତିକ ଆଭିମୁଖ୍ୟ ବ୍ୟତୀତ ଏହି ଆନ୍ଦୋଳନ ଏକ ଧ୍ୱଂସାତ୍ମକ ରୂପ ନେଇଥାନ୍ତା ଓ ପରସ୍ପର ପ୍ରତି ଏକ ବିଦ୍ୱେଷପୂର୍ଣ୍ଣ ମନୋଭାବରେ ସମାପ୍ତ ହୋଇଥାନ୍ତା । କିନ୍ତୁ ଧର୍ମ ସହିତ ରାଜନୀତିର ସଂଯୋଗ ଯୋଗୁଁ ଏହି ଆନ୍ଦୋଳନ ଏକ ସମ୍ମାନଜନକ ଆଭିମୁଖ୍ୟ ନେଇଥିବାରୁ ସମଗ୍ର ପୃଥିବୀର ଦୃଷ୍ଟି ଆକର୍ଷଣ କରିଥିଲା । ସ୍ୱାଧୀନତା, ନୈତିକତା ଓ ଶାନ୍ତି ପ୍ରତିଷ୍ଠା ପାଇଁ ସମଗ୍ର ବିଶ୍ୱରେ ମଣିଷର ମାନସିକତାରେ ଏହା ଏକ ନୂତନ ଦିଗନ୍ତର ସନ୍ଧାନ ଦେଇଥିଲା ।

ରାଜନୈତିକ ସଂଗଠନ କ୍ଷେତ୍ରରେ ବାସ୍ତବ ଆବଶ୍ୟକତାକୁ ସାମ୍ପ୍ରଦାୟିକ ସଦ୍‌ଭାବ ପ୍ରତିଷ୍ଠା ଓ ଅସ୍ପୃଶ୍ୟତା ଦୂରୀକରଣ ପାଇଁ ଗାନ୍ଧୀ କାର୍ଯ୍ୟକ୍ରମ ଗ୍ରହଣ କରିଥିଲେ । ଏହି ପରିପ୍ରେକ୍ଷୀରେ ସନାତନୀ ହିନ୍ଦୁ ଓ ଗାନ୍ଧୀଙ୍କ ଭିତରେ ମତପାର୍ଥକ୍ୟ ସୃଷ୍ଟି ହୋଇଥିଲା । ଗାନ୍ଧୀ ସ୍ୱୀକାର କରିଥିଲେ, "ମୁଁ ନିଜେ ଜଣେ ରକ୍ଷଣଶୀଳ ହିନ୍ଦୁ । ମୁଁ ନିଜକୁ ଜଣେ ସନାତନୀ ହିନ୍ଦୁ ବୋଲି କହିବି । ସମ୍ପ୍ରତି ଗୁଜୁରାଟରେ କେତେକ ହିନ୍ଦୁଙ୍କ ସହିତ ମୋର ଏକ ବିବାଦ ସୃଷ୍ଟି ହୋଇଛି । ସେମାନେ ମୋର ସନାତନୀ ହିନ୍ଦୁ ବକ୍ତବ୍ୟକୁ ଅସ୍ୱୀକାର କରୁଛନ୍ତି । ଅତି ବିଚାରଶୀଳ ଭାବରେ ଗୁଜୁରାଟରେ ଅସ୍ପୃଶ୍ୟତା ଦୂର କରିବା ପାଇଁ ମୁଁ ଅନୁରୋଧ କରୁଛି । ଧର୍ମ ବା ଶାସ୍ତ୍ରର ଦୋହାଇଦେଇ ଯେକୌଣସି ବିଶ୍ୱାସକୁ ଗ୍ରହଣ କରିବା ବିପଜ୍ଜନକ ମନେହୁଏ । ଶଙ୍କରାଚାର୍ଯ୍ୟଙ୍କ ସଭାପତିତ୍ୱରେ ଅସ୍ପୃଶ୍ୟତାକୁ କାଏମ ରଖିବା ପାଇଁ ହୋଇଥିବା ନିଷ୍ପତ୍ତିଦ୍ୱାରା ପରିଚାଳିତ ନହେବାକୁ ମୁଁ ଗୁଜୁରାଟର ହିନ୍ଦୁମାନଙ୍କୁ ନିବେଦନ କରୁଛି । ଅସ୍ପୃଶ୍ୟତା ପରି ଏକ ଜଘନ୍ୟ କଥା ଧର୍ମର ସ୍ୱୀକୃତି ନେବା ଦୁଃଖଦାୟକ । ଆମର ଧର୍ମଗୁରୁ ଏପରି ଅଜ୍ଞତା ଭିତରେ ବୁଡ଼ିରହିଛନ୍ତି ଯେ ତାଙ୍କୁ ଏହା ବୁଝାଇବା ସମ୍ଭବ ହେଉନାହିଁ । ଯଦିବା ବେଦ ବା ମନୁସ୍ମୃତିରେ ଏହା ଥାଏ ତେବେ ତାହାର ପରିବର୍ତ୍ତନ ହେବା ଆବଶ୍ୟକ ।" ଗାନ୍ଧୀ ଏହିପରି ଦୃଢ଼ତାର ସହ ଅସ୍ପୃଶ୍ୟତାକୁ ବିରୋଧ କରିଥିଲେ ।

ଗାନ୍ଧୀ ମଧ୍ୟ ରାଜନୀତିକୁ ଦୋଷତ୍ରୁଟିରୁ ମୁକ୍ତ କରିବାକୁ ପ୍ରୟାସ କରିଛନ୍ତି । ସେ ଗୁପ୍ତତାକୁ ନିନ୍ଦା କରିଛନ୍ତି । ରାଜନୀତିରେ କୌଣସି କାର୍ଯ୍ୟକୁ ଗୁପ୍ତରେ କରିବାକୁ

ସେ ପାପ ବୋଲି ଗ୍ରହଣ କରିଛନ୍ତି । ସେ କହିଛନ୍ତି, "ରାଜନୀତିରେ ଗୁପ୍ତତା ଅବଲମ୍ବନ କରିବା ଦ୍ୱାରା ଭୀରୁତା ଆସିଥାଏ ଓ ନିଜର କଥାକୁ ଜଣେ ଲୁଚାଇଥାଏ । କିନ୍ତୁ ମୋର ଯୋଜନାକୁ ମୁଁ ସର୍ବ ସମ୍ମୁଖରେ ଉପସ୍ଥାପନ କରି ବହୁ ସୁଫଳ ପାଇଛି । ଯେଉଁ ମୁହୂର୍ତ୍ତରେ କୌଣସି ଗୁପ୍ତଚରର ଉପସ୍ଥିତିକୁ ତୁମେ ଭୟ କରୁନାହଁ ଓ ତାଙ୍କ ସହିତ ସେପରି ସତର୍କ ହୋଇ ବ୍ୟବହାର କରୁନାହଁ ସେ ମୁହୂର୍ତ୍ତରେ ତାଙ୍କର ଉପସ୍ଥିତି ତୁମ ପାଇଁ ଅସୁବିଧା ସୃଷ୍ଟି କରେ ନାହିଁ ।"

**ଅର୍ଥଶୂନ୍ୟ ବାକ୍ୟାଂଶ :**

ଗୁରୁବାଦ ଉପରେ ଗାନ୍ଧୀଙ୍କର ଏକ ନିଜସ୍ୱ ଦୃଷ୍ଟିଭଙ୍ଗୀ ଥିଲି ଯାହା ଉକ୍ତ ବକ୍ତବ୍ୟରୁ ଜଣାଯାଏ । "ଏ ଯୁଗରେ ଜଣଙ୍କୁ ଗୁରୁ ବୋଲି ଗ୍ରହଣ କରିବା ବା ଅନ୍ୟର ଗୁରୁ ବୋଲି ନେବା ବିପଜ୍ଜନକ ମନେହୁଏ । ଯେଉଁମାନେ ମୋ ବିଚାର-ଧାରାକୁ ଗ୍ରହଣ କରନ୍ତି ମୁଁ ସେମାନଙ୍କୁ ମୋର ଅଭିନନ୍ଦନ ଜଣାଉଛି; କିନ୍ତୁ କେହି ମୋର ଚେଲା ହୁଅନ୍ତୁ ମୁଁ ଏହା ଚାହେଁ ନାହିଁ । କୌଣସି ମତକୁ ଗ୍ରହଣ କରିବା ପଶ୍ଚାତରେ ବିଚାରଶୀଳତା ଥାଏ । କିନ୍ତୁ କୌଣସି ବ୍ୟକ୍ତିଙ୍କୁ ଗ୍ରହଣ କରିବା ପଶ୍ଚାତରେ ବିଶ୍ୱାସ ରହିଥାଏ । ମୋର ବିଚାରକୁ ଗ୍ରହଣ କରିବା ଓ ମୋର ଅନୁଗାମୀ ହେବା ଭିତରେ ଫରକ ରହିଛି । ଗ୍ଲାଡ୍‌ଷ୍ଟୋନଙ୍କ ମତରେ ଯେପରି ଜଣେ ବ୍ୟକ୍ତିକୁ ନିର୍ବୁଦ୍ଧିଆ କହିବା ଓ ତାଙ୍କ ବିଚାରକୁ ତ୍ରୁଟିପୂର୍ଣ୍ଣ କହିବା ଭିତରେ ପାର୍ଥକ୍ୟ ରହିଛି ସେହିପରି ପୂର୍ବୋକ୍ତ କ୍ଷେତ୍ରରେ ମଧ୍ୟ ପାର୍ଥକ୍ୟ ରହିଛି ।"

ଗାନ୍ଧୀ ଯଦିବା ନୈତିକ ନିୟମ ସକଳକୁ ଧର୍ମର ପରିଭାଷା ଭିତରେ ବ୍ୟାଖ୍ୟା କରିଛନ୍ତି ଓ ସମୟରେ ଜଣେ ରହସ୍ୟବାଦୀ ପରି ମନେହୁଅନ୍ତି ସେ କୁସଂସ୍କାରକୁ ପରିହାର କରିବା ନେଇ ସତର୍କତା ଅବଲମ୍ବନ କରିଛନ୍ତି । ସେ ଅବଶ୍ୟ 'ଆତ୍ମ-ଶକ୍ତି', 'ଅନ୍ତର୍ବାଣୀ' ଇତ୍ୟାଦି ଶବ୍ଦ ବ୍ୟବହାର କରିଛନ୍ତି । କିନ୍ତୁ ଏ କ୍ଷେତ୍ରରେ ତାଙ୍କର ପ୍ରଦତ୍ତ ମନ୍ତବ୍ୟରୁ ତାଙ୍କ ବିଚାର ସ୍ପଷ୍ଟ ମନେହୁଏ । "ଜଣେ ସନ୍ନ୍ୟାସୀ ହୁଅନ୍ତୁ ବା ତଥାକଥିତ ମହାତ୍ମା ହୁଅନ୍ତୁ କେହି ଆତ୍ମ ଶକ୍ତିକୁ ନିଜର ଏକଚାଟିଆ ଅନୁଭୂତି ଭାବରେ ନେଇ ପାରିବେ ନାହିଁ । ନାରୀ ପୁରୁଷ ନିର୍ବିଶେଷରେ କେହି ପ୍ରୟାସ କଲେ ନିଜର ଆତ୍ମଶକ୍ତିକୁ ପ୍ରୟୋଗ କରିପାରିବେ ।

**ଏକ ମହତ ଶତ୍ରୁ :**

ଗାନ୍ଧୀଙ୍କୁ ଜଣେ ସଚ୍ଚା ବନ୍ଧୁ ଓ ମହତ୍ ଶତ୍ରୁ ବୋଲି କୁହାଯାଏ । ତାଙ୍କ ବିରୋଧୀଙ୍କ ପ୍ରତି ସେ ଅବଶ୍ୟ ଉଦାର ମନୋଭାବ ପୋଷଣ କରୁଥିଲେ । ସେ ପ୍ରାଚୀନ ପ୍ରଶ୍ନଗୁଡ଼ିକୁ ପୁନରୁତ୍‌ଥାନ କରି ସମୟରେ ବିବାଦପୂର୍ଣ୍ଣ ମନ୍ତବ୍ୟ ଦେବା

ଦ୍ୱାରା ଓ ପ୍ରଗତିର ଧାରାକୁ ପ୍ରତିହତ କରୁଥିବା ବିଚାରଗୁଡ଼ିକୁ ସମାଲୋଚନା କରିବା ଫଳରେ ଅନେକ ତାଙ୍କର ବିରୋଧୀ ହୋଇଥିଲେ । ପରେ ସେମାନଙ୍କ ମତ ସହ ସମ୍ମତ ନଥିବା କେତେକ ଛାତ୍ର ଅନ୍ୟ ବକ୍ତାମାନଙ୍କର କହିବା ସମୟରେ ପ୍ରତିବନ୍ଧକ ସୃଷ୍ଟି କରୁଥିବା ଯୋଗୁଁ ସେ ସେମାନଙ୍କୁ କଠୋର ଭାଷାରେ ସମାଲୋଚନା କରିଥିଲେ । ସେ ଛାତ୍ରମାନଙ୍କୁ ଆକ୍ଷେପ କରି କହିଥିଲେ, "ପ୍ରତ୍ୟେକ ବକ୍ତାଙ୍କର ମନ୍ତବ୍ୟକୁ ତୁମେ ଧୈର୍ଯ୍ୟର ସହ ଶୁଣିବା ଆବଶ୍ୟକ । ଆମେ ପ୍ରତ୍ୟେକ ବକ୍ତାଙ୍କୁ ମଧ୍ୟ ବିଶ୍ୱାସ କରିବା ଦରକାର । ଏପରିକି କେହି ଅବାନ୍ତର କଥା କହିଲେ ମଧ୍ୟ ସୌଜନ୍ୟତା ଦୃଷ୍ଟିରୁ ତାଙ୍କର ବକ୍ତବ୍ୟକୁ ଶୁଣିବା ଆବଶ୍ୟକ । ଅବଶ୍ୟ କୌଣସି ବିଷୟରେ ବିଚାର କରି ସିଦ୍ଧାନ୍ତକୁ ଆସିବାର ସମସ୍ତ ସ୍ୱାଧୀନତା ଆମର ରହିଛି । କୌଣସି ବକ୍ତାଙ୍କର ମନ୍ତବ୍ୟ କପଟପୂର୍ଣ୍ଣ ହେବା ତୁମେ ଅନୁଭବ କଲେ ତାଙ୍କ ସଭାରେ ଗଣ୍ଡଗୋଳ ନକରି ବରଂ ସ୍ଥାନ ଛାଡ଼ି ଚାଲିଯିବା ଉଚିତ ।"

ଗାନ୍ଧୀ ବାରମ୍ବାର କହିଛନ୍ତି, "କାହା ପ୍ରତି କପଟ ଦୃଷ୍ଟିଭଙ୍ଗୀ ନେବାକୁ ମୁଁ ବିରୋଧ କରେ । ଯଦି ଅହିଂସା ଓ ଅସହଯୋଗ ଆନ୍ଦୋଳନ ସଫଳ ହୁଏ ତେବେ ଇଂରେଜମାନେ ଏଠାରେ ରହନ୍ତୁ ବା ଏଠାରୁ ଚାଲିଯା'ନ୍ତୁ ସେମାନେ ଆମର ବନ୍ଧୁ ହୋଇ ରହିବେ । ସେମାନେ ଇଂରେଜ ହୁଅନ୍ତୁ ବା ଅନ୍ୟ ଯେ କେହି ହୁଅନ୍ତୁ ମୁଁ ସର୍ବଦା ମଣିଷର ଉତ୍ତମ ସ୍ୱଭାବ ଉପରେ ଭରସା କରିଆସିଛି ।" ଗାନ୍ଧୀ ଥିଲେ ପ୍ରଚଣ୍ଡ ଆଶାବାଦୀ ଓ ଜଣେ ତେଜସ୍ୱୀ କର୍ମଯୋଗୀ ।

## ଏକ ସ୍ମରଣୀୟ ବିଚାର

### ଗାନ୍ଧୀ ରଚନାବଳୀର ଏକବିଂଶରୁ ତ୍ରୟୋବିଂଶ ଖଣ୍ଡ ପର୍ଯ୍ୟନ୍ତ ସମୀକ୍ଷା :

ମାର୍ଚ୍ଚ ୧୮, ୧୯୨୨ରେ ଏପରି ଏକ ବିଚାର ହୋଇଥିଲା ଯାହା ବିଚାର ବିଭାଗ ଇତିହାସରେ ଏକ ସ୍ମରଣୀୟ ଘଟଣା ଅଟେ । ଏହି ବିଚାରରେ ସେପରି କିଛି ଜଟିଳ ପ୍ରଶ୍ନ ଦୃଷ୍ଟିରୁ ନୁହେଁ ବରଂ ଆଇନର ମାନବୀକରଣ ଦୃଷ୍ଟିରୁ ଏହା ଗୁରୁତ୍ୱପୂର୍ଣ୍ଣ ଅଟେ । ଜଣେ ଆଦର୍ଶ ବିଚାରପତି ଜଣେ ମହାନ୍ ଦୋଷୀଙ୍କର ବିଚାର କରିଥିଲେ ।

ଯଦିବା ଭାରତର ସ୍ୱାଧୀନତା ପାଇଁ ଅସହଯୋଗ ଆନ୍ଦୋଳନ ୧୯୨୦ରେ ଆରମ୍ଭ ହୋଇଥିଲା ଓ ହଜାର ହଜାର ବ୍ୟକ୍ତି ସତ୍ୟାଗ୍ରହ କରି କାରାବରଣ କରିଥିଲେ ଗାନ୍ଧୀ କେବଳ ୧୯୨୨ ମସିହାରେ ଶଙ୍କରଲାଲ ବାଙ୍କରଙ୍କ ସହିତ ଗିରଫ ହେଲେ । 'ୟଙ୍ଗ ଇଣ୍ଡିଆ' ପତ୍ରିକାରେ ସରକାରୀ ବିରୋଧୀ ଲେଖା ପାଇଁ ତାଙ୍କୁ ଗିରଫ କରାଯାଇଥିଲା । ଯେଉଁ ତିନୋଟି ଲେଖା ପାଇଁ ତାଙ୍କୁ ଅଭିଯୁକ୍ତ କରାଯାଇଥିଲା ତାହା ହେଲା, ରାଜଭକ୍ତିରେ ହସ୍ତକ୍ଷେପ, ସମସ୍ୟା ଓ ସମାଧାନ ଓ ନାଆଁ ସହିତ ଖେଳ । ଏଗୁଡ଼ିକ ରଚନାବଳୀର ଏକବିଂଶ ଓ ଦ୍ୱାବିଂଶ ଖଣ୍ଡରେ ସ୍ଥାନ ପାଇଛି ।

ଗାନ୍ଧୀ ଏହି ଲେଖା ପାଇଁ ନୈତିକ ଦାୟିତ୍ୱ ବହନ କରି ବିଚାରାଳୟରେ ଦୀର୍ଘ ବିବୃତି ଦେଇଥିଲେ । ଶେଷରେ ସେ ହାକିମଙ୍କ ସହ ସ୍ୱୀକାର କରିଥିଲେ, "ମୁଁ ଏଠାରେ ଉପସ୍ଥିତ ରହି ବିଚାରପତିଙ୍କୁ ଶ୍ରଦ୍ଧାର ସହ ନିବେଦନ କରୁଛି ଯେ ସେ ଆଇନ ଦୃଷ୍ଟିରେ ଯେତେ କଠୋର ଦଣ୍ଡ ସମ୍ଭବ ମୋତେ ଦେଇପାରନ୍ତି । ଆଇନ ଦୃଷ୍ଟିରୁ ନିଶ୍ଚିତ ଭାବେ ଇଚ୍ଛାକୃତ ଭାବରେ ମୁଁ ଏହି ଅପରାଧ କରିଛି, କିନ୍ତୁ ଜଣେ ସଚେତନ ନାଗରିକ ଭାବରେ ଏହା କରିବା ମୋର ସର୍ବୋତ୍ତମ କର୍ତ୍ତବ୍ୟ ବୋଲି ମୁଁ ଅନୁଭବ କରୁଛି । ସୁତରାଂ ବିଚାରପତି ମହୋଦୟ ! ହୁଏତ ଆପଣ ନିଜ ପଦବୀରୁ ଇସ୍ତଫା ଦେଇ ଅନ୍ୟାୟରୁ ନିଜକୁ ମୁକ୍ତ ରଖିପାରନ୍ତି କିମ୍ବା ମୋ ପ୍ରତି କଠୋର ଦଣ୍ଡ ବିଧାନ କରିପାରନ୍ତି ।"

ବିଚାରପତି ଆର. ଏସ. ବ୍ରୁମଫିଲ୍ଡ଼ ଅନୁରୂପ ଉଦାରତା ଓ ସୌଜନ୍ୟତା ପ୍ରଦର୍ଶନ କରିଥିଲେ । ଗାନ୍ଧୀଙ୍କୁ ଛ' ବର୍ଷ କାରାଦଣ୍ଡ ଦେଇ ସେ ହାକିମଙ୍କ ସହ ଘୋଷଣା କରିଥିଲେ, "ମୁଁ ଏ ପର୍ଯ୍ୟନ୍ତ ଯେତେ ଘଟଣାର ବିଚାର କରିଛି ବା ଭବିଷ୍ୟତରେ କରିବି ବୋଲି ଭାବୁଛି, ସେଥିରେ ଆପଣଙ୍କ ପରି ଜଣେ ବ୍ୟକ୍ତିଙ୍କର ସମ୍ପର୍କରେ ଆସି ପାରିବି ନାହିଁ । ଆପଣ ଜଣେ ଆଦର୍ଶ ଦେଶପ୍ରେମୀ ଓ ମହାନ୍ ନେତା । ଏପରିକି ଯେଉଁମାନେ ରାଜନୀତିରେ ଆପଣଙ୍କ ମତ ସହ ଏକମତ ନୁହନ୍ତି ସେମାନେ ମଧ୍ୟ ଆପଣଙ୍କର ଉଚ୍ଚ ଆଦର୍ଶ ଓ ମହାନ୍ ଜୀବନକୁ ସ୍ୱୀକାର କରିବେ । ଆଇନର ପରିସର ଭିତରେ ଆପଣଙ୍କ ପ୍ରତି ଏହି ଦଣ୍ଡବିଧାନ କରିଥିଲେ ବି ମୁଁ ଏହା କହିବାକୁ ଚାହେଁ ଯେ ଯଦି ଭାରତବର୍ଷରେ ଘଟଣାପ୍ରବାହ ପରିବର୍ତ୍ତିତ ହୋଇ ସରକାର ଏହି ସମୟସୀମାକୁ କମ୍ କରନ୍ତି ବା ଆପଣଙ୍କୁ ମୁକ୍ତ କରନ୍ତି ତେବେ ମୁଁ ଏଥିରେ ଅନ୍ୟମାନଙ୍କ ଅପେକ୍ଷା ସବୁଠାରୁ ଅଧିକ ଆନନ୍ଦିତ ହେବି ।"

## ଜେଲ୍ କଠୋରତା :

କୋର୍ଟ ବିବରଣୀରେ ଅପରାଧୀ ବା ଅଭିଯୋଗର ମୂଲ୍ୟାୟନ ପରିବର୍ତ୍ତେ ବିଚାରପତି ଓ ଅଭିଯୁକ୍ତଙ୍କ ମଧ୍ୟରେ ସୌଜନ୍ୟ ଆଦାନପ୍ରଦାନ ଦେଖିବାକୁ ମିଳେ । ଏହି କେଶ୍ ସମ୍ବନ୍ଧୀୟ ସମସ୍ତ ଦଲିଲ ଉପ୍ରୋକ୍ତ ବିଭାଗ ଖଣ୍ଡରେ ରହିଛି ଯାହାକି ମାର୍ଚ୍ଚ ୧୯୨୨ରୁ ମେ ୧୯୨୪ ପର୍ଯ୍ୟନ୍ତ ଘଟଣାବଳୀ ଉପରେ ଆଧାରିତ ।

ପୁନାସ୍ଥିତ ଓ୍ୟାରଓ୍ୱାଡ଼ା ଜେଲର ଯେଉଁ କୋଠରି ନିରୋଳା ବାସ ପାଇଁ ଉଦ୍ଦିଷ୍ଟ ଗାନ୍ଧୀଙ୍କୁ ସେଠାରେ ରଖାଯାଇଥିଲା । ଜଣେ ସାଧାରଣ କଏଦୀଙ୍କ ଭଳି ତାଙ୍କୁ ବ୍ୟବହାର କରାଯାଉଥିଲା । ସେହି ଜେଲରେ ରହିଥିବା ଶଙ୍କରଲାଲଙ୍କୁ ଦେଖା କରିବାକୁ ତାଙ୍କୁ ସୁଯୋଗ ଦିଆଯାଇନଥିଲା । ସାଧାରଣ ଭାବରେ ତାଙ୍କୁ ଦୁଇଟି କମ୍ବଳ, ନଡ଼ିଆକତାରେ ପ୍ରସ୍ତୁତ ଗୋଟିଏ ପଟି ଓ ଦୁଇଖଣ୍ଡ ବିଛଣା ଚଦର

ମିଳିଥିଲା । ବଲକା ଲୁଗା ଓ ବହିକୁ ସେ ଡକଥା ଭାବରେ ବ୍ୟବହାର କରୁଥିଲେ । ଏକଦା ଯେତେବେଳେ ରାଜଗୋପାଲଚାରୀ ଗାନ୍ଧୀଙ୍କ ସହିତ ଏକ ସାକ୍ଷାତକାର ପାଇଁ ଯାଇଥିଲେ ସେତେବେଳେ ଜେଲ୍ ତତ୍ତ୍ୱାବଧାରକଙ୍କ ଉପସ୍ଥିତିରେ ଏହା ହୋଇଥିଲା । ତତ୍ତ୍ୱାବଧାରକ ଏକ ଚଉକିରେ ବସି ରହିଥିଲେ ଓ ତାଙ୍କ ସମ୍ମୁଖରେ ଟେବୁଲ ସାମ୍ନାରେ ପୂରା ସମୟ ଠିଆ ହୋଇ ଗାନ୍ଧୀ ଏହି ସାକ୍ଷାତକାର ଦେଇ-ଥିଲେ । ଏହି ଖଣ୍ଡରେ ଜେଲ୍ କର୍ତ୍ତୃପକ୍ଷଙ୍କୁ ଗାନ୍ଧୀ କେତେକ ବହି ଓ ମାଗାଜିନ୍ ପାଇଁ ଅନୁରୋଧ ଜଣାଇ ଲେଖିଥିବା ପତ୍ରଗୁଡ଼ିକ ମଧ୍ୟ ଦେଖିବାକୁ ମିଳେ ।

ବନ୍ଦୀ ଥିବା ଅବସ୍ଥାରେ ଗାନ୍ଧୀ ଗୁଜୁରାଟୀ ଭାଷାରେ ପିଲମାନଙ୍କ ପାଇଁ ଏକ ବହି ଲେଖିଥିଲେ, ଯାହା ଜେଲରୁ ଖଲାସ ହେବା ପରେ 'ବାଲପୋଥି' ନାମରେ ପ୍ରକାଶିତ ହୋଇଥିଲା । ଦକ୍ଷିଣ ଆଫ୍ରିକାର ଟଲଷ୍ଟୟ ଫାର୍ମରେ ସେ ପିଲମାନଙ୍କୁ ଯେଉଁ ପଦ୍ଧତିରେ ପଢ଼ାଉଥିଲେ ସେହି ଧାରାରେ ଏହି ବହିଟି ରଚନା କରିଥିଲେ । ପ୍ରତ୍ୟେକଟି ପାଠ୍ୟ ବିଷୟରେ ସେ ମା'ର ଭୂମିକାରେ ରହି ଲେଖିଥିଲେ । ପିଲମାନେ ସମ୍ପୃକ୍ତ ଥିବା ବହୁ ବିଷୟ ଏଥିରେ ସ୍ଥାନ ପାଇଥିଲା । ଦାନ୍ତଘଷା, ଭଜନ, ଖେଳ, ସୂତାକଟା, ପରିଚ୍ଛନ୍ନତା, ଘରକାମ ଇତ୍ୟାଦି ବହୁବିଧ ପ୍ରସଙ୍ଗ ଏଥିରେ ଥିଲା । ଦାନ୍ତ ଘଷିବା ଉପରେ ଲେଖିଥିଲେ, "ତୁମେ ଦାନ୍ତ ଘଷିଛ କି ? ତୁମ ଦାନ୍ତ ମୋତେ ଦେଖାଅ । ତୁମେ ଠିକ୍ ଭାବରେ ଦାନ୍ତ ଘଷିନାହଁ । ତୁମର ଜିଭ ମଧ୍ୟ ପରିଷ୍କାର-ଭାବେ ଛେଲିବାରେ ତୁମେ ଯତ୍ନ ନେଇନାହଁ । ତୁମେ କେଉଁ ଦାନ୍ତକାଠି ବ୍ୟବହାର କରୁଛ ?"

"ବାବୁଲ ଗଛର କାଠି ।"

"ତୁମେ ନିମ ଦାନ୍ତକାଠି କାହିଁକି ବ୍ୟବହାର କରୁନାହଁ ?"

"ଏହା ପିତା ।"

"ସେଥିରୁ କ'ଣ ହେଲା ? ଏଥିରେ ଦାନ୍ତ ଘଷିଲେ ପାଟି ପରିଷ୍କାର ଲାଗେ । ଅଳ୍ପେ ଅଳ୍ପେ ଅଭ୍ୟାସ କଲେ ତୁମେ ପିତା ଭଲ ପାଇବ ।"

**ଖଲାସ :**

ଗାନ୍ଧୀ ପୂର୍ଣ୍ଣ ସମୟ ଜେଲ୍‌ରେ ରହିଲେ ନାହିଁ । ଅପେଣ୍ଡିସାଇଟସ୍ ଅପରେସନ୍ ପାଇଁ ଜାନୁଆରୀ ୧୨, ୧୯୨୪ରେ ତାଙ୍କୁ ନିଃସର୍ତ୍ତ ଖଲାସ କରାଗଲା । ଡାକ୍ତର ମୋହନ ସଫଳତାର ସହିତ ଏହି ଅସ୍ତ୍ରୋପଚାର କଲେ । ଦେଶବାସୀ ଉତ୍କଣ୍ଠାର ସହ ତାଙ୍କ ସ୍ୱାସ୍ଥ୍ୟାବସ୍ଥା ପାଇଁ ଅପେକ୍ଷା କରିଥାନ୍ତି । ଡାକ୍ତରଖାନାରୁ ଆସିବା ପରେ ସେ ପୁନଶ୍ଚ ସାଧାରଣ କାର୍ଯ୍ୟରେ ନିଜକୁ ସମ୍ପୂର୍ଣ୍ଣ ଭାବରେ ସମ୍ପୃକ୍ତ

କରାଇଲେ । ମାଲବାରର ଭାଇକମ୍‌ଠାରେ ଅସ୍ପୃଶ୍ୟତା ବିରୁଦ୍ଧରେ ସତ୍ୟାଗ୍ରହ ଆରମ୍ଭ ହୋଇଥାଏ । ଗୁଜୁରାଟରେ ଅସ୍ପୃଶ୍ୟତା ବିରୁଦ୍ଧରେ ଗାନ୍ଧୀ ଅବିରତ ସଂଗ୍ରାମ ଚଳାଇଥିଲେ । ଶାସ୍ତ୍ରର ବ୍ୟାଖ୍ୟା ଯୁକ୍ତିସମ୍ମତ ଭାବରେ କରିବାକୁ ସେ ନିବେଦନ କରିଥିଲେ । ସେ ଲେଖିଛନ୍ତି, "ମୋ ମତରେ ଆମ ଧର୍ମଗ୍ରନ୍ଥଗୁଡ଼ିକର ଲେଖାକୁ କିମ୍ବା ଯାଜ୍ଞବଲ୍କ୍ୟ ବା ଋଷିମାନଙ୍କର ଅସଲଗ୍ନ ଲେଖାଗୁଡ଼ିକର ବିଷୟକୁ ଚିରନ୍ତନ ବୋଲି ଗ୍ରହଣ କରିବା ଠିକ୍ ନୁହେଁ । ସେତେବେଳର ପରିସ୍ଥିତି ଅପେକ୍ଷା ଆଜିର ପରିସ୍ଥିତି ସମ୍ପୂର୍ଣ୍ଣ ଭିନ୍ନ ।"

ସେ ଦ୍ରୋପଦୀଙ୍କର ଉଦାହରଣ ଦେଇ କହୁଥିଲେ, "କୌଣସି ସଭ୍ୟ ଭଦ୍ରମହିଳା ବର୍ତ୍ତମାନ ପାଞ୍ଚଜଣ ସ୍ୱାମୀ ଗ୍ରହଣ କରିବ କି ?" ଏପରି କୌଣସି ହିନ୍ଦୁ ନାହିଁ ଯାହାକୁ କି ମୁଁ ରାମାୟଣଠାରୁ ଅଧିକ ଭଲପାଏ । ସେଥିପାଇଁ କ'ଣ ତୁଳସୀ ଦାସ ତାଙ୍କ ରଚନାରେ ଶାସ୍ତ୍ର ବିଷୟରେ ଯାହା ବର୍ଣ୍ଣନା କରିଛନ୍ତି ସବୁକିଛିକୁ ଗ୍ରହଣ କରିବ ?"

ଭାରତୀୟ ସଙ୍ଗୀତର ଜଣେ ବିଶିଷ୍ଟ ପ୍ରବକ୍ତା ଦିଲ୍ଲୀପ କୁମାର ରାୟଙ୍କୁ ଗାନ୍ଧୀ କଳା ବିଷୟରେ ତାଙ୍କର ମତାମତ ଜଣାଇଥିଲେ । ତାଙ୍କର ମତକୁ ସେ ସାରାଂଶରେ ଲେଖିଥିଲେ, "ଜୀବନ ସବୁ ଅପେକ୍ଷା ବା ସବୁ ବିଭାଗର ସମଷ୍ଟି ଅପେକ୍ଷା ଅଧିକ ମହତ୍ତ୍ୱପୂର୍ଣ୍ଣ । ମୁଁ ଆଉ ପାଦେ ଆଗକୁ ଯାଇ କହିବି ଯେ ଏକ ଉନ୍ନତ ଜୀବନ ବଞ୍ଚୁଥିବା ବ୍ୟକ୍ତି ହିଁ ଜଣେ ଶ୍ରେଷ୍ଠ କଳାକାର । ଏକ ମହତ୍ତ୍ୱପୂର୍ଣ୍ଣ ଜୀବନଧାରଣ ପାଇଁ ଉଦ୍ୟମ ଛଡ଼ା କଳାର କ'ଣ ତାତ୍ପର୍ଯ୍ୟ ଅଛି ? ଜୀବନର ମହତ୍ତ୍ୱ ବୃଦ୍ଧି ପାଇଁ କଳା ବିନିଯୋଗ ହୋଇପାରିଲେ ଏହାର ମୂଲ୍ୟ ବଢ଼ିଥାଏ ।"

**ଅଣ୍ଠୁ ନଲୁଗୁ ପୋଷାକ ନିୟମ :**

ଅଣ୍ଠୁ ନଲୁଗୁ ପୋଷାକ ପିନ୍ଧିବାରେ ଏକ ଅସଙ୍ଗତ ବା ସମ୍ଭବତଃ ଏକ ବିକାଶ ତାଙ୍କ ବସ୍ତ୍ରର କ୍ଷେତ୍ରରେ ଦେଖିବାକୁ ମିଳିଥାଏ । ୧୯୩୧ ମସିହାରେ ଲଣ୍ଡନଠାରେ ଇଂଲଣ୍ଡର ରାଜାଙ୍କର ଏକ ନୈଶ୍ୟ ଭୋଜିରେ ସେ ଯୋଗ ଦେଇଥିଲେ । ଯଦି ସେ ତାଙ୍କର ପରିହିତ ଅଣ୍ଠୁ ନଲୁଗୁ ଲୁଗା ବଦଳରେ ଅନ୍ୟ କିଛି ପିନ୍ଧି ରାଜାଙ୍କୁ ସନ୍ତୁଷ୍ଟ କରିବାକୁ ଯାଇଥାନ୍ତେ ତେବେ ଏହା ରାଜାଙ୍କ ପ୍ରତି ଅସମ୍ମାନଜନକ ହୋଇଥାନ୍ତା । କିନ୍ତୁ ଗାନ୍ଧୀ ତାଙ୍କର ଚିରାଚରିତ ଖଦଡ଼ ପୋଷାକ ପିନ୍ଧି ସେହି ଉତ୍ସବରେ ଯୋଗ ଦେଇଥିଲେ ଯାହାକି ବକିଂହାମ୍ ରାଜପ୍ରାସାଦ ଇତିହାସରେ ଏକ ଅଭିନବ ଘଟଣା ଥିଲା । କିନ୍ତୁ ୧୯୨୪ ମସିହାରେ ସରୋଜିନୀ ନାଇଡ଼ୁ ଦକ୍ଷିଣ ଆଫ୍ରିକା ଗସ୍ତ କରି ଫେରିବା ପରେ ଖଦୀ ଉପରେ ଯେଉଁ ମନ୍ତବ୍ୟ ଦେଇଥିଲେ ତାହାକୁ ଭିତ୍ତି କରି ଏକ ବିବାଦ ସୃଷ୍ଟି ହୋଇଥିଲା । ଗାନ୍ଧୀ

ଲେଖିଥିଲେ, "ଭାରତୀୟ ସଭ୍ୟତା ଏତେ ଉଦାର ଯେ କୌଣସି ବ୍ୟକ୍ତିର ପୋଷାକ ଉପରେ ଏହା ଗୁରୁତ୍ୱ ଦିଏନାହିଁ । ମୁଁ ଯେପରି ପୋଷାକ ପିନ୍ଧୁଛି ସେପରି କେହି ପିନ୍ଧିଲେ ବା କୌପିନ ଖଣ୍ଡିଏ ମାରିଲେ ତାଙ୍କୁ କେହି ଅସୁନ୍ଦର ଭାବନ୍ତି ନାହିଁ । ଆମ ଦେଶରେ ଆମେ କୌଣସି ବ୍ୟକ୍ତିଙ୍କର ପୋଷାକ ଦେଖି ତାଙ୍କର ମୂଲ୍ୟାୟନ କରିନଥାଉ । କିନ୍ତୁ ଅନ୍ୟ ଏକ ଦେଶରେ ଏହି ଅଣ୍ଟା ନଳୁଚୁଥିବା ପୋଷାକକୁ ହୁଏତ ଭଲ ଦୃଷ୍ଟିରେ ଦେଖାଯାଇନପାରେ । ମୋତେ ଯଦି ଏକ ବିଦେଶୀ ରାଷ୍ଟ୍ରକୁ ଯିବାକୁ ପଡ଼େ ତେବେ ମୋର ଏହି ପୋଷାକକୁ ମୋତେ ଟ୍ରଙ୍କରେ ରଖିଦେଇ ଯିବାକୁ ହେବ । ବିଦେଶରେ ଅଣ୍ଟା ଲୁଚାଇ ପାଦ ପର୍ଯ୍ୟନ୍ତ ପୋଷାକ ପିନ୍ଧିବା ଆବଶ୍ୟକ । 'ରୋମୀୟମାନେ ଯେପରି କରନ୍ତି ରୋମ ଗଲେ ସେପରି କର' ଏକ ବୃଥା ମନ୍ତବ୍ୟ ନୁହେଁ ।"

ଗାନ୍ଧୀ ମୁକ୍ତ ଚିନ୍ତାକୁ ପ୍ରୋତ୍ସାହନ ଦେଉଥିଲେ । ଭାରତୀୟ ଜାତୀୟ କଂଗ୍ରେସରେ ହୋଇଥିବା ଭୋଟଦାନ ଉପରେ ମନ୍ତବ୍ୟ ଦେଇ ଲେଖିଥିଲେ, "ସବ ଭାରତୀୟ କଂଗ୍ରେସ କମିଟି ମୋତେ ଏକ ସଂଖ୍ୟାଗରିଷ୍ଠତା ଦେଇଛନ୍ତି, କିନ୍ତୁ ମୁଁ ଯାହା ଅନୁଭବ କରୁଛି ବର୍ଦ୍ଦୋଲି ବିବରଣୀକୁ ଖୁବ୍ କମ୍ ବ୍ୟକ୍ତି ଗ୍ରହଣ କରନ୍ତି । ଲୋକମାନେ ବିଷୟଟିକୁ ହୃଦୟଙ୍ଗମ କରି ଭୋଟ ଦେଇନାହାନ୍ତି, କେବଳ ମୋତେ ଗାନ୍ଧୀ ଭାବି ଭୋଟ ଦେଇଛନ୍ତି । ସେଥିରେ ଆମେ ଗୁରୁତ୍ୱ ଦେବା ଉଚିତ କି ?"

"...ପ୍ରତ୍ୟେକେ ସ୍ୱାଧୀନ ଭାବରେ ଚିନ୍ତା କରିବା ଓ ନିଜସ୍ୱ ସିଦ୍ଧାନ୍ତ ନେବା ମୋର ଇଚ୍ଛା ।"

## ଗାନ୍ଧୀ କିପରି ସ୍ୱରାଜବାଦୀଙ୍କୁ ସମ୍ଭାଳିଲେ

### ଗାନ୍ଧୀ ରଚନାବଳୀର ଚତୁର୍ବିଂଶ ଖଣ୍ଡର ସମୀକ୍ଷା :

ଗୋଟିଏ ଦୁଃଖପ୍ରଦ ଘଟଣା ଉପରେ ଏଠାରେ ଥିବା ମନ୍ତବ୍ୟ ପ୍ରଣିଧାନଯୋଗ୍ୟ । ୧୯୨୪ ମସିହାରେ ମାଲବାରରେ ହୋଇଥିବା ଭୟଙ୍କର ବନ୍ୟା ବିଷୟରେ ଗାନ୍ଧୀଙ୍କୁ ରାଜଗୋପାଳାଚାରୀ ଲେଖିଥିଲେ, "ନଦୀବଢ଼ି ମନ୍ଦିର ପ୍ରବେଶ ଓ ସାମାଜିକ ସମତା ଆଦି ପ୍ରଶ୍ନକୁ ଏକ ଡଜନରୁ ଅଧିକ ଗ୍ରାମରେ ସମାଧାନ କରିଦେଇଛି । ନଦୀବଢ଼ି ଯୋଗୁଁ ସବୁ ଜାତିର ଲୋକମାନେ ମନ୍ଦିର ଓ ଅନ୍ୟାନ୍ୟ ସ୍ଥାନରେ, ଯେଉଁ ଜାଗାକୁ ସମସ୍ତଙ୍କୁ ବାରଣ ଥାଏ, ଆସି ଏକାଠି ଆଶ୍ରୟ ନେଇଥିଲେ । ଏପରିକି ପ୍ରକୃତିର ପ୍ରକୋପ ଯୋଗୁଁ ନମ୍ବୁଦ୍ରୀ ଓ ପୁଲୟ ଜାତିର ଲୋକମାନେ ଏକତ୍ର ମଧ୍ୟ ଖାଇବାକୁ ବାଧ୍ୟ ହୋଇଛନ୍ତି ।" ସାଧାରଣ ଆନନ୍ଦ ଅପେକ୍ଷା ସାଧାରଣ ଦୁଃଖରେ ଲୋକମାନେ ଶୀଘ୍ର ଏକତ୍ର ହୋଇପାରନ୍ତି । ୧୯୨୦ରୁ

୧୯୨୮ ଭିତରେ ହୋଇଥିବା ଭୟଙ୍କର ଆନ୍ଦୋଳନ ପରିପ୍ରେକ୍ଷୀରେ ଏହି ପ୍ରକାର ଅନୁଭୂତି ମିଳିପାରିଛି ।

ଏହି ଆନ୍ଦୋଳନ ସମ୍ବନ୍ଧରେ ସବୁ ଶ୍ରେଣୀ ଓ ସମ୍ପ୍ରଦାୟର ଲୋକମାନେ କାନ୍ଧକୁ କାନ୍ଧ ମିଶାଇ ଗିରଫ ହୋଇ କାରାବରଣ କରିଥିଲେ । କିନ୍ତୁ ସଂଗ୍ରାମ ପରେ ଶାନ୍ତ ଅବସ୍ଥାରେ, ସେହି ସଂଗ୍ରାମୀମାନେ ପରସ୍ପରଠାରୁ ଦୂରେଇ ଗଲେ । ଯେଉଁ ସମସ୍ୟାକୁ ସମାଧାନ କରିବାକୁ ସେମାନେ ବାହାରିଥିଲେ ସେମାନେ ତାହାକୁ ଅଧିକ ଜଟିଳ କରିଦେଲେ । ପରିଷଦରେ ପ୍ରବେଶ ଓ ଅସହଯୋଗର ବ୍ୟାଖ୍ୟା ନେଇ କଂଗ୍ରେସ ନେତାମାନେ ଭାଗ ହୋଇଗଲେ । ହିନ୍ଦୁ ଓ ମୁସଲମାନମାନେ ଏକତ୍ର ରହି କାର୍ଯ୍ୟକ୍ରମ ଗ୍ରହଣ କଲେ ନାହିଁ । ଶାସ୍ତ୍ରର ପ୍ରବକ୍ତାମାନେ ଅସ୍ପୃଶ୍ୟତା ଦୂରୀକରଣ ବିରୋଧ କଲେ । ଗାନ୍ଧୀ ଏହି ପରିସ୍ଥିତିରେ ବିବ୍ରତ ହେଲେ । କିନ୍ତୁ ଗୋଟିଏ ଶାନ୍ତ ସମୟରେ ସେ ଯେପରି ନେତୃତ୍ୱ ନେଇଥିଲେ ସମସ୍ୟାର ଘେରି ଭିତରେ ସେ ଦେଶବାସୀଙ୍କୁ ସେହିପରି ନେତୃତ୍ୱ ଦେବାରେ ସମର୍ଥ ହୋଇଥିଲେ ।

## ପରିବର୍ତ୍ତନ ସମର୍ଥନକାରୀଙ୍କୁ :

ଗାନ୍ଧୀ ରଚନାବଳୀର ଚତୁର୍ବିଂଶ ଖଣ୍ଡରେ ତାଙ୍କର ଅନେକ ପତ୍ର, ବକ୍ତବ୍ୟ, ଭାଷଣ ଇତ୍ୟାଦି ଦେଖିବାକୁ ମିଳେ । ସାଂପ୍ରଦାୟିକ ଓ ଆଦର୍ଶଗତ ସମସ୍ୟାକୁ ସମାଧାନ କରି ଅହିଂସ ପନ୍ଥାରେ ଏକ ସାଧାରଣ ଲକ୍ଷ୍ୟ ଦିଗରେ ଜନଗଣଙ୍କୁ ଆଗେଇ ନେବା ପାଇଁ ଏଥିରୁ ସନ୍ଦେଶ ମିଳିଥାଏ । ସାଂପ୍ରତିକ ସମୟରେ ସେହି ପନ୍ଥାର ପ୍ରୟୋଗ ମଧ୍ୟ ଦରକାରୀ ମନେହୁଏ ।

୧୯୨୦ ମସିହାରେ ଅସହଯୋଗ ଆନ୍ଦୋଳନ ଆରମ୍ଭ ହେବା ପରେ ସରକାରୀ ପରିଚାଳିତ ବିଦ୍ୟାଳୟ, କୋର୍ଟ କଚେରି ଓ ପରିଷଦକୁ ବର୍ଜନ କରାଗଲା । କିନ୍ତୁ ଆନ୍ଦୋଳନ ପରେ ସି. ଆର. ଦାସ ଓ ମୋତିଲାଲ ନେହେରୁଙ୍କ ପରି ବିଶିଷ୍ଟ ବ୍ୟକ୍ତିମାନେ ଅସହଯୋଗ ଧାରଣାକୁ ପରିବର୍ତ୍ତନ କରି ପରିଷଦରେ ସଭ୍ୟ ରହିବାକୁ ଚାହିଁଲେ । ସେମାନଙ୍କୁ ସ୍ୱରାଜ୍ୟବାଦୀ ବା ନରମପନ୍ଥୀ ବୋଲି କୁହାଗଲା । କିନ୍ତୁ ଯେଉଁମାନେ ବିଦେଶୀ ଜିନିଷ ବର୍ଜନକୁ ପୂର୍ଣ୍ଣ ସମର୍ଥନ କଲେ ସେମାନେ ଚରମପନ୍ଥୀ ଭାବରେ ପରିଚିତ ହେଲେ । ଏହି ଚରମପନ୍ଥୀମାନେ ନିର୍ବାଚନ ବା ପରିଷଦରେ ସଭ୍ୟ ହେବାକୁ ଗୁରୁତ୍ୱ ଦେବା ପରିବର୍ତ୍ତେ ଖଦୀ ପ୍ରସାର, ଅସ୍ପୃଶ୍ୟତା ଦୂରୀକରଣ ଓ ସାଂପ୍ରଦାୟିକ ସଦ୍‌ଭାବନା ଇତ୍ୟାଦି ରଚନାତ୍ମକ କାର୍ଯ୍ୟକ୍ରମକୁ ଅଧିକ ବ୍ୟାପକ ଭାବରେ କରିବାକୁ ଆଗ୍ରହୀ ହେଲେ ।

ନରମପନ୍ଥୀମାନଙ୍କ ସହିତ ଆଲୋଚନା ପରେ ଗାନ୍ଧୀ ସେମାନଙ୍କ ସହ ଏକମତ ହୋଇପାରିଲେ ନାହିଁ । କିନ୍ତୁ ପରିଷଦରେ ସଭ୍ୟ ହେବା ପାଇଁ କ'ଣ ନିଷ୍ପତ୍ତି କରାଯିବ ତାହା ସମସ୍ୟା ଭାବରେ ଦେଖାଗଲା । ଏକ ସମାଧାନର ସୂତ୍ର ଭାବରେ ଗାନ୍ଧୀ ମତ ଦେଲେ ଯେ ଯେଉଁମାନେ ପରିଷଦର ସଭ୍ୟ ରହିବାକୁ ଚାହୁଁଛନ୍ତି ସେମାନେ ନିଜ ଇଚ୍ଛାରେ ଚର୍ଖା ଇତ୍ୟାଦି ରଚନାତ୍ମକ କାର୍ଯ୍ୟକୁ ସଂସଦ ଭିତରେ କରି-ପାରନ୍ତି । କିନ୍ତୁ ଚରମପନ୍ଥୀମାନେ ଜନଗଣଙ୍କ ସହିତ କାର୍ଯ୍ୟକରି ରଚନାତ୍ମକ କାର୍ଯ୍ୟକ୍ରମର ବିକାଶ ଘଟାଇ ପାରନ୍ତି । ବାବୁ ଭଗବାନ ଦାସଙ୍କର ଉଦାହରଣ ଯଥା ଆକାଶ-ବାହିନୀର ବିମାନ ସହିତ ନୌବାହିନୀର ଜାହାଜଗୁଡ଼ିକ ପ୍ରତି ପଦକ୍ଷେପରେ ଯେପରି ପରସ୍ପର ସହିତ ସମନ୍ୱୟ ରକ୍ଷା କରିଥାଆନ୍ତି, ସେହିପରି ନରମପନ୍ଥୀ ଓ ଚରମପନ୍ଥୀ ଉଭୟ ପରସ୍ପର ସହିତ ସହଯୋଗ ରକ୍ଷାକରି ସ୍ୱରାଜ୍ୟ ପ୍ରାପ୍ତି ଦିଗରେ କାର୍ଯ୍ୟ କରିବା ଆବଶ୍ୟକ ବୋଲି ସେ ଉଭୟଙ୍କ ଉଦ୍ଦେଶ୍ୟରେ କହିଥିଲେ । ପୁନଶ୍ଚ ସେ କହିଥିଲେ, "ଯଦି ନରମପନ୍ଥୀଙ୍କର ଉଦ୍ଦେଶ୍ୟ ସାଧିତ ହୋଇ ଦେଶ ଲକ୍ଷ୍ୟସ୍ଥଳରେ ପହଞ୍ଚେ ତେବେ ଏହି ପ୍ରତ୍ୟକ୍ଷ ପ୍ରମାଣ ମୋ ପରି ଅନେକ ବ୍ୟକ୍ତିଙ୍କୁ ଆମ ତ୍ରୁଟିକୁ ବୁଝିବାରେ ସାହାଯ୍ୟ କରିବ । କିନ୍ତୁ ସେମାନେ ଯଦି ସେଥିରେ ବିଫଳ ହୁଅନ୍ତି ତେବେ ସେମାନେ ମଧ୍ୟ ନିଜର ତ୍ରୁଟିକୁ ସଂଶୋଧନ କରି ଭିନ୍ନ ପନ୍ଥାରେ କାର୍ଯ୍ୟ କରିବେ । ଚରମପନ୍ଥୀମାନେ ନିଜର କାର୍ଯ୍ୟକ୍ରମର ସୁଫଳ ଦ୍ୱାରା ପରିଷଦ ସଭ୍ୟପଦକୁ ବିରୋଧ କରିବା କଥାକୁ ଯଥାର୍ଥ ବୋଲି ପ୍ରତିପାଦନ କରିପାରିବେ । ସେହିପରି ନରମପନ୍ଥୀ-ମାନେ ନିଜ କାର୍ଯ୍ୟର ପରିଣାମ ଦ୍ୱାରା ସେମାନଙ୍କ ମତକୁ ଯଥାର୍ଥ ବୋଲି ପ୍ରତିପାଦନ କରିପାରିବେ ।" ସୁତରାଂ ଗାନ୍ଧୀ ଗୋଟିଏ ବିରୋଧୀ ଦୃଷ୍ଟିଭଙ୍ଗୀକୁ ସମ୍ମାନ ଦେବା ସହିତ କୌଣସି କିଛିର ମୂଲ୍ୟାୟନ କ୍ଷେତ୍ରରେ ବସ୍ତୁନିଷ୍ଠ ପରିଣାମକୁ ଗୁରୁତ୍ୱ ପ୍ରଦାନ କରୁଥିଲେ ।

ମେ ୨୯, ୧୯୨୪ରେ 'ହିନ୍ଦୁ-ମୁସଲମାନ ଉତ୍ତେଜନା : ଏହାର କାରଣ ଓ ନିରାକରଣ' ଶିରୋନାମାରେ ଗାନ୍ଧୀ 'ୟଙ୍ଗ ଇଣ୍ଡିଆ'ରେ ଏକ ବିସ୍ତୃତ ଲେଖା ପ୍ରକାଶ କରିଥିଲେ । ଅତି ଗଭୀର ହୃଦୟରେ ସେ କହିଥିଲେ, "ମୋର ଅନୁଭୂତିରୁ ମୁଁ ଜାଣିଛି ଯାହା କୁହାଯାଏ ଯେ ମୁସଲମାନମାନେ ସ୍ୱଭାବରେ ଅତ୍ୟାଚାରୀ ଓ ହିନ୍ଦୁମାନେ ଭୟାଳୁ ତାହା ସତ୍ୟ ନୁହେଁ । ଭୀରୁତା ଥିବା ପର୍ଯ୍ୟନ୍ତ ନିର୍ଯାତନାକାରୀ-ମାନେ ରହିବେ । ବିପଦ ସମୟରେ ଅନ୍ୟମାନଙ୍କୁ ଛାଡ଼ି ପଳାଇବା ଅହିଂସା ନୀତି ନୁହେଁ । ଭୟାଳୁ ହେବା ପରିବର୍ତ୍ତେ ବରଂ ହିଂସାତ୍ମକ ପନ୍ଥାର ଆଶ୍ରୟ ନେବା ଉଚିତ ମନେହୁଏ । ବହୁଦିନ ପର୍ଯ୍ୟନ୍ତ ଭୀରୁ ଥିବା ବେଳେ ମୁଁ ହିଂସାର ଆଶ୍ରୟ ନେଉଥିଲି । କିନ୍ତୁ ମୁଁ ମୋର ଭୀରୁତା ପରିହାର କଲାରୁ ଅହିଂସାକୁ ସମ୍ମାନ

ଦେଉଛୁ । ମୁସଲମାନ ଉତ୍ପୀଡ଼ନକାରୀଙ୍କୁ ଯଦି ହିନ୍ଦୁମାନେ ସମ୍ମାନଜନକ ବନ୍ଧୁରେ ପରିବର୍ତ୍ତିତ କରିବାକୁ ଚାହାନ୍ତି ତେବେ ନିଜ ଜୀବନ ପ୍ରଦାନରେ ସେମାନେ ଯେକୌଣସି ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହେବାକୁ ପ୍ରସ୍ତୁତ ହେବା ଦରକାର । ନିଜ ଭିତରୁ ଭୟ ଦୂର କରିବାକୁ ଶାରୀରିକ ସାମର୍ଥ୍ୟ ପରିବର୍ତ୍ତେ ବିପଦକୁ ମୁକାବିଲା କରିବାର ଆତ୍ମବିଶ୍ୱାସ ଦରକାର । ବଳଶାଳୀ ଜୁଲୁମାନେ ଇଂରେଜ ବାଳକମାନଙ୍କୁ ଭୟ କରୁଥିଲେ । ଶାରୀରିକ ଦୁର୍ବଳତମ ବ୍ୟକ୍ତି ଏକ ଦୃଢ଼ ହୃଦୟର ଅଧିକାରୀ ହୋଇପାରନ୍ତି ।"

୧୯୨୪ ଜାନୁଆରିରେ ଜେଲରୁ ଖଲାସ ହେବା ପରେ 'ମୋର ଜେଲ ଅନୁଭୂତି' ଶୀର୍ଷକରେ ଗାନ୍ଧୀ ଏଗାରଟି ଦୀର୍ଘ ପ୍ରବନ୍ଧ ଲେଖିଥିଲେ । ଜେଲ ତତ୍ତ୍ୱାବଧାରକ, ଅପରାଧୀ ଓ୍ୱାର୍ଡ଼ ଓ କେତେକ ଗୁରୁତ୍ୱପୂର୍ଣ୍ଣ ବିଷୟରେ ଓ କିଛି ଆମୋଦଦାୟକ ଘଟଣାବଳୀ ସମ୍ପର୍କରେ ବର୍ଣ୍ଣନା କରିଥିଲେ । ଏହା ସହିତ ଜେଲ ଭୋଗୁଥିବା ବ୍ୟକ୍ତି ଓ ଜେଲ ପରିଚାଳକଙ୍କ ମଧ୍ୟରେ ମାନବିକ ସମ୍ପର୍କର ଅଭାବ ବିଷୟରେ ସେ ଗଭୀର ଚିନ୍ତା କରିଥିଲେ । ସେ ଉଲ୍ଲେଖ କରିଥିବା ଜଣେ ଜେଲ ପରିଚାଳକଙ୍କର ମନ୍ତବ୍ୟ ବେଶ୍ ପ୍ରଣିଧାନଯୋଗ୍ୟ । "ମୁଁ ଯେତେବେଳେ ବନ୍ଦୀ-ମାନଙ୍କର ଅପରାଧ ବା ବିବରଣୀ ବିଷୟରେ ଅନୁସନ୍ଧାନ କରେ ସେତେବେଳେ ମୁଁ କେତେଦୂର ସେମାନଙ୍କଠାରୁ ଉନ୍ନତ ଏହି ପ୍ରଶ୍ନ ମୋ ମନକୁ ଆସେ । ଯେଉଁ ଅପରାଧ କରି ଏଠାକୁ କେତେକ ଆସିଛନ୍ତି, ସେମାନଙ୍କଠାରୁ ମୋର ଅପରାଧ ନିଶ୍ଚୟ ବେଶି । କିନ୍ତୁ ପାର୍ଥକ୍ୟ ହେଉଛି ଏହି ଗରିବ ଲୋକମାନଙ୍କର ଅପରାଧ ଧରାପଡ଼ିଛି ଅଥଚ ମୋର ଧରାପଡ଼ିନାହିଁ ।" ଅପରାଧୀମାନଙ୍କର ମାନସିକତାରେ ପରିବର୍ତ୍ତନ କରିବା ଓ ଜେଲମାନଙ୍କର ଆର୍ଥିକ ଅବସ୍ଥାକୁ ବଦଳାଇବା ନେଇ ଗାନ୍ଧୀ କେତେକ ଗୁରୁତ୍ୱପୂର୍ଣ୍ଣ ପରାମର୍ଶ ଦେଇଥିଲେ । ଜେଲ ଭିତରେ ଗୋଟିଏ ସମୟନିର୍ଘଣ୍ଟ ଦେଇ ସୂତା କାଟିବା ଓ ଜେଲ ପାଠାଗାରରୁ ଓ ବନ୍ଧୁମାନଙ୍କଠାରୁ ପାଉଥିବା ପୁସ୍ତକ ପଢ଼ିବା ଇତ୍ୟାଦିରେ ସେ ସମୟ ଅତିବାହିତ କରୁଥିଲେ । ବିଶେଷକରି ଉର୍ଦ୍ଦୁ ସାହିତ୍ୟ ସମ୍ପର୍କରେ ତାଙ୍କର ଜ୍ଞାନ ବୃଦ୍ଧି କରିବା ଫଳରେ ମୁସଲମାନ ମାନସ ବିଷୟରେ ଜାଣିବାର ଅଧିକ ଅବକାଶ ପାଇଥିଲେ । ସେ ଯେଉଁ ଲକ୍ଷ୍ୟ ପୋଷଣ କରିଥିଲେ ଶୀଘ୍ର ମୁକ୍ତ ହେବାରୁ ତାହା ପୂରଣ କରିପାରିଲେ ନାହିଁ ।

**ପର୍ଦ୍ଦା ପ୍ରଥା :**

ଅହେତୁକ ବିଶ୍ୱାସକୁ ଅହିଂସ ଭାବରେ ପ୍ରତ୍ୟାଖ୍ୟାନ କରିବାରେ ତାଙ୍କର ଏକ ନିଜସ୍ୱ ଶୈଳୀ ଥିଲା । ପର୍ଦ୍ଦା ପ୍ରଥାକୁ ଏକ ପୁରୁଣାକାଳିଆ ବ୍ୟବସ୍ଥା ଭାବରେ ନେଇ ସେ କହିଥିଲେ, "ଯେତେବେଳେ ନାରୀମାନଙ୍କୁ ସମ୍ପତ୍ତି ମନେକରି ତାଙ୍କୁ

ଅପହୃତ କରାଯାଉଥିଲା ସେତେବେଳେ ଏହା ଦରକାରୀ ଥିଲା । ଯଦି ପୁରୁଷମାନଙ୍କୁ ସେହିପରି ଅପହରଣ କରାଯାଉଥାନ୍ତା ସେମାନେ ମଧ୍ୟ ପର୍ଦ୍ଦା ଭିତରେ ରହିଥାନ୍ତେ । ଯେଉଁ ଜାଗାରେ ଏବେ ବି ଜଣେ ପୁରୁଷଙ୍କୁ ଦେଖିଲେ ତାଙ୍କୁ ଗୋଢ ଘଟିବାକୁ ବାଧ୍ୟ କରାଯାଏ ସେଠାରେ ପୁରୁଷମାନେ ପର୍ଦ୍ଦା ଅନ୍ତରାଳରେ ରହିବାକୁ ବା ଲୁଚିବାକୁ ଯାଆନ୍ତି । କୌଣସି ବ୍ୟକ୍ତି ନିଜ ପୂର୍ବପୁରୁଷଙ୍କ କୂଅ ବୋଲି ତା' ଭିତରକୁ ଲମ୍ଫ ପ୍ରଦାନ କରି ଯଦି ବୁଡ଼ିଯାଏ ତାକୁ ବୋକା ଛଡ଼ା ଆଉ କ'ଣ କୁହାଯିବ ।"



